# କବିବର କାବ୍ୟ ସମୀକ୍ଷା

ସଂପାଦନା ଓ ସଂକଳନ

ସାରଳା ସାହିତ୍ୟ ସଂସଦ



ଓଡ଼ିଶା ବୁକ୍ ଷ୍ଟୋର

# କବିବର କାବ୍ୟ ସମୀକ୍ଷା

ସଂପାଦନା ଓ ସଂକଳନ
**ସାରଳା ସାହିତ୍ୟ ସଂସଦ**



ପ୍ରକାଶକ
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
**ଓଡ଼ିଶା ବୁକ୍ ଷ୍ଟୋର୍**
ବିନୋଦ ବିହାରୀ, କଟକ -୭୫୩ ୦୦୨

ପ୍ରଚ୍ଛଦ : ଶିବ ପାଣିଗ୍ରାହୀ

ପ୍ରଥମ ପ୍ରକାଶ : ମାଘ ଅଷ୍ଟମୀ, ୧୯୯୯

ଟାଇପ୍ ସେଟ୍ : ଆନନ୍ଦ ଗ୍ରାଫିକ୍ସ୍, କଟକ - ୧

ମୁଦ୍ରଣ : ଇନ୍ଦ୍ରାଣୀ ଅଫ୍‌ସେଟ୍, କଟକ

## KABIBARA KAVYA SAMIKSHYA

*Published on behalf of*

**SARALA SAHITYA SANSAD**

*by*

Sri Govinda Charan Patra

**Orissa Book Store**

**Binod Behari, Cuttack - 753 002**

***1st Edition :*** **Magha Astami, 1999**

Price : Rs.125/-
ISBN - 81-7400-252-9

# ମୁଖବନ୍ଧ

ଓଡ଼ିଆ ଭାଷା ସାହିତ୍ୟର ଆଦିକବି ହେଉଛନ୍ତି ସାରଳା ଦାସ । ସେ ସମୃଦ୍ଧ ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟର ସ୍ରଷ୍ଟା ଏବଂ ସମଗ୍ର ଭାରତୀୟ ପ୍ରାନ୍ତୀୟ ସାହିତ୍ୟର ଅତୁଳନୀୟ ପ୍ରତିଭା । ସେ ହେଉଛନ୍ତି ତତ୍କାଳୀନ ଉତ୍କଳର ଗଜପତି ମହାରାଜା କପିଳେନ୍ଦ୍ରଦେବଙ୍କ ସମସାମୟିକ । ଯେତେବେଳେ ସାଧାରଣ ଓଡ଼ିଆ ଲୋକଙ୍କ ପକ୍ଷେ ସଂସ୍କୃତ ପୁରାଣ ପାଠକରି ତାହାକୁ ହୃଦୟଙ୍ଗମ କରିବା ଦୁଃସାଧ ହୋଇ ଆସୁଥିଲା, ସାରଳା ଦାସ ସେତିକିବେଳେ ଓଡ଼ିଆରେ ରଚନା କଲେ ସମଗ୍ର ଭାରତ ଭୂମିର ମହାକାବ୍ୟ 'ମହାଭାରତ' । ମହାଭାରତ ବ୍ୟତୀତ 'ରାମାୟଣ', 'ଚଣ୍ଡୀପୁରାଣ' ଓ 'ଲକ୍ଷ୍ମୀ ନାରାୟଣ ବଚନିକା' ରଚନା କରି ଓଡ଼ିଆ ପୁରାଣ ସାହିତ୍ୟର ଭିତ୍ତିକୁ ସେ ସମୃଦ୍ଧ କରିଥିଲେ ।

ଏହି ମହାନ୍ କବିଙ୍କ ସ୍ମୃତିରକ୍ଷା ନିମିତ୍ତ ୧୯୮୧ ମସିହାରେ କଟକଠାରେ 'ସାରଳା ସାହିତ୍ୟ ସଂସଦ'ର ପ୍ରତିଷ୍ଠା ହୋଇଛି । ଓଡ଼ିଶାର ବହୁ ସାହିତ୍ୟିକ ଓ ସାହିତ୍ୟାନୁରାଗୀ ଏଥିରେ ଓତପ୍ରୋତ ଜଡ଼ିତ ହୋଇ ସାରଳା ସାହିତ୍ୟର ପ୍ରସାର ସହିତ ଓଡ଼ିଆ ସାହିତ୍ୟକୁ ନାନା ଦିଗରୁ ସମୃଦ୍ଧ ଓ ସଂପ୍ରସାରିତ କରିଛନ୍ତି । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ସାରଳା ସାହିତ୍ୟ ସଂସଦକୁ ସ୍ୱୀକୃତି ପ୍ରଦାନ କରିଛି ।

ଏହି ସତର ବର୍ଷ ମଧ୍ୟରେ ସାରଳା ସାହିତ୍ୟ ସଂସଦ ସାରଳା ଦାସଙ୍କ କୃତି ଓ କୀର୍ତ୍ତିକୁ ନେଇ ବହୁ ଆଲୋଚନାତ୍ମକ ଗବେଷଣାମୂଳକ ପୁସ୍ତକ ସମେତ ସାରଳା ଦାସଙ୍କ ପୁରାଣର ମୂଳ କଥା କାହାଣୀକୁ ନେଇ ଏକାଧିକ ଜନପ୍ରିୟ ଆଧୁନିକୀ ଗଳ୍ପ ସଂକଳନ ଓଡ଼ିଆ ସମେତ ହିନ୍ଦୀ ଓ ଇଂରାଜୀ ଭାଷାରେ ପ୍ରକାଶ କରିଛି । ସାରଳା ସାହିତ୍ୟ ବାହାରେ ରାମାୟଣ, ଭାଗବତ, ହରିବଂଶ, ନୃସିଂହ ପୁରାଣ, ସୂର୍ଯ୍ୟ ପୁରାଣ, ଶିବ ପୁରାଣ, ବ୍ରହ୍ମ ବୈବର୍ତ୍ତ ପୁରାଣ ପ୍ରଭୃତି ପୁରାଣର ଗଳ୍ପକୁ ଓଡ଼ିଶାର ଅଗଣିତ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବାର ସଂକଳ୍ପ ନେଇ ସଂସଦ ଅନେକ ଆଧୁନିକ ପୁରାଣ ଗଳ୍ପ ସଂକଳନ ପ୍ରକାଶ କରିସାରିଛି । ପୁରାଣସାହିତ୍ୟ ଭିନ୍ନ ସଂସଦ ପକ୍ଷରୁ କବି ଜୟଦେବ, ବ୍ୟାସକବି ଫକୀର ମୋହନ, ଭକ୍ତକବି ମଧୁସୂଦନ, ସ୍ୱଭାବକବି ଗଙ୍ଗାଧର, ପଲ୍ଲୀକବି ନନ୍ଦକିଶୋର, ସନ୍ଥକବି ଭୀମଭୋଇ, ମାନସିଂହଙ୍କ କୃତି ଉପରେ ଗବେଷଣାମୂଳକ ପୁସ୍ତକ ପ୍ରକାଶିତ

ହୋଇଛି । ସୁଖର କଥା ଚଳିତ ବର୍ଷ ଆମ ଅନୁଷ୍ଠାନ ପକ୍ଷରୁ ବ୍ରହ୍ମ ପୁରାଣର ଗଳ୍ପକୁ ନେଇ ଏକ ଆଧୁନିକୀ ଗଳ୍ପ ସଂକଳନ ବ୍ରହ୍ମ ପୁରାଣ କଥା ସାଗର ଓ କବିବର ରାଧାନାଥଙ୍କ ସାହିତ୍ୟକୃତିକୁ ନେଇ ଏକ ଗବେଷଣାତ୍ମକ ପୁସ୍ତକ 'କବିବର କାବ୍ୟ ସମୀକ୍ଷା' ପ୍ରକାଶ ପାଉଛି । ପୁସ୍ତକ ଦ୍ୱୟ ଓଡ଼ିଶାର ଲବ୍ଧପ୍ରତିଷ୍ଠ ଗାଳ୍ପିକ ଓ ଗବେଷକଙ୍କ ଲେଖନୀରେ ସମୃଦ୍ଧ ହୋଇଛି ।

ବିଗତ ବର୍ଷମାନଙ୍କରେ ସଂସଦ ପକ୍ଷରୁ ରାଜ୍ୟର ବିଭିନ୍ନ ସ୍ଥାନରେ ଓ ରାଜ୍ୟ ବାହାରେ କଲିକତା, ଶାନ୍ତିନିକେତନ, ସିମ୍ଲା ପ୍ରଭୃତି ସ୍ଥାନରେ ସାରଳା ଦାସଙ୍କ କୃତି ଉପରେ ଆଲୋଚନାଚକ୍ରମାନ ଅନୁଷ୍ଠିତ ହୋଇଯାଇଛି । ପ୍ରତ୍ୟେକବର୍ଷ ଅନୁଷ୍ଠାନର ସାମ୍ବତ୍ସରିକ ଉତ୍ସବମାନଙ୍କରେ ଦେଶର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା ସାହିତ୍ୟିକ ଓ ସଂସ୍କୃତିପ୍ରେମୀ ଯୋଗଦାନ କରି ଆମକୁ ଉତ୍ସାହିତ କରିଛନ୍ତି ।

ଆମ ରାଜ୍ୟର ବିଶିଷ୍ଟ ଗବେଷକ ଓ ଲେଖକମାନଙ୍କୁ ସମ୍ବର୍ଦ୍ଧନା ଦେବା ଆମ ସଂସଦର ଅନ୍ୟତମ କାର୍ଯ୍ୟକ୍ରମ । ଏହି ଉଦ୍ଦେଶ୍ୟରେ ୧୯୮୬ ମସିହାରୁ ଆମ ଅନୁଷ୍ଠାନ ଜଣେ ଲବ୍ଧ-ପ୍ରତିଷ୍ଠ ଗବେଷକ ଓ ସାହିତ୍ୟିକଙ୍କୁ 'ସାରଳା ସମ୍ମାନ' ପ୍ରଦାନ କରି ଆସୁଛି । ଏହି ସାହିତ୍ୟିକ ଓ ଗବେଷକମାନେ ଉଦାରତାର ସହିତ ସଂସଦର ଏହି ସମ୍ମାନ ଗ୍ରହଣକରି ଏହାର ପ୍ରତିଷ୍ଠା ବୃଦ୍ଧିରେ ସହାୟକ ହୋଇଛନ୍ତି ।

ସାରଳା ସାହିତ୍ୟ ସଂସଦର ବିଭିନ୍ନ କାର୍ଯ୍ୟକ୍ରମ ସଫଳତା ସଦସ୍ୟମାନଙ୍କର ଆନ୍ତରିକ ସହଯୋଗ ଯୋଗୁ ସମ୍ଭବପର ହୋଇଛି । ବିଶେଷତଃ ସଂସଦର ଉପଦେଷ୍ଟା ଶ୍ରୀ ସହଦେବ ସାହୁ, ଗ୍ରନ୍ଥ ସଂପାଦକ ଶ୍ରୀ ପଠାଣି ପଟ୍ଟନାୟକ, ଡଃ ବିଚିତ୍ରାନନ୍ଦ ମହାନ୍ତି, ଡଃ ହେମନ୍ତ କୁମାର ଦାସଙ୍କ ସହଯୋଗ ଏବଂ ସଂସଦର ସମ୍ପାଦକ ଇଂଜିନିୟର ପ୍ରଭାକର ସ୍ୱାଇଁଙ୍କର ତଥା କାର୍ଯ୍ୟକାରୀ କମିଟିର ସଦସ୍ୟମାନଙ୍କର ନିଷ୍ଠାପର ଉଦ୍ୟମ ଏହି ଅବକାଶରେ ସ୍ମରଣ କରୁଛି । ଶେଷରେ ଆଶା କରୁଛି, ସମସ୍ତଙ୍କର ସକ୍ରିୟ ସହଯୋଗରେ ସଂସଦ ତା'ର ଲକ୍ଷ୍ୟ ପୂରଣ କରିବ ।

ବସନ୍ତ କୁମାର ବିଶ୍ୱାଳ

କଟକ,
ମାଘ ଅଷ୍ଟମୀ, ୧୯୯୯ ।

ସଭାପତି
ସାରଳା ସାହିତ୍ୟ ସଂସଦ



# ସୂଚୀପତ୍ର

# ରାଧାନାଥଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟି

ଡଃ ଖଗେଶ୍ୱର ମହାପାତ୍ର

ସକ୍ରେଟିସ୍ କହି ଚାଲିଛନ୍ତି— ଦେଖ Glaucon, ଦୃଷ୍ଟାନ୍ତ ସ୍ୱରୂପ ତିନୋଟି ପଲ୍ୟଙ୍କ ନିଅ । ଗୋଟିକର ସ୍ରଷ୍ଟା ଭଗବାନ୍, ତହିଁରେ ଅଛି ସତ୍ୟ; ଗୋଟିକର ନିର୍ମାତା ବଢ଼େଇ, ତହିଁରେ ଅଛି ବ୍ୟାବହାରିକ ମୂଲ୍ୟ (ସତ୍ୟର ଆଭାସ); ଗୋଟିକର ରୂପକାର କବି ବା ଶିଳ୍ପୀ, ତହିଁରେ ଅଛି ଅନୁକରଣ, ବୃଥା ସାଧନା ଓ ଶକ୍ତିର ଅପବ୍ୟୟ । ତେବେ କାହିଁକି ଏ ଶେଷଟିର ସୃଷ୍ଟି ? ଯାହା ଆମେ ଜୀବନ୍ତ ଭାବେ ପ୍ରତ୍ୟହ ଦେଖୁ, ଯାହା ଆମେ ପ୍ରତ୍ୟକ୍ଷରେ ଅନୁଭବ କରୁ ଏବଂ ଯାହା ଦେଖିବାର, ଅନୁଭବ କରିବାର ସକଳ ସମ୍ଭାବନା ରହିଛି, ତା'ର ପ୍ରତିଲେଖ କାଳିରେ, ତୂଳିରେ କରି କି ଲାଭ ? ଅସ୍ତାଚଳରେ ବିଦାୟୀ ସୂର୍ଯ୍ୟର ବିଚିତ୍ର ବର୍ଣ୍ଣସମ୍ଭାର, ନବକିଶଳୟର ଅନ୍ତରାଳରେ ବନବିହଗୀର ମଧୁର କାକଳୀ ଆଖିରେ ଯେଉଁ ପୁଲକ ଖେଳାଏ, ପ୍ରାଣରେ ଯେଉଁ କମ୍ପନ ଆଣେ, ତାହା କି କଳାରେ, କବିତାରେ ମିଳିପାରିବ ? ପ୍ରାକୃତିକ ଓଡ଼ିଶାରେ ପଡ଼ିରହିଥିବା ଚିଲିକା ହ୍ରଦ— ତା'ର ସୌନ୍ଦର୍ଯ୍ୟ ସତ୍ୟ, ଶାଶ୍ୱତ, ବାସ୍ତବ ତାକୁ କେହି ଘେନି ଯାଉନଥିଲା, ତା'ର ବିଲୟ ହୋଇଯାଉନଥିଲା । ତେବେ କାହିଁକି ଚିଲିକାର ନିର୍ଜୀବ ଛବି ଆଙ୍କିବାକୁ ଏତେ ସମୟ, ଏତେ ସାଧନା ଓ ଏତେ କାଳିକାଗଜର ଅପବ୍ୟବହାର କଲେ କବି ରାଧାନାଥ ?

ଖ୍ରୀଷ୍ଟପୂର୍ବ ୫ମ, ୪ର୍ଥ ଶତାବ୍ଦୀରେ ରିପବ୍ଲିକ୍ ଗ୍ରନ୍ଥରେ ଏହି ମର୍ମରେ ଯେଉଁ ପ୍ରଶ୍ନ ସାହିତ୍ୟ ବିରୁଦ୍ଧରେ ଉଠାଇଥିଲେ ଦାର୍ଶନିକ ପ୍ଲାଟୋ, ଅଦ୍ୟାପି ତାହା ସାହିତ୍ୟର ଲେଖକ ଓ ପାଠକଙ୍କୁ ବିବ୍ରତ କରି ଆସୁଛି । ଏହାର ଉତ୍ତର ଦେଇ କଳାପ୍ରେମୀ ପଣ୍ଡିତମାନେ କହିଛନ୍ତି— କବିର ରୂପସୃଷ୍ଟି ବୃଥା ନୁହେଁ । ସେ ଆମ ପାଇଁ ପ୍ରାକୃତିକ ସୌନ୍ଦର୍ଯ୍ୟ ପୂର୍ଣ୍ଣଭାବେ ଉପଭୋଗ କରିବାର ବ୍ୟବସ୍ଥା କରିଥାଏ । ଜୀବନ୍ତଭାବେ, ପ୍ରତ୍ୟକ୍ଷଭାବେ ପାଉଥିବା ପ୍ରାକୃତିକ ଦୃଶ୍ୟଗୁଡ଼ିକୁ ଉପଭୋଗ କରି ଯେଉଁ ଆନନ୍ଦ ଆମେ ଆଂଶିକ ପାଉ, ତାହା ପୂର୍ଣ୍ଣତଃ ପାଉ କାବ୍ୟରେ, କାରଣ ପ୍ରଥମତଃ ସାଧାରଣ ମଣିଷ ବ୍ୟାବହାରିକ ଦୃଷ୍ଟିକୋଣ ନେଇ ପ୍ରକୃତିକୁ ସନ୍ଦର୍ଶନ କରେ । ଅସ୍ତାଚଳର ବିଦାୟୀ ସୂର୍ଯ୍ୟର ବିଚିତ୍ର ବର୍ଣ୍ଣସମ୍ଭାର ତାକୁ କିୟତ୍‌କ୍ଷଣ ପରେ ସ୍ମରଣ କରାଇଦିଏ ଘରକୁ ଫେରିବା ସମୟ । ମେଘଦୂତମ୍ ପାଠ କରି ବର୍ଷାର ବିଳାସ ଯେପରି ଅନୁଭବ କରିହେବ, ବର୍ଷାରେ ଭିଜି ଭିଜି କେହି କେବେ ତାହା କରିଛି କି ? ଦ୍ୱିତୀୟତଃ ପ୍ରାକୃତିକ ଜଗତ ପର୍ଯ୍ୟବେକ୍ଷଣ କଲାବେଳେ

କାର୍ଯ୍ୟକାରଣବାଦ ଆମ ମନରେ ଜାଗ୍ରତ ହୁଏ । ସୌନ୍ଦର୍ଯ୍ୟ କିନ୍ତୁ ବିଶୁଦ୍ଧ, ତା'ର ନିଜସ୍ୱ ପ୍ରକାଶ ଅଛି, ଉଦ୍ୟାନରେ ଫୁଟିଥିବା ଫୁଲଟି ଦେଖି ଚିନ୍ତା କରାଯାଏ ଫୁଲର ମଞ୍ଜି କେଉଁଠୁ ମଗାଗଲା, କପରି ତଳିପଡ଼ିଲା, ମାଳିର ଦରମା କେତେ ଇତ୍ୟାଦି । ତା'ହେଲେ ଫୁଲର ସୌନ୍ଦର୍ଯ୍ୟ ଉପଭୋଗ କ୍ଷୁଣ୍ଣ ହୁଏ । ତୃତୀୟତଃ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ସ୍ଥାୟୀ ଓ ସାର୍ବଜନୀନ କରେ ସାହିତ୍ୟ । ନବକିଶଳୟର ଅନ୍ତରାଳରେ ମଧୁର କାକଳୀ କରୁଥିବା ବନବିହଗଟି କିଛିକ୍ଷଣ ପରେ ଉଡ଼ିଯାଇପାରେ ଏବଂ ତାକୁ ପ୍ରତ୍ୟେକେ ଦେଖିବାର ସୁଯୋଗ ପାଇନପାରନ୍ତି, ତେଣୁ ସେହି କ୍ଷଣସ୍ଥାୟୀ ସ୍ୱରମୂର୍ଚ୍ଛନାକୁ କବି ବର୍ଣ୍ଣନା କରି ଚିରସ୍ଥାୟୀ କରି ରଖେ ଏବଂ ସମସ୍ତଙ୍କୁ ଉପଭୋଗ କରିବାର ସୁଯୋଗ ଆଣିଦିଏ । ଶେଷରେ କବି ପ୍ରାକୃତିକ ସୌନ୍ଦର୍ଯ୍ୟର ଅବିକଳ ଅନୁକରଣ କରି ନଥାଏ । ବସ୍ତୁର ବାସ୍ତବରୂପ ସହିତ ନିଜର କଳ୍ପନା, 'ମନମଧୁ' ମିଶାଇ ସେ ତା'ଠାରୁ ଅଧିକା ସୌନ୍ଦର୍ଯ୍ୟ ପ୍ରସ୍ତୁତ କରେ । ସାହିତ୍ୟରେ ବସ୍ତୁର ସୌନ୍ଦର୍ଯ୍ୟ ବିଷୟ ବର୍ଣ୍ଣନାଭଙ୍ଗୀ ଦୁଇ ଭାବରେ ପ୍ରଦତ୍ତ ହୁଏ । ରାଧାନାଥ ପ୍ରାକୃତିକ ଚିଲିକାର ନୀଳଜଳ, ମତ୍ସ୍ୟମଗର, ଗିରିଦରୀ, ଗଛଲତାର ଛବି ଅଙ୍କନ କରିଥିଲେ ହେଁ ଚିଲିକା ହ୍ରଦର ସୌନ୍ଦର୍ଯ୍ୟ ବହୁଗୁଣରେ ପରିବର୍ଦ୍ଧିତ ହୋଇଛି ଚିଲିକା କାବ୍ୟରେ । ଶ୍ରୀଯୁକ୍ତ ନୀଳମଣି ସେନାପତିଙ୍କର 'ଚିଲିକା' (ଓଡ଼ିଶା ସରକାର ପ୍ରକାଶିତ) ଗୋଟିଏ ସମ୍ବାଦ, ଏଥିରେ ଅଛି ଚିଲିକାର ଯଥାଯଥ ବିବରଣୀ; କିନ୍ତୁ ରାଧାନାଥଙ୍କ ''ଚିଲିକା'' ସାହିତ୍ୟ— ଏଥିରେ ଚିଲିକା ହ୍ରଦ ଆଧାର, କବିମାନସର ଅସଲ ବିଷୟ ।

ସାହିତ୍ୟରେ ସୌନ୍ଦର୍ଯ୍ୟ ସୃଷ୍ଟିର ସାର୍ଥକତା ସମ୍ପର୍କରେ ଆମର ପ୍ରାଚୀନ ସାହିତ୍ୟିକଙ୍କ ମନର ସମର୍ଥନ ରହିଛି । କବି କାବ୍ୟରେ ସୌନ୍ଦର୍ଯ୍ୟ ସୃଷ୍ଟିକରେ ବୋଲି ତ କାବ୍ୟ ବିଷୟରେ ମତ ଦେଇଛନ୍ତି । ପଣ୍ଡିତ ଜଗନ୍ନାଥ— ''ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍'' (ରସଗଙ୍ଗାଧର-୨/୧, (୧) ପୁଣି କାବ୍ୟର

(୧) ଅବଶ୍ୟ ଶ୍ଳୋକଟିର ବୃତ୍ତରେ ରମଣୀୟତାକୁ ବୁଝାଇ ଦେଇ କୁହାଯାଇଛି— ''ରମଣୀୟତାର ଲୋକୋତ୍ତରାହ୍ଲାଦ ଜ୍ଞାନଗୋଚରତା'' ଅର୍ଥାତ୍ ଅଲୌକିକ ଆନନ୍ଦର ଜ୍ଞାନ ଗୋଚରତା ହିଁ ରମଣୀୟତା, ସୌନ୍ଦର୍ଯ୍ୟର ମୌଳିକଗୁଣ ଆନନ୍ଦ ଦାନ । ''ଯା ଆନନ୍ଦ ଦେୟ ତାକେଇ ମନ ସୁନ୍ଦର ବୋଲେ'' (ରବିନ୍ଦ୍ରନାଥ) ଏଥିରେ ଏକାଧାରରେ ପାଶ୍ଚାତ୍ୟ ସାହିତ୍ୟିକମାନଙ୍କର କାବ୍ୟ-ଉତ୍କର୍ଷ ପରୀକ୍ଷକ ସୌନ୍ଦର୍ଯ୍ୟବାଦ ସହିତ ଭାରତୀୟ ସାହିତ୍ୟିକମାନଙ୍କର ଆନନ୍ଦବାଦ ପ୍ରକାଶ ପାଇଛି । ଉଭୟ ସାହିତ୍ୟିକ ଗୋଷ୍ଠୀର ପରୀକ୍ଷା ମାନ ସମାନ । କାବ୍ୟରେ ଆନନ୍ଦଦାନ କରିବା ବା ରସସଞ୍ଚାର କରିବା ଶକ୍ତିକୁ ଆମେ କହୁ ସୌନ୍ଦର୍ଯ୍ୟ ଏବଂ ସେମାନେ ଆବେଗ (emotion) ସୃଷ୍ଟି କରିବା ଶକ୍ତିକୁ କହନ୍ତି ସୌନ୍ଦର୍ଯ୍ୟ । ଆମର ରସବାଦରେ ବସ୍ତୁର ଭାବ-ଅଂଶ ଏବଂ ସେମାନଙ୍କର ସୌନ୍ଦର୍ଯ୍ୟବାଦରେ ବସ୍ତୁର ରୂପଅଂଶ ପ୍ରାଧାନ୍ୟ ନିଏ (କାବ୍ୟାଲୋକ—ସୁଧୀରକୁମାର ଦାଶଗୁପ୍ତ, ପୃ ୧୮୬ ଦ୍ରଷ୍ଟବ୍ୟ), ସେଥିପାଇଁ କେହି କେହି ପାଶ୍ଚାତ୍ୟ(Asthetics)ପରିଭାଷା (ନନ୍ଦନଂତତ୍ତ୍ୱ' କରିଥାନ୍ତି (ସାହିତ୍ୟ ମୀମାଂସା—ବିଷ୍ଣୁପଦ ଭଟ୍ଟାଚାର୍ଯ୍ୟ)

ସୌନ୍ଦର୍ଯ୍ୟ ସୃଷ୍ଟି କଥାକୁ ଆଗରେ ରଖି ବାମନ କହିଛନ୍ତି— "ସୌନ୍ଦର୍ଯ୍ୟମଳଂକାରଃ" (କାବ୍ୟାଳଂକାର ୨/୧/୨), ଦଣ୍ଡୀ କହିଛନ୍ତି — "କାବ୍ୟ ଶୋଭାକରାନ୍ ଧର୍ମାନ୍ ।

ଅଳଂକାରାନ୍ ପ୍ରଚକ୍ଷତେ ।" (କାବ୍ୟାଦର୍ଶ ୨/୧ ଏବଂ ଅଭିନବ ଗୁପ୍ତ କହିଛନ୍ତି— "ଚାରୁତ୍ୱ ପ୍ରତୀତଃ ତର୍ହିଃ କାବ୍ୟସ୍ୟ ଆତ୍ମା (ଲୋଚନ)" ଆମ ସାହିତ୍ୟିକମାନଙ୍କର ଏହି ସୌନ୍ଦର୍ଯ୍ୟବାଦ ପାଶ୍ଚାତ୍ୟ ସାହିତ୍ୟିକମାନଙ୍କ ସୌନ୍ଦର୍ଯ୍ୟ-ଦର୍ଶନ ସହିତ କିପରି ସମାନ· ତାହା ପାଦଟୀକାରେ ବୁଝାଇ ଦିଆଯାଇଛି । ସାହିତ୍ୟରେ ସୌନ୍ଦର୍ଯ୍ୟ ସୃଷ୍ଟିର ସାର୍ଥକତା ହୃଦୟଙ୍ଗମ କଲାପରେ ବର୍ତ୍ତମାନ ଆମର ବିଚାର କରିବାର କଥା ନିତି ଯାଉଣୁ ଆସୁଣୁ ଆମେ ଦେଖୁଥିବା ଚିଲିକା ହ୍ରଦର ସୌନ୍ଦର୍ଯ୍ୟ ଓ କାବ୍ୟରେ ଚିଲିକାର ସୌନ୍ଦର୍ଯ୍ୟର ପାର୍ଥକ୍ୟ ଏବଂ ସୌନ୍ଦର୍ଯ୍ୟ ସୃଷ୍ଟିରେ ରାଧାନାଥଙ୍କ ଶିଳ୍ପ ପରିକଳ୍ପନା ।

ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ କେତେକ ଉପାଦାନ ଲୋଡ଼ା— (୧) ସୁନ୍ଦର ଏବଂ ଚିତ୍ତାକର୍ଷକ ବସ୍ତୁ (Sensus of Material Element) (୨) ବସ୍ତୁର ରୂପ ଏବଂ ଗୁଣରେ ସୁଚିନ୍ତିତ ସଜ୍ଜୀକରଣ (Formal or Relational Element) (୩) ବସ୍ତୁର ଉଦ୍ଦୀପନା ଶକ୍ତି (Suggestive Element), ଏହି ତିନୋଟି ହେଲା ବିଷୟଗତ । ଶେଷରେ (୪) ବର୍ଣ୍ଣନା ଭଙ୍ଗୀ, ବିଷୟ ବିନ୍ୟାସ, ଭାଷା ଓ ଛନ୍ଦ ।

ପ୍ରଥମ ଉପାଦାନ ଏବଂ ମୂଳ ହେଲା ଚିଲିକାହ୍ରଦ, ଯାହାର ସୌନ୍ଦର୍ଯ୍ୟ ଓ ଚିତ୍ତାକର୍ଷକ ଶକ୍ତି ବିଭିନ୍ନ ଭାବରେ ରାଧାନାଥ ବର୍ଣ୍ଣନା କରି କହିଛନ୍ତି —" ଉତ୍କଳ ଭୁବନେ ଶୋଭାର ଭଣ୍ଡାର", "ଛବିଳ ଉତ୍କଳେ ତୋ ଛବି ଅତୁଳ", "ଏ ଶୋକପାସୋରା ଅପ୍‌ସରା ଭୁବନ", "ପ୍ରକୃତିର ଚାରୁ ଆଲେଖ୍ୟ ଶାଳିକା" ଇତ୍ୟାଦି । ଚିଲିକାର ପ୍ରାକୃତିକ ରୂପ ଯେ ଅତି ସୌନ୍ଦର୍ଯ୍ୟଶାଳୀ ତା'ର ପ୍ରମାଣ ଦିଏ ମଧ ଉତ୍କଳମଣିଙ୍କ ଉକ୍ତି— "ବାସ୍ତବ ବିଶ୍ୱେ କି ଏ ଛବି ସମ୍ଭବ ?" ତେଣୁ ରାଧାନାଥ ସାହିତ୍ୟରେ ସାର୍ଥକ ସୌନ୍ଦର୍ଯ୍ୟ ସୃଷ୍ଟି କରିବାପାଇଁ ଚିଲିକାଭଳି ଅପରୂପ ସୌନ୍ଦର୍ଯ୍ୟମୟୀ ବସ୍ତୁକୁ ଭିତ୍ତିଭାବେ ଗ୍ରହଣ କରି ତାଙ୍କ ସୃଷ୍ଟିକୁ ବଳିଷ୍ଠ କରିଛନ୍ତି । ଦ୍ୱିତୀୟ ଉପାଦାନ ହେଲା ଚିଲିକାର ରୂପ ଓ ଗୁଣର ସଜ୍ଜୀକରଣରେ ଶୃଙ୍ଖଳା, ବିନ୍ୟାସ ଓ ପରିପାଟୀ । ଏହିଠାରେ କବିର ପରିକଳ୍ପନାଶକ୍ତି, ସୌନ୍ଦର୍ଯ୍ୟବୋଧ ଓ ଶିଳ୍ପକୌଶଳ ପ୍ରକାଶ ପାଏ । ପ୍ରାକୃତିକ ବସ୍ତୁର ଅବିକଳ ରୂପଟିକୁ ଛାଟିଛୁଟି, ମାଠିମୁଠି ସେ ଅଧିକ ସୁନ୍ଦର କରେ ଓ ବସ୍ତୁର ଗୁଣଗୁଡ଼ିକ ବିଶ୍ଳେଷଣ କରି ତା'ର ଯୁକ୍ତିଯୁକ୍ତ ପ୍ରବନ୍ଧ କରେ । ଏଥିପାଇଁ ଆମର ଅଳଙ୍କାର ଶାସ୍ତ୍ରମାନଙ୍କରେ ନିର୍ଦ୍ଦେଶ ଥିଲା— ପାହାଡ଼ ପର୍ବତ ବର୍ଣ୍ଣନା କଲେ ସେଥିରେ

କେଉଁ କେଉଁ ଦୃଶ୍ୟ, ଜୀବଜନ୍ତୁଙ୍କର ଉଲ୍ଲେଖ କରିବା ବିଧେୟ, ବର୍ଷାଋତୁର ବର୍ଣ୍ଣନା କଲାବେଳେ କେଉଁ କଉଁ ଫୁଲଫଳ ଅବଶ୍ୟ ବର୍ଣ୍ଣନୀୟ ଇତ୍ୟାଦି । ଫଳତଃ ଯେଉଁ ପାହାଡ଼ରେ ହସ୍ତୀଥିବା ଦୂରେ ଥାଉ ଶୂକରଟିଏ ବି ନାହିଁ ତା'ର ବର୍ଣ୍ଣନା କଲାବେଳେ ବି ହସ୍ତୀର ହସ୍ତୀର ଉଲ୍ଲେଖ କରାଯାଉଥିଲା । ଏହା ମୂଳରେ ଉଦ୍ଦେଶ୍ୟ ଥିଲା ପ୍ରାକୃତିକ ବସ୍ତୁକୁ ଅଧିକ ସୁନ୍ଦର ଓ ମନୋଜ୍ଞ କରି କାବ୍ୟରେ ରୂପଦାନ କରିବା । ସେହିଭାବରେ ରାଧାନାଥ ଚିଲିକାର ଅବିକଳ ପ୍ରାକୃତିକ ରୂପ ଓ ଗୁଣଗୁଡ଼ିକ ସୁଚିନ୍ତିତ ଭାବରେ ସଜାଇ ଦେଖାଇ ଦେଇଛନ୍ତି ଯେ — ସେ ସଙ୍ଗୀତମୟୀ, ଆହାର ଓ ଆଶ୍ରୟଦାୟିନୀ, ଧନଧାନ୍ୟଶାଳିନୀ, ବର୍ଣ୍ଣୋଜ୍ଜ୍ୱଳା, ପବିତ୍ରଶରୀରା, ଚିରନ୍ତିନୀ, ରୁଦ୍ରସୁନ୍ଦରୀ ଓ ଆଶା-ପ୍ରଦାୟନୀ । ଏଥି ଭିତରେ କବିଙ୍କର କାରିଗରୀ ପରୀକ୍ଷା କରିବା ପାଇଁ ଧରି ନିଆଯାଉ— ଚିଲିକା ଗୋଟିଏ ନାରୀ । ସେ ସଙ୍ଗୀତମୟୀ ଅର୍ଥାତ କଳାପ୍ରବୀଣା ରସିକା ଓ ବିଳାସ କୌତୁକିନୀ, କିନ୍ତୁ ସେ ବାରାଙ୍ଗନା ନୁହେଁ, ସେ ଲକ୍ଷ୍ମୀବତୀ—ତା'ର ଘର ସବୁବେଳେ ଧନଧାନ୍ୟରେ ଭରା, ଦାନଧର୍ମରେ କୁଣ୍ଠା ନାହିଁ । ଅତିଥି ଅର୍ଚ୍ଚନାରେ ଶିଥିଳତା ନାହିଁ । ଏମିତି ଗୁଣର ସେଇ ନାରୀଟି କୁରୂପା ନୁହେଁ, ତାର ଶରୀରରେ ଅକଳନୀୟ ସୌନ୍ଦର୍ଯ୍ୟ, ଅପୂର୍ବ ଉଜ୍ଜ୍ୱଳତା ଓ ବର୍ଣ୍ଣ ଲାବଣ୍ୟ ଅଛି । ସେ ରୂପ ଭ୍ରଷ୍ଟ ବା କଳଙ୍କିତ ନୁହେଁ— ତାହା ନିର୍ମଳ, ପବିତ୍ର । ଏତେ ରୂପଗୁଣରେ ଏଇ ନାରୀଟି ଆୟୁଷ୍ମତୀ, ତା'ର ରୂପ ବିଭବ ଚିରନ୍ତନ, ଯୌବନ ଅନନ୍ତ । ବଡ଼କଥା, ନାରୀ ହେଲେ ବି ସେ ଅବଳା ନୁହେଁ, ତାର ଶରୀରରେ ସୌନ୍ଦର୍ଯ୍ୟ ସହିତ ଶୌର୍ଯ୍ୟ ମଧ ରହିଛି । ସେ ଯୋଗ୍ୟ ବ୍ୟକ୍ତିର ସମାଦର କରି ହୁଏ ଶଯ୍ୟାସଙ୍ଗିନୀ କିନ୍ତୁ ଅଯୋଗ୍ୟର ବିରୋଧ କରି ହୁଏ ରଣରଙ୍ଗିନୀ । ଏଇଭଳି ଅପୂର୍ବ ଏଇ ନାରୀଟିର ବିଶିଷ୍ଟ ଚାରିତ୍ରିକ ଗୁଣ ହେଉଛି ଯେତେ ଦୁଃଖରେ, ଯେତେ ନୈରାଶ୍ୟରେ ଥିବା ଲୋକକୁ ମଧ ସେ ଆଶା, ଆନନ୍ଦ ପ୍ରଦାନ କରିପାରେ । ଏଇ ନାରୀଟି ହେଉଛି ରାଧାନାଥଙ୍କ ଚିଲିକା । ତା'ହେଲେ ଏଭଳି ରୂପବତୀ, ଗୁଣବତୀ, ଲକ୍ଷ୍ମୀବତୀ ଭାବେ ବର୍ଣ୍ଣିତ ଚିଲିକା ଯେ "ଅଟେ ସର୍ବଶୋଭା ସୀମନ୍ତର ଟିକା" ଏଥିରେ ସନ୍ଦେହ କ'ଣ ?

ତୃତୀୟ ଉପାଦାନ ହେଉଛି ବସ୍ତୁର ଉଦ୍ଦୀପନା ଶକ୍ତି, ଚିଲିକା "ସ୍ୱଭାବେ ଭାବୁକ-ମାନସ ଉଲ୍ଲାସୀ" ଏବଂ ତାର "ସ୍ନିଗ୍ଧ ରୂପ ଚିତ୍ତଉଲ୍ଲାସକ" ହୋଇଥିବାରୁ ତାର "ଦର୍ଶନେ କ୍ଷୁଦ୍ର ମନୁଷ୍ୟର ଚିତ୍ତ— ଦେଶେ କାଳେ ହୁଏ ଦୂର ବିସ୍ତାରିତ", ଶାନ୍ତି ସୌନ୍ଦର୍ଯ୍ୟ ଦ୍ରଷ୍ଟାର ମନରେ ସରସ ଚିନ୍ତାଧାରା ଜାଗ୍ରତ କରାଏ । ଆନୁଷଙ୍ଗିକ ଭାବରେ ଐତିହାସିକ, ସମାଜିକ ତଥା ବୈକ୍ତିକ ଭାବନାରେ ପ୍ରାଣକୁ ପଲ୍ଲବିତ କରେ । ଇଂରାଜୀ କବି ସ୍କଟ, ବାଇରନ୍ ପ୍ରାୟ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଲବ୍ଧି କଲାବେଳେ ଐତିହାସିକ ଭାବନାରେ ମଗ୍ନ ହୁଅନ୍ତି ଏବଂ ସେପରି ଗୋଲଡ଼ସ୍ମିଥ୍, ଟେନିସନ, ଅରନୋଲଡ଼ ଯଥାକ୍ରମେ Deserted Village, The Daisy ଓ

Obermann ଗ୍ରନ୍ଥମାନଙ୍କରେ ବୈକ୍ତିକ ଚିନ୍ତାରେ ମଗ୍ନ ହୋଇଛନ୍ତି । ଚିଲିକା ରାଧାନାଥଙ୍କର ଉଭୟ ଐତିହାସିକ ଓ ବୈକ୍ତିକ ଭାବନାର ଉଦ୍ରେକ କରାଇଛି । ଚିଲିକାର ରୂପ ଆନୁଷଙ୍ଗିକ ଭାବେ ତାଙ୍କୁ ସ୍ମରଣ କରାଇ ଦେଇଛି ଓଡ଼ିଶା ଇତିହାସର ଦୁଇଟି ଅଧ୍ୟାୟ ଏବଂ ବ୍ୟକ୍ତିଗତ ଜୀବନର ଦୁଃଖଦୁର୍ଦ୍ଦଶା । ଚିଲିକାର ସୌନ୍ଦର୍ଯ୍ୟ ଦର୍ଶନରେ ଉନ୍ମତ୍ତ ମନ ଯେପରି ବିସ୍ତାରିତ ହୋଇଛି, ତା'ର ସୌନ୍ଦର୍ଯ୍ୟ ଦର୍ଶନରୁ ବିରତ ମନ ସେପରି ସଙ୍କୁଚିତ ହୋଇଛି ।

ଉପରେ ବିଷୟଗତ ଉପାଦାନଗୁଡ଼ିକ କିପରି ସୁନ୍ଦର ଭାବେ ସଂଗୃହୀତ ହୋଇଛି, ଦେଖାଗଲା; କିନ୍ତୁ ଏହି ବିଷୟକୁ ଯେଉଁ ଆଧାର ମଧ୍ୟରେ ରଖାଗଲା, ତାହା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ତାହା ନହେଲେ ଅନ୍ଧ ହାତରେ ଦର୍ପଣ ବା ମାଙ୍କଡ଼ ହାତରେ ଶାଳଗ୍ରାମ ଭଳି ବିଷୟର ଯୋଗ୍ୟତା ରହିବ ନାହିଁ । ସେଥିପାଇଁ ଆମର ବିଚାର୍ଯ୍ୟ ରାଧାନାଥଙ୍କ କବିତ୍ୱ ଶକ୍ତି ।

(କ) ବିଷୟ ବିନ୍ୟାସ — ପ୍ରବନ୍ଧଟିର ପ୍ରାରମ୍ଭରେ ଉପକ୍ରମଣିକା ମଧ୍ୟରେ ଚିଲିକାର ପରିଚୟ ପ୍ରଦାନ କରି ପ୍ରାକୃତିକ ଭାରତର କେତେକ ମହାନ୍ ଦୃଶ୍ୟ ସହିତ ତୁଳନା କରି ଉତ୍କର୍ଷ ପ୍ରତିଷ୍ଠା କରିଛନ୍ତି । ତା'ପରେ ଚିଲିକାର ଦୃଶ୍ୟ ବର୍ଣ୍ଣନା —ପକ୍ଷୀ, ଜଳଜନ୍ତୁ, ହଂସ, ତୀରଭୂମିସ୍ଥ ଶସ୍ୟସମ୍ପଦ ଓ ଜନପଦ; ପଶ୍ଚିମତୀରସ୍ଥ ପାହାଡ଼ ପର୍ବତ, ନଦୀ, ଐତିହାସିକତା— କାଞ୍ଚି ଅଭିଯାନ ଓ ରକ୍ତବାହୁ ଆକ୍ରମଣ, ଶରତ୍ ସନ୍ଧ୍ୟା । ଶେଷରେ ଉପସଂହାରରେ ନିଜର ଅକିଞ୍ଚନତା, ମାତୃଭୂମି ଓ ମାତୃଭାଷାର ଦୁର୍ଗତି ଏବଂ ଭବିଷ୍ୟତ ଉନ୍ନତି ପାଇଁ ଆଶା ପ୍ରକାଶ ଉଲ୍ଲେଖ କରି ପ୍ରବନ୍ଧଟି ସମାପ୍ତ କରିଛନ୍ତି । ଏଥିରେ କେତେକ ସାଧାରଣ ତ୍ରୁଟି ଓ ଅଭାବ ରହିଛି, ଯଥା —ପ୍ରଭାତ ବର୍ଣ୍ଣନାଟି ଥିଲେ ଯେପରି ସନ୍ଧ୍ୟା ବର୍ଣ୍ଣନା ପରେ ଶେଷ ହୋଇଛି, ତାହା ଗୋଟିଏ ଦିନର ପୂର୍ଣ୍ଣଛବି ପ୍ରଦାନ କରିଥାନ୍ତା । ନାବିକ ଓ ମତ୍ସ୍ୟଜୀବୀମାନଙ୍କର ଜୀବନ ଚିତ୍ରଣ ଦ୍ୱାରା ଅର୍ଥନୈତିକ ଓ ରାଜନୈତିକ ଓଡ଼ିଶାରେ ଚିଲିକାର ପ୍ରତିଷ୍ଠା ବର୍ଣ୍ଣିତ ହୋଇପାରିଥାନ୍ତା । ଶେଷରେ ବାସୁଦେବ ଓ ଶ୍ରୀରାମଚନ୍ଦ୍ର ରାଜାଦ୍ୱୟଙ୍କର ସ୍ତାବକତା ପ୍ରଦର୍ଶନ କରିବାକୁ ଯାଇ " ଅଶ୍ୱସଞ୍ଚାଳନେ ଅଦ୍ଭୁତ କୌଶଳୀ, ଦୃଷ୍ଟିଭେଦୀ ଯାର ବଜ୍ରନାଦୀନଳୀ" ପଦଗୁଡ଼ିକ ଶାନ୍ତରସାତ୍ମକ କାବ୍ୟର ପରିସମାପ୍ତିକୁ ତିକ୍ତ କରିଦେଉଛି । ଏତଦ୍‌ବ୍ୟତୀତ ବିଷୟବସ୍ତୁର ସଜ୍ଜା ସୌନ୍ଦର୍ଯ୍ୟ ଶାସ୍ତ୍ରାନୁମୋଦିତ ହୋଇଛି। ବିଷୟବସ୍ତୁର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ବୈଚିତ୍ର୍ୟ ସୃଷ୍ଟି ଦ୍ୱାରା ପରିବର୍ଦ୍ଧିତ ହୁଏ। ଏହି ବୈଚିତ୍ର୍ୟ ସୃଷ୍ଟିର ମୁଖ୍ୟ ଉପାୟ ତିନୋଟି—(୧) ବିଷୟବସ୍ତୁର ପରିବର୍ତ୍ତନ—ଏତଦ୍ୱାରା ପାଠକ ଚିତ୍ତରେ ବିଭିନ୍ନ ଭାବ ଓ ରସର ସଞ୍ଚାର ହୁଏ । ଚିଲିକା ଆମୂଳଚୂଳ ଶାନ୍ତ ରସାତ୍ମକ ହେଲେ ହେଁ ଶୃଙ୍ଗାର, ରୌଦ୍ର

ଓ କରୁଣ ରସର ନିଷ୍ପତ୍ତି କରିବାର ସୁଯୋଗ ମିଳିଛି । (୨) ବୈପରୀତ୍ୟ— କାବ୍ୟର ଚମତ୍କାରାର୍ଥ ପ୍ରତିପାଦନ ହୁଏ । ଭଲ ମନ୍ଦ, ଆଲୁଅ ଅନ୍ଧାର କ୍ରମାଗତ ଚିତ୍ରଣ କଲେ ବୈପରୀତ୍ୟଦ୍ୱାରା ସେହି ଗୁଣମାନ ସ୍ପଷ୍ଟ ପ୍ରକାଶିତ ହୁଏ । କାଞ୍ଚି ଅଭିଯାନ ଓ ରକ୍ତବାହୁ ଆକ୍ରମଣରେ ଯଥାକ୍ରମେ ଚିଲିକାର ଶିଷ୍ଟ ଓ ଦୁଷ୍ଟ ସ୍ୱଭାବ ଏବଂ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗକାଳୀନ ଆନନ୍ଦବାଦ ପରେ ସାମାଜିକ ଜୀବନର ବିଷାଦବାଦ ପ୍ରକଟିତ ହୋଇଛି । (୩) ସମସ୍ତ ବୈଚିତ୍ର୍ୟ ଓ ବୈପରୀତ୍ୟ ମଧ୍ୟରେ ଐକ୍ୟ ସ୍ଥାପନ ବିଖଣ୍ଡିତ ଅବୟବ ନହୋଇ କାବ୍ୟ ପୂର୍ଣ୍ଣାଙ୍ଗ ସୁନ୍ଦର ହେବ । କବି ମୌଳିକ ଲକ୍ଷ୍ୟ ରକ୍ଷା କରିବାପାଇଁ ସମସ୍ତ ବିଷୟକୁ ଏକ ସୂତ୍ରରେ ଗ୍ରଥିତ କରିବ । ଏହି ପ୍ରସଙ୍ଗର ସମାପ୍ତି ପୂର୍ବରୁ ମନେ ରଖିବାକୁ ହେବ, କାବ୍ୟର ପ୍ରଦତ୍ତ ବସ୍ତୁର ରୂପ ତା'ର ଯଥାର୍ଥ ରୂପ ନୁହେଁ । କବି ବୈଜ୍ଞାନିକ ନୁହେଁ । ସେଥିପାଇଁ ସଂସ୍କୃତ ଆଳଙ୍କାରିକ ପଦାର୍ଥର ଦ୍ୱିବିଧ ରୂପ ନିର୍ଦ୍ଦେଶ କରିଛନ୍ତି । ପଦାର୍ଥର ସ୍ୱରୂପ ନିବନ୍ଧନ ବା ତାତ୍ତ୍ୱିକ ଯଥାର୍ଥ ରୂପ ଏବଂ ପଦାର୍ଥର ପ୍ରତିଭାସ ନିବନ୍ଧନ ବା କବିସୃଷ୍ଟି ଅନୁଭବଗମ୍ୟ ରୂପ । (ରାଜଶେଖର କାବ୍ୟମୀମାଂସା) ତେଣୁ ଚିଲିକା କାବ୍ୟରେ ଚିଲିକାର ଯଥାର୍ଥ ରୂପର ଯଦି ପରିବର୍ତ୍ତନ କରାଯାଇଛି, ତାହା ସାହିତ୍ୟିକ ଦୃଷ୍ଟିକୋଣରୁ ଗ୍ରାହ୍ୟ ।

**(ଖ) ଭାଷା**— କବି ବସ୍ତୁର ଯଥାର୍ଥ ରୂପ ସନ୍ଦର୍ଶନ କରି ତା'ର ବାଙ୍ମୟ ରୂପ ପ୍ରଦାନ କରେ । ଯେଉଁପରି ଅଣୁ ପରମାଣୁର ସଂଘଟନରେ ପ୍ରାକୃତିକ ବସ୍ତୁସକଳ ନିର୍ମିତ ହୋଇଥାଏ, ସେହିପରି ଧ୍ୱନି ଓ ବର୍ଣ୍ଣର ସଂଘଟନରେ କାବ୍ୟରେ ସେହି ସେହି ବସ୍ତୁର ସ୍ୱରୂପ ଗଠିତ ହୁଏ । ତେଣୁ ଯେଉଁ କବି ଶବ୍ଦଦ୍ୱାରା ବସ୍ତୁର ବାସ୍ତବରୂପ ପ୍ରକଟିତ କରିପାରେ ସେ ଯଥାର୍ଥରେ ଶିଳ୍ପୀ ଓ ସ୍ରଷ୍ଟା । ରସାନୁକୂଳ ବର୍ଣ୍ଣ ଯୋଜନା ଓ ଭାବାନୁରୂପ ଶବ୍ଦ ପ୍ରୟୋଗ ଏଥିପାଇଁ ଆବଶ୍ୟକ । ଏ ଦୃଷ୍ଟିରୁ ଚିଲିକାର କେତେକ ପଦ ଗ୍ରହଣ କରି ରାଧାନାଥଙ୍କ ସୌନ୍ଦର୍ଯ୍ୟସୃଷ୍ଟିର ପରାକାଷ୍ଠା ପ୍ରମାଣ କରାଯାଇପାରେ । ଦୃଷ୍ଟାନ୍ତସ୍ୱରୂପ ନିମ୍ନଲିଖିତ ପଙ୍‌କ୍ତିଗୁଡ଼ିକ ଗ୍ରହଣୀୟ— ''ଧାରାସ୍ରାବୀ, ପର୍ଜନ୍ୟ ଗର୍ଜନେ କମ୍ପିଲେ ଦିଗନ୍ତ'' ''ଜଳଦେବୀ କଳ କିଙ୍କିଣୀ ନିକ୍ୱଣ'' ''ମଞ୍ଜୁ ଛୁରିଅନା କୁଞ୍ଜ ବିହାରିଣୀ'' ''ଗନ୍ଧମୋଦେ ଅନ୍ଧ ହୋଇ ଅଳିକୁଳ, ଗୁଞ୍ଜରି ବାମାକୁ କରନ୍ତି ଆକୁଳ'' — ଇତ୍ୟାଦି । ତା'ଛଡ଼ା ବିଭିନ୍ନ ଅଳଙ୍କାର ପ୍ରୟୋଗଦ୍ୱାରା କବି ବସ୍ତୁର ସୌନ୍ଦର୍ଯ୍ୟକୁ ପରିବର୍ଦ୍ଧିତ କରନ୍ତି ଏବଂ ବସ୍ତୁକୁ ସନ୍ଦର୍ଶନ କଲାବେଳେ ଯେପରି ତତ୍‌ସହିତ ନାନା ଦୃଶ୍ୟ ଅନୁଭବ କରାଯାଏ ଓ ନାନା ଚିନ୍ତା ଜାତ ହୁଏ, ସେପରି କାବ୍ୟରେ ବସ୍ତୁର ବର୍ଣ୍ଣନା ପାଠବେଳେ ନାନା ପ୍ରତିରୂପ ଅଙ୍କନ କରି ପାଠକକୁ ଭିନ୍ନ ଭିନ୍ନ ଦୃଶ୍ୟ ଓ ଭାବରେ ତନ୍ମୟ କରନ୍ତି । ଉଦାହରଣସ୍ୱରୂପ

ଶୋଭଲରୀ ପର୍ବତ ଦେଖିଲାବେଳେ ଦର୍ଶକ ତ କେବଳ ତା'ର ଇନ୍ଦ୍ରନୀଳ କାନ୍ତିକୁ ଦେଖେନା, ତତ୍‌ସହିତ କେଉଁଠି ଗଛଟିଏ, ଫୁଲଟିଏ ବା ପକ୍ଷୀଟିଏ ବି ଦେଖେ । ସେଥିପାଇଁ କାବ୍ୟରେ ଶୋଭଲରୀ ବର୍ଣ୍ଣନା କଲାବେଳେ ପାଠକର ଦୃଷ୍ଟିକୋଣ ଓ ଚିନ୍ତାଧାରାକୁ ପ୍ରସାରିତ କରିବା ପାଇଁ କୁହାଗଲା— "ଉର୍ଦ୍ଧ୍ୱେ ଉଠନ୍ତି କି ଭେଦିଣ ଅବନୀ, ମୟ ବିରଚିତ ଯାନେ ବୈରୋଚନି ।" ଏଥିମଧ୍ୟରେ ପାଠକ ଚିନ୍ତା କରିଯିବ— ବାମନାବତାର, ବଳିର ପାତାଳ ଗମନ, ରାମାୟଣ ଯୁଦ୍ଧ, ମୟଦାନବ କର୍ତ୍ତୃକ ରାମଚନ୍ଦ୍ରଙ୍କର ବନ୍ଦୀ ପ୍ରସଙ୍ଗ; ଦେବଶିଳ୍ପୀ ବିଶ୍ୱକର୍ମା ଇତ୍ୟାଦି । ତାପରେ ଅଳଙ୍କାରର ଆଉ ଏକ ଉପଯୋଗିତା ହେଉଛି ବସ୍ତୁର ରୂପ, ଗୁଣ ଓ କ୍ରିୟାକୁ ଅଧିକ ତୀବ୍ର ଭାବରେ ଅନୁଭବ କରାଇବା ଦିଗରେ ସହାୟତା । ଉପମା, ରୂପକ, ଉତ୍‌ପ୍ରେକ୍ଷା, ପ୍ରତୀପ ଆଦି ଏଥିପାଇଁ ସୃଷ୍ଟ । ଶୁଭ୍ର ଶୁକ୍ତିଶାଳୀ ପୁଳିନର ରୂପ ଉତ୍ତମଭାବେ ଅନୁଭବ୍ୟ ହେବା ପାଇଁ ତାରାପୁଞ୍ଜେ ଯଥା ଶୋଭେ ହରିତାଳୀ ଉପମାର ଆବଶ୍ୟକତା । କାବ୍ୟର ସୌନ୍ଦର୍ଯ୍ୟ ସୃଷ୍ଟିରେ ପୂର୍ଣ୍ଣ ବାସ୍ତବତା ଆଣିବାପାଇଁ ଅଳଙ୍କାରର ଉପଯୋଗିତା ବିଚାର କରି ଭାମହ, ରୁଦ୍ରଟ, ଉଦ୍ଭଟ ପ୍ରଭୃତି ଅଳଙ୍କାର ସଂପ୍ରଦାୟ ଆଚାର୍ଯ୍ୟଗଣ ଏହା ସପକ୍ଷରେ ଘୋଷଣା କରିଯାଇଛନ୍ତି ।

(ଗ) **ଛନ୍ଦ** — ଅନ୍ୟାନ୍ୟ ସାହିତ୍ୟ ପାଠଠାରୁ କାବ୍ୟ କବିତାପାଠରେ ଯେଉଁ ଆନନ୍ଦ ଆସେ, ତାହା ଅନେକାଂଶରେ ଛନ୍ଦ ବା ସାଙ୍ଗିତିକତା ଉପରେ ନିର୍ଭର କରେ । ଆମର ରୀତି ସାହିତ୍ୟ ଯାହାକୁ ବିଲରେ ଚଷା, ଅନ୍ତଃପୁରେ ଯୋଷା, ପଥରେ ପାନ୍ଥ ଗାନ କରନ୍ତି, ସେମାନଙ୍କ ମଧ୍ୟରୁ କେତେ ତା'ର ଭାବ ବୁଝନ୍ତି ? କିନ୍ତୁ ଛାନ୍ଦଗାନ ତାଙ୍କ ପ୍ରାଣରେ ଯେଉଁ ମାଧୁର୍ଯ୍ୟ ସୃଷ୍ଟି କରେ, ତାହା ଛନ୍ଦର ଦାନ । ଅନେକ ସମୟରେ ଦେଖାଯାଏ ଯେ ନାନା ଦୋଷପୂର୍ଣ୍ଣ ଏବଂ ଦୁର୍ବୋଧ କବିତା ମଧ୍ୟ ଶୁଣିବାକୁ ସୁଖ ଲାଗେ । ସେଥିପାଇଁ ଏହା ମଧ୍ୟ ଦେଖୁଛୁ ଛନ୍ଦର ଆଶ୍ରା ନେଇ ଅନେକ ସ୍ୱଳ୍ପଜ୍ଞାନୀ ଓ ମାମୁଲି ବିଷୟର ଲେଖକ ପାଠକ ଚିତ୍ତବିନୋଦନ କରିପାରୁଛନ୍ତି । ଛନ୍ଦର ଏଇ ଅନିବାର୍ଯ୍ୟ ପ୍ରଭାବ ସୌନ୍ଦର୍ଯ୍ୟ ସୃଷ୍ଟିରେ କବିର ପରମ ସହାୟକ । ଉଦାହରଣ ସ୍ୱରୂପ ନିଆଯାଉ—"ସଖି ! ମୋର ବଇଁଶୀଟି ତୁମରି କରେ ଦେଇଗଲି । ଯେବେ ବଜାଇବ, ନୟନ ଜଳେ ଭିଜାଇବ ନାହିଁ" ଏହି କଥାଟିକୁ ଛନ୍ଦରେ ପକାଇଦେଲେ ହେବ — "ବଇଁଶୀଟି ମୋର ଦେଇଗଲି ସଖୀ ତୁମରି କରେ, ବଜାଇବ ଯେବେ ଭିଜାଇବ ନାହିଁ—ନୟନ ଜଳେ" ସଚ୍ଚି ରାଉତରା— (ପାଣ୍ଡୁଲିପି) ଏଥିରେ ଆସିଗଲା ଭାବର ଲାଳିତ୍ୟ, ଅନୁଯୋଗର ଅନୁରାଗ, ଆବେଗର ପ୍ରାଣମୟତା । ଗୋଟିଏ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ସୃଷ୍ଟି ହୋଇପାରିଲା । ଏହି ଦୃଷ୍ଟିରୁ ମଧ୍ୟ ଚିଲିକାର ସୌନ୍ଦର୍ଯ୍ୟ ସୃଷ୍ଟି ବିଚାର୍ଯ୍ୟ । ଏହା ଯଦି

ଗୋଟିଏ ନିବନ୍ଧ ହୋଇଥାନ୍ତା, ପୂର୍ବରୁ ଆଲୋଚିତ ହୋଇଥିବା ସକଳ ଉପାଦାନ ଥାଇ ମଧ୍ୟ ସୌନ୍ଦର୍ଯ୍ୟ ସୃଷ୍ଟିରେ ପରିପୂର୍ଣ୍ଣତା ଆସିପାରିଥାନ୍ତା । ଛନ୍ଦରେ ଅମିୟ ପ୍ରବାହରେ ବିଷୟବସ୍ତୁର ବିନ୍ୟାସ ଓ ବର୍ଣ୍ଣନାସିକ୍ତ ହୋଇ ଯଥାର୍ଥରେ କାବ୍ୟ-ଶିଳ୍ପରେ ଲାବଣ୍ୟ ଆଣିଦିଏ ।

ଉପସଂହାରରେ ମୋର ବକ୍ତବ୍ୟ କହିବା ଏଇ ଦୁଇଟି ଉକ୍ତି—

"Beauty is the highest of all these occult influences

The quality of appearances that these's the sense,

Wakenth spiritual emotion in the mind of man : And Art, as it Createth new forms of beauty, awakenth new ideas that advance the spirit, in the life of Reason to the wisdom of God" (Robert Bridges — The Testament of Beauty)



---

ପ୍ରବନ୍ଧ ରଚନା ପାଇଁ ନିମ୍ନଲିଖିତ ଗ୍ରନ୍ଥମାନଙ୍କର ବିଶେଷ ସାହାଯ୍ୟ ନିଆଯାଇଛି—


(1) Philosophies of Beauty (1931), The Theory of Beauty— E.F.Carrit.

(2) A history of Aesthetics ( 2nd Edition)— Gilbert and Kuhn.

(3) The Aesthetical Necessity in life (1944)— J.H. Consins.

(4) ସୌନ୍ଦର୍ଯ୍ୟ ଦର୍ଶନ (୧୩୬୧)— ପ୍ରବାସ ଜୀବନ ଚୌଧୁରୀ ।


ଝଙ୍କାର, ଫେବୃଆରୀ ଓ ମାର୍ଚ୍ଚ— ୧୯୫୯

# ରାଧାନାଥଙ୍କ ପ୍ରକୃତି

ଡଃ. ଗଙ୍ଗାଧର ବଳ

ପ୍ରକୃତି ସହିତ ମାନବର ସମ୍ପର୍କ ନିବିଡ଼ । ଆଦିମ କାଳରୁ ମନୁଷ୍ୟ ପ୍ରକୃତି କୋଳରେ ଲାଳିତ ପାଳିତ; ତା'ର ବକ୍ଷର ରସରେ ସେ ପରିପୁଷ୍ଟ; ତା'ରି ବକ୍ଷରେ ତା'ର ସଂଗ୍ରାମ । ପ୍ରକୃତିର କଲ୍ୟାଣମୟୀ ସ୍ନିଗ୍ଧରୂପ ଦେଖି ସେ ଆତ୍ମହରା ହୁଏ । ପୁଣି ତା'ର ପ୍ରଳୟଙ୍କରୀ ସଂହାରମୂର୍ତ୍ତି ଦେଖି ତା ବିରୁଦ୍ଧରେ ସଂଗ୍ରାମ କରେ; ତଥାପି ପ୍ରକୃତି ତା'ର ଅତି ପ୍ରିୟ, ଅତି ଆପଣାର ।

ମାନବ ସହିତ ପ୍ରକୃତିର ଏ ସମ୍ପର୍କ କେବଳ ବସ୍ତୁ ଜଗତ୍‌ରେ ନୁହେଁ, ଭାବଜଗତ୍‌ରେ ମଧ୍ୟ । ଜୀବନଧାରଣ ପାଇଁ ତା'ଠାରେ ମଣିଷର ଯେପରି ସ୍ଥୂଳ ପ୍ରୟୋଜନୀୟତା ରହିଛି, ତା'ର ପ୍ରାଣକୁ ଅନୁରଞ୍ଜିତ କରିବା ପାଇଁ, ଭାବ ଓ ସୌନ୍ଦର୍ଯ୍ୟ ଦୃଷ୍ଟିକୁ ବିସ୍ତାରିତ କରିବା ପାଇଁ ତା'ର ମଧ୍ୟ ଆବଶ୍ୟକତା ରହିଛି । ଏଇ ସମ୍ପର୍କଟା ସହଜାତ ଓ ନୈସର୍ଗିକ । ସେଥିପାଇଁ ଆର୍ଯ୍ୟଋଷି ପ୍ରକୃତିର ରୁଦ୍ରକାନ୍ତ ରୂପ ଦେଖି ଦେବତା ଜ୍ଞାନରେ ତା' ପ୍ରତି ନିଜର ଭୟ ଓ ଭକ୍ତି ଜଣାଇଛି । ତା'ର ପବିତ୍ର କୋଳରେ ଆଶ୍ରମ ନିର୍ମାଣ କରି ହୋମାଗ୍ନିର ଶିଖା ସଂଦୀପିତ କରିଛି ଏବଂ ବେଦମନ୍ତ୍ରର ମନ୍ଦ୍ରମଧୁର ଧ୍ୱନିରେ ତା'ର କୋଳକୁ ମୁଖରିତ କରିଛି ।

ମାନବର ଚିନ୍ତା ଓ ଜ୍ଞାନର ଉନ୍ମେଷ ସଙ୍ଗେସଙ୍ଗେ ପ୍ରକୃତି ଉପରେ କ୍ରମଶଃ ତା'ର ଏ ଦେବତ୍ୱ ଆରୋପ ପରମ୍ପରାର ଅବସାନ ଘଟିଛି । ପ୍ରକୃତି ଦର୍ଶନରେ ତା'ର ଭୟ ଓ ବିସ୍ମୟ-ବିମୂଢ଼ତା ଅପସରି ଯାଇଛି । ପ୍ରକୃତି ଦେବତାର ଆସନରୁ ଓହ୍ଲାଇ ଆସି ଧୂଳି ଓ ମାଟିର ମଣିଷ ସହ କାନ୍ଧ ମିଳାଇ ଚାଲିଛି । କବିର ଦୃଷ୍ଟି ଓ କଳ୍ପନାକୁ ସୌନ୍ଦର୍ଯ୍ୟରେ ଅଭିଷିକ୍ତ କରି ପ୍ରକୃତି ନାନାବିଧ ବର୍ଣ୍ଣବିଭାରେ ଆତ୍ମପ୍ରକାଶ କରିଛି । ପାରମ୍ପରିକତାର ଅନୁରୋଧରେ ସ୍ଥାନେ ସ୍ଥାନେ ପ୍ରକୃତି ଯେ ଅଲୌକିକତାର ରାଗରେ ରଞ୍ଜିତ ହୋଇନାହିଁ, ତା ନୁହେଁ, କିନ୍ତୁ ଅଲୌକିକତା ଅପେକ୍ଷା ଲୌକିକତାର ମାତ୍ରା ଅଧିକ । କେବଳ ସେତିକି ନୁହେଁ, ଉପମାନ ରୂପରେ ନାୟକ ଓ ନାୟିକାର ଅଙ୍ଗ ପ୍ରତ୍ୟଙ୍ଗ କିମ୍ବା ଅନ୍ୟ କୌଣସି ବସ୍ତୁ ସହ ତୁଳିତ ହେବାପାଇଁ ନିଜର ସୌଭାଗ୍ୟ ମନେ କରିଛି । ସଂସ୍କୃତ କାବ୍ୟ, ନାଟକ, ଅଳଙ୍କାର ସାହିତ୍ୟ ପୃଷ୍ଠା ଲେଉଟାଇଲେ ଦୃଷ୍ଟାନ୍ତର ଅଭାବ ହେବ ନାହିଁ ।

ଓଡ଼ିଆ ସାହିତ୍ୟରେ ସାରଳାଯୁଗଠାରୁ ଆରମ୍ଭକରି ଭଞ୍ଜ ଯୁଗର ଅବସାନ ପର୍ଯ୍ୟନ୍ତ ରଚିତ ହୋଇଥିବା ପୁରାଣ, କାବ୍ୟ ଓ କାହାଣୀ ପ୍ରଭୃତିରେ ପ୍ରକୃତି-ଆଲେଖ୍ୟର ଅଭାବ ନାହିଁ । କିନ୍ତୁ ଜ୍ଞାନ ବିଜ୍ଞାନର ପ୍ରସାର ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ସାହିତ୍ୟ ତଥା ପାଶ୍ଚାତ୍ୟ ଚିନ୍ତାଧାରା ପ୍ରଭାବପୁଷ୍ଟ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ସ୍ରଷ୍ଟା ରାଧାନାଥଙ୍କ କାବ୍ୟ ସୃଷ୍ଟିରେ ଆମେ ପ୍ରକୃତିର ଯେଉଁ ଅଭିନବ ବୈଚିତ୍ର୍ୟମୟୀ ରୂପ ଲକ୍ଷ୍ୟ କରୁଁ, ପ୍ରକୃତି ପ୍ରତି କବିଙ୍କର ଦୃଷ୍ଟିଭଙ୍ଗୀରେ ଯେଉଁ କ୍ରାନ୍ତିକାରୀ ପରିବର୍ତ୍ତନ ଲକ୍ଷ୍ୟ କରୁଁ, ପ୍ରାଚୀନ ପୁରାଣ କିମ୍ବା କାବ୍ୟ ସାହିତ୍ୟରେ ତାର ସଙ୍କେତ ମିଳେନା ।

ସାରଳା ମହାଭାରତ ଓ ସାରଳାଯୁଗରେ ଅନ୍ୟକବିଙ୍କ କୃତିରେ ଇତସ୍ତତଃ ବହିଃପ୍ରକୃତିର ଚିତ୍ର ରହିଛି । ପଞ୍ଚସଖାଯୁଗରେ ସାହିତ୍ୟ ଧର୍ମମୁଖୀ ହୋଇ ପଡ଼ିଥିବାରୁ ପ୍ରକୃତିର ଅଲୌକିକ ଓ ସାତ୍ତ୍ୱିକ ପରିବେଶ ମଧ୍ୟରେ ପାଠକ ନିଜକୁ ହଜେଇ ଦିଏ । ସେଇ ନଦୀ, ବନ, ପର୍ବତ, ବୃକ୍ଷଲତା ଓ ପଶୁପକ୍ଷୀଙ୍କ କମନୀୟ ବର୍ଣ୍ଣନା ରହିଛି; କିନ୍ତୁ ସେଗୁଡ଼ିକ ଧୂଳି ଧୂସରିତ ଧରଣୀଠାରୁ ସ୍ୱତନ୍ତ୍ର ବାରିହୋଇ ଯା'ନ୍ତି । ଏପରିକି ବିଭିନ୍ନ ଋତୁରେ ନିତ୍ୟବସନ୍ତର ମାଧୁର୍ଯ୍ୟ ଓ କୋକିଳର କୁହୁ ସଂପର୍କରେ ପାଠକ ଆସିଥାଏ । ଭାଗବତରେ ବୃନ୍ଦାଟବୀର ବର୍ଣ୍ଣନା, ତା'ର କୁଞ୍ଜର ବୃକ୍ଷଲତା ଓ ବିବିଧ ପୁଷ୍ପ ପୁଣି କଳନାଦିନୀ ଯମୁନାର ପୂତ ମଧୁମୟୀ ତୀରଦେଶରେ ଶ୍ରୀକୃଷ୍ଣଙ୍କର ଗୋଚାରଣ ଓ ମଧୁରଲୀଳା, ବନମାଳା, ଶିଖିପୁଚ୍ଛ ଓ ଗୁଞ୍ଜମାଳିଠାରୁ ଆରମ୍ଭକରି ବନର ପ୍ରତ୍ୟେକଟି ସମ୍ପଦରେ ଭୂଷିତ ଶ୍ରୀକୃଷ୍ଣଙ୍କର ଅମୃତମୟ ରୂପ ମାନବ ଓ ପ୍ରକୃତିର ନିବିଡ଼ତମ ସମ୍ପର୍କର ଯେଉଁ ସୂଚନା ଦିଅନ୍ତି, ତା'ର ତୁଳନା ଅନ୍ୟତ୍ର ବିରଳ ।

ପଞ୍ଚଦଶ, ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ରଚିତ କାବ୍ୟମାନଙ୍କରେ ପ୍ରକୃତି ରୂପାୟନରେ ଯେଉଁ ସ୍ୱଭାବୋକ୍ତିର କମନୀୟତା ଲକ୍ଷିତ ହୁଏ, ସଂସ୍କୃତ ଆଳଙ୍କାରିକରୀତି ପ୍ରଭାବପୁଷ୍ଟ କାବ୍ୟମାନଙ୍କରେ ତା'ର ବ୍ୟତିକ୍ରମ ପାଠକ ନିକଟରେ ସ୍ପଷ୍ଟ ହୋଇ ଉଠେ । ମହାକାବ୍ୟର ଅନୁଶାସନ ଦୃଷ୍ଟିରୁ ରୀତିକାବ୍ୟଗୁଡ଼ିକରେ ଋତୁ, ପର୍ବତ, କାନନ, କାସାର, ପୁଷ୍ପବାଟିକା, ସୂର୍ଯ୍ୟ ଚନ୍ଦ୍ର, ବୃକ୍ଷଲତା ଓ ପଶୁ ପକ୍ଷୀଙ୍କର ବର୍ଣ୍ଣନା ରହିଛି; ପ୍ରକୃତିର ପ୍ରାୟ ପ୍ରତ୍ୟେକଟି ସମ୍ପଦ ନାୟକନାୟିକାଙ୍କ ରୂପ ଓ ଗୁଣ ବର୍ଣ୍ଣନା ପ୍ରସଙ୍ଗରେ ଉପମାନ ରୂପେ ବ୍ୟବହୃତ ହୋଇଛନ୍ତି; ପୁଣି ନାୟକ ଓ ନାୟିକାଙ୍କ ଦାସତ୍ୱ ବରଣ କରି ସେମାନଙ୍କ ପାଇଁ ସମ୍ଭୋଗ ଓ ବିଳାସରେ ଖୋରାକ ଯୋଗାଇଛନ୍ତି; କିନ୍ତୁ ନାୟକନାୟିକା ପରି ପ୍ରକୃତିର ସ୍ୱତନ୍ତ୍ର ସତ୍ତା ବା ମାଧୁର୍ଯ୍ୟ ସ୍ୱୀକୃତ ହୋଇନାହିଁ । ବିଶେଷତଃ ରୀତିକାବ୍ୟ ଗୁଡ଼ିକ ଶୃଙ୍ଗାରପ୍ରଧାନ ହୋଇଥିବାରୁ ଏବଂ ରଚନା ଶୈଳୀରେ ବିଦଗ୍ଧସୁଲଭ କଳାଗତ କୃତ୍ରିମତା ପରିଲକ୍ଷିତ ହେଉଥିବାରୁ

ପ୍ରକୃତି ମଧ୍ୟ ବିଦଗ୍ଧସୁଲଭ ଆଭିଜାତ୍ୟର ପରିବେଶରେ ନିଜର ସ୍ୱଭାବସୁଲଭ ସରଳତା ହରାଇ କୃତ୍ରିମତାର ରଙ୍ଗ ବୋଳି ହୋଇଛି ।

କିନ୍ତୁ ଆଧୁନିକ ଓଡ଼ିଆ କାବ୍ୟ କ୍ଷେତ୍ରରେ ପ୍ରକୃତି ରାଧାନାଥଙ୍କ ହାତରେ ନବଜନ୍ମଲାଭ କରିଛନ୍ତି । ପ୍ରକୃତି ତା'ର ବୈଚିତ୍ର୍ୟମୟୀ ରୂପବିଭବରେ କବିଙ୍କର ସାରସ୍ୱତ ଚକ୍ଷୁକୁ ଉନ୍ମୀଳିତ କରିପାରିଛି ଏବଂ କାବ୍ୟ ବର୍ଣ୍ଣିତ ନାୟକନାୟିକାଙ୍କ ପରି ନିଜକୁ ଅପରିହାର୍ଯ୍ୟ କରି ନିଜର ସ୍ୱତନ୍ତ୍ର ରୂପସତ୍ତାରେ ମହିମାନ୍ୱିତ ହୋଇ ଉଠିଛି । କାବ୍ୟ ସୃଷ୍ଟିରେ ରାଧାନାଥ ଗତାନୁଗତିକତାର ବ୍ୟତିକ୍ରମ ଘଟାଇ ବିଷୟବସ୍ତୁ ଆହରଣ, ଚରିତ୍ର ପରିକଳ୍ପନା, ବର୍ଣ୍ଣନା, ଛନ୍ଦ, ରସ, ଅଳଙ୍କାର ଓ ଶୈଳୀ ପ୍ରଭୃତିରେ ଯେଉଁ ନୂତନତ୍ୱର ସଙ୍କେତ ଦେଇଛନ୍ତି ତନ୍ମଧ୍ୟରୁ ପ୍ରକୃତି ରୂପାୟନରେ ତାଙ୍କର ଅଭିନବ ଦୃଷ୍ଟିଭଙ୍ଗୀ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ରାଧାନାଥଙ୍କ ପରିବର୍ତ୍ତନ ମୂଳରେ ଇଂରାଜୀ ସାହିତ୍ୟର ରୋମାଣ୍ଟିକ୍ କାବ୍ୟକବିତା, ଗ୍ରୀକ୍ ପୁରାଣର କଥାବସ୍ତୁ ଏବଂ ଅପର ପକ୍ଷରେ ଭାସ, କାଳିଦାସ, ଦଣ୍ଡୀ, ବାଣଭଟ୍ଟ ଓ ଭବଭୂତିଙ୍କର ଅମରସୃଷ୍ଟି ରହିଥିଲେ ମଧ୍ୟ ରଚନା ଗୁଡ଼ିକରେ ତାଙ୍କର ପ୍ରତିଭା, ମନନଶୀଳତା, ଆହରଣ, ଆରୋପ ଓ ସମୀକରଣରେ ଅପୂର୍ବ କଳାପାଟବ ପୁଣି ତାଙ୍କର ଗଭୀର ଅନ୍ତର୍ଦୃଷ୍ଟିର ମୂଲ୍ୟ କିଛି କମ୍ ନୁହେଁ । ତାଙ୍କର କାବ୍ୟଗୁଡ଼ିକରୁ କଥାବସ୍ତୁ ବାଦ ଦେଲେ ଅନ୍ୟ ଯେଉଁ ମୁଖ୍ୟ ବିଭାଗଟି ପାଠକର ଦୃଷ୍ଟି ଆକର୍ଷଣ କରେ ସେଇଟି ହେଉଛି ପ୍ରକୃତି । ଏ ପ୍ରକୃତି ପୁଣି କୌଣସି ଅଜଣା ଅଶୁଣା ସ୍ଥାନର ପ୍ରକୃତି ନୁହେଁ — ଚିର ପରିଚିତ ଆମରି ଉତ୍କଳର ପ୍ରକୃତି । ଉତ୍କଳର ନଦୀ, ତଡ଼ାଗ, ହ୍ରଦ, ପର୍ବତ, ଆକାଶ, ସାଗର, ବୃକ୍ଷଲତା, ପଶୁପକ୍ଷୀ; ଉତ୍କଳ ଆକାଶର ସୂର୍ଯ୍ୟ, ଚନ୍ଦ୍ର, ପ୍ରଭାତ ଓ ପ୍ରଦୋଷ, ଉତ୍କଳର ଋତୁଚକ୍ର, ଏପରିକି ଦୃଷ୍ଟିର ଆଗୋଚରରେ ଅବହେଳିତ ଅବସ୍ଥାରେ ରହିଥିବା ପ୍ରତ୍ୟେକଟି ବୃକ୍ଷଲତା ଓ ପଶୁପକ୍ଷୀ କବିଙ୍କ ଲେଖନୀର ଯାଦୁକରୀ ସ୍ପର୍ଶରେ ଯେପରି ଜୀବନ୍ତ ହୋଇଉଠିଛନ୍ତି, ଓଡ଼ିଆ ସାହିତ୍ୟରେ ବାସ୍ତବିକ ତାହା ବିଲକ୍ଷଣ ମନେହୁଏ । ରାଧାନାଥଙ୍କ ପ୍ରକୃତିରେ ଓଡ଼ିଶାରେ ଭୌଗୋଳିକ ପ୍ରକୃତିର ସଙ୍କେତ ଥିଲେ ମଧ୍ୟ ତାହା ତଥ୍ୟପୂର୍ଣ୍ଣ ଭୂଗୋଳ ନହୋଇ ହୋଇଛି ରସପୂର୍ଣ୍ଣ କାବ୍ୟ । ଉତ୍କଳର ପ୍ରକୃତି ପ୍ରତି ତାଙ୍କର ଏ ନୈସର୍ଗିକ ଅନୁରାଗ ମୂଳରେ ରହିଛି ତାଙ୍କର ଦେଶପ୍ରୀତି, ସୌନ୍ଦର୍ଯ୍ୟ ପିପାସା ଓ ଜାଗ୍ରତ ଦୃଷ୍ଟି । ଅବଶ୍ୟ କବିଜୀବନରେ ପ୍ରକୃତି ପ୍ରତି ତାଙ୍କର ଏ ଅନୁରାଗ ଆକସ୍ମିକ ନୁହେଁ; ବାଲ୍ୟକାଳରୁ ଏଇ ଅନୁରାଗର ବୀଜ ପ୍ରୋହିତ ହୋଇଥିଲା ତାଙ୍କର ସରଳ ଚିତ୍ତରେ ।

ବାଲ୍ୟାବସ୍ଥାରେ ମାତୃବିୟୋଗ ହେତୁ ପ୍ରାଣରେ ସେ ଯେଉଁ ଶୂନ୍ୟତା ଉପଲବ୍ଧି କରିଥିଲେ, ତା'ର ସ୍ଥାନ ଅଧିକାର କରିଥିଲା ଔଦାସୀନ୍ୟ ଓ ବିଜନତା-ପ୍ରୀତି । ସେଥିପାଇଁ ସେ କୋଳାହଳମୟ ଲୋକାଳୟ ଅପେକ୍ଷା ପ୍ରକୃତି କୋଳରେ ତା'ର ଶାନ୍ତ ବିବିକ୍ତମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ଉପଲବ୍ଧି କରି ଶୂନ୍ୟ ପ୍ରାଣରେ ସାନ୍ତ୍ୱନାର ଉତ୍ସ ଖୋଜି ପାଇଥିଲେ । ଏଇ ନିର୍ଜନତାପ୍ରୀତି ତାଙ୍କର ଭାବୁକତା ଓ କବିତ୍ୱର ବିକାଶରେ କମ୍ ସାହାଯ୍ୟ କରିନାହିଁ । କବି ଜୀବନରେ ମୁଖରିତ ନଗରର ରାଜସିକ କୃତ୍ରିମ ସୌନ୍ଦର୍ଯ୍ୟକୁ ପଛରେ ପକାଇ ନଦୀର ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟା, ଦୂରର ଘନ ବୃକ୍ଷଲତା ସମାକୁଳ ନୀଳ ପର୍ବତରାଜିର ଶାନ୍ତ ସୁଷମାକୁ ପୂର୍ଣ୍ଣପ୍ରାଣରେ ଉପଲବ୍ଧି କରିବା ପାଇଁ ତାଙ୍କର ଚିତ୍ତ ଧାଇଁ ଯାଇଛି । କବି ନିଜର ଅହୈତୁକୀ ସୌନ୍ଦର୍ଯ୍ୟ ତୃଷ୍ଣା ମେଣ୍ଟାଇବା ପାଇଁ ବହୁବାର ଉତ୍କଳର ପ୍ରସିଦ୍ଧ ପ୍ରାକୃତିକ ସ୍ଥାନ, ବିଭିନ୍ନ ଗଡ଼ଜାତ ଓ ଭାରତର ବିଭିନ୍ନ ରୁଦ୍ରସୁନ୍ଦର ପ୍ରାକୃତିକ ସ୍ଥାନ ଭ୍ରମଣ କରିଛନ୍ତି । ତାଙ୍କର ଏଇ ଭ୍ରମଣକାଳୀନ ସୌନ୍ଦର୍ଯ୍ୟାନୁଭୂତିର ଅନ୍ତରଙ୍ଗ ପ୍ରତିରୂପ ରହିଛି ବିଭିନ୍ନ କାବ୍ୟ, କବିତା, ଭ୍ରମଣକାରୀର ପତ୍ର ଓ 'ଟିପାଖାତା' ରେ । ଏ ସମ୍ପର୍କରେ ତତ୍କାଳୀନ ଶିକ୍ଷାବିଭାଗୀୟ ଇନିସ୍‌ପେକ୍ଟର ଭୂଦେବ ମୁଖୋପାଧାୟଙ୍କ ପ୍ରେରଣା କବିଙ୍କୁ କମ୍ ସାହାଯ୍ୟ କରିନାହିଁ । ରାଧାନାଥ ସେତେବେଳେ ଇତିହାସ ଓ ପୁରାଣର କଥାବସ୍ତୁକୁ ଭିତ୍ତିକରି ବଙ୍ଗଳାରେ କବିତା ରଚନାକରି ପ୍ରଶଂସିତ ହୋଇଥିଲେ । ସେ ସ୍ୱରଚିତ ଖଣ୍ଡିଏ ବଙ୍ଗଳା କାବ୍ୟର ପାଣ୍ଡୁଲିପି ଭୂଦେବ ବାବୁଙ୍କୁ ତାଙ୍କର ମତାମତ ପାଇଁ ଦେଖାଇବାରୁ ଭୂଦେବ ବାବୁ କହିଥିଲେ, ''ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶରେ ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତା ଧାତ୍ରୀ ( Meet nurse for a poetic child) । ଓଡ଼ିଶାରେ ଯେଉଁ ଆଡ଼କୁ ଚାହିଁବ ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ରହିଛି (୧) । କବିଙ୍କର ବିଭିନ୍ନ କାବ୍ୟରେ ଉତ୍କଳ ପ୍ରକୃତିର ମନୋଜ୍ଞ ଚିତ୍ର ରହିଛି; କିନ୍ତୁ ଉତ୍କଳ ପ୍ରକୃତି ପ୍ରତି ରାଧାନାଥଙ୍କ ହୃଦୟର ନୈସର୍ଗିକ ଆକର୍ଷଣ ଶୀର୍ଷସ୍ତରରେ ଉପନୀତ ହୋଇଛି ତାଙ୍କର 'ଚିଲିକା' କାବ୍ୟରେ । କବିଙ୍କର ସାରସ୍ୱତ ଦୃଷ୍ଟିରେ ଚିଲିକା ଉତ୍କଳ କମଳାଙ୍କର ଗୋଟିଏ ଚାରୁ ଆଲେଖ୍ୟଶାଳିକା ନୁହେଁ, କେବଳ ଗୋଟିଏ ବିଳାସ-କାସାର ନୁହେଁ,ଏହା ଲୀଳାବିଳାସ ନିପୁଣା ନାନା ଆଭରଣଯୁକ୍ତା ଗୋଟିଏ ହାସ୍ୟମୟୀ ରୂପସୀ ରମଣୀ । 'ଚିଲିକା' ରାଧାନାଥଙ୍କ ଲେଖନୀରେ ପାଇଛି ତୀର୍ଥର ଗୌରବ । ଉତ୍କଳ ପ୍ରକୃତିର ଏକ ରମଣୀୟ ଦୃଶ୍ୟକୁ ଭିତ୍ତିକରି ପୁଣି ତାକୁ କାବ୍ୟର ନାୟିକା ରୂପେ କଳ୍ପନା କରି ଏପ୍ରକାର କାବ୍ୟ ରଚନା କରିବା

୧- ଶ୍ରୀ ଦୁର୍ଗାଚରଣ ରାୟ, ସଂପା: ରାଧାନାଥ ଜୀବନୀ ୧ମ ସଂ. ପୃ. ୧୦୨

ବାସ୍ତବିକ ଓଡ଼ିଆ ସାହିତ୍ୟରେ ପ୍ରଥମ । ଅବଶ୍ୟ ଏ ପ୍ରକାର ରଚନା ପାଇଁ ସ୍କଟ୍‌ଲାଣ୍ଡରେ ଜାତୀୟ କବି Scott ଙ୍କର 'Lady of the lake' ରୁ ସେ ପ୍ରେରଣା ପାଇଛନ୍ତି । କବି ପାଶ୍ଚାତ୍ୟର ରୋମାଣ୍ଟିକ୍ କାବ୍ୟ ସାହିତ୍ୟର ଆଦର୍ଶରେ ଅନୁପ୍ରାଣିତ ହୋଇ ନିଜ କାବ୍ୟର ନାରୀ ଓ ପୁରୁଷ ଚରିତ୍ର ଏବଂ ସେମାଙ୍କର ନଗ୍ନ ପ୍ରବୃତ୍ତି ଗୁଡ଼ିକୁ ରୂପ ଦେବାରେ ନିଜର ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀର ଯେଉଁ ପରିଚୟ ଦେଇଛନ୍ତି, ପ୍ରକୃତିର ଆଲେଖ୍ୟ ଏଇ ଦୃଷ୍ଟିଭଙ୍ଗୀରୁ ବାଦ ଯାଇନାହିଁ । ନାରୀର ସୌନ୍ଦର୍ଯ୍ୟ ଏବଂ ପ୍ରାକୃତିକ ସୌନ୍ଦର୍ଯ୍ୟର ବୈଚିତ୍ର୍ୟ ତଥା ନୂତନତ୍ୱ ସମ୍ପାଦନରେ କବିଙ୍କର ଏଇ ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ହୋଇଉଠିଛି ।

ରାଧାନାଥ ମୁଖ୍ୟତଃ ପ୍ରକୃତି-ବର୍ଣ୍ଣନାତ୍ମକ କବି । ପ୍ରକୃତି ତୁଳନାରେ ରାଧାନାଥଙ୍କର କାବ୍ୟର କାହାଣୀ ଓ ଚରିତ୍ର ଅନେକତ୍ର ଗୌଣ ଅନୁମିତ ହେଲେ ମଧ ତାଙ୍କର ପ୍ରକୃତି ରୂପାୟନ କଥାବସ୍ତୁ ଓ ଚରିତ୍ର-ନିରପେକ୍ଷ ନୁହନ୍ତି । କେବଳ ପ୍ରକୃତି ପାଇଁ କାବ୍ୟରେ ସେ ପ୍ରକୃତି ବର୍ଣ୍ଣନା କରିବାକୁ ଯାଇନାହାନ୍ତି । କାବ୍ୟର କଥାବସ୍ତୁ, ଘଟଣା ସମାବେଶ, ଭାବ, ପରିବେଶ, କଥାବସ୍ତୁର ଗତି, ସଂହତି ଓ ସାମୂହିକ ସୌଷ୍ଠବ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇ କବି ନିଜ ଅନ୍ତଶ୍ଚକ୍ଷୁରେ ଧୃତ ପ୍ରକୃତିର ଧ୍ୟାନ ରୂପଟିକୁ ନିଜର କଳ୍ପନା ଓ ଶିଳ୍ପ-ନୈପୁଣ୍ୟରେ ଅପୂର୍ବ ରୂପ ଦେଇଛନ୍ତି । ଅପରିମିତ ବର୍ଣ୍ଣନା ସମ୍ପର୍କରେ କବି ସର୍ବଦା ସଚେତନ । ୱାର୍ଡ଼ସୱର୍ଥ ବା ମଧୁସୂଦନଙ୍କ ପରି ସେ ପ୍ରକୃତି ମଧ୍ୟରେ କୌଣସି ତତ୍ତ୍ୱ ବା ଇନ୍ଦ୍ରିୟାତୀତ ଶକ୍ତିର ସନ୍ଧାନ କରି ନାହାନ୍ତି । ଇଂରାଜୀ କବି ବାଇରନ୍ ଓ ସ୍କଟ୍‌ଙ୍କ ପରି ପ୍ରକୃତିର ବାହ୍ୟ ରୂପରେ ସେ ମୁଗ୍ଧ ଓ ଆତ୍ମହରା ହୋଇ ନିଜର ନିବିଡ଼ ଅନୁଭୂତି ଓ ସୂକ୍ଷ୍ମ ଦୃଷ୍ଟିରେ ପ୍ରକୃତିର ବାସ୍ତବ ଅଥଚ, ମଞ୍ଜୁଳ ଛବି ଅଙ୍କନ କରିଛନ୍ତି । ଟେନିସନ୍‌ଙ୍କ ପରି ସେ ପ୍ରକୃତିକୁ ନିଖାରି ନିଖାରି ଦେଖିଛନ୍ତି ଏବଂ ପ୍ରତ୍ୟେକଟି ଅନୁଭୂତି, ଦୃଶ୍ୟ ଓ ବସ୍ତୁକୁ ନିଜର ସ୍ୱାଭବସୁଲଭ କମନୀୟ ଭଙ୍ଗୀରେ ଟିକିନିଖି ଭାବରେ ବର୍ଣ୍ଣନା କରିଛନ୍ତି । ଚିଲିକାର ତୀର ଭୂମିର ବର୍ଣ୍ଣନା, ମହାଯାତ୍ରାରେ ମହାନଦୀର ସପ୍ତକୋଶୀ ଓ ମଧ୍ୟପ୍ରଦେଶର ନିଘଞ୍ଚ ଅରଣ୍ୟପୂର୍ଣ୍ଣ ମାଳଭୂମିର ଭୀମକାନ୍ତ ଦୃଶ୍ୟର ବର୍ଣ୍ଣନା ଏବଂ ମେଘାସନ ଓ ମହେନ୍ଦ୍ରଗିରି ପ୍ରଭୃତିର ବର୍ଣ୍ଣନାକୁ ଦୃଷ୍ଟାନ୍ତରୂପେ ଗ୍ରହଣ କରାଯାଇପାରେ ।

ରାଧାନାଥ ତାଙ୍କର ରଚନାରେ ଇନ୍ଦ୍ରିୟଗ୍ରାହ୍ୟ ବହିଃ ପ୍ରକୃତି ପ୍ରତି ଯେପରି ଆକୃଷ୍ଟ, ମାନବ ଜୀବନ କିମ୍ବା ମାନବର ଅନ୍ତଃପ୍ରକୃତି ପ୍ରତି ସେତେ ଆକୃଷ୍ଟ ନୁହନ୍ତି । କବିଙ୍କ ଭାଷାରେ କହିବାକୁ ଗଲେ— ''ମୋର ରଚନା ସହିତ ଜୀବନର କୌଣସି ସମ୍ପର୍କ ନାହିଁ । ମୁଁ କେବଳ ବହିଃ ସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଘେନି

ବ୍ୟାପୃତ ଥିଲି । ପାର୍ବତୀୟ ପ୍ରଦେଶର ପୁନଃ ପୁନଃ ପରିଭ୍ରମଣ ନିବନ୍ଧନ ପ୍ରକୃତି ସହିତ ଆଳାପ ପରିଚୟର ମଧ୍ୟ ଯଥେଷ୍ଟ ସୁବିଧା ପାଇଥିଲି । ମୋର ଓଡ଼ିଆ କାବ୍ୟଗୁଡ଼ିକ ଉତ୍କଳୀୟ ପ୍ରକୃତିର ପ୍ରତିକୃତି କହିଲେ ଚଳେ । (୨)

କବି ବହିଃ ସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହେଲେ ମଧ୍ୟ ତାଙ୍କର ଅନୁଭୂତି ବା ସୌନ୍ଦର୍ଯ୍ୟବୋଧର ପରିସର କେବଳ ସେତିକିରେ ସୀମିତ ହୋଇଯାଇନାହିଁ । ଇଂରାଜୀ କିବି ଜନ୍ କୀଟ୍‌ସଙ୍କ ପରି ଅବଶ୍ୟ ତାଙ୍କର ରୂପ ଓ ସୌନ୍ଦର୍ଯ୍ୟ ପିପାସା ପ୍ରବଳ; ପୃଥିବୀର ପ୍ରତ୍ୟେକଟି ସୌନ୍ଦର୍ଯ୍ୟର ଉପାଦାନ ତାଙ୍କ ପ୍ରାଣରେ ଆନନ୍ଦ ଆଣି ଦେଇଛି (୩), କିନ୍ତୁ ଉପଲବ୍ଧିର ଏକ ଚରମ ତନ୍ମୟତାପୂର୍ଣ୍ଣ ମୁହୂର୍ତ୍ତରେ ସେଇ ସୌନ୍ଦର୍ଯ୍ୟ ତାଙ୍କ ଚିତ୍ତରେ ଅସୀମ ସ୍ୱର୍ଗୀୟ ମାଧୁର୍ଯ୍ୟର ସ୍ୱାଦ ଆଣି ଦେଇଛି । ଥରେ ନୁହେଁ, ବାରମ୍ବାର ଦେଖୁଥିଲେ ମଧ୍ୟ ତାଙ୍କର ଚିତ୍ତ କ୍ଳାନ୍ତ ହୋଇପଡ଼ିନାହିଁ । ସବୁଥର ଅତି ନୂତନ, ସୁନ୍ଦରରୁ ସୁନ୍ଦରତର ଜଣା ପଡ଼ିଛି । କବିଙ୍କ ଭାଷାରେ —

ସୁନ୍ଦରେ ତୃପ୍ତିର ଅବସାଦ ନାହିଁ,
ଯେତେ ଦେଖିଲେହେଁ ନୂଆ ଦିଶୁଥାଇ । (୪)
(ଚିଲିକା)

ଏଇ ଅନୁଭୂତିର ସ୍ତରରେ ବାସ୍ତବିକ କବିହୁଏ ଦ୍ରଷ୍ଟା ଓ ସ୍ରଷ୍ଟା । ବିଧାତା ସୃଷ୍ଟ ଜଗତ୍ ଅପେକ୍ଷା ତା'ର ସୃଷ୍ଟି ଅଧିକ ଚିତ୍ତ ଚମତ୍କାର-ପ୍ରଦ ହୁଏ, ପୁଣି ତା'ର ସୃଷ୍ଟିର ସୌନ୍ଦର୍ଯ୍ୟ ବିଧାତାଙ୍କ ସୃଷ୍ଟିରେ ମିଳେ ନାହିଁ । 'ଯେ ପ୍ରକୃତ ଦ୍ରଷ୍ଟା ପ୍ରକୃତିର ସୌନ୍ଦର୍ଯ୍ୟ ଉପଲବ୍‌ଧି ସମୟରେ ତା'ର ଏକ ଧ୍ୟାନାଭିନିବେଶ ଘଟିଥାଏ । ଏଇ ଧ୍ୟାନ ବା ତନ୍ମୟତା ବଳରେ କବି ଚିତ୍ତରେ ନାନାବିଧ ରେଖା ଓ ବର୍ଣ୍ଣର ସାମଞ୍ଜସ୍ୟ ଏବଂ ପ୍ରକୃତିର ନାନା ବ୍ୟାପାର ସହିତ ମନୁଷ୍ୟର ନାନା ବ୍ୟାପାରର ସାଦୃଶ୍ୟ ତଥା ସାମଞ୍ଜସ୍ୟ ହୃଦୟରେ ଗ୍ରଥିତ ହୋଇଥାଏ । ଏକ ଦିଗରେ ସେ ଯେପରି ପ୍ରକୃତିର ସୌନ୍ଦର୍ଯ୍ୟ ନିରୀକ୍ଷଣ କରେ, ଅନ୍ୟ ଦିଗରେ ସେହିପରି ଅଜ୍ଞାତରେ ନିଜ ହୃଦୟରେ ପ୍ରକୃତିଗତ ନାନା ସାମଞ୍ଜସ୍ୟ ଅଙ୍କିତ କରି ହୃଦୟକୁ ସୌନ୍ଦର୍ଯ୍ୟ ସୃଷ୍ଟିର ଉପାଦାନରେ ପରିପୂର୍ଣ୍ଣ କରିଥାଏ । ସେ ପ୍ରକୃତିରୁ ଗୃହୀତ ଉପାଦାନରେ ନିଜ ସୃଷ୍ଟିର ସୌନ୍ଦର୍ଯ୍ୟ

---

୨- ତତ୍ରୈବ, ପୃ.୫୯୨;
୩- A thing of beauty is a joy for ever — Keats.
୪- କ୍ଷଣେ କ୍ଷଣେ ଯନ୍ନବତାମୁପୈତି
ତଦେବ ରୂପଂ ରମଣୀୟ ତାୟାଃ । (ମାଘ, ଶିଶୁପାଳ ବଧ)

ବଢ଼ାଇଥାଏ ଏବଂ ନିଜେ ପ୍ରଜାପତି ହୋଇ ପ୍ରଜାପତି ବ୍ରହ୍ମାଙ୍କ ସୃଷ୍ଟି ଅପେକ୍ଷା ଆହୁରି ସୁନ୍ଦର ସୃଷ୍ଟି ରଚନା କରେ (୫) ।' ସେଥିପାଇଁ ବସ୍ତୁଜଗତ୍‌ର ସୌନ୍ଦର୍ଯ୍ୟ, କଳା ଜଗତ୍‌ର ସୌନ୍ଦର୍ଯ୍ୟ ସହିତ ସମାନ ହୋଇ ପାରେ ନାହିଁ (୬) ଏଇ ଦୃଷ୍ଟିରୁ ବିଚାର କଲେ ସହୃଦୟ ପାଠକ ପ୍ରାକୃତିକ ଚିଲିକା ଓ କବିସୃଷ୍ଟ ଚିଲିକା ମଧ୍ୟରେ କି ପ୍ରଭେଦ ରହିଛି, ଜାଣି ପାରିବେ । ଚିଲିକା କେବଳ ଉତ୍କଳର ଚାରୁ ଅଳଙ୍କାର ନୁହେଁ, କେବଳ ଶୋଭାର ଭଣ୍ଡାର ନୁହେଁ, ତା'ଠାରୁ ଆଉ କିଛି ଅଧିକ । ସେଥିପାଇଁ କବି ତାର ସୌନ୍ଦର୍ଯ୍ୟର ପଟାନ୍ତର ପାଇନାହାନ୍ତି; ଥରେ ଦେଖି ତୃପ୍ତ ହୋଇ ନାହାନ୍ତି; ତା'ର ପ୍ରକୃତ ଛବି ଆଙ୍କିବାକୁ ଭାଷା ପାଇ ନାହାନ୍ତି —

ଭାରତୀ ଭକତ କେଉଁ ରୂପପାୟୀ
ତୃପ୍ତହେବ ଏହା ଥରେ ମାତ୍ର ଧ୍ୟାୟି ।
ବଚନ ବିଷୟ ନୁହଇ ଏ ଛବି
ହୃଦ ସେ କେବଳ ପାରେ ଅନୁଭବି । (ଚିଲିକା)

ପୁଣି ଏ ସୌନ୍ଦର୍ଯ୍ୟ ପବିତ୍ରତା ନିରପେକ୍ଷ ନୁହେଁ, ଶୁଦ୍ଧ ସାତ୍ତ୍ୱିକ ଭାବରେ ଦ୍ୟୋତକ ମଧ୍ୟ—

ପବିତ୍ର ସୁନ୍ଦର ସୁନ୍ଦର ପାବନ
ତୋଠାରେ ହୋଇଛି ଏହା ସଂଘଟନ । (ଚିଲିକା)

ଏ ତୃପ୍ତି ବା ଆନନ୍ଦ ବିଶ୍ୱକବି ରବୀନ୍ଦ୍ରଙ୍କର ବିନା ପ୍ରୟୋଜନର ଆନନ୍ଦ । କବିଙ୍କ ଗଭୀର ଅନୁଭୂତି, ମଞ୍ଜୁଳ କଳ୍ପନା, ଭାବରେ ନୈସର୍ଗିକ ପରିସ୍ଫୁର୍ତ୍ତି, ରସବୋଧ, କମନୀୟ ପ୍ରକାଶଭଙ୍ଗୀ, ମାର୍ଜିତ ଭାଷା, ମଧୁର ପଦବିନ୍ୟାସ, ବ୍ୟଞ୍ଜନା, ନାନାବିଧ ଅଳଙ୍କାରର (ଉପମା, ରୂପକ, ଉତ୍ପ୍ରେକ୍ଷା, ବ୍ୟତିରେକ, ଅର୍ଥାନ୍ତରନ୍ୟାସ, ପ୍ରତୀପ, ଅନୁପ୍ରାସ ଆଦି) ପରିମିତ ପ୍ରୟୋଗରେ ଉତ୍କଳ ପ୍ରକୃତିର ପ୍ରତ୍ୟେକଟି ଅଂଶ ମାନବୀୟତାର ଭିତ୍ତିରେ ଯେପରି ଜୀବନ୍ତ ସେହିପରି ପ୍ରାଣସ୍ପର୍ଶୀ ହୋଇ ଉଠିଛି । ପ୍ରକୃତି କେବଳ ପ୍ରକୃତି ହୋଇ ରହି ନାହିଁ; ପାଇଛି ଚରିତ୍ରର ଗୌରବ ।

---

୫- ଡଃ. ସୁରେନ୍ଦ୍ର ନାଥ ଦାସଗୁପ୍ତ, ସୌନ୍ଦର୍ଯ୍ୟତତ୍ତ୍ୱ, ୧ମ ସଂ, ମିତ୍ରାଳୟ, ୧୩୫୭, କଲିକତା ୧୨

୬- (i) The beauty of nature, how ever, exhibits great defects; what are above all necessary for exhibition of true beauty are infinitude and freedom - W.T Stace, The Phylosophy of Hegel
(ii) If therefore the human mind is adequately to apprehend the Aboslute in sensuous from which is the demand of the spirit in the present sphere, it must rise above nature. It must create objects of beauty for itself.- W.T stace the philosophy of Hegel.

ରାଧାନାଥ ନିଜ ସୃଷ୍ଟିରେ ଚରିତ୍ରମାନଙ୍କର ବିଭିନ୍ନ ଅବସ୍ଥା ଓ ପରିବେଶରେ ପ୍ରକୃତିର ଅନୁରୂପ ରୂପ ବୈଚିତ୍ର୍ୟ ପରିସ୍ଫୁଟ କରିବାକୁ ଚେଷ୍ଟା କରିଛନ୍ତି । ଅନେକ କ୍ଷେତ୍ରରେ ଭାବ, ଚିତ୍ରକଳ୍ପ, ଭାଷା ଓ ଅଳଙ୍କାର ଦୃଷ୍ଟିରୁ ଏକ ଜାତୀୟ ପ୍ରକୃତି ବର୍ଣ୍ଣନାର ଆପାତତଃ ପୁନରାବୃତ୍ତି ଦେଖାଗଲେ ମଧ୍ୟ (୭) କାବ୍ୟର ରସ ଓ ପରିବେଶକୁ ସମ୍ପୂର୍ଣ୍ଣ ପ୍ରଚ୍ଛାଦନ କରି କବି ତା'ର ପୁନରାବୃତ୍ତି ଘଟାଇ ନାହାନ୍ତି । 'ଚିଲିକା' ଓ 'ମହାଯାତ୍ରା'ର ଶାନ୍ତ ଗମ୍ଭୀର ଭାବ ଦ୍ୟୋତକ ପ୍ରକୃତି ପ୍ରଣୟ ତଥା ଶୃଙ୍ଗାରପ୍ରଧାନ ଯଯାତିକେଶରୀ'ର ପ୍ରକୃତିର ଅନୁକୂଳ ନୁହେଁ । ପୁଣି ନନ୍ଦିକେଶ୍ୱରୀର ପ୍ରକୃତି ମହାଯାତ୍ରା ଓ ଚିଲିକା ପ୍ରକୃତିର ଅନୁକୂଳ ନୁହେଁ । ଏପରିକି ବିଭିନ୍ନ କାବ୍ୟରେ ଅଙ୍କିତ ସନ୍ଧ୍ୟାର ଛବି ଭାଷା, ଭାବ ଓ ଚିତ୍ରକଳ୍ପ ଦୃଷ୍ଟିରୁ ଆପାତତଃ ପୁନରାବୃତ୍ତ ହେଲା ପରି ଜଣାପଡୁଥିଲେ ମଧ୍ୟ ଆଭିମୁଖ୍ୟ ଏକାନୁହେଁ । ଉଦାହରଣ ସ୍ୱରୂପ ସାଗର ବେଳାର ସିକତାମୟ ପ୍ରଦେଶରେ ରୂପମଦ ବିହ୍ୱଳା ଚନ୍ଦ୍ରଭାଗା ଯେତେବେଳେ କନ୍ଦୁକ କ୍ରୀଡାରେ ଚଞ୍ଚଳ ହୋଇ ଉଠିଛି, ତା'ର ସ୍ତନାଙ୍କୁରକୁ ସ୍ପର୍ଶ କରୁଥିବା ତରଳ ମୋତିମାଳା, ତା'ର ଦୁକୂଳ, ଶ୍ଳଥ କବରୀ ଓ ଭ୍ରୂଲତାରେ ଯେଉଁ କାନ୍ତ କ୍ରୀଡ଼ାଚପଳତା ଦେଖା ଦେଇଛି, ତା'ର ପୂର୍ବାଭାସ ରହିଛି ସାଗର ବେଳାର ମଧୁମୟୀ ଶରତ୍ ସନ୍ଧ୍ୟା ବର୍ଣ୍ଣନାରେ । କବି ଲେଖିଛନ୍ତି—

ମଧୁର ପ୍ରଦୋଷ ସମୟ
ସ୍ୱର୍ଣ୍ଣ କିରଣ ବୋଳା,
କାଦମ୍ବିନୀ ଖେଳେ ଗଗନେ,
ଧୀର ସମୀର ଲୋଳା ।
ଗୋଧୂଳି ଗଗନ ସୁଚିତ୍ର
ଦିଶେ ଶତବରଣେ,
ଶତ ମନୋରଥ ଝଲକେ
ଯେହ୍ନେ ଆଶା-କାନନେ ।
ବାରୁଣୀ ଦର୍ପଣ ପରାୟେ
ଝଳେ ସର ସଲିଳ,
ସୁବର୍ଣ୍ଣଲହରୀ ସୃଜଇ
ତହିଁ ମନ୍ଦ ଅନିଳ ।
ନୀଳ ପାରାବାର ଅଦୂରେ

୭- ଯତୀନ୍ଦ୍ର ମୋହନ ମହାନ୍ତି, ରାଧାନାଥ ଓ ନିସର୍ଗ ପ୍ରକୃତି

ଗାଏ ଅମରଗୀତ,
ଅମର ତରଙ୍ଗ ନର୍ତ୍ତନେ
ବେଳା ହୁଏ ଧ୍ୱନିତ । (ଚନ୍ଦ୍ରଭାଗା)

ସାନ୍ଧ୍ୟ-ପ୍ରକୃତିର ଯେଉଁ ମଧୁର ଚଞ୍ଚଳତା ଦେଖା ଦେଇଛି, ସେଇ ଚଞ୍ଚଳତାର ପରିବେଶରେ ସୁନ୍ଦରୀ ଚନ୍ଦ୍ରଭାଗାର ଅନୁରୂପ ହାବଭାବ ଓ କ୍ରୀଡ଼ା ଚପଳତା ଫୁଟିଉଠିଛି; କିନ୍ତୁ ପ୍ରକୃତିର ଏଇ ସ୍ୱଭାବଉନ୍ମାଦନା ବା ଗତି ମୁଖରତା (ଚଞ୍ଚଳତା) ଆମେ ନନ୍ଦିକେଶ୍ୱରୀରେ ପାଇବା ନାହିଁ । ନନ୍ଦିକାଙ୍କ ପକ୍ଷରେ ଯେଉଁ ଅନାଗତ ରଜନୀ ବିଶେଷ ଗୁରୁତ୍ୱପୂର୍ଣ୍ଣ, ସେଇ ଅବସରରେ ତାଙ୍କର ପ୍ରତୀକ୍ଷମାଣ ଚିତ୍ତର ଅବସ୍ଥା ସହିତ କିଞ୍ଚିତ୍ ସାମଞ୍ଜସ୍ୟ ରଖି ସଂଧ୍ୟାର ପ୍ରକୃତି ହୋଇଛି ଧୀର (୮) ।

କବିଙ୍କ ଭାଷାରେ—

ଡୁବନ୍ତି ଦିନାନ୍ତେ ତପ୍ତ ହେମଚ୍ଛବି
ଧୀରେ ଦେବୀଦ୍ୱାରେ ଗିରିଶୃଙ୍ଗେ ରବି,
ପୀତ କର ଜାଳେ ଝଲୁଛି ଭବନ
ସୁଖ ସ୍ୱପ୍ନ ପ୍ରାୟେ ହରେ ଜନମନ । (ନନ୍ଦିକେଶ୍ୱରୀ)

ତେବେ ଋତୁ ଓ ସଂଧ୍ୟା ପ୍ରକୃତି ପ୍ରଭୃତିର ବର୍ଣ୍ଣନା ପ୍ରାୟ ଏକ ଜାତୀୟ ଭାଷା, ଚିତ୍ରକଳ୍ପ ଓ ଭାବ ଅବଶ୍ୟ ସମାଲୋଚକ ଦୃଷ୍ଟିରେ କିଞ୍ଚିତ୍ ଦୂଷଣୀୟ (୯)

ରାଧାନାଥଙ୍କ ସୃଷ୍ଟିରେ ପ୍ରକୃତି ରୂପାୟନରେ ଆମେ ସ୍ଥୂଳତଃ କେତୋଟି ବିଶେଷତ୍ୱ (ପୂର୍ବାଲୋଚିତ ବିଶେଷତ୍ୱ ସହ) ଲକ୍ଷ୍ୟ କରିବା । ତନ୍ମଧ୍ୟରୁ ଗୋଟିଏ ହେଉଛି : ବାସ୍ତବତାର ଭିତ୍ତିରେ ପ୍ରକୃତିର ସ୍ୱଭାବସୁନ୍ଦର ପ୍ରତ୍ୟକ୍ଷ ବର୍ଣ୍ଣନା ବା ସ୍ୱଭାବୋକ୍ତିରେ ବହିଃ ପ୍ରକୃତିର ମନୋଜ୍ଞ ଆଲେଖ୍ୟ । ଯେକୌଣସି ପ୍ରକୃତି କିମ୍ବା ପ୍ରାକୃତ ବସ୍ତୁର ଏକ ନୈସର୍ଗିକ ମାଧୁର୍ଯ୍ୟ ରହିଛି । ତା'ର ସ୍ୱଭାବସୁନ୍ଦର ବର୍ଣ୍ଣନା ଯେକୌଣସି ପାଠକର ପ୍ରାଣ ସ୍ପର୍ଶ କରିବ, ଏଥିରେ ସନ୍ଦେହ ନାହିଁ । ରାଧାନାଥଙ୍କର ଯେକୌଣସି କାବ୍ୟରେ ଏହାର ବହୁଳ ଦୃଷ୍ଟାନ୍ତ ମିଳିବ । 'ଚିଲିକା'ରେ ଚିଲିକା ତୀରଭୂମିର ବର୍ଣ୍ଣନା; 'ମହାଯାତ୍ରା'ରେ ଉତ୍କଳର ଅରଣ୍ୟ ପ୍ରକୃତିର ବିପୁଳ ବୈଚିତ୍ର୍ୟ

---

୮ ହରିଶ୍ଚନ୍ଦ୍ର ବଡ଼ାଳ, ସନ୍ଧ୍ୟାର ରୂପକାର ରାଧାନାଥ

୯ ସ୍ୱର୍ଣ୍ଣକିରଣ, ସୁବର୍ଣ୍ଣଲହରୀ (ଚନ୍ଦ୍ରଭାଗା); ରବିଙ୍କର ତପ୍ତହେମଚ୍ଛବି, ବାରୁଣୀର ସ୍ୱର୍ଣ୍ଣଚେଳ, ସ୍ୱର୍ଣ୍ଣମେଘକୁ ଲକ୍ଷ୍ୟ କରି ସ୍ୱର୍ଣ୍ଣବିମାନ, ସ୍ୱର୍ଣ୍ଣରଥ, ସ୍ୱର୍ଣ୍ଣନଦୀ, ସ୍ୱର୍ଣ୍ଣପୋତ, ସ୍ୱର୍ଣ୍ଣମଞ୍ଚ, ସ୍ୱର୍ଣ୍ଣ ଆସନ (ନନ୍ଦିକେଶ୍ୱରୀ), ରବିବିମ୍ବ ବିରଞ୍ଚିଙ୍କର ସୁବର୍ଣ୍ଣ ବ୍ରହ୍ମାଣ୍ଡ (ପାର୍ବତୀ), ଅଭ୍ର ସ୍ୱର୍ଣ୍ଣକାନ୍ତି, ସ୍ୱର୍ଣ୍ଣସିଂହାସନ (ଚିଲିକା) — ଏ ସବୁଥିରୁ ମନେହୁଏ : ଉପମାନ ସ୍ୱର୍ଣ୍ଣଛଡ଼ା କବି ଆଉ କିଛି ପାଇନାହାନ୍ତି ।

(ମହାନଦୀର ସପ୍ତକୋଶୀ, ମେଘାସନ, ମାଲ୍ୟଗିରି, ଗୋନାସା, ମୈନାକ, କପିଳାସ ଓ ପଞ୍ଚଧାରର ବର୍ଣ୍ଣନା), ମଧ୍ୟପ୍ରଦେଶର ଅରଣ୍ୟ ସଂକୁଳ ମାଳଭୂମି, ସାତପୁରା, ତାପ୍ତି ଓ ସହ୍ୟାଦ୍ରିର ବର୍ଣ୍ଣନା, କେଦାରଗୌରୀରେ ସନ୍ଧ୍ୟା ବର୍ଣ୍ଣନା ଏବଂ 'ଯଯାତିକେଶରୀ'ରେ ବିରଜାଦେବୀଙ୍କର ଦେବାଳୟ ପାଦଚ୍ଛ ପ୍ରକ୍ଷାଳିକା ପୂତନୀରା ବୈତରଣୀ ତୀରଭୂମିର ମନୋଜ୍ଞ ବର୍ଣ୍ଣନା ପ୍ରକୃତି ହେଉଛି ଏହାର ଦୃଷ୍ଟାନ୍ତ (୧୦) କାନନ ଓ ତପୋବନ ବର୍ଣ୍ଣନାରେ ରାଧାନାଥ ସଂସ୍କୃତ କବି ଭାସ, କାଳିଦାସ, ଦଣ୍ଡୀ, ବାଣଭଟ୍ଟ ଏବଂ ଇଂରାଜୀ କବି ବାଇରନ୍ (Child Haroldର ରାଇନ୍ ନଦୀ ତୀରବର୍ତ୍ତୀ କାନନ ବର୍ଣ୍ଣନା) ପ୍ରଭୃତିଙ୍କଠାରେ ଋଣୀହେଲେ ମଧ୍ୟ ସ୍ୱୀୟ ପ୍ରତିଭାର କାଉଁରୀ ସ୍ପର୍ଶରେ ସେଗୁଡ଼ିକ ସ୍ୱତନ୍ତ୍ର ମାଧୁର୍ଯ୍ୟ ମଣ୍ଡିତ ହୋଇଛନ୍ତି ।

ରାଧାନାଥଙ୍କ ପ୍ରକୃତିରେ ଦ୍ୱିତୀୟ ଉଲ୍ଲେଖଯୋଗ୍ୟ ବିଶେଷତ୍ୱଟି ହେଉଛି : ମାତୃଭୂମି ଅନୁରାଗ ଓ ଜାତୀୟତାବୋଧ । ଉତ୍କଳର ପ୍ରତ୍ୟେକଟି ତୀର୍ଥ, ପ୍ରତ୍ୟେକଟି ଐତିହାସିକ ସ୍ଥାନ କବିଙ୍କର ଯେପରି ପ୍ରିୟ ଉତ୍କଳ ପ୍ରକୃତିର ପ୍ରତିଟି ପରିଚିତ ଓ ଅପରିଚିତ ତଥା ଅବହେଳିତ ଦୃଶ୍ୟ ମଧ୍ୟ ତାଙ୍କର ପ୍ରିୟ ପୁଣି ଉତ୍କଳର ପ୍ରତିଟି ନଦୀ, ପ୍ରତିଟି ପର୍ବତ, ଅରଣ୍ୟ, ପୁଷ୍କରିଣୀ ଓ ହ୍ରଦ କବିଙ୍କର କଳ୍ପନା, କିମ୍ବଦନ୍ତୀ ପ୍ରିୟତା ଓ ବାସ୍ତବ ତଥା ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ରସାଣିତ ଲେଖନୀର ଅମୃତ ସ୍ପର୍ଶରେ ଅପୂର୍ବ ପ୍ରାଣବତ୍ତା ଲାଭ କରି ସତେ ଯେପରି ହସିଉଠିଛନ୍ତି । ଏପରିକି କେଉଁଠି ଗୋଟିଏ ଗୁଡ଼ିକ, କେଉଁଠି ଗୋଟିଏ କଇଁସାରି ଲତା କବିଙ୍କର ସୂକ୍ଷ୍ମ ସାରସ୍ୱତ ଦୃଷ୍ଟିକୁ ଏଡ଼ିଦେଇ ଯାଇପାରିନାହାନ୍ତି । ଅନ୍ଧକାରରେ ରହିଥିବା ଗଡ଼ଜାତର ଅରଣ୍ୟ ପ୍ରକୃତି କବିଙ୍କ ସାରସ୍ୱତ ସୃଷ୍ଟିରେ ଅମର ହୋଇ ରହିଯାଇଛି । ଉତ୍କଳ କମଳାଙ୍କର କେଳି-କାସାର ସ୍ୱରୂପିଣୀ ଚିଲିକାକୁ ନାୟିକାରୂପେ କଳ୍ପନାକରି ଏକ

---

(୧୦)

କମଳା ବିଳାସ ଭୂମି ତୋର ତୀର,
ଫଳ ଫୁଲ ଶସ୍ୟେ ସଦା ସୁରୁଚିର,
ନାରିକେଳ, ପୂଗ, ପନସ, ରସାଳ,
ମୁଚୁକୁନ୍ଦ, ଚମ୍ପା, କେଶର ତମାଳ ।
X X X
ପୁରାଣ ଶାଳ୍ମଳୀ ସୁବିଶାଳ କାୟ,
ଶ୍ୟେନଶ୍ୟେନୀ ଯହିଁ ରଚନ୍ତି କୁଳାୟ ।
ଗ୍ରାମଦେବତାଙ୍କ ମଣ୍ଡପ-ବିତାନ,
ସିନ୍ଦୂରିତ ପୁଷ୍ପଗୁଚ୍ଛେ ଗୋଡ଼ିବାଣ ।

ଶିବାଳୟ-ଉପକଣ୍ଠେ କନିଅର,
ସୁବର୍ଣ୍ଣ ଚଷକ-ଧର ମଧୁପର ।
X X X
ବୈଦୁର୍ଯ୍ୟ - କିରୀଟ - ଧାରୀ ତୁଙ୍ଗତାଳ
ସରୋବର ତୀରେ ଶୋଭେ ମାଳମାଳ ।
X X X
ବଟଦ୍ରୁମ ଯାର ଯୋଗ୍ୟ ପୁତ୍ରବତ,
ଭୂସ୍ପର୍ଶୀ ଓହଳ ସ୍ତମ୍ଭେ ପରିଣତ ।
(ଚିଲିକା)

ସ୍ୱତନ୍ତ୍ର କାବ୍ୟ ରଚନା କରିବାରେ ଏବଂ ଭାରତର ଅନ୍ୟାନ୍ୟ ପ୍ରାକୃତିକ ଦୃଶ୍ୟ ଅପେକ୍ଷା ଚିଲିକାର ଦୃଶ୍ୟକୁ ଉଚ୍ଚସ୍ଥାନ ଦେବାରେ କବିଙ୍କର ଦେଶପ୍ରୀତି ଅଧିକ ସମୁଜ୍ଜ୍ୱଳ ହୋଇ ଉଠିଛି । ପୁଣି 'ମହାଯାତ୍ରା'ରେ କବିଙ୍କର ଦେଶପ୍ରୀତି ମହାପ୍ରୟାଣ କାଳରେ ପାଣ୍ଡବମାନଙ୍କୁ ଲୌହିତ୍ୟା ନିକଟରୁ ନୀଳାଚଳ ପର୍ଯ୍ୟନ୍ତ ଆକର୍ଷଣ କରି ଆଣିଛି, କେବଳ ସେତିକି ନୁହେଁ, କବିଙ୍କର ନିସର୍ଗ-ଅନୁରାଗ ସେମାନଙ୍କୁ ଅଗ୍ନିଙ୍କ ସଙ୍ଗରେ ଉତ୍କଳ ଓ ମଧ୍ୟ ପ୍ରଦେଶର ରୁଦ୍ରକାନ୍ତ ଅରଣ୍ୟ ପ୍ରକୃତି ମଧ୍ୟଦେଇ ସହ୍ୟାଦ୍ରି ପର୍ଯ୍ୟନ୍ତ ଚଳାଇ ନେଇଛି । ରତ୍ନପୁରଠାରୁ ନୀଳାଚଳରେ ଦୋଳ ମହୋତ୍ସବ ଦିନ ଗଙ୍ଗେଶ୍ୱରଙ୍କର ବିଜୟ ସମ୍ବାଦ ଶୁଣାଇବା ପାଇଁ କବି ତାଙ୍କର 'ପାର୍ବତୀ' କାବ୍ୟରେ କୌଣସି ମନୁଷ୍ୟ ବାର୍ତ୍ତାବହର ପରିକଳ୍ପନା ନକରି ବିଜୟବାର୍ତ୍ତା ବାହକ ଅଗ୍ନିଶିଖାର କଳ୍ପନା କରିଛନ୍ତି, ପୁଣି ସେ ଅଗ୍ନିଶିଖା କିପରି ଉତ୍କଳର ବିଭିନ୍ନ ରାଜ୍ୟର ଅରଣ୍ୟ ଓ ପର୍ବତ ପ୍ରକୃତି ମଧ୍ୟରେ ନୀଳାଚଳ ପର୍ଯ୍ୟନ୍ତ ଗତି କରିବ, ତା'ର ଗତିପଥର ସୁନ୍ଦର ବର୍ଣ୍ଣନା କଞ୍ଚୁକୀ ମୁଖରେ ଦେଇ ଦେଶପ୍ରୀତିର ଅପୂର୍ବ ପରିଚୟ ଦେଇଛନ୍ତି । କୋଣାର୍କ ନିକଟସ୍ଥ ଚନ୍ଦ୍ରଭାଗା ନଦୀ ଓ ସାଗର ବେଳାଭୂମି, ଭୁବନେଶ୍ୱର ନିକଟସ୍ଥ ଅରଣ୍ୟ, ମହାନଦୀ ଓ କାଠଯୋଡ଼ୀର ନୈସର୍ଗିକ ଶୋଭା, ବିରଜାକ୍ଷେତ୍ର ନିକଟସ୍ଥ ବୈତରଣୀର ତୀରଭୂମିକୁ ଏବଂ ବାଲେଶ୍ୱର ନିକଟସ୍ଥ ନଦୀ, ପର୍ବତ ଓ ଅରଣ୍ୟର ଶୋଭାକୁ ନାନା ପୌରାଣିକ, ଐତିହାସିକ ଓ କିମ୍ବଦନ୍ତୀମୂଳକ ସ୍ମୃତି ବିଜଡ଼ିତ କରି ନିଜର କଳ୍ପନାରେ ଅମର କରିବା ପାଇଁ 'ଚନ୍ଦ୍ରଭାଗା', 'କେଦାରଗୌରୀ', 'ନନ୍ଦିକେଶ୍ୱରୀ' ଓ 'ଉଷା' ପ୍ରଭୃତି କାବ୍ୟର ପରିକଳ୍ପନା କରିଛନ୍ତି । ଓଡ଼ିଶାର ସମୁଦ୍ର ଉପକୂଳବର୍ତ୍ତୀ ଭୂମିରେ ପ୍ରକୃତି ଏହି କାବ୍ୟଗୁଡ଼ିକରେ ଜୀବନ୍ତ ହୋଇଉଠିଛି ।

ତୃତୀୟରେ ପ୍ରକୃତି ଉପରେ ମାନବିକତା ବା ବ୍ୟକ୍ତିତ୍ୱ ଆରୋପ । ସ୍ୱଭାବୋକ୍ତିର ବର୍ଣ୍ଣନାସହ ଏହି ବିଶେଷତ୍ୱଟି କବିଙ୍କ ପ୍ରକୃତି ସୃଷ୍ଟିରେ ବିଶେଷ ହୃଦୟଗ୍ରାହୀ । ଅବଶ୍ୟ ପ୍ରାଚୀନ ଓ ମଧ୍ୟଯୁଗର ଓଡ଼ିଆକାବ୍ୟରେ ପ୍ରକୃତି ଚିତ୍ରଣରେ ଯେ ଏହାର ଦୃଷ୍ଟାନ୍ତ ମିଳେ ନାହିଁ ତା' ନୁହେଁ, କିନ୍ତୁ ରାଧାନାଥଙ୍କ କୃତିରେ ଏ ବିଶେଷତ୍ୱଟି ଯେପରି ସ୍ୱାଭାବିକ ଓ ରସୋତ୍ତୀର୍ଣ୍ଣ ହୋଇଛି, ତାହା ପ୍ରାଚୀନ ଓ ମଧ୍ୟଯୁଗର କାବ୍ୟରେ କ୍ୱଚିତ୍ ପରିଲକ୍ଷିତ ହୁଏ । ଚିଲିକା କାବ୍ୟରେ ଚିଲିକା କେବଳ ଗୋଟିଏ ହ୍ରଦ ନୁହେଁ; ଏହା କବିଙ୍କର ସୌନ୍ଦର୍ଯ୍ୟ ସୃଷ୍ଟିରେ ହାସ୍ୟ ଓ ଲାସ୍ୟ ଚଞ୍ଚଳ ଏକ ଅନିନ୍ଦ୍ୟସୁନ୍ଦରୀ ଯୁବତୀ (ସଖୀ)

କବିଙ୍କ ଭାଷାରେ—

ଗୁରୁପ୍ରାୟେ ତାଙ୍କୁ ଦୂରୁଁ କରି ଭୀତି,
ସଖୀପ୍ରାୟେ ତୋତେ ସ୍ମରୁଥିଲି ନିତି ।

କବିଙ୍କର ପ୍ରକୃତି-ନାୟିକା ଚିଲିକା ଯେପରି ନିଜର ସ୍ନିଗ୍ଧ ରୂପୈଶ୍ୱର୍ଯ୍ୟରେ ସୌନ୍ଦର୍ଯ୍ୟ ପିପାସୁର ଚିତ୍ତ ଉଲ୍ଲସିତ କରିପାରେ, ସେହିପରି ପ୍ରଳୟଙ୍କରୀ ରଣଚଣ୍ଡୀ ମୂର୍ତ୍ତି ଧାରଣ କରି ଶତ୍ରୁ ସଂହାର କରିପାରେ (୧୧) କବିଙ୍କ କଳ୍ପନା ବଟଦ୍ରୁମର ଭୂସ୍ପର୍ଶୀ ଓହଳକୁ ତା'ର ଯୋଗ୍ୟପୁତ୍ର ରୂପେ, ସୂର୍ଯ୍ୟାସ୍ତ କାଳରେ ସ୍ୱର୍ଣ୍ଣାଚଳ ପରିହିତା ବାରୁଣୀକୁ ରାଣୀରୂପେ, ଭାଲେରୀ ଶିଖରରେ ଅସ୍ତଗାମୀ ରବିଙ୍କର ସ୍ୱର୍ଣ୍ଣାଭ କିରଣକୁ ଦେବ ବିକର୍ତ୍ତନଙ୍କର ସ୍ୱର୍ଣ୍ଣସିଂହାସନ ରୂପେ, ଗୋନାସା ପ୍ରଭବା ବୈତରଣୀକୁ ତୀରସ୍ଥ ବନଲକ୍ଷ୍ମୀଙ୍କର ମୁକୁର ଧାରିଣୀରୂପେ ମାନବୀୟ ଚରିତ୍ର ଭୂମିକାରେ ଉପସ୍ଥାପନ କରିଛି । କେବଳ ଏତିକି ନୁହେଁ, ରଘୁବଂଶରେ କାଳିଦାସଙ୍କ ପ୍ରକୃତି ପରି (୧୨) ରାଧାନାଥଙ୍କ ପ୍ରକୃତି ମାନବର ସୁଖ ଦୁଃଖରେ ସମବେଦନା ବି ପ୍ରକାଶ କରିପାରେ । ଭୀତି ବିହ୍ୱଳା ନିଃସହାୟା ଚନ୍ଦ୍ରଭାଗାର ବିକଳ ଦେଖି ବେଳାଭୂମିର ହରିଣଗୁଡ଼ିକ ମଧ୍ୟ ଉତ୍ପକ୍ଷ୍ମ ନୟନରେ ଦୁଃଖରେ ଚାହିଁରହି ସମବେଦନା ପ୍ରକାଶ କରୁଛନ୍ତି, କବିଙ୍କ ଭାଷାରେ—

ହରିଣ ଲୋଚନା ଏ ରୂପେ
ଧାଏଁ ଉତ୍ତର ମୁଖେ,
ଉତ୍ପକ୍ଷ୍ମ ଲୋଚନେ ହରିଣେ
ଦୂରୁଁ ଦେଖନ୍ତି ଦୁଃଖେ । (ଚନ୍ଦ୍ରଭାଗା)

ଏ କ୍ଷେତ୍ରରେ କବି ମାନବ ଓ ପ୍ରକୃତି ମଧ୍ୟରେ ନିବିଡ଼ ସୌହାର୍ଦ୍ଦ୍ୟ ସ୍ଥାପନ କରିଛନ୍ତି ।

ଚତୁର୍ଥରେ ରାଧାନାଥଙ୍କ ପ୍ରକୃତିରେ ପାଠକ ମହାଭାବ ଓ ଦ୍ୱୈତଭାବର ସଙ୍କେତ ମଧ୍ୟ ପାଇପାରେ । ଭାରତର ପ୍ରାକୃତିକ ବୈଚିତ୍ର୍ୟ ଦର୍ଶନ-କାଳରେ ଚିରତୁଷାରାଚ୍ଛାଦିତ ହିମାଳୟର ନୀରବ ନିସ୍ତବ୍ଧ ବିରାଟ ଦୃଶ୍ୟ, ରୁକ୍ଷ ଶୈଳ

(୧୧) ରୁଦ୍ରମୂର୍ତ୍ତି ତୋର ରଖୁ ତୁ ଘୋଡ଼ାଇ,
ଦୁରନ୍ତ ଉତ୍କଳ ପରିପନ୍ଥୀ ପାଇଁ ।
X X X
ଶତ୍ରୁ ଦେଖି ତୁହି ସେ ରୂପେ ଚିଲିକା,
ପ୍ରକଟୁ ପ୍ରଚ୍ଛନ୍ନ ଶକ୍ତି ମାରାତ୍ମିକା । (ଚିଲିକା)

(୧୨) ନୃତ୍ୟଂ ମୟୂରାଃ କୁସୁମାନି ବୃକ୍ଷା
ଦର୍ଭାନୁପାରାନ୍ ବିଦହୁର୍ହରିଣ୍ୟଃ ।
ତସ୍ୟାଃ ପ୍ରପନ୍ନେ ସମଦୁଃଖ ଭାବ—
ମତ୍ୟନ୍ତମାସୀ ଦ୍ରୁଦିତଂ ବନେଽପି । (ରଘୁବଂଶ)

ସମାକୁଳ ରାଜସ୍ଥାନର ମରୁସ୍ଥଳୀ, ଧୂଆଁଧାର ପ୍ରପାତର ଜଳଦଗମ୍ଭୀର ଭୈରବ ଆରବ, ଝିଲ୍ଲୀ ଝଙ୍କାରିତ ଦଣ୍ଡକାରଣ୍ୟ ଏବଂ ବାତ୍ୟା ଓ ଉର୍ମି ବିକ୍ଷୋଭିତ ସାଗରର ଭୀଷଣ ରୂପ କବିଙ୍କର ସ୍ତବ୍ଧ ବିସ୍ମିତ ଚିତ୍ତରେ ଜାତ କରିଥିଲା ଯେଉଁ ମହାଭାବ, ସେଇଥିରେ କବି ନିଜର ସତ୍ତା ଓ ଚିତ୍ତବୃତ୍ତିକୁ ହରାଇ ବସିଥିଲେ; କିନ୍ତୁ ଅବସନ୍ନ କାଳରେ ଶୋକ ପାସୋରା ଚିଲିକାର ସ୍ନିଗ୍ଧରୂପ ଓ ତାର ରମଣୀୟ ତୀର କବିଙ୍କ ପ୍ରାଣରେ ସ୍ୱର୍ଗୀୟ ତୃପ୍ତିର ସ୍ୱାଦ ଆଣି ଦେଇଛି, ଦ୍ୱୈତଭାବ ବା ଦ୍ରଷ୍ଟା ଓ ଦୃଶ୍ୟଭାବର ଦ୍ୟୋତନା ଦେଇ ପାରିଛି । ସେଥିପାଇଁ କବି ଲେଖିଛନ୍ତି —

ସ୍ନିଗ୍ଧରୂପ ତୋର ଚିତ୍ତ ଉଲ୍ଲାସକ,<br>
ସୁମଧୁର ଦ୍ୱୈତ-ଭାବର ଦ୍ୟୋତକ ।

ମାତୃଭୂମିର ପ୍ରକୃତି ପ୍ରତି ନିବିଡ଼ ଅନୁରାଗ ବା ଉଗ୍ର ଦେଶାତ୍ମବୋଧ ଏ ପ୍ରକାର କାବ୍ୟିକ-ମିଥ୍ୟାର କାରଣ ବୋଲି ମନେହୁଏ ।

ପଞ୍ଚମରେ ମାନବୀୟତାର ପୃଷ୍ଠଭୂମିରେ କେବଳ ପ୍ରକୃତିକୁ ଚରିତ୍ରର ଅନ୍ତର୍ଭୁକ୍ତ କରି କବି ନୀରବ ହୋଇ ଯାଇ ନାହାନ୍ତି; ତାହାଙ୍କର ପ୍ରକୃତି ପୁଣି ଉତ୍କଳର ଅତୀତର ଗୌରବାବହ ସ୍ମୃତିର ଉଦ୍‌ବୋଧିକା । ପ୍ରକୃତି-ନାୟିକା ଚିଲିକା କବିଙ୍କ ଚିତ୍ତରେ ଦେଶକାଳର ବ୍ୟବଧାନ ଦୂର କରିଦେଇ ଅତୀତର ଐତିହାସିକ ସ୍ମୃତିଗୁଡ଼ିକ ଜୀବନ୍ତ ଭାବରେ ତାଙ୍କର କଳ୍ପନା-ନେତ୍ର ସମକ୍ଷରେ ଉପସ୍ଥାପନ କରିଛି । କବି କଳ୍ପନାର ଏହି ଅନନ୍ତ-ଯୌବନା ସଖୀଟି (ଚିଲିକା) ଇତିହାସର ରଙ୍ଗସ୍ଥଳୀ (୧୩) ଏହାରି ଚିତ୍ତହରା ବେଳାଭୂମିରେ ଭକ୍ତ ଚିନ୍ତାମଣି ଜଗନ୍ନାଥ ଆଭିରୀ ମାଣିକାଠାରୁ ଲବଣୀ ଭକ୍ଷଣ କରିଥିଲେ । ଏହାରି ବକ୍ଷରେ ଉତ୍କଳର ଗଜପତି ରାଜା ପୁରୁଷୋତ୍ତମଦେବ କାଞ୍ଚିଜୟ କରି ନିଜର ପ୍ରେୟସୀ ପଦ୍ମାବତୀଙ୍କ ସହିତ ଗଜଦନ୍ତତରୀରେ ସଦଳବଳେ ନିଜର ପ୍ରିୟଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ପୁଣି

(୧୩) ତୋ ଦର୍ଶନେ କ୍ଷୁଦ୍ର ମନୁଷ୍ୟର ଚିତ୍ତ<br>
ଦେଶେ କାଳେ ହୁଏ ଦୂର-ବିସ୍ତାରିତ ।<br>
ଅତୀତର ତୁହି ସାକ୍ଷୀ ପୁରାତନ,<br>
ଦେଖିଲୁ ନରର ଉତ୍‌ଥାନ ପତନ ।<br>
X X X X X<br>
ଇତିହାସ ରଙ୍ଗସ୍ଥଳୀ ତୁ ଚିଲିକା,<br>
ତୋର ତୀରେ ପରା ଶ୍ରୀମତୀ ମାଣିକା-<br>
ହସ୍ତେ ଭୁଞ୍ଜିଥିଲେ ସାଦରେ ଲବଣୀ,<br>
ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି । (ଚିଲିକା)

ଅରଣ୍ୟବନ୍ତୀର ମଦରେ ଚନ୍ଦ୍ରକିତ ହୋଇଛି ଯେଉଁ ମହାନଦୀର ନୀର ସେ ପୁଣି ଐତିହାସିକ ବାରବାଟୀ ଦୁର୍ଗରେ ସଂଘଟିତ ହୋଇଥିବା ନଶ୍ୱର ମାନବର ଅଜସ୍ର ଗାରିମାମୟ ଲୀଳାର ପ୍ରତ୍ୟକ୍ଷ ଅଥଚ ନୀରବ ଦ୍ରଷ୍ଟା (ଦରବାର) । ଚିଲିକାର ସ୍ୱଭାବତଃ ରୁଦ୍ରାକାନ୍ତରୂପ ସହିତ ଏଇ ଐତିହାସିକ ସ୍ମୃତିଗୁଡ଼ିକ ତାଙ୍କୁ କବିର କଳ୍ପନାରେ ମହୀୟାନ୍ କରି ଥୋଇଛି ।

ଷଷ୍ଠରେ କବି ଚରିତ୍ରଗୁଡ଼ିକର ରୂପ ଗୁଣ, କ୍ରିୟାକଳାପ ଓ ମାନସିକ ଅବସ୍ଥା ସହିତ ସାମଞ୍ଜସ୍ୟ ରକ୍ଷାକରି ଘଟଣାବସ୍ତୁର ପରିବେଶ (Setting) କଳ୍ପନା କରିବା ଦ୍ୱାରା ପ୍ରକୃତି ବର୍ଣ୍ଣନା ପାଇଁ ଯଥେଷ୍ଟ ଅବସର ନିଜେ ସୃଷ୍ଟି କରିଛନ୍ତି । ଅନ୍ୟଭାବରେ କହିବାକୁଗଲେ ପ୍ରକୃତି (ବହୁକ୍ଷେତ୍ରରେ) ହେଉଛି ତାଙ୍କର ଚରିତ୍ରଗୁଡ଼ିକର ନାନା କ୍ରିୟାକଳାପର ପୃଷ୍ଠଭୂମି । ଚନ୍ଦ୍ରଭାଗା ଓ ନନ୍ଦିକେଶ୍ୱରୀ ପ୍ରଭୃତି କାବ୍ୟରୁ ଦୃଷ୍ଟାନ୍ତ ଉଦ୍ଧାର କରାଯାଇ ପୂର୍ବରୁ ଏହାର ଆଲୋଚନା କରାଯାଇଛି ।

ଶେଷରେ ରାଧାନାଥଙ୍କ କାବ୍ୟଗୁଡ଼ିକ ପାଠକରି ସାରିଲାପରେ କବିଙ୍କର ସମଗ୍ର ରଚନାର ଯେଉଁ ସାମୂହିକ ବିଶେଷତ୍ୱଟି ପାଠକ ଚିତ୍ତରେ ଗଭୀର ଛାପ ମୁଦ୍ରିତ କରେ ତାହା ହେଉଛି : ପ୍ରକୃତି ରୂପ ପିପାସୁ ସୌନ୍ଦର୍ଯ୍ୟ ଦ୍ରଷ୍ଟା କବି ରାଧାନାଥଙ୍କର ଦାର୍ଶନିକ ବ୍ୟକ୍ତିତ୍ୱ । କବିଙ୍କ ହୃଦୟର ମାତୃଶୋକ ଜନିତ କ୍ଷତରେ ଯେଉଁ ପ୍ରକୃତି ନିଜର ଶାନ୍ତ ବିବିକ୍ତ ମାଧୁର୍ଯ୍ୟ ତଥା ସୌନ୍ଦର୍ଯ୍ୟର ପ୍ରଲେପ ବୋଳି ଦେଇଥିଲା, ସେଇ ପ୍ରକୃତି ତାଙ୍କୁ କବି ତଥା ଭାବୁକ କରି ତାଙ୍କର ପରିଣତ ଚିତ୍ତରେ ସଂସାରର ତୀବ୍ର ଜ୍ୱାଳା ଯନ୍ତ୍ରଣା ମଧ୍ୟରେ ଦାର୍ଶନିକର ଗାମ୍ଭୀର୍ଯ୍ୟ ଆଣି ଦେଇଛି । ଜୀବନକାଳ ମଧ୍ୟରେ ରାଧାନାଥଙ୍କୁ ବହୁ ରୋଗଯନ୍ତ୍ରଣା, ମାନସିକ ତାପ ଓ ପ୍ରତିକୂଳ ପରିସ୍ଥିତି ମଧ୍ୟଦେଇ ଯିବାକୁ ହୋଇଥିଲା । ସେଥିପାଇଁ ତାଙ୍କର ରଚନାରେ ଅନେକତ୍ର ଶଙ୍କରଙ୍କ ପରି ସଂସାର ବିତୃଷ୍ଣଭାବ ପ୍ରକାଶ ପାଇବା ସଙ୍ଗେସଙ୍ଗେ କବି ନିଜକୁ ଭାଗ୍ୟର କ୍ରୀଡ଼ା ପୁତ୍ତଳିକା ମନେକରି ନେଇଛନ୍ତି । ସେଇ ହେତୁ କେହି କେହି କବିଙ୍କୁ ଦୁଃଖବାଦୀ ବା ନୈରାଶ୍ୟବାଦୀ ବୋଲି ଧରିନେଇଥା'ନ୍ତି । କିନ୍ତୁ ଆପାତତଃ ଦୁଃଖ ଓ ନୈରାଶ୍ୟର ଚିତ୍ର ତାଙ୍କ ରଚନାରେ ଥିଲେ ମଧ୍ୟ ତାଙ୍କର ଅସଲରୂପଟି ନୈରାଶ୍ୟବାଦୀ ନୁହେଁ । ଏହା ହୋଇଥିଲେ ସେ ସୃଷ୍ଟିର ନାରୀ ପୁରୁଷ ଓ ପ୍ରକୃତି ମଧ୍ୟରେ ସୌନ୍ଦର୍ଯ୍ୟର ସନ୍ଧାନ ପାଇ ନଥାନ୍ତେ; କବି ଭାବରେ ତାଙ୍କର ରସ ଓ ରୂପର ପିପାସା ଏଡ଼େ ତୀବ୍ର ହୋଇ ନ ଥାନ୍ତା । ରାଧାନାଥ ସ୍ୱଭାବତଃ ଥିଲେ ଶାନ୍ତ, ନମ୍ର, ନିରାଡ଼ମ୍ବର ଓ ନୀତିବାଦୀ । ଅବଶ୍ୟ କଳାର ଅନୁରୋଧରେ ସେ କେତେକଠି ରୁଚି ଓ ନୀତିକୁ ଉପେକ୍ଷା କରିଥିଲେ ମଧ୍ୟ (୧୪) ବ୍ୟାବହାରିକ

(୧୪) ଯଯାତିକେଶରୀ, ପାର୍ବତୀ ଓ ନନ୍ଦିକେଶ୍ୱରୀ ପ୍ରଭୃତିରେ ।

ଜୀବନରେ ସେ ସର୍ବଦା ସଚେତନ । ମଣିଷର ଅହମିକା, ଆଡ଼ମ୍ବର, ଐହିକ ନଶ୍ୱର ସୁଖ, ପଦ ଓ କ୍ଷମତା ଲାଳସାକୁ ସେ ନିଷ୍ଠୁରଭାବରେ ବିଦ୍ରୂପ କରିଛନ୍ତି (ଦରବାର) । ମଣିଷର ଭୋଗ ଓ ଲାଳସାମୟ ଜୀବନକୁ ସେ ଜୀବନ୍ତ ମରଣତୁଲ୍ୟ ଗ୍ରହଣ କରିଛନ୍ତି । ମଣିଷର ବିଷୟ-ପଙ୍କିଳ-ସୁଖ ତାଙ୍କ ଦୃଷ୍ଟିରେ ଥିଲା ଆକାଶ-କୁସୁମ; ସେଥିପାଇଁ କବି ଅତି କରୁଣ ଓ ଆବେଗ-ଜଡ଼ିତ ଚିତ୍ତରେ ଲେଖିଛନ୍ତି—

ଚିର ହା ହା ମୟ ଏ ଛାର ଜୀବନ,
ଜୀବନ ନୁହଇ ଜୀବନ୍ତ ମରଣ
X X X X
ସୁଖରୂପେ ଯାହା ଜନ ନେତ୍ରେ ଦିଶେ
ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ ।
ବସ୍ତୁ ନୁହଇ ସେ ଅଟଇଟି ଧୂମ,
ଅନ୍ୟନାମ ତାର ଆକାଶ କୁସୁମ । (ଚିଲିକା)

ଯେଉଁ ସୁଖର କାମନା ମନୁଷ୍ୟର ଅନ୍ତଃ-ସୌନ୍ଦର୍ଯ୍ୟ ବିକଶିତ କରେ, ମନୁଷ୍ୟକୁ ମୈତ୍ରୀ, ପ୍ରୀତି ଓ ଶ୍ରେୟର ସନ୍ଧାନଦେଇ ସଂସାରକୁ ମଧୁମୟ କରେ, ସେଇ ସୁଖ ହିଁ ରାଧାନାଥଙ୍କର କାମ୍ୟ । ସେଥିପାଇଁ ମୁନିଋଷି ନିଷେବିତ ତ୍ୟାଗ ତିତିକ୍ଷା ସମୁଜ୍ଜ୍ୱଳ ସତ୍ୟ ଶିବ ଓ ସୁନ୍ଦରର ଆଦର୍ଶକୁ ସଂସାରରେ ସେ ଦେଖିବାକୁ ଚାହିଁଛନ୍ତି; କିନ୍ତୁ ପଳାୟନପନ୍ଥୀର ପରାଜୟଜନିତ ଚିତ୍କାରରେ ଜୀବନକୁ ମୁଖରିତ କରି ସଂସାରରୁ ଚାଲିଯିବାପାଇଁ ଚାହିଁନାହାନ୍ତି । ପରିଣତ ଅବସ୍ଥାରେ ନାନା ପ୍ରତିକୂଳ ପରିସ୍ଥିତିରେ ଲୋକ ଚିତ୍ତରେ ସଂସାର ପ୍ରତି ବିତୃଷ୍ଣା ଆସିବା ସ୍ୱାଭାବିକ । ବିତୃଷ୍ଣାବିକଳ ପ୍ରୌଢ଼ କବିଙ୍କର ଶାନ୍ତି ଓ ସୌନ୍ଦର୍ଯ୍ୟ-ପିପାସୁ-ଚିତ୍ତ ପ୍ରକୃତିର ଚାରୁ ଆଲେଖ୍ୟଶାଳିକା ଚିଲିକା ତୀରରେ ଶାନ୍ତିରେ ପଶ୍ଚିମ ଜୀବନକୁ ଅତିବାହିତ କରିବାକୁ ଚାହିଁଛି; କିନ୍ତୁ ଦ୍ୱନ୍ଦ୍ୱ ବିକ୍ଷୁବ୍ଧ ସଂସାର ପୁଣି ତାଙ୍କୁ ଆକର୍ଷଣ କରି ନେଇଛି । ସେଥିପାଇଁ କବି ଆବେଗଜଡ଼ିତ ଚିତ୍ତରେ କହିଛନ୍ତି —

କରିଥିଲି ଆଶା କରିବି ଯାପନ,
ତୋ ପଶ୍ଚିମତୀରେ ପଶ୍ଚିମ ଜୀବନ ।
ବିନା ପ୍ରୟାସରେ ସୌନ୍ଦର୍ଯ୍ୟ ପିପାସା,
ମେଣ୍ଟିବାର ଥିଲା ତୋହ ଠାରେ ଆଶା ।
X X X X X X
ମାତ୍ର ପରିଣାମେ ଛାୟା ବାଜିବତ,
ଆଶାରେ ସେ ଆଶା ହେଲା ପରିଣତ । (ଚିଲିକା)

ଏଇ ଦ୍ୱନ୍ଦ୍ୱ ଜଟିଳ ସଂସାରରେ ତାଙ୍କ ପ୍ରାଣରେ ଏକମାତ୍ର ସାମୟିକ ଶାନ୍ତିର ଉତ୍ସ ହେଉଛି ଏଇ ଚିଲିକା ପ୍ରକୃତିର ମଧୁମୟୀ ସ୍ମୃତି —

ସଂସାର ନିରୟେ ଅଙ୍ଗ ଦେଇଢ଼ାଳି
କରିବି ଏହାକୁ ସ୍ମୃତିର ସଙ୍ଖାଳି ।          (ଚିଲିକା)

ସ୍ଥୂଳତଃ ରାଧାନାଥଙ୍କର ଜୀବନ ଦର୍ଶନ ଜୀବନ-ନିରପେକ୍ଷ ନୁହେଁ । ସେ ଜୀବନ ଚାହିଁଛନ୍ତି, କିନ୍ତୁ ସେ ଜୀବନ ପାପକଳୁଷିତ ବିକଳାଙ୍ଗ ଜୀବନ ନୁହେଁ— ମାନବିକତାରେ ମଧୁମୟ, ସତ୍ୟ ଶ୍ରେୟ ଓ ସୁନ୍ଦରରେ ସମୁଜ୍ଜ୍ୱଳ ସୁଧାମୟ ଜୀବନ । କବି ଜୀବନରେ ଏହାହିଁ ପ୍ରକୃତି ଉପାସନାର ଫଳ ।

ପ୍ରକୃତି ଚିତ୍ରଣରେ ରାଧାନାଥଙ୍କର ଏକ ଜାତୀୟ ଭାବ, ଭାଷା ଓ ଅଳଙ୍କାରର ଆପାତତଃ ପୁନରାବୃତ୍ତି ସତ୍ତ୍ୱେ ତାଙ୍କର କାବ୍ୟ ସମସାମୟିକ ନନ୍ଦକିଶୋର (ଶର୍ମିଷ୍ଠା), ଗଙ୍ଗାଧର, ଚିନ୍ତାମଣି ଏବଂ ପରବର୍ତ୍ତୀ କବି ଚନ୍ଦ୍ରମଣି (ଧାମରା), ଜୟକୃଷ୍ଣ (ଅଂଶୁପା) ପ୍ରଭୃତିଙ୍କୁ ବିଶେଷଭାବରେ ପ୍ରଭାବିତ କରିଛି । ଏ ଯାଦୁକରୀ ପ୍ରଭାବର କାରଣ କବିଙ୍କର ସୌନ୍ଦର୍ଯ୍ୟବୋଧ (ରୋମାଣ୍ଟିକ୍ ଦୃଷ୍ଟିଭଂଗୀ), ଦେଶପ୍ରୀତି, ପଦମାଧୁର୍ଯ୍ୟ, ରସୋତ୍ତୀର୍ଣ୍ଣ ବର୍ଣ୍ଣନାଚାତୁରୀ, ଅପୂର୍ବ ପ୍ରକାଶ ଭଙ୍ଗୀ ଏବଂ ସର୍ବୋପରି 'ଚିଲିକା'ରେ ଅବହେଳିତ ମାତୃଭାଷା ଓ ଅବହେଳିତ ମାତୃଭୂମିର ପ୍ରକୃତି ପାଇଁ କ୍ଷୋଭ । ରାଧାନାଥଙ୍କ କାବ୍ୟ ସୃଷ୍ଟିର ଆଦର୍ଶ ଓ ପରିପ୍ରେକ୍ଷୀରେ ଆଜି ବହୁ ପରିବର୍ତ୍ତନ ଘଟିଯାଇଛି; କିନ୍ତୁ ପ୍ରକୃତି ରୂପାୟନ କ୍ଷେତ୍ରରେ ତାଙ୍କର ନୂତନତ୍ୱର ବଳିଷ୍ଠ ସଙ୍କେତ ଆଜିବି ଅବିସ୍ମରଣୀୟ ।



# ଜୀବନ ବୃତ୍ତରେ କବି ରାଧାନାଥ

ଡଃ. ହେମନ୍ତ କୁମାର ଦାସ

କବିର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ, ଜୀବନ ସମ୍ପର୍କରେ ତାର ଅନୁଭବ ପ୍ରତିଫଳିତ ହୁଏ ତାର କାବ୍ୟରେ । ଏଥିରେ ଯେ କଳ୍ପନା ମିଶେ ନାହିଁ, ଏହା ନୁହେଁ । ତେବେ ବିଶ୍ୱାସର ମୂଳରୂପ ପ୍ରସ୍ତୁତ ହୁଏ ଜୀବନ ଦୃଷ୍ଟିରୁ । ରାଧାନାଥ ରୋମାଣ୍ଟିକ କବି ଥିଲେ । ସେ ଦେଶର ରୋମାଣ୍ଟିକ୍ କାବ୍ୟାଦର୍ଶକୁ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ କରିନେଇଥିଲେ । ତାଙ୍କ ନିଜ ଘୋଷଣା ଅନୁସାରେ ସେ 'ଜୟଦେବଙ୍କର ଚେଲା ନୁହନ୍ତି, ଭବଭୂତିଙ୍କର ଚେଲା' ଏବଂ 'ଭଞ୍ଜଙ୍କର ଜଣେ ଅନୁକାରୀ ପଦ୍ୟ ଲେଖକ' । ଏ ଉଭୟ କବିଙ୍କର ଯେତିକି ପ୍ରଭାବ ଆମେ ତାଙ୍କ ରଚନାରେ ପାଇବା, ଜୟଦେବଙ୍କର ପ୍ରଭାବ ମଧ ତାହାଠାରୁ ଊଣା ହେବ ବୋଲି ଆମର ମନେ ହେଉନାହିଁ । ତେବେ ତାଙ୍କର କାବ୍ୟାଦର୍ଶ ବହିରଙ୍ଗରେ ଏ ଦେଶର କାବ୍ୟରୂପ ସହିତ ସମ୍ପର୍କ ରଖୁଥିଲେ ହେଁ ଅନ୍ତରଙ୍ଗ ସମ୍ପୂର୍ଣ୍ଣ ଭାବରେ ସେ ଦେଶର ଆଦର୍ଶ ଦ୍ୱାରା ପ୍ରଭାବିତ ।

ଓଡ଼ିଶାରେ ରାଧାନାଥ ପରିଚିତ ଜଣେ ବିଷାଦବାଦୀ କବି ରୂପେ । ଏ ବିଷାଦର କାରଣ ମଧ ଆମର ସମାଲୋଚକମାନେ ନିରୂପଣ କରି ସାରିଛନ୍ତି । ସେଥିରୁ ଆମେ ଜାଣିବାକୁ ପାଇଛୁ ଯେ, ରାଧାନାଥଙ୍କର ବ୍ୟକ୍ତିଗତ ଦୁଃଖ ଦୁର୍ଦ୍ଦଶା ହିଁ ହେଉଛି ତାଙ୍କର କାବ୍ୟ ଦୃଷ୍ଟିର ନିୟାମକ । ବାଲ୍ୟକାଳରୁ ଆମୃତ୍ୟୁ ସେ ଯେତେ ଯେତେ ଦୁଃଖ ପାଇଥିଲେ, ତାହାହିଁ ତାଙ୍କର ଦୃଷ୍ଟିକୁ ବିଷଣ୍ଣ କରି ଦେଇଥିଲା । ଏଥିରେ ସତ୍ୟତା ଅବଶ୍ୟ ରହିଛି । ତେବେ ଏ ବିଷୟରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ରାଧାନାଥଙ୍କର ବ୍ୟକ୍ତିଗତ ଦୁଃଖ ହେଉଛି, ଏ ଦେଶର ଜଣେ ସାଧାରଣ ସଂସାରୀର ଦୁଃଖ । ତାଙ୍କର ସମସାମୟିକ ତିନିଜଣ ଲେଖକ ଫକୀରମୋହନ, ଗଙ୍ଗାଧର ଓ ମଧୁସୂଦନ ବ୍ୟକ୍ତିଗତ ଜୀବନରେ କିଛି କମ୍ ଦୁଃଖ ପାଇନାହାନ୍ତି । ଅନ୍ତତଃ ଫକୀରମୋହନଙ୍କ ଦୁଃଖ ହେଉଛି, ଏ ସମସ୍ତଙ୍କ ଦୁଃଖଠାରୁ ଅଧିକ ଗୁରୁତର । ଏଥିପାଇଁ ଏମାନେ କେହି ବିଷାଦବାଦୀ ହୋଇ ଯାଇ ନାହାନ୍ତି । ମଧୁସୂଦନଙ୍କ ବୈରାଗ୍ୟ ବ୍ୟଞ୍ଜକ ଦୃଷ୍ଟିଭଙ୍ଗୀ ମଧରୁ ଜୀବନ ପ୍ରତି ଏକ ବିପୁଳ ସମ୍ଭାବନାର ଇଙ୍ଗିତ ଅସ୍ପଷ୍ଟ ହୋଇ ରହିନାହିଁ । ଫକୀରମୋହନ ଦୁଃଖ ଭିତରୁ ସୁଖର

ସନ୍ଧାନ କରିଛନ୍ତି । ଗଙ୍ଗାଧର ସୁଖଦୁଃଖ ପ୍ରତି ସମଦୃଷ୍ଟି ପକାଇ ବାଟ ଚାଲିଛନ୍ତି । ରାଧାନାଥ ଦୁଃଖ ଏବଂ ନୈରାଶ୍ୟ ଆଡ଼କୁ ବେଶୀ ଢଳିବାର କାରଣ ତେଣୁ ତାଙ୍କର ଜୀବନ ଦୃଷ୍ଟି ନ ହୋଇ ଅନ୍ୟ କିଛିବୋଲି ଭାବିବାକୁ ପଡୁଛି । ଜୀବନ ସମ୍ପର୍କରେ ରାଧାନାଥଙ୍କର ଯାହା ଅନୁଭବ, ତାହାର ରୂପ ହେଉଛି ଏମିତି—

ଦୁଃଖଦଗ୍ଧ ଜ୍ଞାନ ଚକ୍ଷୁରେ ଜଗତ,
ସୁଖ ବୋଲି ଯାହା ଜନ ନେତ୍ରେ ଦିଶେ,
ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ
ବସ୍ତୁ ନୁହଇଁ ସେ ଅଟଇଟି ଧୂମ,
ଅନ୍ୟ ନାମ ତା'ର ଆକାଶ କୁସୁମ

ସୁଖର ଏଇ ସ୍ୱରୂପ ବିଶ୍ଳେଷଣରେ ଭାରତୀୟ ଦର୍ଶନ ସହିତ କବିଙ୍କର ଚିନ୍ତାଧାରାର କୌଣସି ବିରୋଧ ନାହିଁ । ଏଠାକାର ଚିନ୍ତାରେ ମଧ୍ୟ ସୁଖ ଅସ୍ଥିରପ୍ରଭ ବିଦ୍ୟୁତ୍ ଭଳି କ୍ଷଣିକ। ତା'ର ଚମକରେ ଚକ୍ଷୁ ଝଲସି ଉଠେ । ହୃଦୟ ଶିହରିତ ହୁଏ ସତ୍ୟ । ତେବେ ବିଦ୍ୟୁତ୍ ପଛର ବଜ୍ରଧ୍ୱନି ଭଳି ସୁଖର ଉପସ୍ଥିତି ଏକ ଅଜଣା ଆଶଙ୍କାର ସଞ୍ଚାର ମଧ୍ୟ କରିଥାଏ । ସୁଖର ସମ୍ଭାବନାରେ ଜୀବନ କଟାଇ ଦେବା ତେଣୁ ଏଠାକାର ପରମ୍ପରା ହୋଇଥାଏ । ତେବେ କବି ଯେତେବେଳେ ଲେଖନ୍ତି—

ଦୁଃଖଦଗ୍ଧ ଜ୍ଞାନ ଚକ୍ଷୁରେ ଜଗତ,
ଦେଖିବାରେ ମୁହିଁ ଅଭ୍ୟସ୍ତସତତ,
ଚିରଦିନ ଦୁଃଖ ପ୍ରହାରେ ଜର୍ଜର,
ପଟ୍ଟ ଶିଷ୍ୟ ମୁହିଁ ଦୁଃଖ ଗୁରୁଙ୍କର ।          କିମ୍ବା..
ଚିର ହାହାମୟ ଏ ଛାର ଜୀବନ,
ଜୀବନ ନୁହେଁ ଏ ଜୀବନ୍ତମରଣ ।

ଯେତେବେଳେ ଏ ଅନୁଭବର ମୂଳଉତ୍ସ ଅନ୍ୟ ଜାଗାରେ ଖୋଜିବାକୁ ପଡ଼େ । ସେଠାରେ ଭବଭୂତି ନୁହନ୍ତି, ଅନ୍ୟ ବିଦେଶୀ କବିମାନେ ହିଁ କବିଙ୍କର ଗୁରୁ ରୂପରେ ଦେଖା ପଡ଼ନ୍ତି । 'ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ'ର ଅନୁଭବ ସହିତ କବିଙ୍କ ବର୍ଣ୍ଣନାର ସାମଞ୍ଜସ୍ୟ ରହେ ନାହିଁ, କିମ୍ବା 'ସୁଖେଦୁଃଖେ ସମଂକୃତ୍ୱା'ର ବିଶ୍ୱାସ ସହିତ ମଧ୍ୟ ଏହାର କୌଣସି ସମ୍ପର୍କ ରୁହେ ନାହିଁ ।

ଗଙ୍ଗାଧରଙ୍କୁ ଗୋଟିଏ ପତ୍ରରେ କବି ଲେଖିଥିଲେ—''ଆବେଗ-ପ୍ରବଣ ହୃଦୟ ଦୁଃଖ-ବୀଜର ଉର୍ବର କ୍ଷେତ୍ର । ଏ ଅନୁଭବ କବିବରଙ୍କର ସମ୍ପୂର୍ଣ୍ଣ ନିଜସ୍ୱ । ସାଂସାରିକ, ଦୁଃଖକଷ୍ଟ କବିଙ୍କ ହୃଦୟରେ କିଭଳି ସହଜରେ ପଲ୍ଲବିତ ହେଉଥିଲା, ଏଠାରେ ତାହାର ସ୍ପଷ୍ଟ ସୂଚନା ମିଳୁଛି ।

କବି ଯେତେବେଳେ ସର୍ବଂକଷ 'କାଳ'ର ସ୍ତୁତିଗାନ କରି ଲେଖନ୍ତି –

ବଡ଼ କ୍ରୂର କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବ ସେ ଆଚମ୍ବିତେ ଆସି,
ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ,
ହସି ସେ ତା'ପଛେ ଆସି ଲୁଚିବସେ ---- କିମ୍ବା
ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ ସମସ୍ତଙ୍କ ଭାଗ୍ୟଡ଼ୋରି
ନିଜ ଭାଗ୍ୟ ଡୋରି କାଳହସ୍ତେ ଏହା ପକାନ୍ତି ହେଳେ ପାଶୋରି ।

କିମ୍ବା ଜୀବନ ସଂଗ୍ରାମର ଭୟାବହ ଚିତ୍ର ଦେଇ ଯେତେବେଳେ ଲେଖନ୍ତି —

ଦେଖ ଦେଖ ଅଗ୍ରତେ ସରସୀ ଜଳେ,
ପଡ଼ି ମଣ୍ଡୁକ କ୍ରୁର ଅହି କବଳେ,
ବିକଳେ ରାବୁ ରାବୁ ଉର୍ଦ୍ଧ୍ୱେ ଉଡ୍ଡୀନ
ଉହୁଙ୍କି ଶିଶୁକଙ୍କି ଦେଲା ଗିଳିଣ,
କାଳ କବଳେ ସିନା ଏରୂପେ ଥାଇ,
ନିୟତେ ନର ଘାରି ହେଉଣ ଥାଇ ।

ସେତେବେଳ ଆମେ ଜଣେ ସଂସାର ବିରକ୍ତ ଭାରତୀୟ ଦାର୍ଶନିକ କିମ୍ବା ସନ୍ନ୍ୟାସୀଙ୍କୁ ସ୍ପଷ୍ଟ ଦେଖିବାକୁ ପାଉଁ । ଦୁଃଖ ଆଉ ଯନ୍ତ୍ରଣା ସମ୍ପର୍କରେ ବାରମ୍ବାର କହି ସଂସାରୀମନକୁ ନିୟନ୍ତ୍ରଣରେ ରଖିବା ପାଇଁ ହିଁ ଭାରତୀୟ ସନ୍ଥମାନେ ବିଧାନ ଦେଇ ଯାଇଛନ୍ତି । ବୁଦ୍ଧଦେବ ଏହି କାରଣରୁ ତାଙ୍କର ଜୀବନଜିଜ୍ଞାସାର ପ୍ରଥମ ଚରଣରେ 'ମାନବ ଜୀବନ ଦୁଃଖ ପୂର୍ଣ୍ଣ' ବୋଲି କହି 'କାମନାର ବିନାଶରେ ଦୁଃଖର ବିନାଶ' ବୋଲି ସିଦ୍ଧାନ୍ତ କରିଛନ୍ତି । ଲକ୍ଷ୍ୟ କରାଯାଇପାରେ ଯେ ଏଠାରେ ଜୀବନପ୍ରତି ଏକ ସନ୍ନ୍ୟାସୀର ମନୋଭାବ ରହିଛି, ଯାହା ମୂଳତଃ ନୈର୍ବ୍ୟକ୍ତିକ । ସେଥିପାଇଁ ସମାଧାନ ମଧ୍ୟ ଦିଆଯାଇଛି । ମାତ୍ର 'ଜୀବନ ନୁହେଁ' ଏ ଜୀବନ୍ତ ମରଣ, ଭିତରେ ଏହାର ସୂଚନା ସୁଦ୍ଧା ଦେଖିବାକୁ ମିଳେ ନାହିଁ । ନୈର୍ବ୍ୟକ୍ତିକତା ବଦଳରେ ଏକ ବ୍ୟକ୍ତୀୟ ଚିନ୍ତା ହିଁ ସମଗ୍ର ବର୍ଣ୍ଣନାକୁ ଆବୋରି ବସିଛି । ଭାରତୀୟ ପରମ୍ପରାରେ ଜୀବନ ହେଉଛି ବିଶ୍ୱବିଧାତାଙ୍କର ଅମୂଲ୍ୟ ଦାନ । ତାକୁ ଶ୍ରଦ୍ଧାରେ ଗ୍ରହଣ କରିନେବାକୁ ହୁଏ । ତା' ପାଖରୁ ପଳାଇ ଯାଇ କିମ୍ବା ତାହା ସମ୍ପର୍କରେ ବିରୂପତା ପ୍ରକାଶ କରି ଜୀଇ ହୁଏ ନାହିଁ । ମୃତ୍ୟୁ ଯେହେତୁ ଆତ୍ମାର ଘଟ ପରିବର୍ତ୍ତନ, ତାକୁ ଶ୍ୟାମତୁଲ୍ୟ ବରଣ କରିନେବାକୁ ହୁଏ । ଏ ଦେଶର ନିରକ୍ଷରତମ ଅଧିବାସୀଟି ମଧ୍ୟ ଜାଣେ ଜୀବନରେ ସୁଆଦ ଅଛି, ଆନନ୍ଦ ଅଛି ।

ଗଙ୍ଗାଧରଙ୍କ ନିକଟକୁ କବି ଲେଖିଥିଲେ,''ଭାବ ପ୍ରଧାନ ପ୍ରକୃତିରେ ସୁଖ ଏବଂ ଦୁଃଖର ଅନୁଭବ ଅତି ତୀବ୍ର । ସଂସାରରେ ସୁଖ ଅପେକ୍ଷା ଦୁଃଖର ପରିଣାମ ଅନେକ ଅଧିକ । ସୁତରାଂ ଯେଉଁମାନଙ୍କର ପ୍ରକୃତି ଭାବପ୍ରଧାନ ସେମାନେ ପ୍ରାୟତଃ ଦୁଃଖୀ । X X X ଦାର୍ଶନିକତାର ଆଶ୍ରୟ ଗ୍ରହଣ ବ୍ୟତୀତ ଶାନ୍ତିଲାଭର କୌଣସି ଆଶା ନାହିଁ ।'' (କବି ଲିପି, ପୃଷ୍ଠା ୯୨, ୧୯୦୨ରେ ଲିଖିତ ପତ୍ର) ଦାର୍ଶନିକତାର ଆଶ୍ରୟ ନିର୍ଲିପ୍ତତାର ଅନ୍ୟ ଏକ ରୂପମାତ୍ର । କେବଳ ସାଧକମାନେ ହିଁ ଏହା ଆୟତ୍ତ କରିପାରନ୍ତି । ସଂସାରୀ ହୋଇ ଦୁଃଖଦତ୍ତ ଜ୍ଞାନଚକ୍ଷୁରେ ଜଗତ୍‌କୁ ଦେଖିବା କିମ୍ବା ପଦ୍ମପତ୍ରରେ ବାରିବିନ୍ଦୁ ତୁଲ୍ୟ ନିର୍ଲିପ୍ତ ଭାବକୁ ଗ୍ରହଣ କରିନେବା ବଡ଼ ସହଜ ନୁହେଁ । ତଥାପି ଭାରତୀୟ-ସାଧକମାନେ ସାଂସାରିକ ଦୁଃଖକଷ୍ଟରୁ ମୁକ୍ତି ଲାଭ କରିବା ପାଇଁ ଏଇ ବାଟଟିକୁ ଗ୍ରହଣ କରିନେବା ପାଇଁ ପରାମର୍ଶ ଦେଇଛନ୍ତି । ତେବେ ଦୁଃଖକୁ ସଂସାରର ସାରତତ୍ତ୍ୱ ମଣି ଜୀବନ କଟାଇବାର କଥାଟି ଏହା ଭିତରେ ଆସୁଛି କିମ୍ବା ନାହିଁ, ସେ ବିଷୟରେ ଆହୁରି ଚିନ୍ତା କରିବାକୁ ହେବ ।

ରାଧାନାଥଙ୍କର ସ୍ପଷ୍ଟ ଧାରଣା ଥିଲା, ''ମୋହୋର ମନେହୁଏ, ପ୍ରତ୍ୟେକ ଲୋକର ଘରେ ମୃତ୍ୟୁ ଶଯ୍ୟାର ଗୋଟିଏ ଭଲ ଚିତ୍ର ରହିବା ଉଚିତ୍ । ପ୍ରତ୍ୟହ ସ୍ମରଣ ହେଲେ ଲୋକେ ପାପୀ ହୋଇ ପାରନ୍ତି ନାହିଁ ।'' (ଆତ୍ମକଥାର କିୟଦଂଶ : ରାଧାନାଥ ଗ୍ରନ୍ଥାବଳୀ, ପୃଷ୍ଠା ୫୨୬) ମୃତ୍ୟୁର ଭୟଙ୍କର ଚିତ୍ର ଦିନରାତି ଆଖିଆଗରେ ରହିଲେ, ମଣିଷ ପାପ ଆଚରଣ କରିବ ନାହିଁ । ଏହାହିଁ ଥିଲା ତାଙ୍କର ଧ୍ରୁବ ବିଶ୍ୱାସ । ପାପାଚରଣ ମଣିଷକୁ ନର୍କର ପଥରେ ଅଗ୍ରସର କରାଇଦିଏ, ଯାହାର ପରିଣାମ ହେଉଛି ଦୁଃଖ । ସତ୍‌ଜୀବନଯାପନ ଦ୍ୱାରା ମଣିଷ ସୁଖର ସ୍ୱର୍ଗ ପାଇଥାଏ । ଉପରେ ରାଧାନାଥଙ୍କର ମାନସିକତାର ଅନୁଧ୍ୟାନ କରିବା ନିମନ୍ତେ ତାଙ୍କର ନିଜସ୍ୱ ରଚନାରୁ କିଛି କିଛି ଉଦ୍ଧାର କରାଗଲା । ଏଥିରୁ ରାଧାନାଥଙ୍କର ପରମ୍ପରାବାଦୀ ବିଶ୍ୱାସର ସ୍ପଷ୍ଟ ପରିଚୟ ମିଳୁଥିବାର ଦେଖାଯାଉଛି । ଦୁଃଖକୁ ଜୀବନର ଏକ ଅବଶ୍ୟମ୍ଭାବୀ ପରିଣାମ ରୂପରେ ଗ୍ରହଣ କରିନେବାରେ ମଧ୍ୟ ଅଭାରତୀୟ କିଛି ନାହିଁ । 'ଚିଲିକା' କାବ୍ୟକୁ ଛାଡ଼ିଦେଲେ, କବି ସୁଖ, ଦୁଃଖ, ଭାଗ୍ୟ, ଭବିତବ୍ୟ, ନିୟତି ସମ୍ପର୍କରେ ଯେଉଁଠି ଯାହା କହିଛନ୍ତି, ସେଥିରେ ମଧ୍ୟ ତାଙ୍କର ପାରମ୍ପରିକ ଚିନ୍ତାଧାରା ଉପରେ ପ୍ରଶ୍ନଚିହ୍ନ ଲଗାଇବାର କୌଣସି କାରଣ ନାହିଁ । ମାତ୍ର 'ଚିଲିକା'ର 'ଦୁଃଖବାଦ' ତଥା 'ଭବିଭୂତି'ଙ୍କର 'ଦୁଃଖବାଦ' ମଧ୍ୟରେ ଅନୁଭୂତିଗତ ଦୁସ୍ତର ଦୂରତ୍ୱ ରହିଯାଉଛି ।

କରୁଣରସକୁ ମୁଖ୍ୟରସର ମାନ୍ୟତା ଦେଇ ଭବଭୂତି ଲେଖିଲେ—

''ଏକୋ ରସଃ କରୁଣ ଏବ ନିମିତ୍ତ ଭେଦାନ୍
ଭିନ୍ନ ପୃଥକ୍‌ପୃଥଗିବାଶ୍ରୟତେଦିବର୍ତ୍ତାନ୍ ॥''

ସମସ୍ତ ରସର ମୂଳ ହେଉଛି କରୁଣରସ । ଭିନ୍ନ ଭିନ୍ନ ରୂପରେ ଏହା ପ୍ରତ୍ୟେକ ରସରେ ବିଦ୍ୟମାନ ଥାଏ । କାରୁଣ୍ୟରୁ ଦୁଃଖ ଏବଂ ଏହାହିଁ ହେଉଛି ଜୀବନର ଚରମ ଓ ପରମ ସତ୍ୟ । ଏହା ହିଁ ବୋଧହୁଏ ଥିଲା ରାଧାନାଥଙ୍କର ଧାରଣା । ସେଇଥିପାଇଁ ସେ ନିଜକୁ ଭବଭୂତିଙ୍କର ଚେଲା ବୋଲି ପରିଚିତ କରାଇଛନ୍ତି ଏବଂ କବି ଜୟଦେବଙ୍କର ଶିଷ୍ୟତ୍ୱକୁ ଅସ୍ୱୀକାର କରିଛନ୍ତି । ଶବ୍ଦଗୁମ୍ଫନ ଚାତୁରୀ, ଛାନ୍ଦସିକତା ଏବଂ ପ୍ରେମବର୍ଣ୍ଣନା ଯଦି ଜୟଦେବଙ୍କର କବିତ୍ୱର ବିଶେଷ ଦିଗ ହୁଏ, ତେବେ ଏସବୁ ରାଧାନାଥଙ୍କର କାବ୍ୟଧାରାରେ ଅନୁପସ୍ଥିତ ଥିଲା ବୋଲି କହି ହେଉ ନାହିଁ । ଭବଭୂତି ରାମସୀତାଙ୍କର ଉତ୍ତର ଜୀବନକୁ ନେଇ ନାଟକ ରଚନା କରିଛନ୍ତି । ମୃତ୍ୟୁ ଯେହେତୁ ଭାରତୀୟ ମଞ୍ଚର ଭରତ ନିର୍ଦ୍ଦେଶିତ ଏକ ନିଷିଦ୍ଧ ତତ୍ତ୍ୱ, ତେଣୁ ସେ ନିଜ ନାଟକରୁ ତାହାର ପରିହାର କରିଛନ୍ତି ଏବଂ ଏହା ପ୍ରତିଷ୍ଠିତ ତଥ୍ୟର ବିରୁଦ୍ଧାଚରଣ କରୁଥିବାରୁ କାରୁଣ୍ୟର ସପକ୍ଷରେ ଗୋଟିଏ ବିବୃତି ମାତ୍ର ଦେଇଛନ୍ତି । ଅନ୍ୟଥା ତାଙ୍କର ରଚନାବଳୀରେ ପାରମ୍ପରିକ ଜୀବନ ଦୃଷ୍ଟିରେ କୁତ୍ରାପି ବ୍ୟତ୍ୟୟ ହୋଇଥିବାର ଦୃଷ୍ଟିଗୋଚର ହୁଏ ନାହିଁ । ମାତ୍ର ରାଧାନାଥଙ୍କ କ୍ଷେତ୍ରରେ ତାହା ହୋଇ ନାହିଁ । ସେ ନିଜକୁ ଭବଭୂତିଙ୍କର ଅନୁଗତ ଶିଷ୍ୟ ରୂପରେ ଘୋଷଣା କରିଛନ୍ତି ସତ୍ୟ, ମାତ୍ର ତାଙ୍କର ଏବଂ ଭବଭୂତିଙ୍କର ଜୀବନ ସମ୍ପର୍କୀୟ ଅନୁଭବ ସମାନ ନୁହେଁ । ରାଧାନାଥଙ୍କ କ୍ଷେତ୍ରରେ ଏହି ଅନୁଭବରେ ସେ ଦେଶୀୟ ସଂସ୍କୃତି ଜନିତ ବାସ୍ତବବାଦର ପ୍ରଭାବ ଯଥେଷ୍ଟ ବେଶୀ ।

ଜୀବନର ଅବବୋଧ ବ୍ୟକ୍ତିଭେଦରେ ଭିନ୍ନ ହୋଇଥାଏ । କବି ପୁରୁଷର ଅନ୍ତର୍ଦୃଷ୍ଟି ହିଁ ତା'ର ସୃଷ୍ଟିର ରୂପ ନିର୍ଦ୍ଧାରଣ କରେ । ଏହାକୁ ହିଁ ଆଲୋଚକମାନେ ତା'ର ତୃତୀୟ ନୟନ ବୋଲି କହିଥାଆନ୍ତି । ଏହା ଯେତେ ଶାଣିତ ଏବଂ ସୂକ୍ଷ୍ମ ହେବ, ସୃଷ୍ଟି ସେତେ ଦୀପ୍ତିବନ୍ତ ଏବଂ ଭାବୋଜ୍ଜ୍ୱଳ ହେବ ବୋଲି କୁହାଯାଏ । କାବ୍ୟସତ୍ତା ଏବଂ ବ୍ୟକ୍ତିସତ୍ତା — ଏ ଉଭୟଙ୍କର ସମନ୍ୱୟରେ ପ୍ରସ୍ତୁତ ହୁଏ କବିର କାବ୍ୟ-ଦର୍ଶନ । କବିର ରୁଚି, ପାରିବାରିକ ସ୍ଥିତି, ଶିକ୍ଷାଦୀକ୍ଷା, ସାମାଜିକ ଅବସ୍ଥା— ଏ ସବୁର ମଧ୍ୟ ତା'ର ଅନୁଭୂତି ପ୍ରସ୍ତୁତିରେ କିଛି କିଛି ଅବଦାନ ରହିଥାଏ । ତେବେ ବହୁ ସମୟରେ ଦେଖାଯାଏ ଯେ, କବି ତା'ର ବ୍ୟକ୍ତି ଜୀବନର ଉର୍ଦ୍ଧ୍ୱକୁ ଉଠିଯାଏ । ମାର୍କସଙ୍କ ଭଳି ସଚ୍ଚା ଲେଖକ ନିଜ ଶ୍ରେଣୀ ଚେତନାକୁ ଚମତ୍କାର ଭାବରେ ଏଡ଼ାଇ ଯାଆନ୍ତି । ଟଲଷ୍ଟୟ, ଚେକଭ୍, ଏଭଳି କି ସେକ୍ସପିୟର୍ ମଧ୍ୟ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀର ପ୍ରତିନିଧିତ୍ୱ କରୁଥିଲେ ହେଁ ନିଜ ସୃଷ୍ଟିରେ ସର୍ବଦା ଏହାର ଉର୍ଦ୍ଧ୍ୱକୁ ଉଠିଯାଇ ଚିରନ୍ତନ, ଶାଶ୍ୱତ ସତ୍ୟର କଥା ହିଁ କହିଛନ୍ତି । ଏଥିରୁ ଏହା ହିଁ ସିଦ୍ଧାନ୍ତ କରିହେବ ଯେ, ଜୀବନ-ବୋଧ ସମାଜର ମଙ୍ଗଳ ଦୃଷ୍ଟିକୁ କଦାପି ଅତିକ୍ରମ କରିବା ଉଚିତ୍ ନୁହେଁ । ପ୍ରତିଭାଶାଳୀ ଲେଖକମାନେ ଅନ୍ତତଃ ଏହା କରନ୍ତି ନାହିଁ । ଜୀବନ

ପ୍ରତି ସେମାନଙ୍କର ଥାଏ ଖୋଲା ଏବଂ ସମ୍ବେଦନଶୀଳ ଦୃଷ୍ଟି । ମଣିଷ ପାଇଁ କ'ଣ ଭଲ ବା କ'ଣ ମନ୍ଦ ସେ ସମ୍ପର୍କରେ ନିଜସ୍ୱ ଧାରଣା ଥାଏ । କୌଣସି ଏକ ଘନ-ଘନିଷ୍ଠ ଅନୁଭବକୁ ସେ କେଉଁ ରହସ୍ୟମୟ ଉପାୟରେ ତା'ର ପାଠକମାନଙ୍କ ନିକଟରେ ପହଞ୍ଚାଇ ଦେବ, ଏ ସମ୍ପର୍କରେ ମଧ୍ୟ ତା'ର ନିଜର ଚିନ୍ତା ଥାଏ । କବିର ଯେହେତୁ ଅଛି ଏକ ସାମାଜିକ ଦୃଷ୍ଟି, ତେଣୁ ତା'ର ସୃଷ୍ଟିରେ ସମାଜର ବାସ୍ତବ ପରିସ୍ଥିତି ସହିତ ତା'ର ଅନୁଭୂତ ସତ୍ୟର ଏକ ରାକ୍ଷୀବନ୍ଧନ ଘଟାଯାଇଥିବା ଆଶା କରାଯାଏ ।

ଭବଭୂତି ଏବଂ ରାଧାନାଥଙ୍କ ଜୀବନ ଦୃଷ୍ଟିର ପାର୍ଥକ୍ୟର କାରଣ ସମ୍ପର୍କରେ କୁହାଯାଇପାରେ ଯେ, ଉଭୟ କବିଙ୍କର ଦୃଷ୍ଟିଭଙ୍ଗୀର ବିଶେଷ ସାମଞ୍ଜସ୍ୟ ନାହିଁ । ଅନୁମାନ କରାଯାଏ ଯେ, ଭବଭୂତି ନିଜର ସମାଲୋଚକମାନଙ୍କର କଠୋର ଆକ୍ଷେପର ଶରବ୍ୟ ହୋଇଥିଲେ । ତେଣୁ ସେମାନଙ୍କୁ ସତର୍କ କରାଇ ଦେଇ ସେ ଲେଖିଥିଲେ—

ଯେ ନାମ କେଚିଦ୍‌ହ ପ୍ରଥୟନ୍ତ୍ୟବଜ୍ଞାଂ
ଜାନନ୍ତୁ ତେ କିମପି ତାନ୍ ପ୍ରତିନୈଷଯତ୍ନଃ
ଉତ୍ପତ୍ସ୍ୟତେଽସ୍ତି ମମ କୋଽପି ସମାନଧର୍ମା
କାଲୋଽହ୍ୟୟଂ ନିରବଧି୍ ବିପୁଳା ଚ ପୃଥ୍ୱୀଃ ॥

ଏଠାରେ ଜୀବନ ପ୍ରତି, ସମୟପ୍ରତି, ସମଗ୍ର ସୃଷ୍ଟି ପ୍ରତି କବି ଚିତ୍ତର ଯେଉଁ ଗଭୀର ପ୍ରତ୍ୟୟ ପରିଲକ୍ଷିତ ହୁଏ, ତହିଁରୁ ହିଁ ଆଶାବାଦୀ କବିଙ୍କର ମାନସିକତାର ପରିଚୟ ମିଳିଥାଏ । ରାଧାନାଥଙ୍କ ଚିନ୍ତାରେ ଜୀବନ ଓ ଜଗତ ପ୍ରତି ଏଭଳି କୌଣସି ଆସ୍ଥାର ପରିଚୟ ମିଳେ ନାହିଁ । 'ଜୀବନ' କୁ 'ଜୀବନ୍ତ ମରଣ' ମାତ୍ର କହିଦେଇ ସେ ଏହାର ଭୟାବହ ରୂପଟିକୁ ପାଠକମାନଙ୍କ ନିକଟରେ ଅନାବୃତ କରିଦେଇଛନ୍ତି । ଏଥିରେ ଆଉ ଆଶାର ସନ୍ଧାନ କଲେ ହେବ କୁଆଡୁ ?

ଏଠାରେ ପ୍ରଶ୍ନ ହୋଇପାରେ ଯେ ଓଡ଼ିଆ କବିର ଅନୁଭବ ଯଦି ହୋଇଯାଏ, ବିଶ୍ୱଚେତନାର ଏ ଜାତୀୟ ଅନୁଭବର ଏକ ସମାନ୍ତରାଳ ରୂପ- ତାହାହେଲେ, ତାକୁ ଆମର ସଂସ୍କୃତି ବିରୋଧୀ ବୋଲି ଅପବାଦ ଦେବା ଉଚିତ ହେବ କି ? କିମ୍ବା ଆମର ସାମାଜିକ ଅନୁଭବର ପରିପ୍ରେକ୍ଷୀରେ ଏହା କେତେଦୂର ବିଶ୍ୱସନୀୟ ତାହା ପରୀକ୍ଷା କରି ଦେଖିବାକୁ ହେବ ? ଏଭଳି ପରୀକ୍ଷା ନିଶ୍ଚୟ ସ୍ପୃହଣୀୟ । ତେବେ ଓଡ଼ିଆ କବିର ଅନୁଭବରେ ବହିର୍ବିଶ୍ୱର ଚିନ୍ତା ଓ ଅନୁଭବର ଏ ଯେଉଁ ସାମ୍ୟ ପରିଲକ୍ଷିତ ହେଲା- ତାହା ନିଶ୍ଚୟ ତା'ର ଅଧ୍ୟୟନ, ମନନ ଓ ଚିନ୍ତନର ଫଳ ଏବଂ ଏ ଦେଶର ଅନୁଭବରେ ପ୍ରତିଫଳିତ ହେବା ସମ୍ଭବ ନୁହେଁ । ଯାହାର ମାଟି ଯେଉଁ ଦେଶରେ, ତା'ର ଫସଲ ମଧ୍ୟ ସେଇ ଦେଶର ଅନୁରୂପ ହେବ । ମାଟି ବଦଳିଲେ

ଫସଲର ରୂପ, ରସ, ଗନ୍ଧ ସବୁ ବଦଳିବ । ଏ ତ ଆକ୍ଷିର ଦେଖା । ଫଳକଥା ହେଉଛି, ରାଧାନାଥ ଭବଭୂତିଙ୍କ କାବ୍ୟ ଦୃଷ୍ଟି କଥା ନିଜେ ସ୍ୱୀକାର କରିଛନ୍ତି । ତାର ଯଥାର୍ଥତା ସମ୍ପର୍କରେ ଆମେ ଆଲୋଚନା କଲେ । ଭବଭୂତି କାରୁଣ୍ୟର କଥା କହିଥିଲେ ହେଁ, ଭାରତୀୟ ଆନନ୍ଦବାଦକୁ ଅସ୍ୱୀକାର କରି ନାହାନ୍ତି । ବିପୁଳା ପୃଥ୍ୱୀ ଏବଂ ନିରବଧି କାଳର ବଳୟ ମଧ୍ୟରେ ନିଜକୁ ଯୁଗଯୁଗଧରି ଅମର କରି ରଖିବାର ସ୍ୱପ୍ନ ଦେଖୁଥିବା କବି କେବେହେଲେ ନୈରାଶ୍ୟବାଦୀ ହୋଇ ପାରନ୍ତି ନାହିଁ । ରାଧାନାଥ ଯେତିକି ଇଂରାଜୀ ଶିକ୍ଷା ଲାଭ କରିଥିଲେ ତହିଁରେ ସେ ଦେଶର ପ୍ରମୁଖ କବିଙ୍କର ରଚନା ପାଠ କରି ସେଗୁଡ଼ିକର ମର୍ମ ଗ୍ରହଣ କରିବା, ତାଙ୍କ ପକ୍ଷରେ ଅସମ୍ଭବ ହୋଇ ନାହିଁ । ନିଜର ପାରମ୍ପରିକ ଅନୁଭବ ସହିତ ଏଇ ନୂତନ ଅନୁଭବ ମିଶିଯାଇ, ତାଙ୍କ ଦୃଷ୍ଟିର ଦିଗନ୍ତକୁ ପ୍ରସାରିତ କରିଛି । ପ୍ରଥାସିଦ୍ଧ ଜୀବନାନୁଭବକୁ ସେ ତ୍ୟାଗ କରି ପାରିନାହାନ୍ତି, ଏଣେ ନୂତନ ଅନୁଭବର ଆକର୍ଷଣ ଏଡ଼ାଇ ଯିବା ମଧ୍ୟ ସହଜ ହୋଇ ନାହିଁ । ବ୍ୟକ୍ତୀୟ ଅନୁଭବର ଜୀବନ ଏଇଠି ତାଙ୍କୁ ମନେ ହୋଇଛି 'ନୈରାଶ୍ୟ ପ୍ରେତର ବିକଟ ନର୍ତ୍ତନ' ତୁଲ୍ୟ ଭୟାବହ । ଏହା ପଛରେ ନିରବଚ୍ଛିନ୍ନ ଆନନ୍ଦର ଯେଉଁ ବିପୁଳ ସ୍ରୋତ ନିତ୍ୟ ପ୍ରବହମାନ ତାକୁ ସେ ଅନୁଭବ କରି ନାହାନ୍ତି, କିମ୍ବା ଅନୁଭବ କରିଥିଲେ ମଧ୍ୟ ପ୍ରକାଶ କରିବାକୁ ଚାହିଁ ନାହାନ୍ତି । ଏଇଠି କବି ଭାରତୀୟ ଦୃଷ୍ଟି ଓ ଦର୍ଶନଠାରୁ ଦୂରେଇ ଯାଇଛନ୍ତି ।

ଏହାଦ୍ୱାରା କବିବର ନିଜର ସଂସ୍କୃତି ପ୍ରତି, ଦେଶ ପ୍ରତି, ଜାତିପ୍ରତି କେତେଦୂର ଅନ୍ୟାୟ କରିଛନ୍ତି, ପ୍ରଶ୍ନ ଏଠାରେ ଆଦୌ ତାହା ନୁହେଁ । ସୃଷ୍ଟି ପାଇଁ ସବୁବେଳେ ନୂତନ ଚିନ୍ତା, ନୂଆ ଭାବ ଇତ୍ୟାଦି ସ୍ୱାଗତ ଯୋଗ୍ୟ । ଆମ ସମୟର କାବ୍ୟନାଟକ, ଗଳ୍ପ, ଉପନ୍ୟାସରେ ଏହାର ବହୁଳ ଆବାହନ ମଧ୍ୟ ଆମେ ଦେଖିଲୁଁ । କୁହାଯାଏ ଯେ, ପରମ୍ପରାହୀନ ସୃଷ୍ଟି ପାଇଁ ଅନୁକରଣ ବ୍ୟତୀତ ବାଟ ନଥାଏ । ପାଶ୍ଚାତ୍ୟ ସଂସ୍କୃତିର ସମ୍ପର୍କରେ ଆସିଲା ପରେ ଏବଂ ତା ସହିତ ଓତପ୍ରୋତ ଭାବରେ ଜଡ଼ିତ ହୋଇ ପଡ଼ିବା ପରେ, ପରମ୍ପରା ପ୍ରତି ବିଶ୍ୱସ୍ତ ରହିବାର କୌଣସି ଉପାୟ ନଥିଲା । ପରିବର୍ତ୍ତନର ପ୍ରକ୍ରିୟା ବହୁ ପୂର୍ବରୁ ଆରମ୍ଭ ହୋଇଥିଲା । ସେତେବେଳେ ତା'ର ଗତିଥିଲା ମନ୍ଥର, ସ୍ୱାଧୀନତା ପରେ ଏହା ତୀବ୍ର ହୋଇଛି, ପାର୍ଥକ୍ୟ-ଏତିକି ଯାହା । ରାଧାନାଥ ଅନ୍ୟ ଅନେକ ବ୍ୟାପାର ଭଳି ଏ କ୍ଷେତ୍ରରେ ମଧ୍ୟ ନୂତନତାର ଆବାହନ ପାଇଁ ପ୍ରଥମେ ଆଗେଇ ଆସିଲେ । ଅନୁଭବରେ ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହେଉଛି— ତାହା ଖୁବ୍ ତଳେଇ କରି ବିଚାର କରି ନ ଦେଖିଲେ ସହଜରେ ଧରା ପଡ଼ିବା କଥା ନୁହେଁ ମଧ୍ୟ । ଏଠାରେ ଦୁଃଖ ଆଉ ଯନ୍ତ୍ରଣାର ଅନ୍ତରାଳରେ ଦିବ୍ୟ ଆନନ୍ଦର ଯେଉଁ ଅଫୁରନ୍ତ ସ୍ରୋତ ବହି ଚାଲିଛି, ସେତିକି ମାତ୍ର ରାଧାନାଥଙ୍କର

ସ୍ୱୀକୃତି ପାଇ ନାହିଁ । ଏ ଅନୁଭବ ସହିତ ଏ ଦେଶର ଆଧ୍ୟାତ୍ମିକତାର ଅନ୍ତରଙ୍ଗ ଯୋଗାଯୋଗ ରହୁଛି । ଏଠି ମଧ୍ୟ ସେଇ ବିରୋଧାଭାସ ସ୍ପଷ୍ଟ ଆଖିରେ ପଡୁଛି ।

ଧର୍ମ ଏକା ସିନା ମହତ ପଣିଆ,
ଆଉ ସବୁକଥା ଅଢ଼େଇ ଦିନିଆ,
ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି,
ତରିବାକୁ ଏହି ସଂସାର ବାରିଧି ।

ପ୍ରଭୃତି କଥା ଲେଖିଥିବା କବି ଯେ ଭାରତୀୟ ଅଧ୍ୟାତ୍ମଚେତନାଠାରୁ ଦୂରବର୍ତ୍ତୀ ଥିଲେ, ଏକଥା କିଭଳି କୁହାଯାଇପାରିବ ? ତେବେ ଏ ପାର୍ଥକ୍ୟର ପ୍ରକୃତ କାରଣଟି କ'ଣ ?

ଆମ ବିଚାରରେ କବିବର ପ୍ରକୃତରେ ସେଇ ମଣିଷର କଥା କହିଛନ୍ତି, ଯେକୌଣସି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ନିଜକୁ ବନ୍ଦୀ କରି ରଖିବ ନାହିଁ । ଦେଶ କାଳ ପାତ୍ରର ଭୌଗୋଳିକ ସୀମା ଆଜିର ଦୁନିଆରେ ଏତେ ଅସାର ହୋଇ ଗଲାଣି ଯେ, ମଣିଷର ପରିଚୟ ଗୋଟିଏ ନିର୍ଦ୍ଦିଷ୍ଟ ମାଟିରେ ଖୋଜିବା ହାସ୍ୟାସ୍ପଦ ମନେ ହେଉଛି । ଦେଶୀ ଆଉ ବିଦେଶୀ ମଧ୍ୟରେ ଥିବା ପାର୍ଥକ୍ୟ ପ୍ରାୟ ଲୋପ ପାଇ ଯାଇଛି । ସେ ଦେଶରେ ଈଶ୍ୱରଙ୍କୁ ମୃତ ବୋଲି ଘୋଷଣା କରାଯାଇଥିବାର ପ୍ରତିଧ୍ୱନି ଏ ଦେଶରେ ଶୁଭୁଛି । ପରମ୍ପରା ଓ ପ୍ରଗତିର ବିରୋଧ ଏତେ କମିଗଲାଣି ଯେ, ମଣିଷ କେବଳ ମଣିଷର ପରିଚୟ ନେଇ ଆମ ଆଗରେ ଠିଆ ହେଉଛି । ଧୋତି ଚାଦର ପିନ୍ଧା ମଣିଷ ଆଉ ପ୍ୟାଣ୍ଟସାର୍ଟ ପିନ୍ଧା ମଣିଷ ଭିତରେ ବିଶେଷ କୌଣସି ପାର୍ଥକ୍ୟ ରହୁନାହିଁ । ରାଧାନାଥ କବି ହିସାବରେ ଜଣେ ଦ୍ରଷ୍ଟା ଥିଲେ । ସାର୍ବଜନୀନ ମଣିଷର ଦଶା ଭିତରେ ଯେ ଗୋଟିଏ ସମୟରେ କୌଣସି ପ୍ରଭେଦ ରହିବ ନାହିଁ, ତାହା ସେ ଊନବିଂଶ ଶତାବ୍ଦୀର ଶେଷ ପାଦରେ ବସି ମଧ୍ୟ ସ୍ପଷ୍ଟ ଅନୁଭବ କରି ପାରିଥିଲେ । ଆଦାନପ୍ରଦାନର ଧାରା ଦିନେ ଯେ ଅଧିକ ପ୍ରଖର ହେବ ଏବଂ ଦେଶକାଳ ପାତ୍ରର ଦୂରତ୍ୱକୁ ସମ୍ପୂର୍ଣ୍ଣ ଭାବେ ବିଲୁପ୍ତ କରିବ, ଏହା ସେତେବେଳେ ସେ ସ୍ପଷ୍ଟ ଅନୁଭବ କରି ପାରିଥିଲେ । ତାଙ୍କର ଅନୁଭୂତ ସତ୍ୟ ହୁଏତ ସେତେବେଳକାର ପରିସ୍ଥିତିରେ ଏଠାକାର ସାମାଜିକ ସତ୍ୟଠାରୁ ଦୂରବର୍ତ୍ତୀ ଥିଲା । ଧର୍ମ ପରମ୍ପରା ଐତିହ୍ୟ ବିବର୍ଜିତ ଛିନ୍ନମୂଳ ଯେଉଁ ମଣିଷର ରୂପଟିକୁ ସେ ସେଦିନ ଦେଖିଥିଲେ, ତାହା ହୁଏତ ସେ କାଳର ପାଠକମାନଙ୍କୁ ଅପରିଚିତ ମନେ ହୋଇଥିଲା । ମାତ୍ର ଆଜି ଆଉ ସେଭଳି କହିବାର କୌଣସି ଉପାୟ ନାହିଁ । ଏହା ଏକ ପ୍ରମାଣିତ ସତ୍ୟ ଯେ, କବି ନିଜ ସମୟର ପରିଧି ମଧ୍ୟରେ ରହି ଭବିଷ୍ୟତ ଆଡ଼କୁ ସତୃଷ୍ଣ ନୟନରେ ଅନାଇ ରହେ । ସେଠାରୁ ଯଦି କିଛି ସେ ଉପାଦାନର ସନ୍ଧାନ ପାଏ, ତାକୁ ହିଁ ଯତ୍ନର ସହିତ ନିଜର ପାଠକମାନଙ୍କ ପାଇଁ ସଜାଡ଼ି

ଥୋଇଦିଏ । ଆରିଷ୍ଟଟଲ କବିର ତ୍ରିବିଧ ଦାୟିତ୍ୱ ସମ୍ପର୍କରେ କହିବାକୁ ଯାଇ ଏଇ କଥାଟି ଉପରେ ବିଶେଷ ଭାବରେ ଆଲୋକପାତ କରିଛନ୍ତି । କବିର କର୍ମ ତିନି ପ୍ରକାରର । ପ୍ରଥମତଃ ବସ୍ତୁଟି ଯେପରି ଅଛି, ଦ୍ୱିତୀୟତଃ ବସ୍ତୁଟି ଯେପରି ଥିଲା ଏବଂ ଶେଷରେ ବସ୍ତୁଟି ଯେପରି ହେବା ଉଚିତ୍ — ଏହି ତିନୋଟି ସ୍ଥିତିକୁ ନେଇ ତା'ର କାରବାର । ଶେଷୋକ୍ତ ପ୍ରକ୍ରିୟାଟି ହେଉଛି 'ଔଚିତ୍ୟବାଦ' ଏବଂ ସମାଜ ସମ୍ପର୍କିତ ହୋଇଥିବାରୁ ଏହାଦ୍ୱାରା ହିଁ କଳାକୃତିର ମୂଲ୍ୟ ନିରୂପିତ ହୁଏ । ହୁଏତ ସେଇ ମୁହୂର୍ତ୍ତରେ ଏହା କେତେକଣଙ୍କ ପାଇଁ ଗ୍ରହଣୀୟ ହୋଇ ନ ପାରେ । ମାତ୍ର ଶେଷରେ ଦେଖାଯାଏ ଯେ, ଏହା ସାର୍ବଜନୀନ ମଣିଷର କଥା ହିଁ କହିଛି । ଏଇଠି ବିରୋଧର ପରିସମାପ୍ତି ଘଟେ ।

ରାଧାନାଥ ସେତେବେଳେ ଦୁଃଖ ଯନ୍ତ୍ରଣା ଜର୍ଜରିତ ଯେଉଁ ମଣିଷର ପ୍ରତିରୂପ କଥା କହିଥିଲେ, ନିଜ ଭିତରକୁ ଅନାଇ ସେ ଯେଉଁ ବ୍ୟସ୍ତ ବିକଳ ମଣିଷଟିର ପ୍ରତିରୂପ ଦେଖିବାକୁ ପାଇଥିଲେ, ସେତେବେଳେ ସେ ପାଠକମାନଙ୍କୁ ଅପରିଚିତ ମନେ ହୋଇଥିଲା । ତା' ଦେହରୁ ବିଦେଶୀ ମାଟିର ଗନ୍ଧ ବାହାରୁଥିଲା । ଆଜି ଶହେ ବର୍ଷ ପରେ ଆମେ ତା' ଭିତରେ ଆଉ ଆମ ଭିତରେ ଅନୁଭବର କୌଣସି ଦୂରତ୍ୱ ଦେଖି ପାରୁନାହିଁ । ଜୀବନ ସମ୍ପର୍କୀୟ ତା'ର ହାହାକାରର ସ୍ୱର ଗୋଟିଏ ଶତାବ୍ଦୀର ବ୍ୟବଧାନରେ ଆମ ନିଜ ହୃଦୟ ଭିତରେ ପ୍ରତିଧ୍ୱନିତ ହେଉଛି । ତା'ର ବ୍ୟାକୁଳତାକୁ ଆମେ ମର୍ମେ ମର୍ମେ ଅନୁଭବ କରିପାରୁଛୁ । ଦେଶୀବିଦେଶୀର ପ୍ରାଚ୍ୟ ପାଶ୍ଚାତ୍ୟର ପ୍ରଭେଦ ସମ୍ପୂର୍ଣ୍ଣ ରୂପେ ଲୁଚିଗଲା ପଡ଼ିଛି । ଏହା ହିଁ ହେଉଛି ପ୍ରକୃତ ଦ୍ରଷ୍ଟାର କାର୍ଯ୍ୟ । ରାଧାନାଥ ତାହା ହିଁ ଥିଲେ । କେଉଁଠୁ ଆଣିଲେ, କେତେ ଆଣିଲେ, ଆଜି ଆଉ ତାହା ସମସ୍ୟା ହୋଇ ରହି ନାହିଁ । ତାଙ୍କର ବକ୍ତବ୍ୟ ଆଜିର ପାଠକର ଠିକ୍ ପ୍ରାଣରେ ବାଜି ଉଠୁଛି । ଭବଭୂତିଙ୍କର "ସମୁତ୍ପସ୍ୟତେ ମମକୋଽପି ସମାନ ଧର୍ମା"- ଭବିଷ୍ୟତ୍‌ବାଣୀ ସମ୍ପୂର୍ଣ୍ଣ ସଫଳ ହୋଇଛି ଆଜିର ମଣିଷ ପାଖରେ । ସେ ଦିନ ବ୍ୟକ୍ତୀୟ ଦୁଃଖ କଷ୍ଟର ଅନ୍ତର୍ଦାହ ମଧ୍ୟରେ ପ୍ରତିନିୟତ ଜଳିଯାଉଥିବା ଅସହାୟ କବିଟିର ଅନ୍ତର୍ବେଦନା ବୁଝିବାକୁ ଆଜିର ମଣିଷର ବିଶେଷ କୌଣସି ଅସୁବିଧା ହେଉ ନାହିଁ । ଏହା ହିଁ ହେଉଛି କବିର ବାହାଦୁରୀ । ତାଙ୍କ ଚେତନାରେ 'ଭବଭୂତି' କେତେ ଥିଲେ, ସେଲିବାଇରନ୍ କୀଟସ୍‌ଙ୍କର ଯୋଗଦାନ କେତେ ଏ ସମସ୍ତ ପ୍ରଶ୍ନ ଅସାର ପ୍ରତିପନ୍ନ ହୋଇଛି । ତାଙ୍କର ଅନୁଭୂତ ସତ୍ୟ ଆଜି ସାର୍ବଜନୀନ ସାମାଜିକ ସତ୍ୟରେ ପରିଣତ ହୋଇଛି । ଏଇଥି ପାଇଁ ସେ କବିବର ହୋଇ ରହିବେ ।



# କବିବର ରାଧାନାଥଙ୍କ ପ୍ରଥମ ସୃଷ୍ଟି

ଶ୍ରୀ ବ୍ରଜନାଥ ରଥ

ସମ୍ବତ ୧୯୨୪, ଅର୍ଥାତ୍ ଖ୍ରୀଷ୍ଟାବ୍ଦ ୧୮୬୮ରେ ରାଧାନାଥଙ୍କ ପ୍ରଥମ ସୃଷ୍ଟି ବଙ୍ଗଳା 'କବିତାବଳୀ'ର ପ୍ରଥମ ଭାଗ ପ୍ରକାଶ ପାଇଥିଲା । ଏହାର ପ୍ରକାଶକ ଥିଲେ ରାଧାନାଥଙ୍କ ଘନିଷ୍ଠ ତଥା ସହପାଠୀ ବନ୍ଧୁ ଶ୍ରୀ ଦାମୋଦର ପ୍ରସାଦ ଦାସ ଓ କଲିକତାର ୧୧-୧, ବେଚୁଚାଟୁଚର୍ଯ୍ୟ ଷ୍ଟ୍ରୀଟ୍‌ରେ ଥିବା 'ନୂତନ ସଂସ୍କୃତ ଯନ୍ତ୍ର'ରେ 'ଶ୍ରୀ ହରିମୋହନ ମୁଖୋପାଧ୍ୟାୟ କର୍ତ୍ତୃକ' ମୁଦ୍ରିତ ହୋଇଥିଲା । ଏହାର ଆକାର ଥିଲା ଡିମାଇ ବାରପୃଷ୍ଠା ଏବଂ ପୃଷ୍ଠା ସଂଖ୍ୟା ଥିଲା ମାତ୍ର ୫୬ (ଉତ୍ସର୍ଗ ଓ ପ୍ରକାଶକଙ୍କ ବିଜ୍ଞାପନ ଇତ୍ୟାଦିକୁ ମିଶାଇ) । ସେତେବେଳକୁ ରାଧାନାଥଙ୍କୁ ମାତ୍ର ୨୦ ବର୍ଷ ବୟସ ଏବଂ ସେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ପ୍ରାୟ ପାଞ୍ଚବର୍ଷ କାଳ ତୃତୀୟ ଶିକ୍ଷକ ରୂପେ ଦକ୍ଷତାର ସହ ଶିକ୍ଷକତା କରିବା ପରେ ସେହି ୧୮୬୮ ମସିହା ଜାନୁୟାରୀ ୧୪ ତାରିଖରେ ପୁରୀ ଜିଲ୍ଲା ସ୍କୁଲକୁ ଦ୍ୱିତୀୟ ଶିକ୍ଷକ ରୂପେ ଉନ୍ନୀତ ହୋଇ ବଦଳି ହୋଇ ଯାଇଥାନ୍ତି । ଏହି 'ପ୍ରଥମ ସୃଷ୍ଟି'କୁ କବି ରାଧାନାଥ 'ମିତ୍ରବର ଶ୍ରୀଯୁକ୍ତ ବାବୁ ଦାମୋଦର ପ୍ରସାଦ ଦାସ ମହାଶୟଙ୍କୁ 'ଉପହାର' ସ୍ୱରୂପ ପ୍ରଦାନ କରିଥିଲେ । 'ପ୍ରକାଶକେର ବିଜ୍ଞାପନ' ସ୍ତମ୍ଭରେ ଏହି ମିତ୍ରବର ଦାମୋଦର ପ୍ରସାଦ ଦାସ କବିବନ୍ଧୁ ରାଧାନାଥଙ୍କ ସମ୍ପର୍କରେ ତଥା ଉକ୍ତ ପୁସ୍ତକ ସମ୍ପର୍କରେ ତିନିପୃଷ୍ଠାର ଯେଉଁ ଲେଖା ଲେଖିଥିଲେ ତାହା ବିଶେଷ ପ୍ରଣିଧାନଯୋଗ୍ୟ ।

ସେ ଲେଖିଥିଲେ—''ଆମାର ପ୍ରିୟତମ ବନ୍ଧୁ ଗ୍ରନ୍ଥକାର ଏଇ ପୁସ୍ତକେର ପାଣ୍ଡୁଲେଖ୍ୟ ଖାନି ଆମାକେ ଉପହାର ଦେନ । ଇହା ମୁଦ୍ରିତ କରିୟା ପ୍ରକାଶ କରିବାର ଉଦ୍ଦେଶେ ତିନି ଆମେକେ ଇହା ଦାନ କରେନ ନାଇ । ପ୍ରତ୍ୟୁତ ଆମି ଇହା ପ୍ରକାଶ କରିବ ଏଇକଥା ଶୁନିୟା ତିନି ବିରକ୍ତିଇ ପ୍ରକାଶ କରେନ, କାରଣ ତାଁହାର ଧ୍ରୁବ ପ୍ରତ୍ୟୟ ଆଛେ ଯେ ଦିନ ଦିନ ବଙ୍ଗଭାଷାର ଯେରୂପ ଉନ୍ନତି ଲକ୍ଷିତ ହଇତେଛେ ଓ ମହାମହା ବିଦ୍ୱାନ୍‌ଗଣ ଯଖନ ଗ୍ରନ୍ଥ ପ୍ରଣୟନେ ପ୍ରବୃତ୍ତ ହଇୟାଛେନ ତଖନ ତାଁହାର ନ୍ୟାୟ ଅଳ୍ପ ବୟସ୍କ ଯୁବକେର ପ୍ରଣୀତ ଗ୍ରନ୍ଥ ଜନମାନସେ ଅଗ୍ରାହ୍ୟ ଭିନ୍ନ କଖନଇ ଗ୍ରହଣୀୟ ହଇତେ ପାରେନା ।

ପ୍ରଥମତଃ ଏଇ ପୁସ୍ତକଖାନି ପ୍ରକାଶ କରିତେ ଆମାର ଓ ଅଭିପ୍ରାୟ ଛିଲନା, କିନ୍ତୁ କୟେକ ଜନବନ୍ଧୁର ପ୍ରବର୍ତ୍ତନା ପରତନ୍ତ୍ର ହଇୟା ପ୍ରକାଶ କରିତେ ବାଧ ହଇଲାମ । ଏଇ ପୁସ୍ତକ ସନ୍ନିବେଶିତ କବିତାଗୁଲି ଯେ ପାଠକ ମହାଶୟ ଗଣେର ହୃଦୟ ଗ୍ରାହିଣୀ ହଇବେ ସ୍ୱପ୍ନେ ଓ ଏ ପ୍ରକାର ଆଶା କରାଯାଇତେ ପାରେନା । କାରଣ ଗ୍ରନ୍ଥକାରେର ଏଇ ଗ୍ରନ୍ଥ ଖାନି ପ୍ରଥମ ଅଧ୍ୟବସାୟ— ସ୍ୱରୂପ ବୃକ୍ଷେର ପ୍ରସୂନ ମାତ୍ର, ଇତଃ ପୂର୍ବେ ତିନି ଏକଟିମାତ୍ର ଓ କବିତା ଲିଖେନ ନାଇ । ସୁତରାଂ ଅନଭ୍ୟସ୍ତ ଲୋକେର କୋନ କାର୍ଯ୍ୟଇ ଯେ ସର୍ବଙ୍ଗୀନ ସୁଚାରୁ ହୟନା, ଏକଥା ବଲାଇ ବାହୁଲ୍ୟ । ସେ ଯାହା ହଉକ ଏଇ ପୁସ୍ତକଖାନି ପ୍ରଚାରକରଣେର ଅଯୋଗ୍ୟ ହଇଲେ ଓ ପ୍ରକାଶ କରା ହଇଲ; ଏଖନ ପାଠକ ମହାଶୟ ଗଣେର ସମୀପେ ପ୍ରାର୍ଥନା ଯେ ତାଁହାରା ସ୍ୱ ସ୍ୱ ସଦାଶୟତା ଗୁଣେ ଆମାର ଚାପଲ୍ୟ ଜନିତ ଅପରାଧ ମାର୍ଜ୍ଜନା କରୁନ ।’’

ଏହି କବିତା ସଂକଳନରେ ସର୍ବମୋଟ ୫୧ଟି କବିତା ସ୍ଥାନିତ ହୋଇଥିଲା, ଯାହାର ପ୍ରଥମ କବିତା ଥିଲା ‘ବାଗ୍‌ଦେବୀ’ ଏବଂ ଶେଷ କବିତା ‘ଏକାଧାରେ ସବ ଗୁଣ ନାଇ’ । ସମସ୍ତ କବିତା ‘ସନେଟ୍’ ବା ‘ଚତୁର୍ଦ୍ଦଶପଦୀ’ ପର୍ଯ୍ୟାୟଭୁକ୍ତ । ଏହାପରେ ତାଙ୍କର ଆଉ ଦୁଇଟି ବଙ୍ଗଳା କବିତା ସଂକଳନ ‘କବିତାବଳୀ’ (୨ୟ ଭାଗ) ଓ ‘ଲେଖାବଳୀ’ ଯଥାକ୍ରମେ ୧୮୭୦ ଓ ୧୯୦୦ ମସିହାରେ ପ୍ରକାଶ ପାଇଥିଲା ।

ରାଧାନାଥ ଓଡ଼ିଆ କାବ୍ୟ ସାହିତ୍ୟର ଅନୁପମ ବିନ୍ଧାଣି । ରୀତିଯୁଗ ସଂଗୀତ ଯୁଗ ପରେ ଏହାକୁ ଆଧୁନିକତାର ସ୍ପର୍ଶଦେଇ ଅପୂର୍ବଶ୍ରୀ ମଣ୍ଡିତ କରିବାରେ ଅଗ୍ରଯଥିକୃତ୍ ରାଧାନାଥଙ୍କୁ ତାଙ୍କର ଅନନ୍ୟ ଅବଦାନ ପାଇଁ ୧୮୮୬ ମସିହାରେ ବାମଣ୍ଡାଧିପତି ସାର୍ ସୁଢ଼ଳଦେବ ‘କବିବର’ ଉପାଧିରେ ଭୂଷିତ କରିଥିଲେ ଏବଂ ତାଙ୍କୁ ରାଜୋଚିତ ସମ୍ମାନ ଜଣାଇବା ପାଇଁ ସେ ବାମଣ୍ଡାରେ ପହଞ୍ଚିବା କ୍ଷଣି ୧୧ଟି ତୋପ ସଲାମି ଦିଆଯାଇଥିଲା । ଓଡ଼ିଶାରେ ଏଭଳି ରାଜ-ସମ୍ମାନ ଅନ୍ୟକୌଣସି କବିଙ୍କର କ୍ଷେତ୍ରରେ ସମ୍ଭବ ହୋଇଚି ବୋଲି ମନେହୁଏନା । କିନ୍ତୁ ଯେଉଁ କବି ଓଡ଼ିଆରେ କାବ୍ୟ-କବିତା ରଚନା କରି ତାଙ୍କର ଏ ସାହିତ୍ୟକୁ ଅନନ୍ୟ ଅବଦାନ ପାଇଁ ‘କବିବର’ ଉପାଧିରେ କେବଳ ଭୂଷିତ ହେଲେନାହିଁ ଏକ କାବ୍ୟଧାରାକୁ କାଳକାଳ ପାଇଁ ନୂତନତାର ସ୍ପର୍ଶରେ ହିରଣ୍ମୟ କରିଗଲେ, ତାଙ୍କର ପ୍ରଥମ ସୃଷ୍ଟି ଯେ ବଙ୍ଗ ଭଷାରେ ରଚିତ ହୋଇଥିଲା ଏହା ହିଁ ବିସ୍ମୟକର ।

ରାଧାନାଥଙ୍କ ପୂର୍ବସୂରୀମାନେ ମରହଟ୍ଟା ଅମଳରୁ ବା ତା’ ପୂର୍ବରୁ ବଙ୍ଗଦେଶରୁ ଆସି ବହୁକାଳ ଧରି ଓଡ଼ିଶାରେ ଅବସ୍ଥାନ କରୁଥିଲେ ମଧ୍ୟ ତାଙ୍କ ଘରେ ମାତୃଭାଷା

ଭାବରେ ବଙ୍ଗଳା ପ୍ରଚଳିତ ଥିଲା । ବଙ୍ଗୀୟ କାୟସ୍ଥମାନଙ୍କ ସହିତ ବୈବାହିକ ସଂପର୍କ ମଧ୍ୟ ସ୍ଥାପିତ ହେଉଥିଲା । ତେଣୁ ନିଜ ମାତୃଭାଷା ତଥା ପାରିବାରିକ ଭାଷା ଭାବରେ ବଙ୍ଗଳା ପ୍ରତି ତାଙ୍କର ଅଧିକ ଆଗ୍ରହ ସୃଷ୍ଟି ହେବା ସ୍ୱାଭାବିକ । ତତ୍କାଳୀନ ବଙ୍ଗଳା କାବ୍ୟଜଗତର ଅନନ୍ୟ ପ୍ରତିଭା ମାଇକେଲ ମଧୁସୂଦନ ଦତ୍ତଙ୍କ କାବ୍ୟ-କବିତାମାନ ପଢ଼ି ସେ ବିଶେଷ ଭାବରେ ଉଦ୍‌ବୁଦ୍ଧ ଓ ପ୍ରଭାବିତ ମଧ୍ୟ ହୋଇଥିଲେ । ଯାହା ସେ ମାତ୍ର ୧୭/୧୮ ବର୍ଷ ବୟସରେ ପ୍ରଥମ କାବ୍ୟସାଧନା ସ୍ୱରୂପ ବଙ୍ଗଳାରେ କବିତା ଲେଖିବାକୁ ପ୍ରବୃତ୍ତ ହୋଇଥିଲେ ଏବଂ ଏହାର ପ୍ରଥମ ଫଳଶ୍ରୁତି ହିଁ ହେଉଛି କବିତାବଳୀ (ବଙ୍ଗଳା) । ଏହାପରେ ବଙ୍ଗଳାରେ ରଚିତ 'କବିତାବଳୀ'ର ଦ୍ୱିତୀୟ ଭାଗ ଏବଂ ଲେଖାବଳୀ ମଧ୍ୟ ପ୍ରକାଶ ପାଇଥିଲା । ରାଧାନାଥ ହୁଏତ ଆପଣାର ସାହିତ୍ୟ ସାଧନାକୁ ବଙ୍ଗଳା କାବ୍ୟ ସୃଷ୍ଟିରେ ଅବ୍ୟାହତ ରଖିଥାନ୍ତେ, ଯଦି ତାଙ୍କର ପରମ ହିତାକାଂକ୍ଷୀ, ଗୁଣଗ୍ରାହୀ ତଥା ତତ୍କାଳୀନ ଓଡ଼ିଶା ଓ ବିହାର ଡ଼ିଭିଜନର ସ୍କୁଲ ଇନ୍‌ସପେକ୍ଟର ଭୂଦେବ ମୁଖୋପାଧ୍ୟାୟ ତାଙ୍କୁ "ପ୍ରତ୍ୟେକ ଉତ୍କଳବାସୀଙ୍କର ଓଡ଼ିଆ ଭାଷାର ଉନ୍ନତି ବିଧାନରେ ବ୍ରତୀ ହେବା ଏକାନ୍ତ କର୍ତ୍ତବ୍ୟ" ବୋଲି କହି ନଥାନ୍ତେ । ଭୂଦେବଙ୍କର ଏହି ଉପଦେଶ ରାଧାନାଥଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସେ ଚିନ୍ତାକରି ଶେଷ ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ବଙ୍ଗଳାରେ ଲେଖି ତତ୍କାଳୀନ ବଙ୍ଗୀୟ କବିମାନଙ୍କ ସମକକ୍ଷ ହେବା ହୁଏତ ସହଜ ନୁହେଁ । ପୁଣି ଆଧୁନିକ ଓଡ଼ିଆ ସାହିତ୍ୟ ଅତ୍ୟନ୍ତ ଦୁର୍ବଳ । ଓଡ଼ିଆରେ ଲେଖି ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିବା ସଂଗେ ସଂଗେ ଏଠି ନିଜ ସାଧନାବଳରେ ନିଜର ଆସନକୁ ସୁଦୃଢ଼ କରିପାରିବା ଅଧିକତର ସହଜ ହେବ । ତେଣୁ ରାଧାନାଥ "ଓଡ଼ିଆ ରଚନାରେ ପ୍ରବୃତ୍ତ ହେବା ସକାଶେ ଦୃଢ଼ ସଂକଳ୍ପ ହେଲେ ।" ଭୂଦେବ ମୁଖୋପାଧ୍ୟାୟଙ୍କ ଉପଦେଶ, ତଥା ରଚିତ ସମୟରେ ଉଚିତ ସିଦ୍ଧାନ୍ତ ଗ୍ରହଣ କରି ରାଧାନାଥ ନିଜକୁ ପ୍ରକୃତ ବିବେକୀର ପରିଚୟ ଦେଇପାରିଛନ୍ତି ଏବଂ ଆଧୁନିକ ଓଡ଼ିଆ କାବ୍ୟ ଜଗତର ଯୁଗସ୍ରଷ୍ଟା ଆଖ୍ୟା ପାଇବାକୁ ସମର୍ଥ ହୋଇଛନ୍ତି ମଧ୍ୟ । ତାଙ୍କ ଶକ୍ତିଶାଳୀ ଲେଖନୀ ମୁନରେ ଓଡ଼ିଆ ସାହିତ୍ୟ ହୋଇଛି ବିପୁଳ ଧନଶାଳୀ ।

୧୮୯୭ ଜୁଲାଇ ୭ ତାରିଖ ସଂଖ୍ୟା 'ସମ୍ବଲପୁର ହିତୈଷିଣୀ' ରାଧାନାଥଙ୍କ ସଂପର୍କରେ ଲେଖିଥିଲେ– "କବିବର ଜଣେ ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତି । ସେ ଜାତିରେ ବଙ୍ଗାଳୀ ହେଲେ ସୁଦ୍ଧା ଆପଣାକୁ ଓଡ଼ିଆ ବୋଲି ପରିଚୟ ଦେବାରେ ଗୌରବବୋଧ କରନ୍ତି; ଓଡ଼ିଆଙ୍କୁ, ଓଡ଼ିଆ ସାହିତ୍ୟକୁ ସ୍ନେହ ଚକ୍ଷୁରେ ଦେଖନ୍ତି ।" ଏହି ଉକ୍ତିର ସତ୍ୟତା ପ୍ରତିପାଦିତ ହୁଏ ୨୯-୪-୧୯୦୦ ମସିହାରେ ଗଙ୍ଗାଧର ମେହେରଙ୍କୁ ଲିଖିତ ଏକ ପତ୍ରରୁ । ରାଧାନାଥ ଏହି ପତ୍ରରେ ନିଜେ ସ୍ୱୀକାର

କରିଛନ୍ତି– ''ମୋହୋ ପକ୍ଷରେ ବଙ୍ଗଳା ଏବଂ ଓଡ଼ିଆ ଉଭୟ ସମାନ । ତଥାଚ ଓଡ଼ିଆ ପ୍ରତି ପକ୍ଷପାତିତା ମୋହୋ ପକ୍ଷରେ ସ୍ୱାଭାବିକ ।'' ଓଡ଼ିଆ ପ୍ରତି ପକ୍ଷପାତିତା' ଯୋଗୁ ହିଁ ସେ ପ୍ରଥମେ ବଙ୍ଗଳାରେ ଲେଖିବାକୁ ଆରମ୍ଭ କରିଥିଲେ ମଧ ପରେ ଓଡ଼ିଆ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରି ସଫଳତାର ଶୀର୍ଷରେ ପହଞ୍ଚି ପାରିଥିଲେ ।

କବିବରଙ୍କ ପ୍ରଥମ ସୃଷ୍ଟି 'କବିତାବଳୀ' (ବଙ୍ଗଳା) ର କବିତାଗୁଡ଼ିକ ତାଙ୍କର କୈଶୋର ଅବସ୍ଥାରେ ହିଁ ରଚିତ । ସେତେବେଳେ ତାଙ୍କର ବୟସ ୧୭/୧୮ ବର୍ଷ ମାତ୍ର । ତାଙ୍କ ପ୍ରିୟ ସହପାଠୀ ତଥା ଏହି ପ୍ରଥମ ସୃଷ୍ଟିର ପ୍ରକାଶକ ଦାମୋଦର ପ୍ରସାଦ ଦାସଙ୍କ କହିବାନୁସାରେ ସେ ଏହା ପୂର୍ବରୁ ଗୋଟିଏ ମାତ୍ର କବିତା ଲେଖିନାହାନ୍ତି; ଏହି ଗ୍ରନ୍ଥଟି ତାଙ୍କ ପ୍ରଥମ ଅଧ୍ୟବସାୟ ସ୍ୱରୂପ ବୃକ୍ଷର ପ୍ରସୂନ ମାତ୍ର । ଯଦି ରାଧାନାଥଙ୍କ ଆଦି ସୃଷ୍ଟି ବଙ୍ଗଳା 'କବତାବଳୀ' (୧୮୬୮) ତାଙ୍କ ଅଧ୍ୟବସାୟ ରୂପକ ବୃକ୍ଷର ପ୍ରସୂନ ମାତ୍ର ହୁଏ, ତା'ହେଲେ ଫଳପ୍ରସୂ ହୋଇଛି ପରବର୍ତ୍ତୀ କାଳରେ ତାଙ୍କ ରଚିତ ଓଡ଼ିଆ କାବ୍ୟ କବିତାରେ । ତଥାପି ପ୍ରଥମ ପ୍ରସୂନର ରଙ୍ଗ ଓ ମହକକୁ ସ୍ୱୀକାର କରିବାକୁ ପଡ଼ିବ, କାରଣ ଏହାରି ଭିତ୍ତିଭୂମି ଉପରେ ଗଢ଼ି ଉଠିଛି କବିବରଙ୍କ ମହାନ୍ କାବ୍ୟ–କୋଣାର୍କ, ଯାହାର କଳା ଓ ସ୍ଥାପତ୍ୟରେ ମହୀୟାନ ଓଡ଼ିଆ କାବ୍ୟ ପରଂପରା ।

ରାଧାନାଥ ଜଣେ ବହୁପ୍ରସୂ କବି ନହେଲେ ମଧ୍ୟ, ଛାତ୍ର ଜୀବନରୁ ଶେଷନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ଥିଲେ ଜଣେ ବହୁପାଠୀ ବ୍ୟକ୍ତି । ଓଡ଼ିଆ, ବଙ୍ଗଳା, ଇଂରାଜୀ ଓ ସଂସ୍କୃତ ସାହିତ୍ୟର ଏଭଳି କୌଣସି ପୁସ୍ତକ ନଥିଲା, ଯାହାକୁ ସେ ଅଧ୍ୟୟନ କରି ନଥିଲେ । ଏହି ବହୁପାଠିତା ତାଙ୍କ ସୃଜନଶୀଳତାକୁ ଦେଇଥିଲା ଅପ୍ରମିତ ଶକ୍ତି ଓ ସାମର୍ଥ୍ୟ । ଖାଦ୍ୟର ନିର୍ଯ୍ୟାସ ଯେପରି ରକ୍ତ ମାଂସଅସ୍ଥି-ମଜ୍ଜାରେ ପରିଣତ ହୋଇ ଶରୀରର ଅଭିବୃଦ୍ଧିରେ ସହାୟକ ହୁଏ, ଠିକ୍ ସେହିପରି ଜଣେ ଶକ୍ତିଶାଳୀ ସ୍ରଷ୍ଟା ପକ୍ଷରେ ବହୁପାଠିତା ତାର ସୃଷ୍ଟିରେ ନିର୍ଯ୍ୟାସ ହୋଇ ମିଶିଯାଇ ସେହି ସୃଷ୍ଟିକୁ ଦିଏ ନବରୂପ, ଲାବଣ୍ୟ ଓ ଶକ୍ତି । ରାଧାନାଥଙ୍କ କ୍ଷେତ୍ରରେ ମଧ ତାହା ହିଁ ହୋଇଥିଲା । ସେ ବିଜ୍ଞ ଓ ବହୁପାଠୀ ହୋଇଥିବା ଯୋଗୁଁ ଯାହା ଆହରଣ କରୁଥିଲେ ତାର ନିର୍ଯ୍ୟାସକୁ ନିଜ ମୌଳିକ ସୃଜନଶୀଳତାରେ ସମନ୍ୱିତ କରି କାବ୍ୟରୂପରେ ପ୍ରକାଶ କରୁଥିଲେ । ପ୍ରତ୍ୟେକ କବି ତାଙ୍କର ପୂର୍ବବର୍ତ୍ତୀ କବିମାନଙ୍କ ଦ୍ୱାରା କିଛି ପରିମାଣରେ ପ୍ରଭାବିତ,'ଅନୁପ୍ରାଣିତ ଓ ଉଦ୍‌ବୁଦ୍ଧ ହେବାକୁ ବାଧ । ଏ ପ୍ରଭାବକୁ କେହି ଅସ୍ୱୀକାର କରିପାରିବେ ନାହିଁ । କିନ୍ତୁ କ୍ରମଶଃ ଏହି ପ୍ରଭାବରୁ ମୁକ୍ତ ହୋଇ ନିଜେ ନିଜର ପଥ ପ୍ରସ୍ତୁତ କରିବାରେ ହିଁ ରହିଛି ସଫଳ ସ୍ରଷ୍ଟାର କୃତିତ୍ୱ ।

ରାଧାନାଥ ପ୍ରଥମାବସ୍ଥାରେ ପ୍ରସିଦ୍ଧ ବଂଗୀୟ କବି ମାଇକେଲ ମଧୁସୂଦନ ଦତ୍ତଙ୍କ କାବ୍ୟଶୈଳୀ ଦ୍ୱାରା ଖୁବ୍ ବେଶି ଅନୁପ୍ରାଣିତ ହୋଇଥିବାର ଜଣାଯାଏ ଯାହା ପ୍ରତିଫଳିତ ତାଙ୍କର ଏହି ପ୍ରଥମ ସୃଷ୍ଟିରେ । ଏହା ହେବା ସ୍ୱାଭାବିକ ମଧ । କାରଣ ସେତେବେଳେ ମାଇକେଲ ହିଁ ହେଉଛନ୍ତି ବଂଗୀୟ କାବ୍ୟ-ଗଗନର ପ୍ରଚଣ୍ଡ ସୂର୍ଯ୍ୟ । ତାଙ୍କ ଆଲୋକରେ ଆଲୋକିତ ସମଗ୍ର ବଙ୍ଗଳାର ସାହିତ୍ୟଜଗତ । ମାଇକେଲଙ୍କ କାବ୍ୟଶୈଳୀ ହିଁ ଥିଲା ସେତେବେଳେ ଅଭିନବ ଓ ଆଧୁନିକ ଯାହା ତାଙ୍କ ପୂର୍ବବର୍ତ୍ତୀ ବଙ୍ଗୀୟ କବିମାନଙ୍କ ଶୈଳୀଠାରୁ ଥିଲା ସଂପୂର୍ଣ୍ଣ ଭିନ୍ନ । ପ୍ରତ୍ୟେକ ସମୟରେ ଯାହା ନୂତନ ଓ ଆଧୁନିକ ତାହା ପ୍ରତି ସାଧାରଣଙ୍କ ମୋହ ଥାଏ ଅଧିକ । ସେହି ଦୃଷ୍ଟିରୁ ରାଧାନାଥ ପ୍ରାଚୀନ ମଧ୍ୟଯୁଗୀୟ ସମୃଦ୍ଧ ଓଡ଼ିଆ କାବ୍ୟ ପରଂପରା ସହ ଜଣେ ମୁଗ୍ଧ ପାଠକ ଭାବରେ ନିବିଡ଼ ସଂପର୍କ ସ୍ଥାପନ କରିଥିଲେ ମଧ, ଯେତେବେଳେ ସ୍ରଷ୍ଟାର ଭୂମିକାରେ ଅବତୀର୍ଣ୍ଣ ହୋଇ ପ୍ରଥମେ ବଙ୍ଗଳାରେ ଲେଖିବାକୁ ଆରମ୍ଭ କଲେ ସେତେବେଳେ କିନ୍ତୁ ଆଧୁନିକତାର ମୋହରେ ମାଇକେଲଙ୍କୁ ଗୁରୁରୂପେ ବରଣ କରି ତାଙ୍କ କାବ୍ୟଶୈଳୀକୁ ଅନୁସରଣ କରିଛନ୍ତି । ସେଥିପାଇଁ ସେ ଏହି 'କବିତାବଳୀ'ରେ 'କବିବର ମଧୁସୂଦନ ଦତ୍ତ' ଶିରୋନାମାରେ ଯେଉଁ ସନେଟ ଲେଖିଛନ୍ତି, ସେଥିରେ ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି—

ସୁହାସିନୀ ବଙ୍ଗଭାଷା ! କୋମଳ ଚରଣେ
ଥିଲା ଯେ ନିଗଡ଼ ଏବେ ମଧୁର ଯତନେ
ଘୁଞ୍ଚିଲା; କବୀନ୍ଦ୍ର ମଧୁ ତବ ଖଗପତି ।
ନୂତନ କୁସୁମମାଳା ଗୁନ୍ଥି ସୁକୌଶଳେ
ଭୂଷିଲା ବରାଙ୍ଗ, ମଧୁ, ତୋର ଲୋ ସୁନ୍ଦରୀ !
ସ୍ୱଭାବ, ତାରକା-ଫୁଲ ନୀଳାମ୍ବର ତଳେ—''
ଫୁଟାଇ, ଭୂଷଇ ଯଥା ଯାମିନୀ କବରୀ ।। (ଓଡ଼ିଆ ଅନୁବାଦ)

ମାଇକେଲ ମଧୁସୂଦନଙ୍କ ଛନ୍ଦ, ଶବ୍ଦ ଚୟନ, ପଦବିନ୍ୟାସ ଓ ବର୍ଣ୍ଣନାଶୈଳୀକୁ ରାଧାନାଥ ଏହି ପ୍ରଥମାବସ୍ଥାରେ ଯେ କେତେ ପରିମାଣରେ ଅନୁସରଣ କରିବାକୁ ପ୍ରଲୁବ୍ଧ ହୋଇଛନ୍ତି, ତାହା ଯେ କେହି ପାଠକ ବା ସମାଲୋଚକ ଟିକିଏ ଅନୁଧାନ କଲେ ଜାଣିପାରିବେ । ଏହି ପ୍ରଥମ ସୃଷ୍ଟିରେ (କବିତାବଳୀ) ସେ ପ୍ରଥମେ 'ବାଗଦେବୀ'ଙ୍କୁ, ତା'ପରେ 'କଳ୍ପନାଦେବୀ' ଏବଂ ତୃତୀୟରେ କବିବର ମଧୁସୂଦନ ଦତ୍ତଙ୍କୁ ହିଁ ସ୍ମରଣ କରି ପରବର୍ତ୍ତୀ କବିତାମାନ ଗ୍ରଥିତ କରିଛନ୍ତି ।

ଏହି ସଂକଳନର ସମସ୍ତ କବିତା ସନେଟ୍ ବା ଚତୁର୍ଦ୍ଦଶପଦୀ । ବୋଧହୁଏ ଓଡ଼ିଶାରେ ରାଧାନାଥ ହିଁ ପ୍ରଥମେ ଅମିତ୍ରାକ୍ଷର ଛନ୍ଦ ଭଳି ସନେଟ ରଚନାରେ

ପ୍ରଥମ ସ୍ୱାକ୍ଷର ରଖିଛନ୍ତି, ଏହି ପ୍ରଥମ ସୃଷ୍ଟିରେ । ଏଥିରେ ତାଙ୍କ ଶୈଳୀ ଭଳି ଚିନ୍ତାଧାରାରେ ମଧ୍ୟ ଏକ ଅଭିନବତ୍ୱର ସନ୍ଧାନ ମିଳେ, ଯାହାକି ତାଙ୍କ ପୂର୍ବରୁ ଆଉ କେହି କବି ଓଡ଼ିଶାରେ ଏତେ ସ୍ପଷ୍ଟ ଭାବରେ କବିତାରେ ଲିପିବଦ୍ଧ କରିନାହାନ୍ତି । ତାହା ହେଉଛି 'ଜନ୍ମଭୂମି' ଓ 'ସ୍ୱାଧୀନତା' ପ୍ରତି ମମତ୍ୱବୋଧ । ୧୮୬୮ ମସିହାରେ ତାଙ୍କର ଏହି ପ୍ରଥମ ସୃଷ୍ଟି ପ୍ରକାଶ ପାଇଲାବେଳକୁ ଇଂରେଜ ରାଜତ୍ୱର ମଧ୍ୟାହ୍ନ-ସୂର୍ଯ୍ୟ ପ୍ରଚଣ୍ଡକିରଣ ବିକିରଣ କରୁଛି । ବିଦେଶୀ ଶାସନର କାଳ-ବନ୍ଧନରେ ନିପୀଡ଼ିତ, ଶୋଷିତ ଓ ନିର୍ଯ୍ୟାତିତ ଏ ଜାତି । ୧୮୫୭ର ସିପାହି ବିଦ୍ରୋହ ବା ପ୍ରଥମ ସ୍ୱାଧୀନତା ସଂଗ୍ରାମକୁ ଦୃଢ଼ ହସ୍ତରେ ଦମନ କରିବା ପରେ ଇଂରେଜ ଶାସକ ନିଜ ଆସନକୁ ଦୃଢ଼ କରିସାରିଥାଏ ଏ ଦେଶର ମାଟିରେ । ସାଧାରଣ ଲୋକେ ସେମାନଙ୍କ ବିରୋଧରେ ପଦେ ଉଚ୍ଚାରଣ କରିବାକୁ ମଧ୍ୟ ସାହସ କରୁ ନଥାନ୍ତି । ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ହେବାକୁ ଆହୁରି ଦୀର୍ଘଦିନ ବାକିଥାଏ । ଏଭଳି ଅବସ୍ଥାରେ ଜଣେ ୧୭/୧୮ ବର୍ଷର ତରୁଣ ସେହି ଇଂରେଜଶାସନ ଅଧୀନରେ ଚାକିରି କରୁଥିଲାବେଳେ 'ସ୍ୱାଧୀନତା'ର ଜୟଗାନ ଗାଇ, 'ଜନ୍ମଭୂମି'ର, ଦୁଃଖ-ଦୁର୍ଦ୍ଦଶାରେ ବ୍ୟଥିତ ହେବା ସଂଗେ ସଂଗେ ତାର 'ସର୍ବସ୍ୱ ହରଣ' କରି ତାର 'ଶୋଭାକୁ ବିନାଶ' କରୁଥିବା 'ଦୂରନ୍ତ ଯବନ' ବିରୋଧରେ କବିତା ରଚନା କରିବା କମ୍ ସାହସର ପରିଚୟ ନୁହେଁ । ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଆରେ ଲିଖିତ ଏବଂ 'ଉତ୍କଳ ଦର୍ପଣ' (ଦେଜ୍ ଉତ୍କଳପ୍ରେସ, ବାରବାଟୀ, ବାଲେଶ୍ୱର) ରେ ପ୍ରକାଶିତ ତାଙ୍କ, 'ଶିବାଜୀଙ୍କ ଉତ୍ସାହବାକ୍ୟ'ରେ ମଧ୍ୟ ଏହି 'ଯବନ ବିରୋଧୀ' (ବିଦେଶୀ-ବିରୋଧୀ) ସ୍ୱର ଆହୁରି ତୀବ୍ର ଓ ଶାଣିତ ଭାଷାରେ ଉଚ୍ଚାରଣ କରିଛନ୍ତି ରାଧାନାଥ । ଏ କବିତାଟି ଓଡ଼ିଆ 'କବିତାବଳୀ' (୧୮୭୬) ରେ ମଧ୍ୟ ସ୍ଥାନିତ ହୋଇଥିଲା । ପରେ ରାଧାନାଥ ତାଙ୍କର ଶ୍ରେଷ୍ଠକୃତି 'ମହାଯାତ୍ରା' ର ୫ମ ସର୍ଗରେ ମଧ୍ୟ ଭାରତକୁ ଯବନ (ବିଦେଶୀ) ମାନଙ୍କ ଆଗମନ ଓ ଆର୍ଯ୍ୟ ସଂସ୍କୃତିର ବିଲୋପ ସାଧନ ସଂପର୍କରେ କେତେକ ପଙ୍କ୍ତି ଲେଖିଥିଲେ । ଏ ବିଷୟ ରାଧାନାଥଙ୍କ କୌଣସି ଜଣେ ବିରୋଧୀ ବ୍ୟକ୍ତି ୧୮୯୯ ମସିହାରେ ସରକାରଙ୍କୁ ଗୁପ୍ତରେ ଜଣାଇଦେବାରୁ ତାଙ୍କୁ କୈଫିୟତ୍ ମଗାଯାଇଥିଲା । ଏହାର ଭାଷା ଅତ୍ୟନ୍ତ ଆପତ୍ତିଜନକ ଏବଂ 'ବିଦେଶୀ ଯବନ' ଅର୍ଥ 'ଇଂରେଜ ସରକାର' ବୋଲି ଉଲ୍ଲେଖ କରାଯାଇଥିଲା । ଏହା ଉଚ୍ଚ ପଦବୀରେ ଥିବା ରାଧାନାଥଙ୍କୁ ଖୁବ୍ ମର୍ମାହତ କରିଥିଲା । ସେ ପରବର୍ତ୍ତୀ ସଂସ୍କରଣରେ ଏହିସବୁ 'ଆପତ୍ତିଜନକ' ଅଂଶ ଉଠାଇ ଦେଇଥିଲେ । 'ମହାଯାତ୍ରା'ର ୮ମରୁ ୧୨ଶ ସର୍ଗ ପର୍ଯ୍ୟନ୍ତ ଲିଖିତ ପାଞ୍ଚୋଟି ସର୍ଗକୁ ନିଆଁରେ ଜାଳିଦେବା ସଂଗେ ସଂଗେ ପରବର୍ତ୍ତୀ ସର୍ଗଗୁଡ଼ିକୁ ଆଉ ନ ଲେଖିବାକୁ

ସିଦ୍ଧାନ୍ତ ଗ୍ରହଣ କରିଥିଲେ । କିନ୍ତୁ ଏସବୁ ସତ୍ତ୍ୱେ ପ୍ରଥମ ସୃଷ୍ଟିବେଳୁ ତାଙ୍କ ଭିତରେ ଯେ ଏକ ସ୍ୱାଧୀନ ମନୋବୃତ୍ତି ଓ ସ୍ୱଦେଶପ୍ରୀତି ଭରି ରହିଥିଲା ତାର ସମ୍ୟକ୍ ସୂଚନା ଦିଏ ବଙ୍ଗଳା 'କବିତାବଳୀ' । ପ୍ରସଙ୍ଗ କ୍ରମେ ଏହି ସଂକଳନର ଦୁଇଟି କବିତା 'ସ୍ୱାଧୀନତା' ଓ 'ଜନ୍ମଭୂମି'ରୁ କେତୋଟି ପଙ୍‌କ୍ତି ଉଦ୍ଧାର କରାଯାଇପାରେ–

''ସଂସାରର ସୁଖରାଶି ଯଦି ଅବା କେହି
ଗୃହେ ପାଏ, ଯଦି ସିଏ କୋଟିପତି ହୁଏ
କିନ୍ତୁ ଯଦି ନ ପାଏ ତା' ସ୍ୱାଧୀନତା-ଧନ
ମୋ ମତରେ ସିଏ କେବେ ନୁହଁଇ ତ ସୁଖୀ ।
ସ୍ୱାଧୀନତା ! ତବ ସୁଖୁଁ ବଞ୍ଚିତ ଯେ ଜନ
ବିଫଳ ଜନମ ତା'ର ବିଫଳ ଜୀବନ ।''

(ସ୍ୱାଧୀନତା-ଓଡ଼ିଆ ରୂପାନ୍ତର)

''କି ନଥିଲା ଘରେ ତୋର କହ ଗୋ ଜନନୀ
କି ନଥିଲା ! ହାୟ ମାତା କେଉଁଠି ସେ ସବୁ ?
କେଉଁଠି ଏବେ ସେ ମୁକ୍ତା, ସ୍ୱର୍ଣ୍ଣ, ହୀରା, ମଣି ?
ନନ୍ଦନକାନନ ଯଥା ଲୁଟି ରକ୍ଷଦଳ
ବିନାଶେ ତାହାର ଶୋଭା, ଦୁରନ୍ତ ଯବନ
କରିଛି ଜନନୀ ତବ ସର୍ବସ୍ୱ ହରଣ ।''

(ଜନ୍ମଭୂମି-ଓଡ଼ିଆ ରୂପାନ୍ତର)

ଏହି ବଙ୍ଗଳା 'କବିତାବଳୀ'ରେ ବଂଗୀୟ କବି ଭାରତଚନ୍ଦ୍ର, ରଙ୍ଗଲାଲ ବନ୍ଦୋପାଧ୍ୟାୟ ଓ ମଧୁସୂଦନ ଦତ୍ତଙ୍କ ଉଦ୍ଦେଶ୍ୟରେ ରଚିତ କବିତା ପତ୍ରସ୍ଥ ହୋଇଥିଲା ବେଳେ ପ୍ରାଚୀନ ଓଡ଼ିଆ କବି ଉପେନ୍ଦ୍ରଭଂଜ, ଦୀନକୃଷ୍ଣ, ଅଭିମନ୍ୟୁଙ୍କ ସଂପର୍କରେ ମଧ୍ୟ ଅତି ଉଚ୍ଛ୍ୱସିତ ପ୍ରଶଂସା ସମ୍ବଳିତ କବିତା ସ୍ଥାନିତ ହୋଇଛି । ଉଭୟ ଭାଷାର ପୂର୍ବସୂରୀମାନଙ୍କ ପ୍ରତି କବିଙ୍କର ଶ୍ରଦ୍ଧା ଓ ସମ୍ମାନବୋଧ ଏଥିରୁ ସୂଚିତ ହେବା ସଂଗେ ସଂଗେ ପ୍ରାଚୀନ ଓଡ଼ିଆ କାବ୍ୟ ସାହିତ୍ୟର ପ୍ରଥିତଯଶା ଦିଗ୍‌ପାଳମାନଙ୍କୁ ବଂଗୀୟ ସାହିତ୍ୟପ୍ରେମୀଙ୍କ ନିକଟରେ ପରିଚିତ କରାଇବାର ଉଦ୍ୟମ ପ୍ରଶଂସନୀୟ । ରାଧାନାଥ, ତାଙ୍କର ଅଗ୍ରଜ ପ୍ରତିମ ସମସାମୟିକ ଓଡ଼ିଶାର ପରମହିତୈଷୀ 'ଉତ୍କଳ ଦୀପିକା'ର ସୁଯୋଗ୍ୟ ସଂପାଦକ ଗୌରୀଶଙ୍କରଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି–

''ଉତ୍କଳ ତିମିର ସହ କରୁଅଛ ରଣ
ଉତ୍କଳ-ଦୀପିକା ରୂପ ପାଶୁପତ ଧରି ।

ବିରାଜେ ବାଳେନ୍ଦୁ ଯଥା ଚନ୍ଦ୍ରଚୂଡ଼ ଶିରେ
ତବ ଭାଲେ ଯଶଶ୍ଚନ୍ଦ୍ର ଉଇଂବ ଅଚିରେ ।''

(ଗୌରୀଶଙ୍କର-ଓଡ଼ିଆ ରୂପାନ୍ତର)

'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କବିତାରେ, ଉପେନ୍ଦ୍ରଭଞ୍ଜଙ୍କ ଅନନ୍ୟ ସୃଷ୍ଟି 'ସତୀକୁଳମଣି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'କୁ ଲକ୍ଷ୍ୟକରି କୁହାଯାଇଛି–

''ତାକୁ କି କହିବା ସତୀ ପ୍ରିୟର ମରଣେ
ହୁତାଶନେ ଅଙ୍ଗ ଜାଳି ତ୍ୟଜେ ଯେ ଜୀବନ;
ମୋ ମତରେ ଆତ୍ମଘାତୀ କହିବା ତାହାକୁ,
କୃତ୍ରିମ ସତୀତ୍ୱ ତାକୁ କହେ ମୋର ମନ ।''

ଏଠାରେ ସତୀଦାହ ଭଳି ଅମାନୁଷିକ ପ୍ରଥା ବିରୋଧୀ ମନୋଭାବ ପ୍ରକାଶ ପାଇଛି କବିଙ୍କର, ଯାହା ତାଙ୍କର ମାନବତାବାଦୀ ଦୃଷ୍ଟିଭଙ୍ଗୀର ସୂଚନା ଦିଏ । ସ୍ୱାମୀର ଚିତାରେ ସହମରଣକୁ ସେ 'କୃତ୍ରିମ ସତୀତ୍ୱ' ଆଖ୍ୟା ଦେଇଛନ୍ତି । ଏ କବିତା ଲେଖାହେବାର ଅଳ୍ପ କିଛି ବର୍ଷ ଆଗରୁ ୧୮୨୯ ମସିହାରେ ରାଜା ରାମମୋହନ ରାୟଙ୍କ ପ୍ରଚେଷ୍ଟା ଓ ତତ୍‌କାଳୀନ ଗଭର୍ଣ୍ଣର ଜେନେରାଲ ଲର୍ଡ ଉଇଲିୟମ ବେଣ୍ଟିକଙ୍କ ଆଦେଶ ଫଳରେ ଭାରତରୁ ସତୀଦାହ ଭଳି ଜଘନ୍ୟ ପ୍ରଥାର ବିଲୋପ ଘଟିଥାଏ, କିନ୍ତୁ ତାର ପ୍ରଭାବ ସମାଜରୁ ପୂରାପୂରି ଅପସରି ଯାଇ ନଥାଏ । ଏଭଳି ଅବସ୍ଥାରେ ତରୁଣ କବିଙ୍କ ସମ୍ବେଦନଶୀଳ ମାନସପଟରେ ତା'ର ପ୍ରତିକ୍ରିୟା ପ୍ରକାଶ ପାଇଛି ଉକ୍ତ କବିତା ମାଧ୍ୟମରେ ।

ଆଉ ଗୋଟିଏ ସୁନ୍ଦର କବିତା ହେଉଛି– 'ହରିଣ', ଯେଉଁଥିରେ ଇତର ପ୍ରାଣୀଟିଏ ପ୍ରତି ମାନବିକ ସମ୍ବେଦନା ଅତି ଚମତ୍କାର ରୂପ ନେଇଛି । ମଣିଷ ଭିତରେ ଲୁଚି ରହିଥିବା ମାଂସାଶୀ ମନ ଓ ହିଂସୁକ ସ୍ୱାଭାବକୁ ଇଂଗିତ କରେ କବିଙ୍କ ନିମ୍ନ ପଙ୍‌କ୍ତି କେତୋଟି–

''ବାକ୍‌ଶକ୍ତି ରହିତ ତୁହି, କେଉଁ ଅପରାଧେ
ସକଳେ କଳହ ସଦା କରନ୍ତି ତୋ ସହ ?
କାହିଁକି ବା ଅପକାର କରନ୍ତି ତୋହରି ?
ନିରପରାଧ ହରିଣ ! ତୋହରି କେବଳ
ଏଭଳି ଦୁର୍ଦ୍ଦଶାଭାବି କରନା ରୋଦନ,
ଏମିତି ଦୃଷ୍ଟାନ୍ତ ଶତ ପାରେ ମୁଁ ଦେଖାଇ
ନିରୀହ ମାତ୍ରେ ହିଁ ସିନା ହୁଅନ୍ତି ଏସନ ।

ସଂସାର ସ୍ୱରୂପ ବନେ ବିଚରେ ସତତ
କେତେ ବ୍ୟାଧ, କେତେ ବ୍ୟାଘ୍ର, ସର୍ପ ଶତଶତ ।''

(ହରିଣ– ଓଡ଼ିଆ ରୂପାନ୍ତର)

ସଂସାର ସ୍ୱରୂପ ବନ ଭିତରେ ଅବାଧରେ ବିଚରଣ କରୁଥିବା ଶତ ଶତ ହିଂସ୍ର ବ୍ୟାଧ, ବ୍ୟାଘ୍ର ଓ ସର୍ପମାନଙ୍କ ଆକ୍ରମଣରେ ହରିଣ ଭଳି ନିରୀହ ପ୍ରାଣୀମାନେ ହିଁ ସତତ ଶିକାର ହୁଅନ୍ତି । ଏହି ନଗ୍ନ ସତ୍ୟ ପ୍ରତି କବିଙ୍କ ମାର୍ମିକ ଅଭିବ୍ୟକ୍ତି ଖୁବ୍ ହୃଦୟସ୍ପର୍ଶୀ ।

ଏହିଭଳି ବିଭିନ୍ନ ବିଷୟ ଓ ଭାବକୁ ନେଇ ତରୁଣ ରାଧାନାଥଙ୍କ ବିକାଶମାନ କବିପ୍ରାଣ ଆଦ୍ୟଜୀବନରେ ଯେଉଁ କବିତା କେତୋଟିକୁ ରୂପ ଦେଇଥିଲା ତାର ଲଳିତ ଶବ୍ଦଲିପି ହିଁ ବଙ୍ଗଳା 'କବିତାବଳୀ' କେତେକ ତ୍ରୁଟି ବିଚ୍ୟୁତି ସତ୍ତ୍ୱେ କବିଙ୍କର ଏହି ଆଦ୍ୟ ସୃଷ୍ଟିରେ ତାଙ୍କ କାବ୍ୟ ପ୍ରତିଭାର ଯେଉଁ ସଂଧାନ ମିଳିଥିଲା ତାହା ତାଙ୍କ ପରବର୍ତ୍ତୀ ସୃଷ୍ଟି ତୁଳନାରେ ଔଜ୍ଜ୍ୱଲ୍ୟହୀନ ହେଲେ ମଧ୍ୟ କ୍ରମବିକାଶର ଧାରାରେ ତାର ଐତିହାସିକ ଅସ୍ତିତ୍ୱକୁ ଅସ୍ୱୀକାର କରାଯାଇ ନପାରେ । ଆଜକୁ ୧୩୦ ବର୍ଷ ତଳେ ପ୍ରକାଶିତ ଏହି କ୍ଷୁଦ୍ର କବିତା ସଂକଳନଟି ବଙ୍ଗଳାରେ ରଚିତ ହୋଇଥିଲେ ମଧ୍ୟ ଓଡ଼ିଆ କାବ୍ୟ ପରମ୍ପରା ସଂପର୍କରେ କିଞ୍ଚିତ ଆଭାସ ଦେବା ସଂଗେ ସଂଗେ ଜଣେ ଯୁଗସ୍ରଷ୍ଟା କବିଙ୍କ ପ୍ରଥମ ସୃଷ୍ଟି ସଂକେତ ବହନ କରି ନିଜସ୍ୱ ମହିମାରେ ମହିମାନ୍ୱିତ । ଅନେକ ପ୍ରତିଷ୍ଠିତ ଓ ଯଶସ୍ୱୀ କବି ସେମାନଙ୍କ ପ୍ରଥମ ସୃଷ୍ଟିକୁ କଞ୍ଚା ହାତରେ ଅସଫଳ ଓ ଅସାର୍ଥକ ସୃଷ୍ଟି ବୋଲି କହି ପ୍ରକାଶର ଅନୁପଯୋଗୀ ବୋଲି ବିଚାରୁଥିଲାବେଳେ ରାଧାନାଥ ତାଙ୍କ ପ୍ରଥମ ସୃଷ୍ଟିକୁ ପ୍ରକାଶ କରି ଲୋକଲୋଚନକୁ ଆଣିଥିଲେ; ଯାହା ଫଳରେ ପରବର୍ତ୍ତୀ କାଳରେ ଏହାକୁ ଭିତ୍ତିକରି ତାଙ୍କ ମହିମାନ୍ୱିତ ସାରସ୍ୱତ ସୃଷ୍ଟିସମୂହର ଉତ୍କର୍ଷତାକୁ ଆକଳନ କରିବା ସମ୍ଭବ ହୋଇପାରିଛି । 'କବିତାବଳୀ'ଠାରୁ 'ମହାଯାତ୍ରା, କବିବର ରାଧାନାଥଙ୍କର ଦୀର୍ଘ ସାରସ୍ୱତ ସାଧନାର ଏକ ମହାନ୍ ଶୋଭାଯାତ୍ରା । ଏହି ଶୋଭାଯାତ୍ରାର ଶେଷ ପ୍ରାନ୍ତରେ ତାଙ୍କ ଅମର ସୃଷ୍ଟି 'ମହାଯାତ୍ରା' ଯଦି ଏକ ଗଗନଚୁମ୍ବୀ ଆଲୋକ ସ୍ତମ୍ଭ ହୁଏ, ତା'ହେଲେ ପ୍ରଥମ ସୃଷ୍ଟି 'କବିତାବଳୀ' ଗୃହାଙ୍ଗନର ଏକ କ୍ଷୁଦ୍ର ଦୀପଶିଖା ନିଶ୍ଚୟ, ଯାହାର ଆଲୋକ ବିନା ଆଲୋକସ୍ତମ୍ଭର ଉଜ୍ଜ୍ୱଳତାକୁ କଳନା କରି ପାରିବା ନାହିଁ ।



# ସଂଧାର ରୂପକାର ରାଧାନାଥ

ଡଃ ଚିନ୍ମୟୀ ମହାପାତ୍ର

ସୌନ୍ଦର୍ଯ୍ୟବୋଧ ଓ ପ୍ରକାଶ-ପ୍ରବୃତ୍ତି ହିଁ କଳାସୃଷ୍ଟିର ମୂଳ ଉପାଦାନ । ପ୍ରତ୍ୟେକ ଲଳିତକଳା ମାନବର ସୌନ୍ଦର୍ଯ୍ୟ-ଚେତନାର ଅଭିବ୍ୟକ୍ତି । ଲଳିତ-କଳାସମୂହ ମଧ୍ୟରେ ପୁଣି କାବ୍ୟ-କଳାର ସ୍ଥାନ ପ୍ରମୁଖ । କାବ୍ୟ-ବିଷୟର ପରିସର ଅତି ବ୍ୟାପକ । ପ୍ରାଚୀନ ଭାରତର ଅନ୍ୟତମ ବିଶିଷ୍ଟ କାବ୍ୟ-ଶାସ୍ତ୍ରକାର ଭାମହ ତେଣୁ କହିଛନ୍ତି ଯେ ଏପରି କୌଣସି ଶବ୍ଦ ବା ବାଚ୍ୟ ନାହିଁ, ନ୍ୟାୟ ବା କଳା ନାହିଁ, ଯାହା କାବ୍ୟବିଷୟୀଭୂତ ହୋଇ ନ ପାରେ । (୧) ସଂସାରର ଗତାନୁଗତିକ ଧାରା ମଧ୍ୟରେ ପ୍ରତ୍ୟେକଟି ଚିତ୍ର, ଚରିତ୍ର ଓ ଘଟଣାର ମର୍ମକୁ ଭେଦିଯାଏ କବି । ତା'ର ତୃତୀୟଚକ୍ଷୁରେ ସୌନ୍ଦର୍ଯ୍ୟ ଦୃଷ୍ଟିର ସ୍ପର୍ଶ ଦୃଶ୍ୟଜଗତର ସାଧାରଣ ଚିତ୍ର ଓ ଚରିତ୍ରମାନଙ୍କୁ ଅସାଧାରଣ କରି ତୋଳି ଧରେ ସହୃଦୟ ସମକ୍ଷରେ । 'ଦଶରୂପକ'-କାର ଧନଞ୍ଜୟଙ୍କ ଉକ୍ତ୍ୟନୁସାରେ କବି-କଳ୍ପନାରେ ଭାବିତ ହେବା ପରେ ରମଣୀୟ ହେଉ ବା ଘୃଣ୍ୟ ହେଉ, ଉଦାର ହେଉ ବା ହୀନ ହେଉ, ଉଗ୍ର ହେଉ ବା ପ୍ରସାଦଦାୟକ ହେଉ, ଗହନ ହେଉ ବା ବିକୃତ ହେଉ, ଅନୁକୂଳ ବେଦନୀୟ ଓ ପ୍ରତିକୂଳବେଦନୀୟ ପ୍ରତ୍ୟେକ ବସ୍ତୁ ରସତ୍ୱ ଲାଭ କରେ । (୨) ପୂର୍ବରୁ ମୃତବତ୍ ଦେଖାଯାଉଥିବା ବୃକ୍ଷମାନେ ବସନ୍ତ କାଳର ଆଗମରେ ପଲ୍ଲବିତ ହୋଇ ନୂତନ ରୂପ ପରିଗ୍ରହ କଲାପରି ଏହି ରସର ସ୍ପର୍ଶରେ ଅତି ସାଧାରଣ ଓ ନିତ୍ୟ-ପରିଚିତ ବିଷୟ ଓ ବସ୍ତୁ ସବୁ ସୁନ୍ଦର ଓ କଳାତ୍ମକ ହୋଇଉଠେ । କବିର ଅନ୍ତର୍ନିହିତ ରସାନୁଭୂତି ହିଁ ପାଠକର ମନୋନୟନରେ ମାୟାଞ୍ଜନର ସ୍ପର୍ଶ ଦେଇ ଲୌକିକ

---

(୧) ନ ସ ଶବ୍ଦୋ ନ ତଦ୍ ବାଚ୍ୟ ନ ସ ନ୍ୟାୟୋ ନ ସା କଳା ।
ଜାୟତେ ଯନ୍ନ କାବ୍ୟାଙ୍ଗମହୋଭାରୋ ମହାନ୍ କବେଃ ।।
—କାବ୍ୟାଳଙ୍କାର — ୫/୩

(୨) ରମ୍ୟଂ ଜୁଗୁପ୍ସିତ ମୁଦାରମଥାପି ନୀଚଂ
ଉଗ୍ରଂ ପ୍ରସାଦି ଗହନଂ ବିକୃତଂ ଚ ବସ୍ତୁ ।
ଯଦ୍ ବାପ୍ୟବସ୍ତୁ କବି ଭାବକ ଭାବନୀୟଂ
ତନ୍ନାସ୍ତି ଯନ୍ନ ରସଭାବମୁପୈତି ଲୋକେ ।।
—ଦଶରୂପକ— ୪/୮୫



ବିଷୟକୁ ଲୋକୋତ୍ତର କରି ଦେଖାଇ ଦିଏ । ବୀଣାପାଣିଙ୍କର ଶାଶ୍ୱତ-ସେବକ ସୁଷମା-ଗ୍ରାହକ କବି ରାଧାନାଥ ଥିଲେ ଏହିପରି ଜଣେ ରସଶିଳ୍ପୀ ଯାଦୁକର ।

ରାଧାନାଥ ଥିଲେ ବିଶୁଦ୍ଧ କଳାକାର । ସେ କୌଣସି ନିର୍ଦ୍ଦିଷ୍ଟ ସାହିତ୍ୟିକ ମତବାଦର ଅନୁବର୍ତ୍ତୀ ନ ଥିଲେ । 'କଳା ପାଇଁ କଳାସୃଷ୍ଟି' (Art for art's shake) ହିଁ ଥିଲା ତାଙ୍କର ଆଦର୍ଶ । ସେ ଥିଲେ ସୌନ୍ଦର୍ଯ୍ୟଗ୍ରାହୀ; ପୁଣି ସୌନ୍ଦର୍ଯ୍ୟ-ଦର୍ଶନରେ ତାଙ୍କର ଥିଲା ଗଭୀର ପ୍ରବେଶ । ପ୍ରାକୃତିକ-ସୌନ୍ଦର୍ଯ୍ୟ ପ୍ରତି ତାଙ୍କ ପ୍ରାଣରେ ଥିଲା ଅଫୁରନ୍ତ ଆକର୍ଷଣ । ଉଦାତ୍ତତତ୍ତ୍ୱ ଅନୁସାରେ ନିଜ ତୁଳନାରେ ଯାହା କିଛି ରମଣୀୟ, ଦିବ୍ୟ ଓ ମହତ୍ତର, ସେଥିପ୍ରତି ଏକ ଅତର୍ପଣୀୟ ପ୍ରୀତି ମଣିଷର ସ୍ୱଭାବଜ । ନିସର୍ଗପ୍ରଣୟୀ ରାଧାନାଥ ପ୍ରକୃତିର ଭୀମ ଓ କାନ୍ତ, ବିରାଟ ଓ ସୁନ୍ଦର, ପ୍ରୀତିଦାୟକ ଓ ବିସ୍ମୟୋତ୍ପାଦକ ପ୍ରତ୍ୟେକ ରୂପରେ ମୁଗ୍ଧ ହୋଇଛନ୍ତି ଓ ସେହି ପ୍ରତ୍ୟେକ ଚିତ୍ରକୁ ଅବିକଳ ତୋଳି ଧରିଛନ୍ତି ତାଙ୍କ ରଚନାବଳୀର ଛତ୍ରେ ଛତ୍ରେ । ଏହି ପରିପ୍ରେକ୍ଷୀରେ ପ୍ରକୃତିର ଦୁଇ ରୂପୋତ୍ସବ ପ୍ରଭାତ ଓ ପ୍ରଦୋଷ, ବିଶେଷତଃ ପ୍ରଦୋଷର ବର୍ଣ୍ଣାଳୀ ତାଙ୍କର ପ୍ରାୟ ପ୍ରତିଟି ରଚନାରେ ମନୋଜ୍ଞ ଛଟାରେ ରୂପାୟିତ ହୋଇଛି ।

ସଂଧ୍ୟା ବିଶ୍ୱବିଧାତାଙ୍କର ଏକ ବିଚିତ୍ର ରଚନା । ଆଲୋକୋଦ୍‌ଭାସିତ କର୍ମମୁଖର ଦିବସ ତଥା ଅନ୍ଧକାରମୟୀ କର୍ମବିରତି ଓ ବିଶ୍ରାନ୍ତିର କାଳ ରଜନୀର ସନ୍ଧିକାଳ ଏ ସଂଧ୍ୟା ଯୁଗପତ୍ ଶୋଭାଶାଳିତା ଓ ପବିତ୍ରତାର, ମାଧୁର୍ଯ୍ୟବତ୍ତା ଓ ବିଷଣ୍ଣତାର ସୂଚକ । ପ୍ରତ୍ୟେକ ସଂଧ୍ୟା ଏକ ଜ୍ୟୋତିସମୁଚ୍ଛଳ ଉଜ୍ଜ୍ୱଳ ଦିବସର ଅବସାନ ଓ ତମଃସଂକୁଳ ଭୀତିପ୍ରଦ ରାତ୍ରିର ସମାଗମ ସୂଚାଇ ଥାଏ । ହୁଏତ ଏହି ଉପଲବ୍‌ଧି ହେତୁ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସଂଧ୍ୟାକୁ 'ବିଧୁନ୍ତୁଦ' ଓ 'ବିବସ୍ୱାନ ଗ୍ରାସି ରଙ୍ଗ ଭାବ ଦିଶିଲା' ପରି ଭୟାନକ ରୂପରେ ବର୍ଣ୍ଣନା କରିଛନ୍ତି । ପୁଣି ସୂର୍ଯ୍ୟଙ୍କର ପତନ ସମୟ ସମାଗତ ହେବାରୁ ସେ ନୀତିଭ୍ରଷ୍ଟ ହୋଇଛନ୍ତି ଓ ରାତ୍ରି ତାଙ୍କ ଉପରେ ଦାଉ ସାଧିବାକୁ ଆରମ୍ଭ କରିଛି ବୋଲି ମଧ ଦର୍ଶାଇଛନ୍ତି—

"ବାରୁଣୀ କୁଣ୍ଡେ ବୁଡ଼ାଇ ଇନକୁ ।
ବିନାଶ କରିବା ଇଚ୍ଛି ଦିନକୁ ।
ବାଳ ଧରି କିବା ନେଇ ଆକର୍ଷି ।
ବାୟସଚୟ ଯିବା ତଥା ଦିଶି ।
ବୋବି ଦେଲା ପକ୍ଷୀ ନାଦ ଛଳର ।
ବଦନେ କାଳି ପଡ଼ିଲା ଦିନର ।"

(ବୈଦେହୀଶ ବିଳାସ — ୬/୨୭)

ମାତ୍ର କବିବର ରାଧାନାଥଙ୍କ ସୃଷ୍ଟିରେ ସଂଧ୍ୟାର ଦୃଶ୍ୟ କଦାପି ବୀଭତ୍ସ ବା ଭୟାନକ ରୂପରେ ଚିତ୍ରିତ ହୋଇ ନାହିଁ । ବରଂ ତାଙ୍କ ଦୃଷ୍ଟିରେ ପ୍ରଦୋଷ ସ୍ୱର୍ଣ୍ଣିମ ଲଗ୍ନ ସର୍ବଥା ମଧୁର । ତାଙ୍କରି ଭାଷାରେ —

"ମଧୁର ପ୍ରଦୋଷ ସମୟ
ସ୍ୱର୍ଣ୍ଣ - କିରଣ - ବୋଳା ।
କାଦମ୍ବିନୀ ଖେଳେ ଗଗନେ
ଧୀର ସମୀର ଲୋଳା ।
ଗୋଧୂଳି-ଗଗନ ସୁଚିତ୍ର
ଦିଶେ ଶତ ବରଣେ ।
ଶତ ମନୋରଥ ଝଲକେ
ଯେହ୍ନ ଆଶା - କିରଣେ ।"

(ଚନ୍ଦ୍ରଭାଗା— ରାଧାନାଥ ଗ୍ରନ୍ଥାବଳୀ, ପୃ. ୫୦)

ଅସ୍ତାୟମାନ ସୂର୍ଯ୍ୟର ରଶ୍ମି-ରଞ୍ଜିତ ସୁଚିତ୍ର ଗୋଧୂଳି- ଗଗନର ଶତ ବର୍ଣ୍ଣାଭାକୁ ଆଶା-କିରଣରେ ଝଲକିତ ଶତ ମନୋରଥ ସହ ତୁଳନା କରିବା ପଛରେ କବିଙ୍କର ଜୀବନମୁଖୀ ଶାଣିତ ଉପମା-ଦୃଷ୍ଟିର ପରିଚୟ ନିହିତ ।

'ପାର୍ବତୀ' କାବ୍ୟରେ ବିଭୀଷିକାମୟ ପରିବେଶ ଭିତରେ ମଧ ସାଂଧ୍ୟ ସୌନ୍ଦର୍ଯ୍ୟର ଅଳଙ୍କୃତ ବର୍ଣ୍ଣନା ଦେବାରେ କବି କାର୍ପଣ୍ୟ କରି ନାହାନ୍ତି । ସାଗର-ତଟର ତୁଙ୍ଗ ବାଲୁକା-ସ୍ତୂପ ଓ ଶ୍ୟାମଳ ପୁନ୍ନାଗବନକୁ ଅସ୍ତରାଗରେ ରଞ୍ଜିତ କରି ଲୋକନାଥ-ମନ୍ଦିର-ପଥରେ ସାଗର-ନିମଜ୍ଜନ କରୁଛନ୍ତି କମଳିନୀ-ପ୍ରାଣଧନ ସୂର୍ଯ୍ୟଦେବ । ସତେ ଅବା ରାଣୀ ପାର୍ବତୀଙ୍କ ପ୍ରାଣନାଥ ଗଙ୍ଗେଶ୍ୱରଙ୍କ ନିର୍ମମ ହତ୍ୟା ଓ ମକର-ଉଦ୍ୟାନର ଭୂମି ଉପରେ ବର୍ଣ୍ଣୋଦକ ତଥା ଶୋଣିତର ପ୍ଲାବନ ମଧ୍ୟରେ ନିପତିତ ରକ୍ତାକ୍ତ ପିଣ୍ଡର ଦୃଶ୍ୟ ଏହି ବର୍ଣ୍ଣନାରେ ଅଭିବ୍ୟଞ୍ଜିତ ହୋଇଛି ! ପୁଣି ସାଗର-ଜଳରେ ଭାସୁଥିବା ପରି ପ୍ରତୀତି ଜନ୍ମାଉଥିବା ଆରକ୍ତ ସୌରବିମ୍ବର ଦୃଶ୍ୟ କଳ୍ପନା କବି-ପ୍ରାଣରେ ଏକ ସମୟରେ ଏକାଧିକ ଅନୁପସ୍ଥିତ ଦୃଶ୍ୟର ଉତ୍ପ୍ରେକ୍ଷା ସଞ୍ଚାର କରିଛି —

"ଭାସମାନ ରକ୍ତ ରବିବିମ୍ବ ଦେଖି
ଏ ଭାବ ଆସେ ଅନ୍ତରେ ।
ବିରଞ୍ଚି ରଚିତ ସୁବର୍ଣ୍ଣ ବ୍ରହ୍ମାଣ୍ଡ
ଭାସଇ କିବା ସାଗରେ ।

କିବା ଜଳନିଧି— ଶାୟୀ ମଧୁରିପୁ
ନାଭି ନାଳେ ଅରବିନ୍ଦ ।
ଅବା ଦିଗ୍‌ବଳ ରୂପୀ ବଳୟର
ଅନୁରୂପ କୁରୁବିନ୍ଦ ।''

(ପାର୍ବତୀ - ରା.ଗ୍ର. ପୃ. ୧୧୭)

ସୂର୍ଯ୍ୟ ବୁଡ଼ିଯିବା ପରେ ପ୍ରବାଳ-ପାଟଳୀ ସଂଧ୍ୟା କ୍ରମେ ଊର୍ଦ୍ଧ୍ୱକୁ ଉଠି ମଧ୍ୟାକାଶରେ ଶୁଭ୍ର ଇନ୍ଦୁ-କିରଣରେ ମିଶିଯିବାର ଚିତ୍ର କବି ଉପସ୍ଥାପନ କରିଛନ୍ତି । ଏ ପ୍ରସଙ୍ଗରେ ମହାକବି କାଳିଦାସ କର୍ତ୍ତୃକ ସଂଧ୍ୟା ଅସ୍ତାୟମାନ ସୂର୍ଯ୍ୟକୁ ଅନୁସରଣ କରିବାର ବର୍ଣ୍ଣନା ସ୍ୱତଃ ସ୍ମୃତି-ପଥକୁ ଆସିଯାଏ (୩)

ୱାର୍ଡ୍‌ସ୍‌ୱର୍ଥ, ସେଲି, ବାଇରନ୍, କିଟ୍‌ସ୍ ପ୍ରମୁଖ ପ୍ରକୃତି-କବି (Nature-Poet) ମାନଙ୍କ ପରି କବିବ୍ର ରାଧାନାଥଙ୍କର ପ୍ରକୃତି ପ୍ରତି ଥିଲା ଅଫୁରନ୍ତ ଆକର୍ଷଣ । ଖାଲି ଦିନେ-ଅଧେ ପ୍ରକୃତିର କୋଳକୁ ଚାଲିଯାଇ ଲୋକ-ଦୃଷ୍ଟିରେ ପ୍ରକୃତି-ପ୍ରେମର ଡିଣ୍ଡିମ ପିଟିବାର ପ୍ରବୃତ୍ତି ତାଙ୍କର ନ ଥିଲା । ସେ ହୃଦୟର ଆହ୍ୱାନରେ ବାରମ୍ବାର ପ୍ରକୃତିର କୋଳକୁ ଧାଇଁ ଯାଉଥିଲେ, – ଗଭୀର ଉତ୍ସୁକତାର ସହିତ ତା'ର ବୈଚିତ୍ର୍ୟ ଓ ରହସ୍ୟକୁ ପର୍ଯ୍ୟବେକ୍ଷଣ କରୁଥିଲେ, ତା'ର ବର୍ଣ୍ଣମୟ ଚିତ୍ରକୁ ତନ୍ନ ତନ୍ନ କରି ଅନୁଧ୍ୟାନ କରୁଥିଲେ । ସେଥି ସହିତ ଲୋକାଳୟର କୋଳାହଳରେ ଥିବା ବେଳେ ମଧ୍ୟ ସେ ନିବିଡ଼ ପ୍ରେମର ସହିତ ସେ ସେହି ଅନୁଭୂତିକୁ ସ୍ମୃତିର ସଙ୍ଗାଳି କରି ରଖୁଥିଲେ । ସେହି ପ୍ରତ୍ୟକ୍ଷ ଅନୁଭୂତି ଓ ତା'ର ପରୋକ୍ଷ ସ୍ମୃତିର ସ୍ଫୁରଣ ତାଙ୍କର ପ୍ରତ୍ୟେକ ରଚନାକୁ ସବଳିତ କରିଛି । ପ୍ରକୃତିର ପ୍ରତିଟି ଚିତ୍ର ପ୍ରତି ଅଚ୍ଛିଦ୍ର ପ୍ରୀତି ପୋଷଣ କରୁଥିବା ତାଙ୍କର କବି-ହୃଦୟରେ ପୁଣି ସାଂଧ-ସୌନ୍ଦର୍ଯ୍ୟ ପ୍ରତି ଅପାର ଅନୁରାଗ ଥିବାର ଲକ୍ଷ୍ୟ କରାଯାଏ ।

ମହାକବି କାଳିଦାସ ମଧ୍ୟ ସଂଧ୍ୟା ସମୟର ବିଶେଷତ୍ୱ ପ୍ରତି ସଚେତନ ଥିଲେ । ତେଣୁ ହୁଏତ ଯକ୍ଷ ପ୍ରେରିତ ମେଘ-ଦୂତ ଯଦି ଉଜ୍ଜୟିନୀର ଗଗନ-ମାର୍ଗରେ ସଂଧ୍ୟା ଭିନ୍ନ ଅନ୍ୟ ସମୟରେ ପ୍ରବେଶ କରେ, ତେବେ, 'ନଳିନୀ-ସଖାଙ୍କର ଅସ୍ତଗମନ' କାଳ ଯାଏ ସେଠାରେ ଅପେକ୍ଷା କରିବାକୁ କବି ଯକ୍ଷ ମୁଖରେ ଅନୁରୋଧ ଜଣାଇଛନ୍ତି—

(୩) ସଂଧ୍ୟାୟାପ୍ୟନୁଗତଂ ରବେର୍ବ୍ବ ପୂର୍ବନ୍ଦ୍ୟ ମସ୍ତଶିଖରେ ସମର୍ପିତମ୍ ।
ଯେନ ପୂର୍ବମୁଦୟେ ପୁରସ୍କୃତା ନାନୁଯାସ୍ୟତି କଥଂ ତମାପଦି ।।
(କୁମାର ସମ୍ଭବମ୍ — ୮/୪୪)

"ଅପ୍ୟନ୍ୟସ୍ମିନ୍ ଜଳଧର ମହାକାଳମାସାଦ୍ୟ କାଳେ
ସ୍ଥାତବ୍ୟଂ ତେ ନୟନବିଷୟଂ ଯାବଦତ୍ୟେତି ଭାନୁଃ ।
କୁର୍ବନ ସନ୍ଧ୍ୟାବଳିପଟହତାଂ ଶୂଳିନଃ ଶ୍ଲାଘନୀୟା—
ମାମନ୍ଦ୍ରାଣାଂ ଫଳମବିକଳଂ ଲପ୍‌ସ୍ୟସେ ଗର୍ଜିତାନାମ୍ ।।"

(ମେଘଦୂତମ୍-ପୂର୍ବମେଘ — ୩୭)

କବିବର ରାଧାନାଥ ଏହାର ସୁନ୍ଦର ପଦ୍ୟାନୁବାଦ କରିଛନ୍ତି । (୪)

ରାଧାନାଥଙ୍କ ମୌଳିକ କାବ୍ୟକୃତି ସମୂହରେ ସଂଧ୍ୟାର ରୂପରାଗର ଚିତ୍ର ପ୍ରତୁଳ । ଅଧିକନ୍ତୁ ସଚେତନ ଭାବେ ବର୍ଣ୍ଣନୀୟ ବିଷୟର ପୃଷ୍ଠପଟରେ ସେ ସାଂଧ୍ୟ ପରିବେଶର ଚିତ୍ରଟିମାନ ଆଙ୍କି ଦେଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଚନ୍ଦ୍ରଭାଗା ପ୍ରତି ସୂର୍ଯ୍ୟଦେବଙ୍କ ହୃଦୟ ଅନୁରକ୍ତ ହେବାର ସମୟ ସଂଧ୍ୟା । ଅଥଚ ଯେଉଁ ପାଶ୍ଚାତ୍ୟ କାହାଣୀର ଛାୟାରେ ଏ କାବ୍ୟର କଥାବସ୍ତୁ ପରିକଳ୍ପିତ, ସେହି ଆପୋଲୋଡ଼ାଫନୀ କାହାଣୀର ବର୍ଣ୍ଣିତ ସମୟ ସକାଳ । ଉତ୍କଳ-ରାଜଜେମା ଲଳିତା ସହିତ ଯଯାତି-ଭଗିନୀ ବିମଳା କପାଳେଶ୍ୱର ଦୁର୍ଗରେ ପ୍ରବେଶ କରିବାର ସମୟ ସଂଧ୍ୟା; ଯଯାତି ଛଦ୍ମବେଶରେ ଦୁର୍ଗରେ ପ୍ରବେଶ କରି ଲଳିତାକୁ ଭେଟିବା ବେଳକୁ ମଧ୍ୟ ବିଶ୍ୱରାଜଙ୍କ ତେଜ-ଭଣ୍ଡାରର ମେକାପ ତଥା ପଦ୍ମିନୀ-ମୁଦ-କରଣ ଦେବ ତପନ କପିଳାସ ଶୃଙ୍ଗରେ ଅସ୍ତ ଯାଉଥିଲେ । (୫) ନନ୍ଦିକା ଓ କେଦାର-ଗୌରୀଙ୍କର ନିଶାଗମର ପ୍ରତୀକ୍ଷା ଆଳରେ କବି ସଂଧ୍ୟା-ବର୍ଣ୍ଣନାର ଅବକାଶ ସୃଷ୍ଟି କରିଛନ୍ତି । ପୁଣି ସଂଧ୍ୟା ହେବାର ଦେଖି କଞ୍ଚୁକୀ ପ୍ରାସାଦ-ଚୂଳକୁ ଉଠିବା ପ୍ରସଙ୍ଗରେ ମଧ୍ୟ ଅନୁରୂପ ସୁଯୋଗର ସଦୁପଯୋଗ କରିଛନ୍ତି । ଏପରିକି 'ବେଣୀସଂହାର'ର ବିରୂପ ପରିବେଶରେ ମଧ୍ୟ କବି ସାଂଧ୍ୟ-ରାଗ-ରଞ୍ଜିତ ଆକାଶ ଓ ଶୋଣିତ-ସିକ୍ତ ରଣଭୂମିର ବର୍ଣ୍ଣନାର ଅବକାଶ ଖୋଜି ନେଇଛନ୍ତି—

---

(୪) ପୂର୍ବ କଥିତ ମହାକାଳ ନିଳୟେ । ହେବୁ ପ୍ରବେଶ ଯେବେ ଆନ ସମୟେ ।
ନଳିନୀ-ସଖାଙ୍କର ଅସ୍ତଗମନ । ଯାଏ ଅନାଇଁ ତହିଁ ରହିବୁ ଘନ ।
ସନ୍ଧ୍ୟା ଆଗମେ ତୋର ଧ୍ୱନି ଗଭୀର । ପୂଜା ପଟହ ପ୍ରାୟେ ମନ୍ଦ୍ରେ ମନ୍ଦିର ।
ଝିଙ୍କାରି ସନ୍ତୋଷିବ ଶିବ ଶ୍ରବଣ । ଶ୍ଲାଘ୍ୟ ସଫଳ ତହୁଁ ହେବ ଗର୍ଜନ ।"
(ମେଘଦୂତ - ପୂର୍ବମେଘ — ରାଧାନାଥ ଗ୍ରନ୍ଥାବଳୀ, ପୃ. ୯)

(୫) ଅସ୍ତ ଯାଉଥିଲେ କପିଳାସ ଶୃଙ୍ଗେ
ଏ କାଳେ ଦେବ ତପନ ।
ବିଶ୍ୱରାଜ ତେଜ ଭଣ୍ଡାର ମେକାପ
ପଦ୍ମିନୀ-ମୁଦ-କରଣ ।"
(ଯଯାତିକେଶରୀ, ରାଧାନାଥ ଗ୍ରନ୍ଥାବଳୀ, ପୃ. ୨୪୧)

"ଅସ୍ତଗିରି ଶୃଙ୍ଗେ ଏବେ ପ୍ରବେଶ ତପନ ।
ପଶ୍ଚିମ ଆକାଶ ଦିଶେ ଲୋହିତ ବରଣ ।
ଅସ୍ତଗାମୀ ରବି-ପ୍ରଭା ପଡ଼ି ରଣ ସ୍ଥଳେ ।
ଦିଶି ମିଶ୍ରିତ ଯେହ୍ନେ ପାଟଳ -ପାଟଳେ ।"

(ବେଣୀସଂହାର — ରା. ନା.ଗ୍ର. , ପୃ. ୩୫)

ତେବେ 'ଚିଲିକା' କାବ୍ୟରେ ସଂଧ୍ୟା-ବର୍ଣ୍ଣନାର ପରିସର ବେଶ୍ ଦୀର୍ଘ । ଏ କାବ୍ୟରେ ପ୍ରକୃତିକୁ ଜୀବନ୍ତ ଚରିତ୍ର କରି ଚିତ୍ରଣ କରିବାରେ କବିଙ୍କ ପ୍ରୟାସ ସମକାଳୀନ ଓଡ଼ିଆ ସାହିତ୍ୟରେ ଅଭିନବ; ତେଣୁ ଅଭିନନ୍ଦନୀୟ । ସମଗ୍ର ଭାରତର ବିଶିଷ୍ଟ ପ୍ରାକୃତିକ-ବୈଚିତ୍ର୍ୟମାନ ସନ୍ଦର୍ଶନ କାଳରେ ରାଧାନାଥଙ୍କର ଅତୃପ୍ତ ହୃଦୟ ଯେଉଁ ଚିଲିକାକୁ 'ସଖୀ ପ୍ରାୟ' ସ୍ମରୁଥିଲା, ଯାହାର ରମ୍ୟ ତୀରରେ ମନ ଅବସାଦ ବା ଆତ୍ମବିସ୍ମୃତିରେ ବୁଡ଼ିଯାଏ ନାହିଁ, ବରଂ ଯାହାର ଚିତ୍ତ-ଉଲ୍ଲାସକ ରୂପ ସୁମଧୁର ଦ୍ୱୈତଭାବ ଦ୍ୟୋତିତ କରାଏ, ଉତ୍କଳ-କମଳାଙ୍କର ବିଳାସ-ଦୀର୍ଘିକା ସେହି ନୀଳାମ୍ବୁ ଚିଲିକାର ଊର୍ଦ୍ଧ୍ୱବର୍ତ୍ତୀ ଗଗନରେ ସୂର୍ଯ୍ୟାସ୍ତର ଐନ୍ଦ୍ରଜାଲିକ ବର୍ଣ୍ଣରେ ସ୍ୱର୍ଣ୍ଣ-କାନ୍ତି ଧାରଣ କରି ଶୈଳ-ଶିଖରରୁ ଝାଙ୍କୁଥିବା ସାୟନ୍ତନ ଘନର ଶୋଭା ଓ ନିମ୍ନବର୍ତ୍ତୀ ତରଳ ଜଳ ବକ୍ଷରେ ତା'ର ପ୍ରତିଫଳନର ବର୍ଣ୍ଣନା କବି ବେଶ୍ ଆବେଗପୂର୍ଣ୍ଣ ଭାବରେ କରିଛନ୍ତି । (୬)

ସଂଧ୍ୟା ଆସନ୍ନ । 'ଦେବ ବିକର୍ତ୍ତନ' ଭାଲେରୀ ପାହାଡ଼ର ଶିଖର ଦେଶରେ ସ୍ୱର୍ଣ୍ଣ-ସିଂହାସନରେ ଅଧିଷ୍ଠିତ । ଏହି ବର୍ଣ୍ଣନା ଜଣେ ଇଂରେଜ କବିଙ୍କର 'ସଂଧ୍ୟା ପ୍ରତି ଉକ୍ତି'ର କେତୋଟି ଧାଡ଼ି ମନେ ପକାଇ ଦିଏ —

"O Nymph reserved, while now the
bright-haired Sun,
Sits in Yon western tent,
whose cloudy' skirts
With brede ethereal wove
O' rhang his wavy bed." (୭)

ସେହି ସମୟର ପ୍ରତ୍ୟକ୍ଷ-ଦୃଷ୍ଟ ସୁଷମା କବି-ହୃଦୟରେ ଏପରି ଅବିସ୍ମୃତି ଓ ଅବିକୃତ ଭାବେ ଉତ୍କୀର୍ଣ୍ଣ ରହିଛି ଯେ କବି ଏଇ ଦେଖୁଥିଲା ପରି ତାହାର ଚିତ୍ର ଉପସ୍ଥାପନ କରି ପାରିଛନ୍ତି । ଇଂରେଜ କବି ୱାର୍ଡ଼ସ୍‌ୱର୍ଥଙ୍କ ପ୍ରସିଦ୍ଧ କାବ୍ୟସଂଜ୍ଞା — 'କବିତା ପ୍ରଶାନ୍ତ ଚିତ୍ତରେ ସଂଚିତ ଶକ୍ତିଶାଳୀ ଅନୁଭୂତି—ନିଚୟର ସ୍ୱତଃସ୍ଫୂର୍ତ୍ତ

---

(୬) ରାଧାନାଥ ଗ୍ରନ୍ଥାବଳୀ, ପୃ. ୧୫୪
(୭) William Collins— Ode to evening.

ଅଭିବ୍ୟକ୍ତି (୮) ଏ ପ୍ରସଙ୍ଗରେ ସ୍ମରଣୀୟ । ହରିତ୍ ବର୍ଣ୍ଣ ଶୈଳ ଠାବେ ଠାବେ ଛାୟାକୀର୍ଣ୍ଣ ହୋଇ ନୀଳବର୍ଣ୍ଣ ଧାରଣ କରିବା, ଗଳଘଣ୍ଟ-ଧ୍ୱନିରେ ଗିରି-ତଟଦେଶ ନିନାଦିତ କରି ପଲ ପଲ ଛାଗ-ମେଷ ବାହୁଡ଼ିବା, ମହିଷଟିପାର ଗୁରୁଗୁରୁ ଧ୍ୱନିରେ ଅରଣ୍ୟ-ସରଣୀ ମୁଖରିତ ହେବା, ଗୋଷ୍ଠୋତ୍‌ଥିତ ଧୂମରେଖା କୁଞ୍ଚିତ ଗତିରେ ଗିରି-ପାଦଦେଶରୁ ଉଠି କ୍ରମେ ସମଗ୍ର କାନନ-ସ୍ଥଳୀକୁ ଆଚ୍ଛନ୍ନ କରିବା; ବିହଙ୍ଗମାନେ ଉଡ଼ିଯାଇ ହ୍ରଦକୂଳରେ ଓ ଶୈଳରେ, ହ୍ରଦ ମଧ୍ୟରେ ଥିବା ଦ୍ୱୀପରେ ଓ ପାଦପରେ ବସିବା, ଏପରିକି କଳରବ କରି କରି ଅରଣ୍ୟରେ ନିଜ ନିଜ ନୀଡ଼-ତରୁ ଲୋଡୁଥିବା ଏରା ପକ୍ଷୀର ଡେଣା ପୀତ ଅସ୍ତ-କରର ପ୍ରତିଫଳନରେ ସୁବର୍ଣ୍ଣ-ମଣ୍ଡିତ ହେଲା ପରି ପ୍ରତୀତ ହେବାର ଦୃଶ୍ୟଟି ପର୍ଯ୍ୟନ୍ତ ସୂକ୍ଷ୍ମଦ୍ରଷ୍ଟା କବିଙ୍କର ଶାଣିତ ସୌନ୍ଦର୍ଯ୍ୟ-ଦୃଷ୍ଟିରୁ ବାଦ୍ ଯାଇ ନାହିଁ । ଏଣେ ସନ୍ଧ୍ୟା-ବନ୍ଦାପନା ଲାଗି ଯତିଗଣ ଶୈଳ-ଶିଖରରୁ ଅବତରଣ କରୁଛନ୍ତି । ପରିବେଶ ଓ ପରିସ୍ଥିତିର ଭିନ୍ନତା ସତ୍ତ୍ୱେ କାଳିଦାସକୃତ 'ରଘୁବଂଶମ୍' ମହାକାବ୍ୟର ଚତୁର୍ଥ ସର୍ଗ ଓ ଭାସକୃତ 'ସ୍ୱପ୍ନବାସବଦତ୍ତାମ୍' ନାଟକର ସଂଧ୍ୟା-ବର୍ଣ୍ଣନା (୯) ସହିତ ଏ ବର୍ଣ୍ଣନାର ସାମଞ୍ଜସ୍ୟ ଅବଶ୍ୟ ଲକ୍ଷ୍ୟଣୀୟ । ଏହା ହୁଏତ ପ୍ରଭାବ ନ ହୋଇପାରେ; କିନ୍ତୁ ମହାନ ସ୍ରଷ୍ଟାପୁରୁଷମାନଙ୍କର ଚିନ୍ତା-ଚେତନାର ଏ ସମତାକୁ ସପ୍ରଶଂସ ଉଦାର ବିଚାର-ଦୃଷ୍ଟି ନିକ୍ଷେପ ନ କରି ରହି ହୁଏ ନାହିଁ ।

କଟକର ଉପାନ୍ତରେ କାଠଯୋଡ଼ି-ତୀରର ସୂର୍ଯ୍ୟାସ୍ତ-ବର୍ଣ୍ଣନାରେ ମଧ୍ୟ କବି ଅବିକଳ ଚିତ୍ର ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ଅସାଧାରଣ ଚିତ୍ରଣ-ପାଟବର ପରିଚୟ ଦେଇଛନ୍ତି—

''ସ୍ୱଚ୍ଛ ସ୍ରୋତଜଳେ ପୀତ ରବିରୁଚି
ପଡ଼ି ବୀଚିମାଳା ହଲୁଛି ଝଲୁଛି ।
ଧୂମାକାରେ ଦୂରେ ପର୍ବତର ଛାଇ
ମାଡ଼ି ଆସୁଅଛି ଜଳ ସ୍ଥଳ ଛାଇ ।

---

(୮) "Poetry is the spontaneous overflow of powerful feelings : it takes origin from emotion recollected in tranquility."
—Writers on Writing : Ed. Walter Allen. P.18.

(୯) ଖଗାଃ ବାସୋପେତାଃ ସଲିଳମବଗାଢ଼ୋ ମୁନିଜନଃ ।
ପ୍ରଦୀପ୍ତୋଗ୍ନିର୍ଭାତି ପ୍ରବିଚରତି ଧୂମୋ ମୁନିଜନମ୍ ।
ପରିଭ୍ରଷ୍ଟୋ ଦୂରାଦ୍ରବିରପି ଚ ସଂକ୍ଷିପ୍ତ କିରଣୋ ।
ରଥଂ ବ୍ୟାବର୍ତ୍ତ୍ୟାସୌ ପ୍ରବିଶତି ଶନୈ ରସ୍ତ ଶିଖରମ୍ ।।'
(ସ୍ୱପ୍ନବାସବଦତ୍ତାମ୍ — ୧/୧୬)

ରଥାଙ୍ଗୀ ଭାସଇ କାଠଯୋଡ଼ି ତୀରେ ।
ଥରେ କାନ୍ଦେ ଥରେ ଅନାଇ ମିହିରେ ।
ପଟିଆ ଦହରୁ ପକ୍ଷୀ ଦଳେ ଦଳେ ।
ଉଡ଼ି ଆସୁଛନ୍ତି ନଭେ କୋଳାହଳେ ।
ଗଉଡ଼େ ମଧୁରେ ମୁରଲୀ ବଜାଇ,
ପଠାରୁ ଗୋଠକୁ ଆଣୁଛନ୍ତି ଗାଈ ।''

(ନନ୍ଦିକେଶ୍ୱରୀ—ରା.ନା.ଗ୍ର.ପୃ. ୬୭)

ଏହିପରି ବର୍ଣ୍ଣନାମାନଙ୍କରେ ରାଧାନାଥଙ୍କ ପ୍ରକୃତି-ଚିତ୍ରଣ ସଂପର୍କିତ ଡକ୍ଟର୍ ମାୟାଧର ମାନସିଂହଙ୍କ ମନ୍ତବ୍ୟର ଯଥାର୍ଥତାର ପ୍ରମାଣ ନିହିତ (୧୦)

ଭାଲେରି ପାହାଡ଼ର ଅନ୍ତରାଳରେ କ୍ରମେ ଲୁଚିଯାଉଥିବା ସୂର୍ଯ୍ୟବିମ୍ବ ଓ ଭାସମାନ ଜଳଦ ପଟଳରେ ଅସ୍ତ-ରଶ୍ମିର ପ୍ରତିବିମ୍ବନକୁ କବି ସୁନ୍ଦର ରୂପକଳ୍ପ ସାହାଯ୍ୟରେ ଟେକି ଧରିଛନ୍ତି ପାଠକର ଦୃଷ୍ଟି ସମକ୍ଷରେ —

''ରତ୍ନରାଜି ବୁଣି ବର୍ମ୍ମ ଅନ୍ତରାଳେ ।
ବୁଡ଼ିଲେ ମିହିର ଭାଲେରି ଉଢ଼ାଳେ ।
କେତେ ଯତ୍ନେ ଆହା କାଦମ୍ବିନୀ ଧନୀ ।
ବସ୍ତ୍ରାଞ୍ଚଳେ ବାନ୍ଧି ନେଉଛି ସେ ମଣି ।''

(ଚିଲିକା—ରା.ନା.ଗ୍ର.ପୃ.୧୫୮)

କାବ୍ୟାନ୍ତରରେ ମଧ କବି ସଂଧାଗମର ଅନୁରୂପ ମନୋରମତାର ଭାଷାଚିତ୍ର ଆଙ୍କିଛନ୍ତି—

''ମାଡ଼ି ଆସୁଥିଲା    କ୍ରମେ ପୂର୍ବମୁଖେ
    ପ୍ରସାରି ବିରାଟ କାୟା ।
ଝିଲ୍ଲୀ ସଙ୍ଗେ ଖରା    ଛାପିଛାପିକିଆ
    ପ୍ରଦୋଷର ମହାଛାୟା ।
ଚଉଦିଗେ ସ୍ୱର୍ଣ୍ଣ    ବର୍ଣ୍ଣେ ବୋଳିଥିଲା
    ଅସ୍ତଗାମୀ ସୂର୍ଯ୍ୟାଂଶୁକ ।

(୧୦) ''କବିଙ୍କର ପ୍ରକୃତି-ବର୍ଣ୍ଣନା ପଢ଼ିଲା ବେଳେ ମନେହୁଏ, ସେ କବିତାରେ ଚିତ୍ରାଙ୍କନ କରି ଯାଇଛନ୍ତି । ଚାରୁଚିତ୍ର ପରି ଗୋଟିଏ ଦୃଶ୍ୟ ପରେ ଆଉ ଗୋଟିଏ ଦୃଶ୍ୟ ଚକ୍ଷୁ ସମକ୍ଷରେ ଭାସିଯାଏ । ସମସ୍ତ ସ୍ପଷ୍ଟ, ସମସ୍ତ ସୁପ୍ରକଟ ।''ମାୟାଧର ମାନସିଂହ—କବି ଓ କବିତା, ପୃ-୭୪

କାନନ, କେଦାର, ଟଙ୍କ, ନଦୀସ୍ରୋତ
ଶବଳ ମେଦିନୀ-ମୁଖ ।''
ଯଯାତିକେଶରୀ - ରା.ନା.ଗ୍ର. ପୃ. ୨୪୧)

ପର୍ବତର ପଛଭୂମିରେ ନିର୍ମିତ କପାଳେଶ୍ୱର ଦୁର୍ଗ ସଂଧ୍ୟାକାଳରେ ଦାବାନଳ— ଓଢ଼ଣାରେ ଆବୃତ ଶୈଳ ପରି ପ୍ରତୀତ ହୋଇଛି (୧୧) ସଂଧ୍ୟା-ରାଗ-ରଞ୍ଜିତ ପଶ୍ଚିମାଶା କବିଙ୍କୁ ପ୍ରତୀତ ହୋଇଛି 'ବାରୁଣୀ-କୁଟ୍ଟିମ'ରେ ପ୍ରକୃତି 'ଗଣତି' ଲାଗି କୋଟି କୋଟି ହୀରା-ନୀଳା-ମଣି-ମୁକ୍ତା-ଜରି ଖଚ଼ିତ ଶାଢ଼ୀ ସଜାଡ଼ି ରଖିଲାପରି । ସେହି ଅସ୍ତାଭାର ସ୍ପର୍ଶରେ ଶୈଳ-ତଟର ରାଜ-ଆବାସ ଝକ ଝକ ହୋଇ ଝଟକିବା, ପୁଣି ପ୍ରତୀଚୀର ଗିରି-ପ୍ରାଚୀରର ନୀଳ ଦେହରେ ଅସ୍ତାତପ ପତିତ ହୋଇ କୋମଳ ଧୂମଳ ବର୍ଣ୍ଣରେ ରଞ୍ଜିତ ହେଲା ପରି ଦିଶିବାର ବର୍ଣ୍ଣନା ମଧ୍ୟ କବି କରିଛନ୍ତି । (୧୨)

ଲୀଳାମୟୀ ଶାରଦ-ଦିନାନ୍ତ-ଲକ୍ଷ୍ମୀର ନବ ନବ ଛଇର ମନୋହାରିତା କବି-ଲେଖନୀରେ ଚମତ୍କାର ଭାବେ ରୂପାୟିତ ହୋଇଛି । ଭାଲେରିର ବିଶାଳ ଛାୟା, ଜଳ-ସ୍ଥଳ ଆବରି କ୍ରମେ ପୂର୍ବାଞ୍ଚଳଯାକ ବ୍ୟାପିଯାଇଛି । ସେହି ମହାଛାୟାପାତରେ ଲିଭି ଯାଇଛି ଦ୍ୱୀପ ଓ ଶୈଳର ମଥାରେ ପଡ଼ିଥିବା ପୀତ ଅସ୍ତାତପ । ଚିଲିକା ବକ୍ଷରେ ସଂଧ୍ୟାଲୋକପାତ ସଙ୍ଗେ ସଙ୍ଗେ କୋକପକ୍ଷୀ ପ୍ରିୟାଠାରୁ ଦୂରେଇ ଯାଇଛି ସିନା, ଚିଲିକା ଜଳର ବର୍ଣ୍ଣୋତ୍ସବ ହଠାତ୍ ସରି ଯାଇ ନାହିଁ; ବରଂ ନୀଳଜଳର ବକ୍ଷ ଭେଦ କରି ଜଳଦେବତା ବରୁଣଙ୍କ ପ୍ରବାଳ-ବିରଚିତ ପ୍ରାସାଦର ଆରକ୍ତ ଛଟା ଦୃଷ୍ଟିଗୋଚର ହେବାର ଉତ୍ପ୍ରେକ୍ଷା ସୃଷ୍ଟି କରିଛି । (୧୩)

ସନ୍ଧ୍ୟାର ରୂପରାଗ କେବଳ ସୌର-ପ୍ରଭାରେ ଲୋହିତାୟମାନ ନୁହେଁ, ଚାନ୍ଦ୍ର-ଜ୍ୟୋତିରେ ଶୁଭ୍ରାୟିତ ମଧ୍ୟ । ବିଦଗ୍ଧ-କବି ଅଭିମନ୍ୟୁ ଶାରଦ-ପୂର୍ଣ୍ଣିମାର ଏହି ଦ୍ୱୈତ-ସୌନ୍ଦର୍ଯ୍ୟାନ୍ୱିତ ସଂଧ୍ୟାର ବର୍ଣ୍ଣନା ଅତି ସୁନ୍ଦର ଉତ୍ପ୍ରେକ୍ଷା ମାଧ୍ୟମରେ କରିଥିଲେ—

''ତାତସିଦ୍ଧିକି ବଳିବ ବିଚାରି କି କାମଦେବ
ମାଣିକ୍ୟ ହୀରା ରଥାଙ୍ଗ ପେଶି ଦେଇଛି ।
ବିଯୋଗୀ ସୁଖଦୁଃଖଦ ସଂଯୋଗୀ ସୁଖଦୁଃଖଦ
ପରସ୍ପରେ ବିରୋଧାଭାସକୁ କରୁଛି

---

(୧୧) ଯଯାତିକେଶରୀ—ରାଧାନାଥ ଗ୍ରନ୍ଥାବଳୀ, ପୃ-୨୩୩
(୧୨) ପୂର୍ବୋକ୍ତ, ପୃ-୨୪୨
(୧୩) ସନ୍ଧ୍ୟାରାଗ ହେରି ହ୍ରଦ ନୀଳୋରସେ
ଆସଇ ଏ ଭାବ ଭାବୁକ-ମାନସେ
ପ୍ରଚେତା-ପ୍ରବାଳ-ପ୍ରାସାଦର ରୁଚି
ନୀଳ-ନୀରୁ ଅବା ଫୁଟି ବାହାରୁଛି ! (ଚିଲିକା—ପୂର୍ବୋକ୍ତ, ପୃ-୧୫୮)

ତମନାଶନେ ତ ପ୍ରୟୋଗ
ତମେ ପଶେ ତମୁ ଆସେ ଏ କି ସଂଯୋଗ ।''
(ବିଦଗ୍ଧ ଚିନ୍ତାମଣି-୩୦/୩)

ସଂସ୍କୃତ ତଥା ଓଡ଼ିଆ କାବ୍ୟ-ସାହିତ୍ୟର ଦୁଇ ବିଶିଷ୍ଟ ଉପମା-କୁଶଳ କବି କାଳିଦାସ (ସୂର୍ଯ୍ୟାସ୍ତ ବର୍ଣ୍ଣନା)(୧୪) ଓ ଉପେନ୍ଦ୍ର ଭଞ୍ଜ (ଚନ୍ଦ୍ରୋଦୟ ବର୍ଣ୍ଣନା) (୧୫)ଙ୍କ ଚକ୍ର-ଉପମାନର ଉପସ୍ଥାପନ ହୁଏତ ବିଦଗ୍ଧ-କବିଙ୍କ ଅବଚେତନରେ ଉଦ୍‌ଜୀବିତ ଥାଇ ତାଙ୍କ ରଚନାକୁ ଶବଳିତ କରିଥିବ । ତେବେ ଆଧୁନିକ କାବ୍ୟ-ସରଣୀର ଅଗ୍ରଣୀ ସ୍ରଷ୍ଟା ରାଧାନାଥ ଅନୁରୂପ ଦୃଶ୍ୟକୁ ସ୍ୱଭାବୋକ୍ତିରେ ବର୍ଣ୍ଣନା କରିବାରେ କିଛି କମ୍ ସାଫଲ୍ୟ ଦେଖାଇ ନାହାନ୍ତି—

''ପୂର୍ଣ୍ଣ ପ୍ରାଚେତସୀ ବର୍ଣ୍ଣବଇଭବେ,
ମିଶେ ଦିବା ଯହିଁ ଭୂତ-ମହାର୍ଣ୍ଣବେ ।
ଏଣେ କରେ ବୋଲି ଅମର ସରଣୀ
ବିରାଜନ୍ତି ଚନ୍ଦ୍ରଚୂଡ଼-ଚୂଡ଼ାମଣି ।
ତାରାଟିଏ ରାଜି ତାରାପତି ପାଶେ
ବେନିଏ କରନ୍ତି ରାଜ୍ୟ ଅର୍ଦ୍ଧାକାଶେ ।
ବାଳଜ୍ୟୋସ୍ନା ଯୋଗେ ଧୌତ ପୌରନ୍ଦରୀ ।
ହିମରଜ ମୁଖେ ବୋଳି ହେଲା ପରି
ଯେଝା ରୂପ ଶୋଭା ବିପରୀତେ ବସି
ଦେଖାନ୍ତି ଗରବେ ପ୍ରାଚୀ ପ୍ରାଚେତସୀ ।''

ପୁଣି ଅରୁଣାଭ ପଶ୍ଚିମ ଦିଶି ଓ କୌମୁଦୀ-ଚର୍ଚ୍ଚିତ ଗଗନର ସମନ୍ୱିତ ରୂପ ଅର୍ଦ୍ଧାଙ୍ଗ ଧବଳବପୁ ଶଙ୍କର ଓ ଅର୍ଦ୍ଧାଙ୍ଗ କୁଙ୍କୁମବର୍ଣ୍ଣା ପାର୍ବତୀଙ୍କର ସମନ୍ୱିତ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିର ପ୍ରତ୍ୟୟ ଜଗାଇବାର ବର୍ଣ୍ଣନାଟି ମଧ୍ୟ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । (୧୬)

---

(୧୪) ସାଂଧ୍ୟମସ୍ତମିତ ଶେଷମାତପଂ ରକ୍ତରେଖମପରା ବିଭର୍ତି ଦିକ୍ ।
ସଂପରାୟବସୁଧା ସଶୋଣିତଂ ମଣ୍ଡଳାଗ୍ରମିବ ତିର୍ଯ୍ୟଗୁଜ୍‌ଝିତମ୍ ।।
(କୁମାର ସମ୍ଭବମ୍—୮/୫୪)

(୧୫) ଏଥୁ ଅନ୍ତେ ଶୁଣ ରସ ଗ୍ରୀଷମେ ନିଶି ପ୍ରବେଶ
ଉଦୟ ତାରାଙ୍କାବେଶ ହେଲେ ଆକାଶେ ।
ଚକ୍ର-ସୁଖ ଚକ୍ର-ନକ୍ର ଛେଦନେ ହୀରକ ଚକ୍ର
ଫିଙ୍ଗିଛି ତାତ-ସିନ୍ଧିରେ କାମ କି ରୋଷେ । (ଲାବଣ୍ୟବତୀ—୧୧ଶ ଛାନ୍ଦ)

(୧୬) ଚନ୍ଦ୍ରାଲୋକେ ଧୌତ ପୂର୍ବାକାଶ ପୁନଃ ।
ବାରୁଣୀ ଆକାଶ କୁଙ୍କୁମେ ଅରୁଣ
ଅର୍ଦ୍ଧାଙ୍ଗ ଈଶ୍ୱର ଅର୍ଦ୍ଧାଙ୍ଗ ପାର୍ବତୀ
ସମ ଦିଶେ ଚିତ୍ର ବ୍ୟୋମର ମୂରତି । (ଚିଲିକା—ରାଧାନାଥ ଗ୍ରନ୍ଥାବଳୀ, ପୃ-୧୫୯)

'ଉର୍ବଶୀ' କାବ୍ୟରେ ମଧ୍ୟ ଭିନ୍ନ ପରିବେଶର ପୃଷ୍ଠଭୂମିରେ ଆମେ ଅନୁରୂପ ବର୍ଣ୍ଣନାଟିଏ ଦେଖୁ । ଗିରିରାଜ ହିମାଳୟ ସମୀପରେ ସ୍ୱର୍ଗ-ସୁନ୍ଦରୀ ଉର୍ବଶୀଙ୍କ ସହ କ୍ଷତ୍ରିୟୋତ୍ତମ ରାଜା ପୁରୁରବାଙ୍କର ପ୍ରଥମ ସାକ୍ଷାତ ଅବକାଶରେ ସନ୍ଧ୍ୟା ସମୟ ଉପନୀତ । ଦିବା ଅବସାନ ଜାଣି ସାରଥି ରଥ ଆଣି ଉଭା କରାଇଛି । ଉଭୟଙ୍କୁ ବିଦାୟ ନେବାକୁ ହେବ ପରସ୍ପରଠାରୁ । ତେବେ ରାଧାନାଥଙ୍କର ଶୋଭା-ଲୁବ୍ଧ କବି-ହୃଦୟ କେଇଟି ମୁହୂର୍ତ୍ତ ପାଇଁ ନାୟକ-ନାୟିକାଙ୍କ ସମ୍ଭାଷଣର ଉପେକ୍ଷା କରି ହୈମାଳୟିକ-ସନ୍ଧ୍ୟାର ରୂପଚିତ୍ରରେ ନିବଦ୍ଧ ହୋଇଛି—

"ଦିଗ୍‌ବଳୟ ପାରେ          ରବିରଥ ଏଣେ
        ନେବାରୁ ବାହି ଅନୂରୁ ।
ଅଭିନବ ମୂର୍ତ୍ତି          ପ୍ରକଟିଲେ ଗିରି
        ଚକ୍ରବର୍ତ୍ତୀ ଗୌରୀଗୁରୁ ।
ସନ୍ଧ୍ୟାତପ ଅର୍ଦ୍ଧ-          ଅଙ୍ଗେ ଅର୍ଦ୍ଧ ଅଙ୍ଗେ
        ଜ୍ୟୋତ୍ସ୍ନା-ପ୍ରତିବିମ୍ବ ଲଭି ।
ପ୍ରତି ଶୃଙ୍ଗ ବିଡ଼-          ମ୍ବିଲା ମାହେଶ୍ୱରୀ
        ଅର୍ଦ୍ଧ ନାରୀଶ୍ୱର ଛବି ।
ଅସି-ଶ୍ୟାମ-ବ୍ୟୋମ          ଭିତ୍ତିରେ ଏ ଚିତ୍ର
        ଦେଖି ସର୍ବେ ଭକ୍ତି ଭରେ,
ଗିରିଜା-ଗିରୀଶ          ମୂର୍ତ୍ତି ମଣି ତାଙ୍କୁ
        ପ୍ରଣମିଲେ ଯୋଡ଼ କରେ ।"

(ଉର୍ବଶୀ—ରା.ନା.ଗ୍ର., ପୃ-୨୭୧)

ମହାକବି କାଳିଦାସ 'କୁମାର ସମ୍ଭବମ୍'ରେ ହିମାଳୟରେ ସାଂଧ୍ୟ ବାତାବରଣର ଚମତ୍କାର ଦାର୍ଶନିକତାପୂର୍ଣ୍ଣ ବର୍ଣ୍ଣନା କରିଛନ୍ତି । ମାତ୍ର ସେ ବର୍ଣ୍ଣନା ସ୍ୱୟଂ ଶିବଶଙ୍କରଙ୍କ ମୁଖରେ ପାର୍ବତୀଙ୍କ ପ୍ରତି ଉଦ୍ଦିଷ୍ଟ ହୋଇଥିବାରୁ ସେଥିରେ ଏ ପ୍ରକାର ରୂପ-କଳ୍ପନାର ଅବକାଶ ସୃଷ୍ଟି ହୋଇ ନାହିଁ ।

ପ୍ରକୃତିପ୍ରେମୀ କବି ତାଙ୍କର ବିଭିନ୍ନ କାବ୍ୟରେ ଭିନ୍ନ ଭିନ୍ନ ପ୍ରାକୃତିକ ପରିବେଶ ମଧ୍ୟରେ ସଂଧ୍ୟାର ରୂପରାଗର ରୂପାୟନ କରିଛନ୍ତି । ମରାଳମାଳିନୀ ନୀଳାମ୍ବୁ ଚିଲିକା, ଚନ୍ଦ୍ରଭାଗାର ବାଲୁକାକୀର୍ଣ୍ଣ ବେଳାଭୂମି, ନୀଳାଚଳର ପ୍ରାନ୍ତଭାଗସ୍ଥ ସୁନୀଳ ମହୋଦଧିଠାରୁ ତୁଷାରମଣ୍ଡିତ ଉତ୍ତୁଙ୍ଗ ହିମାଦ୍ରି ପର୍ଯ୍ୟନ୍ତ ପ୍ରତ୍ୟେକଟି ଚିତ୍ରପଟରେ ସନ୍ଧ୍ୟାର ବର୍ଣ୍ଣାଳୀର ପରିକଳ୍ପନା ତାଙ୍କୁ ଆମୋଦିତ କରିଛି, ଆହ୍ଲାଦିତ କରିଛି, ପୁଣି ସେହି କଳ୍ପନାକୁ ରୂପାୟିତ କରି ପାଠକ ସମକ୍ଷରେ ତୋଳି ଧରିବାକୁ ପ୍ରଲୁବ୍ଧ କରିଛି ।

ତେଣୁ ବାରୁଣୀର ଦର୍ପଣ ତୁଲ୍ୟ ସ୍ୱଚ୍ଛ ସର-ସଲିଳ ସ୍ୱର୍ଣ୍ଣାଭ କିରଣରେ ଝଳି ଉଠିବାଠାରୁ ଆରମ୍ଭ କରି କଇଁସାରିଲତାବୃତ୍ତ ଶ୍ୟାମଳ ବାଲୁକାସ୍ତୂପର ଛାୟା ଦିବା-ଅବସାନ ଦେଖି କ୍ରମେ କାୟା ବିସ୍ତାର କରିବା, ପୁଷ୍ପ-ପରାଗ-ସୁରଭିତ ସମୀର ଗୁଡ଼କଙ୍କ ଘେନି କନ୍ଦୁକ-କ୍ରୀଡ଼ା କରିବା, ଶୁକ୍ତି-ତାରକିତ ସୈକତ-ବେଳାରେ ଫେନ-ଚୂଡ଼ ଲହରୀକୁଳ ଚନ୍ଦ୍ରଚୂଡ଼ଙ୍କ ଚରଣ ଚୁମ୍ବିବାର ପ୍ରୟାସ କରିବା (୧୭) ଯାକେ କୌଣସି ଦୃଶ୍ୟର ଚିତ୍ର-ରୂପ ଆଙ୍କିବାକୁ ସେ ଛାଡ଼ି ନାହାନ୍ତି ।

ଆମୂଳପ୍ରାନ୍ତ ଅପରିପକ୍ୱ-ବୁଦ୍ଧି ଦୁଇ ପ୍ରେମାସକ୍ତ କିଶୋର-କିଶୋରୀଙ୍କର ଦୀର୍ଘଶ୍ୱାସ-ଶୋଣିତ-ଲୋତକରେ ଭାରାକ୍ରାନ୍ତ କାବ୍ୟ 'କେଦାରଗୌରୀ'ରେ ପ୍ରେମର ସନ୍ନ୍ୟାସୀ-ସନ୍ନ୍ୟାସିନୀ ହୋଇ ଦେଶାନ୍ତରକୁ ଚାଲିଯିବା ପାଇଁ ନାୟକ-ନାୟିକାଙ୍କର ଏକାନ୍ତ ମନ୍ତ୍ରଣା ପରେ ନଗରପାନ୍ତସ୍ଥ କୂଟଜବନ-ବେଷ୍ଟିତ ନିର୍ମଳ ନିର୍ଝର କୂଳରେ ଭେଟ ହେବାର ନିଶ୍ଚୟ କରି ରାତ୍ରିର ପ୍ରତୀକ୍ଷା ଅବକାଶରେ ସୁଦ୍ଧା କବିବର ଅତ୍ୟନ୍ତ ଅନୁପାତ-ବୋଧ ସହକାରେ ଏକାମ୍ର-ନଗରୀରେ ସଂଧ୍ୟାର ଦୃଶ୍ୟକୁ ଅତି ସଂକ୍ଷେପରେ ହେଲେ ମଧ ବର୍ଣ୍ଣନା କରିଛନ୍ତି—

"ଅସ୍ତଗାମୀ ରବି- ବିଭା ଝଟକିଲା
ବଡ଼ ଦେଉଳ ତ୍ରିଶୂଳେ,
ଭାର୍ଗବୀ ପୁଳିନୁଁ ହଂସରାଳୀ ଉଡି
ଗଲେ ଖଣ୍ଡଗିରି ଚୂଳେ ।
ବିନ୍ଦୁସରୋବରେ ସିନ୍ଦୂର-ଲହରୀ
ଖେଳିଲା ମନ୍ଦ ସମୀରେ ।
ରଥାଙ୍ଗ ମିଥୁନ ଦୀପଦଣ୍ଡ ଛାଡ଼ି
ଗଲେ ବିପରୀତ ତୀରେ ।"

(କେଦାରଗୌରୀ, ରା.ଗ୍ର., ପୃ-୪୨)

କାବ୍ୟାନ୍ତରରେ କାଠଯୋଡ଼ି ନଦୀ ତଟରେ ପରିଲକ୍ଷିତ ସାଂଧ-ସୌନ୍ଦର୍ଯ୍ୟକୁ କବି ବେଶ୍ ବିସ୍ତୃତ ଭାବେ ଚିତ୍ରିତ କରିଛନ୍ତି । କଟକ-ନଗରର ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ ଦେବୀଦ୍ୱାର ପର୍ବତମାଳାର ପଶ୍ଚାତ୍ ଭାଗରେ ତପ୍ତ-ହେମ-ଛବି ଦିନାନ୍ତ ରବି ବୁଡି ଯାଉଛନ୍ତି । ପୀତ କରଜାଳରେ ଝଳିତ ଭୁବନ ସୁଖ-ସ୍ୱପ୍ନ ପରି ଜନ-ମନ ହରଣ କରୁଛି । ପ୍ରଭା-ପ୍ଲାବିତ ବାରୁଣୀ ଗଗନ ଧିକ୍କାର କରୁଛି ଗନ୍ଧର୍ବ-ନଗରୀର ଶୋଭାକୁ । ମନେ ହେଉଛି ବାରୁଣୀ-ରାଣୀ ସ୍ୱର୍ଣ୍ଣ-ଚେଳ ପରିଧାନ କରି ସଖୀ ଗହଣରେ ଫଗୁ ଖେଳୁଛନ୍ତି ଅବା । ସଂସ୍କୃତ ସାହିତ୍ୟର ପ୍ରଖ୍ୟାତ କଥାକାବ୍ୟକାର

(୧୭) ଚନ୍ଦ୍ରଭାଗା—ପୂର୍ବୋକ୍ତ, ପୃ-୫୦

ବାଣଭଟ୍ଟ ସନ୍ଧ୍ୟା-ବର୍ଣ୍ଣନାରେ ପିଙ୍ଗଳ ବର୍ଣ୍ଣର ଭୂୟୋଲ୍ଲେଖ କଲା ପରି (୧୮) ଓଡ଼ିଆ ସାହିତ୍ୟରେ ଆଧୁନିକତାର ଅନ୍ୟତମ ଆଦି ପୁରୋଧା ରାଧାନାଥ ସ୍ୱର୍ଣ୍ଣିମାର ଅଧିକୋଽଧିକ କଳ୍ପନା ଉପସ୍ଥାପନ କରିଛନ୍ତି—

"ସୁବର୍ଣ୍ଣ ବିମାନ ସ୍ୱର୍ଣ୍ଣ ରଥ ଦୋଳା
ନଭସ୍ଥଳେ କେତେ ହୋଇଛନ୍ତି ତୋଳା,
ସୁବର୍ଣ୍ଣର ନଦେ ବହେ ସ୍ୱର୍ଣ୍ଣ ସ୍ରୋତ,
ସୁବର୍ଣ୍ଣ ଅଝାଳେ ଚଳେ ସ୍ୱର୍ଣ୍ଣପୋତ,
ସୁବର୍ଣ୍ଣ ମଞ୍ଚରେ ସୁବର୍ଣ୍ଣ ଆସନ,
ତହିଁ କି ବସିଛି ଦେବ ବେହରଣ ।"

(ନନ୍ଦିକେଶ୍ୱରୀ, ରା.ନା.ଗ୍ର., ପୃ-୬୭)

ଚାହୁଁ ଚାହୁଁ ରବି ଅସ୍ତମିତ ହୋଇଛନ୍ତି । ସ୍ୱର୍ଣ୍ଣିମା ପରିବର୍ତ୍ତିତ ହୋଇଛି ରକ୍ତିମାରେ । ସମଗ୍ର ପଶ୍ଚିମାଶା କୁଙ୍କୁମ-ଛୁରିତ ହେଲା ପରି ପ୍ରତୀତ ହୋଇଛି । ଚକ୍ରବାଳ ରକ୍ତ, ପୀତ, ନୀଳାଦି ନାନା ବର୍ଣ୍ଣରେ ବର୍ଣ୍ଣୋତ୍ସବ ରଚି ମୁହୁର୍ମୁହୁଃ ନବ ନବ ଇନ୍ଦ୍ରଜାଲ ଦେଖାଇଛି । ତେଣେ ଗୋଧୂଳିର କୁନ୍ତଳରେ ତାରାଟିଏ ଫୁଟି କାଠଯୋଡ଼ିର ଜଳ-ଦର୍ପଣରେ ସ୍ୱମୁଖର ପ୍ରତିବିମ୍ବ ନିହାରୁଛି । କ୍ରମେ ରାଶି ରାଶି ଅନ୍ଧକାର ସତେ ଅବା ପର୍ବତର କନ୍ଦରରୁ ବାହାରି ଆସି ଜଳ-ସ୍ଥଳ-ନଭ ସବୁ ଏକାକାର କରି ଦେଇଛି ।

କେବଳ ପଦ୍ୟକାବ୍ୟାବଳୀରେ ନୁହେଁ; ଗଦ୍ୟ-ରଚନା ସମୂହରେ ମଧ୍ୟ ରାଧାନାଥ ସାଂଧ୍ୟ-ପ୍ରକୃତିର କବିତ୍ୱପୂର୍ଣ୍ଣ ବର୍ଣ୍ଣନା କରିଛନ୍ତି । ଗଳ୍ପ-ନାୟକ ଇତାଲିଦେଶୀୟ ଯୁବକ ତାଙ୍କର ପ୍ରେୟସୀ ଲାରାଠାରୁ ବିଦାୟ ନେଇ ପିତୃ-ସଦନକୁ ଜଳ-ଯାତ୍ରା ଆରମ୍ଭ କରିବାର ସ୍ୱଳ୍ପ କାଳ ପରେ ବିଦାୟ ସୂର୍ଯ୍ୟ ଅସ୍ତୋନ୍ମୁଖ ହେବାରୁ ସାଗର-ଜଳ ରକ୍ତବର୍ଣ୍ଣ ହେଲା । ତରଙ୍ଗମାଳା ଦେଖି ବୋଧହେଲା ଯେମନ୍ତ ପଦ୍ମରାଗମଣିଘଟିତ ଚଞ୍ଚଳ ଗିରିମାନ ଏକତ୍ରିତ ହୋଇ କୋଳାହଳ କରୁଅଛନ୍ତି । (୧୯) 'ପାର୍ବତୀ କାବ୍ୟର ଉପସଂହାର'ରେ ରାଜା ଗଙ୍ଗେଶ୍ୱରଙ୍କ ନଗର-ପ୍ରବେଶର ସମୟ ମଧ୍ୟ ସଂଧ୍ୟା, ଯେତେବେଳେ କି ସାଂଧ ଦୀପାବଳୀ 'ଆକାଶରେ ତାରାବ୍ରଜ ତୁଲ୍ୟ' କିମ୍ବା

(୧୮) "ଅଥ କ୍ଷୀଣ ଦିବସେ ପରିଣତ-ପ୍ରିୟଙ୍ଗୁ-ମଞ୍ଜରୀରଜୋନିଭେନ ପିଞ୍ଜରିମଣା ରଜ୍ୟମାନେ ବିଲମ୍ବିନି ବ୍ରଧ୍ନମଣ୍ଡଳେ, ଅବିରଳ କୁସୁମ୍ଭ-କୁସୁମରସରକ୍ତ ଦୁକୂଳ କୋମଳେନ ଚାସ୍ତାତପେନ ମୁଚ୍ୟମାନେଷୁ ଦିଙ୍ମୁଖେଷୁ । ଚକୋର ନୟନତାରକା କାନ୍ତିନାଚ ପିଙ୍ଗଳାମ୍ନା ବିଲିପ୍ୟମାନ ତିରୋହିତ ନିଳିମ୍ନ ବ୍ୟୋମ୍ନି, କୋକିଳ-ବିଲୋଚନ ଛବି ବଭ୍ରୁଣି ଚାରୁଣ୍ୟତି ସାନ୍ଧ୍ୟେ ଭୁବନମର୍ଚ୍ଛିଷି"-କାଦମ୍ବରୀ, ପୃ-୨୧୭

(୧୯) ଇତାଲୀୟଯୁବା-ରାଧାନାଥ ଗ୍ରନ୍ଥାବଳୀ, ପୃ-୪୨୧

'ନୀଳ ଚିଲିକାରେ ମସ୍ୟଜୀବୀମାନଙ୍କର ମଶାଲ ପରି' ଅଥବା 'ପର୍ବତର ଦାବାନଳ ସଦୃଶ ପରିଶୋଭିତ' ହୋଇଛି ।(୨୦) ଗଦ୍ୟରେ ରଚିତ 'ଉର୍ବଶୀ'ର ଦ୍ୱିତୀୟ ସର୍ଗର ପ୍ରାରମ୍ଭରେ, ''ସୂର୍ଯ୍ୟାସ୍ତର ଜବାରୁଣ ରାଗରେ' ପ୍ରୟାଗ ନଗରୀ ସ୍ନାତ, ଅଳିନ୍ଦରେ ମଣିଶିଳା-ସ୍ତମ୍ଭାବଳୀ କୀର୍ତ୍ତିସ୍ତମ୍ଭ ମନ୍ଦିର ପ୍ରାସାଦାଦି ସେହି କିରଣରେ ପାଟଳିତ ହୋଇଅଛି । ଦୂରରୁ ପୁଷ୍ପିତ ଶାଳ୍ମଳୀ ବନର ପ୍ରତିବିମ୍ବ ନଦୀଦର୍ପଣ ଓ ନୀଳାକାଶ ପଟରେ ଶୋଭା ପାଉଅଛି । ଅଦୂରରେ ଗଙ୍ଗା-ଯମୁନାର ମିଶ୍ରିତ ସ୍ରୋତ ସେହି କିରଣରେ ପାଟଳ ଧୂମଳ ହୋଇଅଛି । ପଦ୍ମପତ୍ର ସହିତ ନୀଳଝିଣ୍ଟି ପୁଷ୍ପ ମିଶ୍ରିତ ହୋଇ ଗୁନ୍ଥା ହେଲେ ଯେପରି ଦିଶେ ସେହିପରି ଶୋଭା ପାଉଅଛି ।'' (୨୧)

ଇଂରେଜ କବି କୀଟସ୍‌ଙ୍କ ମତରେ ସତ୍ୟ ଓ ସୌନ୍ଦର୍ଯ୍ୟ ପରସ୍ପର ଅଭିନ୍ନ । ସୌନ୍ଦର୍ଯ୍ୟ ବିନା ସତ୍ୟର ଓ ସତ୍ୟ ବିନା ସୌନ୍ଦର୍ଯ୍ୟର ଅନୁଭୂତି ସମ୍ଭବ ନୁହେଁ । ସୌନ୍ଦର୍ଯ୍ୟାନୁଭୂତି ପୁଣି ଦ୍ୱିବିଧ : ଇନ୍ଦ୍ରିୟାନୁଗତ ବା ପାର୍ଥିବ ଓ ଇନ୍ଦ୍ରିୟାତୀତ ବା ଅପାର୍ଥିବ । କବିବର ରାଧାନାଥଙ୍କ ସୌନ୍ଦର୍ଯ୍ୟଚେତନା ଇନ୍ଦ୍ରିୟାନୁଗତ; ସମସାମୟିକ କବି ମଧୁସୂଦନଙ୍କ ସୌନ୍ଦର୍ଯ୍ୟ ଚେତନା ପରି ଇନ୍ଦ୍ରିୟାତୀତ ନୁହେଁ । ରାଓ-କବି ମଧ ରାଧାନାଥଙ୍କ ପରି ସଂଧ୍ୟାକାଳୀନ ଦୃଶ୍ୟସମୂହର ସ୍ୱାଭାବିକ ଚିତ୍ରଣ କରିଛନ୍ତି । ପଶ୍ଚିମ-ଆକାଶକୁ ସିନ୍ଦୂରମୟ କରି ରବି ବୁଡ଼ିଯିବାର ସୁନ୍ଦର ଲୋହିତ ଛବି (୨୨) ପକ୍ଷୀମାନଙ୍କର ନୀଡ଼-ବାହୁଡ଼ା, ଗୋଠ-ପେରନ୍ତାଗୋରୁପଲ,ହଳ-କାମ ସାରି ଘରକୁ ଫେରୁଥିବା ଚଷାର ଗୀତ, ଆକାଶରେ ରତ୍ନଦୀପାବଳୀ ପରି ଜଳିଉଠୁଥିବା ଗୋଟି ଗୋଟି ତାରା (୨୩), ସବୁକିଛିର ଚିତ୍ର ସେ ଆଙ୍କିଛନ୍ତି । କିନ୍ତୁ 'ଦିନାନ୍ତ'ରେ ସହସା ସୁଦୂର ଗ୍ରାମରେ ଶଙ୍ଖ-ବାଦନର ଧ୍ୱନି ଶାନ୍ତ ବାତାବରଣରେ ଗମ୍ଭୀର ଭାବ ବିସ୍ତାର କରିବାର ଯେଉଁ ଆବେଦନ ସେ ସୃଷ୍ଟି କରିଛନ୍ତି ବା ଶ୍ରାନ୍ତ-ଜନ-ବାଞ୍ଛିତ ଋଷି-ଜନ-ସେବିତ ସୁର-ନର-ବନ୍ଦିତ ସଂଧ୍ୟାର ପାଦ-ସ୍ପର୍ଶରେ ମହାକାଶରେ ଚନ୍ଦ୍ର-ତାରା ଦୀପକଛନ୍ଦରେ ଜଳି ଉଠିବା ଓ ତା'ର ମର୍ମେ ମର୍ମେ ଗାୟତ୍ରୀର ଅମୃତ-ଗମ୍ଭୀର ମନ୍ତ୍ର ବାଜି ଉଠିବାର ଯେଉଁ ପ୍ରଭାବୋତ୍ପାଦକ ସଙ୍ଗୀତ ସେ ଶୁଣାଇଛନ୍ତି, ତା'ର ସମଦ୍ୟୋତନା ରାଧାନାଥ-ସାହିତ୍ୟରେ କୁତ୍ରାପି ସମ୍ଭବ ହୋଇ ନାହିଁ । ଏ ପ୍ରସଙ୍ଗରେ

---

(୨୦) ପୂର୍ବୋକ୍ତ, ପୃ-୪୩୪

(୨୧) ପୂର୍ବୋକ୍ତ, ପୃ-

(୨୨) 'ସଂଧ୍ୟା'—ଶିଶୁଗୀତ, ମଧୁସୂଦନ ଗ୍ରନ୍ଥାବଳୀ, ପୃ-୨

(୨୩) 'ସଂଧ୍ୟା'— ଛାନ୍ଦମାଳା, ପୂର୍ବୋକ୍ତ, ପୃ-୫

ରାଜଶେଖରଙ୍କ ଉକ୍ତି—"ସ ଯତ୍ ସ୍ୱଭାବଃ କବିସ୍ତଦନୁରୂପଂ କାବ୍ୟମ୍ ।"(୨୪) ସ୍ମରଣୀୟ । ମଧୁସୂଦନଙ୍କ ଋଷିପ୍ରାଣ ବାହ୍ୟ-ଅନୁଭୂତି ମଧ୍ୟରେ ଅନ୍ତରର, ଲୌକିକ ମଧ୍ୟରେ ଅଲୌକିକର ଅନ୍ୱେଷଣ କରିବାର ପ୍ରୟାସ କରିଛି; ମାତ୍ର ରାଧାନାଥଙ୍କ ଅବାରିତ ରୂପ-ପିପାସା ଦୃଶ୍ୟ-ଜଗତର ସ୍ତରେ ସ୍ତରେ ପ୍ରକାଶିତ ରୂପ-ସୌନ୍ଦର୍ଯ୍ୟର ଉପାସନା ଓ ଉପସ୍ଥାପନ କରିଛି ବିମୁଗ୍ଧ ଭାବରେ । ଅଧିକନ୍ତୁ ରୀତି-କବିମାନଙ୍କ ପରି ଅତିଶୟ ଅନୁରଞ୍ଜନ ବା ଅଳଙ୍କରଣର ପ୍ରୟୋଗ ନ କରି ସେ ସରଳ ନିରାଡ଼ମ୍ବର ସହଜବୋଧ ଶ୍ରୁତି-ମଧୁର ଭାଷା ଓ ଛନ୍ଦ ମାଧ୍ୟମରେ ସଂଯତ ଓ ସଂଗତ ଚାରୁ-ଚିତ୍ରଣ କରିଛନ୍ତି ।

ଜୀବମାତ୍ରାର ସୌନ୍ଦର୍ଯ୍ୟ-ଚେତନା ରହଛି; ମାନବ-ପ୍ରାଣରେ ଏ ଚେତନା ତୀବ୍ରତର । ତେଣୁ ସେ ସୌନ୍ଦର୍ଯ୍ୟର ଉପାସନା କରେ, 'ଉପାସନା' ଶବ୍ଦର ଅର୍ଥ ନିକଟାବସ୍ଥାନ । ମାତ୍ର ଏ ଅବସ୍ଥାନ ପଦ୍ମ ସହିତ ଦର୍ଦ୍ଦୂରର ଏକତ୍ରାବସ୍ଥିତି ନୁହେଁ, ବରଂ କମଳ ସହିତ ଭୃଙ୍ଗର ସହାବସ୍ଥାନ ପରି ଆବେଗ ଓ ଆବେଶମୟ, ଆହ୍ଲାଦ ଓ ଉନ୍ମାଦନାର ଉତ୍ପାଦକ, ଉଲ୍ଲାସ ଓ ପ୍ରସାଦଦାୟକ ଏକ ବିଷାଦନିବାରୀ ଚିତ୍‌ବିଳାସ । ଏହା ବୌଦ୍ଧିକ ନୁହେଁ, ସଂବେଗାତ୍ମକ; ଯୁକ୍ତିରେ ନୁହେଁ, ଅନୁଭୂତିରେ ଏହାର ଆବେଦନ । ପୁଣି ବିଶିଷ୍ଟ ଦାର୍ଶନିକ ହେଗେଲ୍‌ଙ୍କ ମତରେ କଳା-ସୌନ୍ଦର୍ଯ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟଠାରୁ ଉତ୍କୃଷ୍ଟ । କାରଣ ପ୍ରକୃତି ଆତ୍ମପ୍ରସାର ଓ ସ୍ୱାତନ୍ତ୍ର୍ୟହୀନ, ସ୍ୱଷ୍ଟତା ଓ ଜୀବନୀଶକ୍ତି ବର୍ଜିତ । ପ୍ରକୃତିର ଏହି ଇତରତା ପୂର୍ଣ୍ଣତା ଓ ସୌନ୍ଦର୍ଯ୍ୟ ଲାଭ ପାଇଁ ଆତ୍ମାର ଚିତ୍‌ବିଳାସ କଳାର ସଂସ୍ପର୍ଶ ଲୋଡ଼ିଥାଏ । (୨୫) ପ୍ରକୃତିରେ ସୌନ୍ଦର୍ଯ୍ୟର ପ୍ରକାଶ ଓ ପ୍ରବାହ ଅବାରିତ ଓ ଅବିରତ ହେଲେ ହେଁ ରୂପପାୟୀ ଦୃଷ୍ଟି ଓ ରସଗ୍ରାହୀ ହୃଦୟକୁ ଅଧିକ ସମୟ ଧରି ରଖିବାକୁ ସମର୍ଥ ହୁଏ ନାହିଁ । ପକ୍ଷାନ୍ତରେ କବି-ଶିଳ୍ପୀର ପରିବେଷିତ ସୌନ୍ଦର୍ଯ୍ୟ ମାନବର ବିଷୟୀ ମନକୁ ନିରସ୍ତ କରାଏ , ରସ-ପିପାସାକୁ ବଳବତୀ କରାଏ; ଦେବଶିଳ୍ପ ପ୍ରକୃତିଠାରୁ ମାନବ-ଶିଳ୍ପ ସାହିତ୍ୟ-କଳାର ଅଧିକତର ରମଣୀୟତା ଓ ବିଭବଶାଳିତାର ପ୍ରତିପାଦନ କରାଏ । ରାଧାନାଥଙ୍କ ସାଂଧ-ସୌନ୍ଦର୍ଯ୍ୟର ରୂପାୟନ ଏହାର ଦୃଷ୍ଟାନ୍ତ ।



(୨୪) କାବ୍ୟମୀମାଂସା, ପୃ-୧୩୦

(୨୫) Philosophy of Art and Beauty—Kuhrs, P-383

# ମହାଯାତ୍ରା ଓ ରାଧାନାଥ

ଡଃ ପ୍ରସନ୍ନ କୁମାର ସ୍ୱାଇଁ

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରମୁଖ ସ୍ରଷ୍ଟା କବିବର ରାଧାନାଥ ରାୟଙ୍କର କବି ପ୍ରତିଭାର ସର୍ବଶ୍ରେଷ୍ଠ ଓ ସଫଳ ସୃଷ୍ଟି ହେଉଛି 'ମହାଯାତ୍ରା' । 'ମହାଯାତ୍ରା' କାବ୍ୟ ମାଧ୍ୟମରେ ରାଧାନାଥୀ ପ୍ରତିଭାର ଚରମ ଉତ୍କର୍ଷ ହିଁ ପ୍ରତିପାଦିତ ହୋଇଛି । ଇଂରେଜମାନଙ୍କର ଓଡ଼ିଶା ଅଧିକାର ପରେ ପରେ ଊନବିଂଶ ଶତକରେ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ପର୍ବରେ ଯେଉଁ ଶୂନ୍ୟତା ସୃଷ୍ଟି ହୋଇଥିଲା ରାଧାନାଥଙ୍କର ଆବିର୍ଭାବ ପରେ ପରେ ଉତ୍କଳୀୟ ଆକାଶରୁ ସେହି ଶଙ୍କଟ କ୍ରମଶଃ ଦୂରୀଭୂତ ହୋଇଗଲା । ଆଧୁନିକତାର ଉପାସକ ଭାବେ ରାଧାନାଥଙ୍କର ବିଭିନ୍ନ ଭାଷା ଓ ସାହିତ୍ୟରେ ଗଭୀର ବ୍ୟୁତ୍ପତ୍ତି ରହିଥିଲା । ଓଡ଼ିଆ ଭାଷା ବିଲୋପକୁ କେନ୍ଦ୍ର କରି ୧୮୬୮-୬୯ ମସିହାରେ ସମଗ୍ର ଓଡ଼ିଶାରେ ଯେଉଁ ଭାଷା ଆନ୍ଦୋଳନ ସୃଷ୍ଟି ହୋଇ ତୀବ୍ର ଆକାର ଧାରଣ କରିଥିଲା, ତାହା ରାଧାନାଥଙ୍କ ପରି ଜଣେ ସଚେତନ ଯୁବ ମାନସର ଅନ୍ତଃଶ୍ଚେତନାରେ ଗଭୀର ରେଖାପାତ କରିଥିଲା । ୧୮୬୮ ମସିହାରେ ବଙ୍ଗଳା ଭାଷାରେ 'କବିତାବଳୀ' ରଚନା ମାଧ୍ୟମରେ ନିଜ ପାଦକୁ ବଙ୍ଗଳା ସାହିତ୍ୟରେ ଦୃଢ଼ କରିବାକୁ ଚାହିଁଥିଲା ବେଳେ ହଠାତ୍ ଜନ୍ ବୀମ୍ସ୍ ଓ ଭୂଦେବ ମୁଖୋପାଧ୍ୟାୟଙ୍କ ସଂସ୍ପର୍ଶରେ ଆସି ନିଜ ଚିନ୍ତା ଚେତନାରେ ରାଧାନାଥ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । ଠିକ୍ ଏତିକିବେଳେ ବାଲେଶ୍ୱରରୁ ବୈକୁଣ୍ଠନାଥ ଦେ'ଙ୍କ ସମ୍ପାଦନାରେ ପ୍ରକାଶିତ 'ଉତ୍କଳ ଦର୍ପଣ' ପତ୍ରିକାରେ ପ୍ରକାଶ ପାଇଥିଲା ତାଙ୍କ ରଚିତ 'ବିବେକୀ' (୧୮୭୩) ପ୍ରବନ୍ଧ । ଫଳତଃ ଏହି ବର୍ଷ ଆଧୁନିକ ଓଡ଼ିଆ ସାହିତ୍ୟରେ ପୂର୍ବଦିଗରେ ଯେଉଁ ନବରାଗ ସୃଷ୍ଟି ହୋଇଥିଲା ପରବର୍ତ୍ତୀ କାଳରେ ସେହି ରାଗର ପ୍ରଚଣ୍ଡ ମାର୍ତ୍ତଣ୍ଡ ହୋଇ ରାଧାନାଥ ହିଁ ଆଧୁନିକ ଓଡ଼ିଆ ସାହିତ୍ୟକୁ ନାନା ଦିଗରୁ ପ୍ରତିଭାତ କରିଥିଲେ ।

ନିଜ ସୃଷ୍ଟିର ପ୍ରାରମ୍ଭରୁ ରାଧାନାଥ ପ୍ରବନ୍ଧ ଓ ରମ୍ୟରଚନା ପ୍ରଭୃତିରେ ମନୋନିବେଶ କରିଥିଲେ ହେଁ ତାଙ୍କର ସିଦ୍ଧି ଥିଲା କାବ୍ୟ କବିତା କ୍ଷେତ୍ରରେ । ସୁତରାଂ ପ୍ରଥମେ କାଳିଦାସଙ୍କ 'ମେଘଦୂତ'ର ଓଡ଼ିଆ ଅନୁବାଦ ମଧ୍ୟରେ ସେ ଓଡ଼ିଶାର ପ୍ରାକୃତିକ ଭୂଗୋଳ ସହିତ ଏକାତ୍ମ୍ୟ ହେବା ସହିତ ଉତ୍କଳୀୟ ପରମ୍ପରା,

ପୁରୋଦୃଷ୍ଟି ତଥା ଏହାର ଐତିହ୍ୟ ଏବଂ ପୁରାଣ କିମ୍ବଦନ୍ତୀ ସହିତ ଓତପ୍ରୋତ ଭାବେ ପରିଚିତ ହୋଇ ସୃଷ୍ଟି କରିଥିଲେ ଏକାଧିକ କାବ୍ୟ କବିତା ।

ରାଧାନାଥଙ୍କର କବି ପ୍ରତିଭାର ଆଦ୍ୟ ଓଁକାର ପ୍ରତିଧ୍ୱନିତ ହୋଇଛି, 'କେଦାରଗୌରୀ' (୧୮୮୫) କାବ୍ୟ ମଧ୍ୟରେ । ଏହି କାବ୍ୟ ଉତ୍କଳୀୟ କିମ୍ବଦନ୍ତୀ ଉପରେ ପର୍ଯ୍ୟବସିତ । ଏହି କାବ୍ୟ ସୃଷ୍ଟି ପରେ କବି ଆଉ ପଛକୁ ଫେରି ଚାହିଁବାର ଅବସର ପାଇନାହାନ୍ତି । ଚାକିରି ବ୍ୟପଦେଶରେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ସହିତ ପର୍ଯ୍ୟଟନରେ ଭାରତର ବିଭିନ୍ନ ପ୍ରାନ୍ତକୁ ଯାଇ ଭାରତୀୟ ପ୍ରାକୃତିକ ପରିବେଶ ସହିତ ଏକାକାର ହୋଇ ସେ ନିଜ ଜୀବନରେ ଯେଉଁ ଦୀର୍ଘ ଅନୁଭୂତି ସଂଗ୍ରହ କରିଛନ୍ତି ତାହା ତାଙ୍କର ବିଭିନ୍ନ କାବ୍ୟ କବିତାରେ ପ୍ରକାଶ ପାଇଛି । ପୁଣି କବିଙ୍କର ଏହି ଅନୁଭୂତିର ଏକ ପୂର୍ଣ୍ଣାଙ୍ଗ ପ୍ରତିବିମ୍ବ 'ମହାଯାତ୍ରା' କାବ୍ୟରେ ହିଁ ପ୍ରତିଭାତ ହୋଇଛି ।

'ମହାଯାତ୍ରା' କାବ୍ୟ ପୁସ୍ତକାକାରରେ ପ୍ରକାଶ ପାଇବା ପୂର୍ବରୁ 'ଉତ୍କଳ ପ୍ରଭା' ପତ୍ରିକାରେ ୧୮୯୨ ମସିହା ଜୁନ୍ ସଂଖ୍ୟାଠାରୁ ଧାରାବାହିକ ଭାବେ ପ୍ରକାଶ ପାଇଥିଲା । ପରେ ୧୮୯୬ ମସିହା ଜାନୁୟାରୀ ମାସରେ କନିକା ରାଜମାତା କୃଷ୍ଣପ୍ରିୟା ପାଟମହାଦେଈଙ୍କ ସାହାଯ୍ୟ ଓ ସହଯୋଗରେ ଏହା ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ମହାଯାତ୍ରାର ପାଣ୍ଡୁଲିପି ପ୍ରସ୍ତୁତ କଲାବେଳେ ରାଧାନାଥ ଏହାକୁ ତିରିଶଟି ସର୍ଗରେ ବିଭକ୍ତ କରିଥିବା କଥା ତାଙ୍କ ଜୀବନୀ(୧)ରୁ ଜଣାପଡ଼େ । ସେ ୧୨ଶ ସର୍ଗର ଶେଷ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ କରିଥିଲେ । ଅବଶିଷ୍ଟ ୧୮ଟି ସର୍ଗର ଖସଡ଼ା ମଧ୍ୟ ପ୍ରସ୍ତୁତ କରିଥିଲେ । ମାତ୍ର ଏହି ସମୟରେ ସେ ସରକାରୀ ଚାକିରିରେ ଥାଇ ତାଙ୍କର କେତେକ ନିମ୍ନ କର୍ମଚାରୀଙ୍କର ପଦୋନ୍ନତି ନେଇ ଶତ୍ରୁ ହୋଇ ପଡ଼ିଥିଲେ । ସେମାନେ ରାଧାନାଥଙ୍କ 'ମହାଯାତ୍ରା'ର କିୟଦଂଶ ଓ 'ଶିବାଜୀଙ୍କର ଉତ୍ସାହ ବାକ୍ୟ' ସରକାର ବିରୋଧୀ ବୋଲି ମନ୍ତବ୍ୟ ଦେଇ ରାଧାନାଥଙ୍କୁ ଇଂରେଜ ସରକାରଙ୍କ ବିଷ ଦୃଷ୍ଟିକୁ ଆଣିବାର ପ୍ରଚେଷ୍ଟା କରିଥିଲେ । ଫଳତଃ ଗଭର୍ଣ୍ଣମେଣ୍ଟ ସେହି ଆପତ୍ତିକର ଅଂଶ ସମୂହ ମହାଯାତ୍ରାରୁ ଉଠାଇ ଦେଇ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବା ସକାଶେ ରାଧାନାଥଙ୍କୁ ଗୋପନୀୟ ପତ୍ର ଲେଖିଥିଲେ । ମାତ୍ର 'ଶିବାଜୀଙ୍କ ଉତ୍ସାହ ବାକ୍ୟ' କବିତାବଳୀରୁ ଉଠାଇଦେବା ସକାଶେ ଲେଖି ନାହାନ୍ତି । X X X X ଜୁଲାଇ ୧୭ ତାରିଖ ୧୮୯୯ ସାଲରୁ ନଭେମ୍ବର ଶେଷ ପର୍ଯ୍ୟନ୍ତ ପ୍ରାୟ ସାଢ଼େ ଚାରି ମାସ ରାଧାନାଥଙ୍କ ସହିତ ଗଭର୍ଣ୍ଣମେଣ୍ଟଙ୍କର ଯେଉଁ ଗୋପନୀୟ ପତ୍ର ବ୍ୟବହାର ଚାଲିଥିଲା ତହିଁରେ ରାଧାନାଥ

---

୧. ରାଧାନାଥ ଜୀବନୀ (୧୯୪୧), ପୃ-୩୧୨

ଅତିରିକ୍ତ ମାତ୍ରାରେ ବ୍ୟସ୍ତ, ଚିନ୍ତିତ, ବିବ୍ରତ ଓ ଅସ୍ଥିର ହୋଇ ପଡ଼ିଥିଲେ । ଦାରୁଣ ଦୁଶ୍ଚିନ୍ତାରେ ଜର୍ଜରିତ ହୋଇ ତାହାଙ୍କର ମନ ଅବସନ୍ନ ଓ ସ୍ୱାସ୍ଥ୍ୟର ବିଷମ କ୍ଷତି ହୋଇଥିଲା ।(୨) ତେଣୁ ମାତ୍ର ସାତଟି ସର୍ଗମଧ୍ୟରେ ମହାଯାତ୍ରା ଚିରଦିନ ପାଇଁ ଏକ ଅସମ୍ପୂର୍ଣ୍ଣ କାବ୍ୟ ହୋଇ ରହି ଯାଇଥିଲା ।

ଏହି ଅସମ୍ପୂର୍ଣ୍ଣତା ସତ୍ତ୍ୱେ ମହାଯାତ୍ରା ମହାକାବ୍ୟ ଗୌରବରେ ଗୌରବାନ୍ୱିତ । ମାତ୍ର କେତେକ ସମାଲୋଚକ ବିଭିନ୍ନ ଦୃଷ୍ଟିକୋଣରୁ ଏହାକୁ ମହାକାବ୍ୟ କହିବାକୁ କୁଣ୍ଠାବୋଧ କରନ୍ତି । କାରଣ ମହାକାବ୍ୟ ସମ୍ପର୍କରେ ପାଶ୍ଚାତ୍ୟ ସମାଲୋଚକ ଆରିଷ୍ଟୋଟଲ କହନ୍ତି— "An epic should be based on a single action, one that is complete in itself with a beginning, middle and the end, so as to enable the work to produce its own pleasure with all the organic unity of a living creature." ତାଙ୍କ ଦୃଷ୍ଟିରେ ମହାକାବ୍ୟର କଥାବସ୍ତୁରେ ଏକତ୍ୱ (Unity), ସମଗ୍ରତ୍ୱ (Entirety), ଏବଂ ମହତ୍ୱ (Sublimity)ରହିବା ଆବଶ୍ୟକ । ପୁଣି ପ୍ରାଚ୍ୟ ଆଲୋଚକ ଓ ପ୍ରଖ୍ୟାତ ସମାଲୋଚକ ବିଶ୍ୱନାଥ କବିରାଜ ମହାକାବ୍ୟର ଲକ୍ଷଣ ନିର୍ଦ୍ଦେଶ କରିବାକୁ ଯାଇ ତାଙ୍କ ପ୍ରଣୀତ ଗ୍ରନ୍ଥ 'ସାହିତ୍ୟ ଦର୍ପଣ' ମଧ୍ୟରେ ଉଲ୍ଲେଖ କରିଛନ୍ତି—

''ସର୍ଗବନ୍ଧୋ ମହାକାବ୍ୟଂ ତତ୍ରୈକୋ ନାୟକଃ ସୁରଃ,
ସଦ୍‌ବଂଶଃ କ୍ଷତ୍ରିୟୋ ବାପି ଧୀରୋଦାତ୍ତ ଗୁଣାନ୍ୱିତଃ ।
ଏକ ବଂଶଭୂବାଭୂପାଃ କୁଳଜା ବହବୋଽପିବା,
ଶୃଙ୍ଗାର ବୀର ଶାନ୍ତ ନାମେକୋଽଙ୍ଗୀ ରସ ଇଷ୍ୟତ ।
ଅଙ୍ଗାନି ସର୍ବୋଽପି ରସାଃ ସର୍ବେ ନାଟକସଂନ୍ଧୟଃ
ଇତିହାସୋଦ୍ ଭବଂ ମନ୍ୟଦ୍ ବାବୃତ୍ତ ସଜ୍ଜନାଶ୍ରୟମ୍ ।
ଚତ୍ୱାରସ୍ତସ୍ୟ ବର୍ଗାଽସ୍ୟୁସ୍ତେଷ୍ୱେକଞ୍ଚ ଫଳଂ ଭବେତ୍
ଆଦୌ ନମସ୍କ୍ରିୟାଶୀର୍ବା ବସ୍ତୁ ନିର୍ଦ୍ଦେଶ ଏବ ବା ।
କ୍ୱଚିନ୍ନି ଖଳାଦୀନାଂ ସତାଞ୍ଚ ଗୁଣ କୀର୍ତ୍ତନମ୍ ।
ଏକବୃତ୍ତ ମୟୈ ପଦ୍ୟୈର ବସାନେଽନ୍ୟ ବୃତ୍ତକୈଃ ।
ନାତି ସ୍ୱଳ୍ପା ନାତିଦୀର୍ଘା ସର୍ଗା ଅଷ୍ଟାଧିକା ଇହ
ନାନା ବୃତ୍ତମୟଃ କ୍ୱାପି ସର୍ଗଃ କଶ୍ଚନ ଦୃଶ୍ୟତେ ।''

ମହାକାବ୍ୟ ସଂପର୍କିତ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମାଲୋଚକଙ୍କ ମତାମତକୁ ବିଚାର କରି ଭକ୍ତକବି ମଧୁସୂଦନ ରାଓ ମହାଯାତ୍ରା କାବ୍ୟର ମୁଖବନ୍ଧରେ ଉଲ୍ଲେଖ

୨. ରାଧାନାଥ ଜୀବନୀ (୧୯୪୧), ପୃ-୩୦୯

କରିଛନ୍ତି— 'ମହାଯାତ୍ରା' ଆଧୁନିକ ଉତ୍କଳ-ସାହିତ୍ୟର ପ୍ରଥମ ମହାକାବ୍ୟ । ଇଉରୋପୀୟମାନେ ମହାକାବ୍ୟକୁ 'ଏପିକ୍' ନାମରେ ଅଭିହିତ କରିଅଛନ୍ତି । ଇଉରୋପୀୟ ଏପିକ୍ ଏବଂ ସଂସ୍କୃତ ମହାକାବ୍ୟ ଉଭୟ ମଧ୍ୟରେ ପ୍ରଣାଳୀଗତ କିଞ୍ଚିତ୍ ବୈଷମ୍ୟ ଥିଲେ ହେଁ ଏମାନଙ୍କର ଉଦ୍ଦେଶ୍ୟ ଏକ ଅଟେ । କୌଣସି ଦେବ ଭାବ ସମ୍ପନ୍ନ ଉଦାର ଚରିତ୍ର ମହାପୁରୁଷଙ୍କର ଏକ ମହତ୍ ଓ ମନୋହର କାର୍ଯ୍ୟ ବା ଅନୁଷ୍ଠାନ ମହାକାବ୍ୟର ପ୍ରାଣ ଅଟେ । ଅନୁଷ୍ଠାନର ଏକତ୍ୱ, ଅନୁଷ୍ଠାନର ମହତ୍ତ୍ୱ । ଅନୁଷ୍ଠାନର ଉପାଦେୟତ୍ୱ ବା ବୈଚିତ୍ର୍ୟମୟୀ ମନୋହାରିତା ଦେଖାଇ ମହାକାବ୍ୟର କବି ଆମ୍ଭମାନଙ୍କ କଳ୍ପନାର ପରିସର ବର୍ଦ୍ଧିତ କରିବା ପାଇଁ ଆମ୍ଭମାନଙ୍କ ନିକଟରେ ଧର୍ମାନୁପ୍ରାଣିତ ଆଦର୍ଶ ଚରିତ୍ର ବୀରର ଉପାଦେୟ ଆଲେଖ୍ୟ ଉପସ୍ଥାପିତ କରି ଆମ୍ଭମାନଙ୍କ ହୃଦୟରେ ବିସ୍ମୟ, ଭକ୍ତି, ଉଦାର ସହାନୁଭୂତି ପ୍ରଭୃତି ମହାଭାବମାନଙ୍କୁ ଜାଗରିତ କରନ୍ତି ଏବଂ ଆମ୍ଭମାନଙ୍କର କ୍ଷୁଦ୍ର ସଂକୀର୍ଣ୍ଣ ନୀଚ କାମନାମାନଙ୍କୁ ଅପସାରିତ କରି ତତ୍‌ପରିବର୍ତ୍ତେ ଉଦାର ପୁଣ୍ୟ ସଂକଳ୍ପ ପ୍ରତିଷ୍ଠିତ କରିବା ପାଇଁ ଏକାନ୍ତ ଚେଷ୍ଟା କରନ୍ତି ।''(୩)

ମାତ୍ର ଏସବୁ ଆଲୋଚନା ଓ ସମାଲୋଚନା ସତ୍ତ୍ୱେ ମହାଯାତ୍ରାକୁ ମହାକାବ୍ୟର ସ୍ୱୀକୃତି ଦେବାରେ ସେପରି କୌଣସି ପ୍ରତିବନ୍ଧକ ସୃଷ୍ଟି କରାଯାଇନପାରେ । କାରଣ ସଂପ୍ରତି ଦୃଷ୍ଟିଗୋଚର ହେଉଥିବା ମାତ୍ର ସାତଟି ସର୍ଗମଧ୍ୟରେ ରାଧାନାଥ ମଧ୍ୟ ମହାକାବ୍ୟର ସମସ୍ତ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଲକ୍ଷଣ ପ୍ରତି ସତର୍କ ଦୃଷ୍ଟି ରଖିଛନ୍ତି । 'Paradise Lost' ମହାକାବ୍ୟରେ କବି ମିଲଟନ୍ ଯେପରି ତାଙ୍କର ସ୍ମରଣୀୟ ଦେବୀ Heavenly Museଙ୍କୁ ତାଙ୍କ ଗ୍ରନ୍ଥର ସୁସମାପ୍ତି ପାଇଁ ଅନୁରୋଧ ଜଣାଇଛନ୍ତି, ରାଥାନାଥ ଓଡ଼ିଶାର ବାଗ୍‌ଦେବୀ ଝଙ୍କଡ଼ ବାସିନୀ ମା' ଶାରଳାଙ୍କୁ ସେହିପରି ବନ୍ଦନା କରି କାବ୍ୟାରମ୍ଭ କରିଛନ୍ତି । 'ମାହାଯାତ୍ରା'ରେ ସେ ଯେଉଁ ଚରିତ୍ରମାନଙ୍କର ଅବତାରଣା କରିଛନ୍ତି ସେସବୁ ଚରିତ୍ରମାନେ ହେଉଛନ୍ତି ଭାରତବର୍ଷର ଜାତୀୟ ଚରିତ୍ର ଏବଂ ଯେଉଁ ବିଷୟ ଓ ସମସ୍ୟା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ତାହା ହେଉଛି ଭାରତର ଜାତୀୟ ସମସ୍ୟା । ପୁନଶ୍ଚ ବିଷୟ ବର୍ଣ୍ଣନା ମଧ୍ୟରେ କବି ସମୁଦ୍ରଠାରୁ ଆରମ୍ଭ କରି ସମଗ୍ର ଭାରତର ବିଭିନ୍ନ ବନ, ନଦନଦୀ, ପର୍ବତ, ନଗର ବର୍ଣ୍ଣନା ସହିତ ସମର ଚିତ୍ର ପ୍ରଦାନ କରିଛନ୍ତି ।

'ମହାଯାତ୍ରା'ର କାବ୍ୟ ନାୟକ ଯୁଧିଷ୍ଠିର । ପ୍ରଭାସ ତୀର୍ଥରେ ଯାଦବମାନଙ୍କର ମୃତ୍ୟୁ ଓ ଯଦୁବଂଶର ଧ୍ୱଂସ ପରେ ଶ୍ରୀକୃଷ୍ଣଙ୍କ ମହାପ୍ରୟାଣ ବାର୍ତ୍ତା ଶ୍ରବଣ କରିଛନ୍ତି ଯୁଧିଷ୍ଠିର । ଏହାପରେ ସେ ସବୁଦିନ ଲାଗି ନିଜ ରାଜ୍ୟରେ ଅଭିମନ୍ୟୁଙ୍କ ଶିଶୁ ପୁତ୍ର

୩. ରାଧାନାଥ ଗ୍ରନ୍ଥାବଳୀ, ପୃ. ୧୯୩-୯୪

ପରୀକ୍ଷିତଙ୍କୁ ଅଭିଷିକ୍ତ କରାଇ ନିଜର ଭ୍ରାତା ଭୀମ, ଅର୍ଜୁନ, ନକୁଳ, ସହଦେବ ତଥା ସ୍ତ୍ରୀ ଦ୍ରୌପଦୀଙ୍କ ସହିତ ମହାଯାତ୍ରାରମ୍ଭ କରିଛନ୍ତି । ପାଣ୍ଡବ ଭ୍ରାତାମାନଙ୍କର ଏହି ମହାଯାତ୍ରାରୁ ହିଁ 'ମହାଯାତ୍ରା' ମହାକାବ୍ୟର ଆୟମାରମ୍ଭ । ପାଣ୍ଡବମାନଙ୍କର ଅନ୍ତିମ ଯାତ୍ରା ସଂବାଦ ସମଗ୍ର ରାଜ୍ୟରେ ବିଦ୍ୟୁତ୍ ବେଗରେ ଖେଳିଯିବାରୁ ରାଜ୍ୟବାସୀ ଶୋକାବିଭୂତ ହୋଇ ପଡ଼ିଛନ୍ତି ଓ କିଛିଦୂର ସେମାନଙ୍କ ସହିତ ଗମନ କରିଛନ୍ତି । ସୂର୍ଯ୍ୟାସ୍ତ ହୋଇ ଆସୁଥିବାରୁ ଯୁଧିଷ୍ଠିରଙ୍କ ଅନୁରୋଧକ୍ରମେ ସେମାନେ ପୁଣି ଦୁଃଖଦ ହୃଦୟରେ ନିଜ ପୁରକୁ ପ୍ରତ୍ୟାଗମନ କରିଛନ୍ତି । ଫଳତଃ ସବୁଦିନ ପାଇଁ ପୃଥିବୀ ପୃଷ୍ଠରୁ ଧର୍ମର ହୋଇଛି ମହାଯାତ୍ରା । ସମଗ୍ର ପୃଥିବୀରେ ରାଜତ୍ୱ କରିଛି କଳି । ଏ ପ୍ରସଙ୍ଗ କବି ମହାଯାତ୍ରାର ଚତୁର୍ଥ ସର୍ଗରେ ବର୍ଣ୍ଣନା କରିଛନ୍ତି । କଳି ସହିତ ତାହାର ସାଥୀ ହୋଇ ପୃଥିବୀ ପୃଷ୍ଠକୁ ଆସିଛନ୍ତି କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ, କଳହ, ଆଳସ୍ୟ ପ୍ରଭୃତି ଧର୍ମବିରୋଧୀ ଗୁଣ ସମୂହ । ଫଳତଃ ପୃଥିବୀରୁ ଧର୍ମ ଲୋପ ପାଇବା ସହିତ ସତ୍ୟ, ନ୍ୟାୟ, କ୍ଷମା, ତପସ୍ୟା, ଦୟା, ତିତିକ୍ଷା ପ୍ରଭୃତି ସତ୍‌ଗୁଣଗୁଡ଼ିକ ବିଦାୟ ନେଇଛନ୍ତି । ଏହା ଫଳରେ ସମଗ୍ର ଭାରତବର୍ଷରେ ଆରମ୍ଭ ହୋଇଛି ଅଧର୍ମର ରାଜତ୍ୱ । ଅଧର୍ମର ବିଭୀଷିକା ଖୁବ୍ ବ୍ୟସ୍ତ ଓ ବିବ୍ରତ କରିଦେଇଛି ଯୁଧିଷ୍ଠିରଙ୍କୁ । ସେ ଭାରତବାସୀଙ୍କ ଦୁଃଖ ଓ ଦୁର୍ଦ୍ଦଶାକୁ ଆଉ ଅଧିକ ଦିନ ଦେଖିବା ପାଇଁ ଚାହିଁ ନାହାନ୍ତି । ବରଂ ଶୀଘ୍ର ବିଦାୟ ନେଇ ପୃଥିବୀ ପୃଷ୍ଠରୁ ଚାଲିଯିବା ଲାଗି ତତ୍‌ପର ହୋଇ ଉଠିଛନ୍ତି । ଏହି କଥାକୁ ରାଧାନାଥ 'ମହାଯାତ୍ରା' କାବ୍ୟରେ ନିମ୍ନମତେ ବ୍ୟକ୍ତ କରିଛନ୍ତି ।

"ଆସୁଛି ପାପର ବନ୍ୟା, ଭାରତ ଭରସା
ପାପଜଳେ ଦ୍ୱୀପରୂପୀ ମହତ ହେ ଜନ
ବୁଡ଼ିଯିବ ସିନା, ଆହା, ଏ ଘୋର ପ୍ଲାବନେ
ତୁମ୍ଭପରି ସୁଚନ୍ଦନ - ଦ୍ରୁମ ପାଇଁ ଆଉ
ନ ଥିବଟି ଠାବ ଏହି ବିଷ ବଲ୍ଲୀବନେ,
ଧର୍ମ-ଅନୁଷ୍ଠାନ ବ୍ରତେ ସହାୟ ବିହୁନେ
ସାଧୁର ଜୀବନ ହେବ ମହା ବିଡ଼ମ୍ବନା,
ମହା ଅନର୍ଥର ହେତୁ ହେବ କାଳ ବଶେ
ଧୈର୍ଯ୍ୟ, ବୀର୍ଯ୍ୟ, ପ୍ରତିଭାଦି ମହତ୍ତ୍ୱ ଯା କିଛି
ପୁରୁଷର, କାପୁରୁଷ-ପ୍ଲାବିତ ଭାରତେ;
କଳିଶିଷ୍ୟ - କୁକ୍ଷିମ୍ଭରି -ଦ୍ୱିଜାତି - ଦୁଷ୍କୃତି
ଯୋଗେ ନାରଖାର ହେବ ଅଚିରେ ଏ ମହୀ;
ସେହି ଦେଶ, ସେହି ଗିରି ସେହି ନଦନଦୀ,

ନଗର, ନଗରୀ, ତୀର୍ଥ, ଆଶ୍ରମାଦି କରି
ସର୍ବେ ଥିବେ ପୂର୍ବପରି, ମାନବେ କେବଳ
ନାମକୁ ମାନବ ରହି, ପଶୁଠାରୁ ହୀନ
ହୋଇଯିବ ଯୁଗଧର୍ମେ ଭାରତ ମଣ୍ଡଳେ ।''

ନିଜ ଜୀବନ ଅପରାହ୍ଣରେ ଅବତୀର୍ଣ୍ଣ ହୋଇ କବି ରାଧାନାଥ ଲକ୍ଷ୍ୟ କରିଛନ୍ତି ତତ୍‌କାଳୀନ ଉତ୍କଳର ସାମାଜିକ, ସାଂସ୍କୃତିକ, ଧାର୍ମିକ ଓ ରାଜନୈତିକ ପରିବେଶକୁ । ଏକଦା ଯେଉଁ ଉତ୍କଳର ସୀମା ଉତ୍ତରରେ ଗଙ୍ଗାନଦୀଠାରୁ ଆରମ୍ଭ ହୋଇ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ତାହା ତାଙ୍କ ସମୟକୁ ମାତ୍ର କେତୋଟି ଜିଲ୍ଲାରେ ସୀମିତ ହୋଇଯାଇଛି । ପୁନଶ୍ଚ ଓଡ଼ିଆ ଭାଷାକୁ ଓଡ଼ିଶା ଓ ଓଡ଼ିଆଙ୍କ ମୁଖରୁ ଛଡ଼ାଇ ନେବାର ହୀନ ଚକ୍ରାନ୍ତ ନ୍ୟସ୍ତସ୍ୱାର୍ଥ ବଙ୍ଗାଳୀଗୋଷ୍ଠୀ ଆରମ୍ଭ କରିଛନ୍ତି । ୧୮୯୫ ବେଳକୁ ସମ୍ବଲପୁରର କୋର୍ଟ କଚେରିମାନଙ୍କରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳିତ ହୋଇଛି । ଓଡ଼ିଆମାନଙ୍କର ପୂର୍ବ ଉତ୍ସାହ ଓ ସାହସ କେଉଁଠି ହଜିଯାଇଛି । ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ସେମାନଙ୍କର ମେରୁଦଣ୍ଡ ଭାଙ୍ଗି ଦେଇଛି । ଏହିପରି ଏକ ସନ୍ଧିକ୍ଷଣରେ ରାଧାନାଥଙ୍କର 'ମହାଯାତ୍ରା' କାବ୍ୟର ସୃଷ୍ଟି । ସୁତରାଂ କବି ମହାଯାତ୍ରା କାବ୍ୟରେ ଭାରତବର୍ଷର ଅତୀତକୁ ମୁଖ ଫେରାଇଛନ୍ତି । ପୁରାଣ ପୃଷ୍ଠା ଓ ଭାରତୀୟ ପରମ୍ପରା ପ୍ରତି ସଚେତନ ହୋଇ ମହାଭାରତର ପୃଷ୍ଠଭୂମିରେ ସେ ରଚନା କରିଛନ୍ତି 'ମହାଯାତ୍ରା' । ଏହି କାବ୍ୟ ରଚନାର ପଶ୍ଚାଦ୍‌ଭାଗରେ ଉତ୍କଳୀୟ ଜନସାଧାରଣଙ୍କୁ ଅତୀତର ଇତିହାସ, କିମ୍ବଦନ୍ତୀ ତଥା ପୁରାଣ ପ୍ରତି ସଚେତନ କରିବା ତାଙ୍କର ଥିଲା ମୁଖ୍ୟ ଉଦ୍ଦେଶ୍ୟ । ତେଣୁ କବିଙ୍କ ସମୟକୁ ପ୍ରାୟ ଦୀର୍ଘ ଚାରିଶହ ବର୍ଷର ପରାଧୀନତା ମଧ୍ୟରେ ଉତ୍କଳୀୟମାନେ ଯେପରି ହୀନବୀର୍ଯ୍ୟ ଓ ଅଥର୍ବ ହୋଇ ପଡ଼ିଛନ୍ତି ସେହି ମୂକ ମାନବ ହୃଦୟରେ ପୁନର୍ବାର ସ୍ୱାଧୀନତାର ଭାବୋଦ୍ରେକ କରିବା ପାଇଁ ପ୍ରୟାସୀ ହୋଇ ତାଙ୍କ ସମ୍ମୁଖରେ ମହାଭାରତର ମହାନାୟକ ସ୍ୱାଭିମାନୀ ଦୁର୍ଯ୍ୟୋଧନଙ୍କ ବିନା ଯୁଦ୍ଧେ ଦେବିନାହିଁ ସୂଚ୍ୟଗ୍ର ମେଦିନୀ ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି ।

''ଏହି କି ସେ ଆର୍ଯ୍ୟ ଭୂମି ? ଏ ଭୂମିର ସୁତ
ତୁମ୍ଭେଟିକି ଆର୍ଯ୍ୟନାମ ଦାୟାଦ ଜଗତେ ?
ବିନାଯୁଦ୍ଧେ ନ ଦେବାର ସୂଚ୍ୟଗ୍ରମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କରି ଶୋଣିତ
ବହେଟିକି ଆହେ ଯୋଧେ, ତୁମ୍ଭ ଧମନୀରେ
ଧିକ ! ଧିକ ! ଶତ ଧିକ ! ଧିକ ଏ ମନ୍ତ୍ରଣା !

ଏ ହୀନ ମନ୍ତ୍ରଣା, ଭୀରୁ -ପାମର ଉଚିତ,
ଉଚ୍ଚାରି ଯା କଲେ ଶୂରେ ଅପବିତ୍ର ଆଜ
ନିଜ ମୁଖ, ଶ୍ରୋତା କର୍ଣ୍ଣ, ଆର୍ଯ୍ୟ ବଂଶଧରେ !
ଅବା ଅଭାଜନ ତୁମ୍ଭେ ଏ ନାମ  ଧାରଣେ ?
ଭୀରୁତା ଯେ ସେହି ସିନା ବୀରର ମରଣ,
ଭୀରୁଭାବ ବହି ତୁମ୍ଭେ ମୃତ ଏ ଜଗତେ;
ଲୋଡ଼ଇ କି କେହି ଏବେ ମୃତର ମନ୍ତ୍ରଣା ?''

ଏପରି କଥାର ପଶ୍ଚାଦ୍‌ଭାଗରେ କବିଙ୍କର ସୁପ୍ତ ଓଡ଼ିଆ ପ୍ରାଣରେ ଜାତୀୟ ଚେତନା ଜାଗ୍ରତ କରାଇ ସେମାନଙ୍କୁ ପୁନର୍ବାର ଉଜ୍ଜୀବିତ କରାଇବା ହିଁ ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

ମାତୃଭୂମି ଓ ମାତୃଭାଷା ପ୍ରତି ଗଭୀର ମମତ୍ୱବୋଧ ହିଁ କବିଙ୍କୁ ମହାଯାତ୍ରା କାବ୍ୟ ରଚନା ପାଇଁ ପ୍ରେରଣା ଦେଇଛି । ମହାଯାତ୍ରାର ପ୍ରତ୍ୟେକ ପଙ୍‌କ୍ତିରେ କବି ନିଜ ମାତୃଭୂମିକୁ ଭଲ ପାଇବାର ସଂଦେଶ ଦେଇଛନ୍ତି । କାବ୍ୟ ପ୍ରାରମ୍ଭରୁ ପାଣ୍ଡବ ପାଞ୍ଚଭ୍ରାତାଙ୍କ ସହିତ ଦ୍ରୌପଦୀଙ୍କର ମହାଯାତ୍ରାର ଆରମ୍ଭ ହୋଇ ଓଡ଼ିଶା ସମେତ ଭାରତବର୍ଷର ବିଭିନ୍ନ ତୀର୍ଥାଟନ ମଧ୍ୟରେ  ତାହାର ପରିସମାପ୍ତି ଘଟିଛି । ମହାକାବ୍ୟର ଦ୍ୱିତୀୟ ସର୍ଗରେ ପାଣ୍ଡବ ଭ୍ରାତାମାନେ  ହସ୍ତିନାପୁରରୁ ସେମାନଙ୍କର ଯାତ୍ରାର ଶୁଭାରମ୍ଭ କରି ମଥୁରା, ପ୍ରୟାଗ, କାଶୀ, ଅଯୋଧ୍ୟା, ନୈମିଷାରଣ୍ୟ, ଗୟା, ରାଜଗିରି, କାଳୀଘାଟ, ଆସାମ, କପିଳାଶ୍ରମ, ମଧ୍ୟ ଦେଇ ନୀଳାଚଳଧାମରେ ପହଞ୍ଚିଛନ୍ତି । ସେଠାରେ ରାତ୍ରିଯାପନ କରି ପରଦିନ ମହେନ୍ଦ୍ରଶିଖରୀ ଉଦ୍ଦେଶ୍ୟରେ ସେମାନେ ଯାତ୍ରାରମ୍ଭ କରିଛନ୍ତି । କାବ୍ୟର ତୃତୀୟ ସର୍ଗରେ କବି ଉତ୍କଳର ଭୌଗୋଳିକ ପରିବେଶକୁ ଦୃଷ୍ଟି ଫେରାଇଛନ୍ତି । ଅଗ୍ନିଦେବ ନୀଳାଚଳଧାମରୁ ପାଣ୍ଡବ ଭ୍ରାତାଙ୍କ ସହିତ ସାମିଲ ହୋଇଛନ୍ତି । ସେମାନେ ଉତ୍କଳର ମେଘାସନ ପର୍ବତଠାରୁ ଆରମ୍ଭ କରି କପିଳାସ ପର୍ବତ, ଗୋନାସିକା, ମାଲ୍ୟଗିରି, ମୈନାକ, ପଞ୍ଚଧାରା ପ୍ରଭୃତି  ପର୍ବତର ପ୍ରାକୃତିକ ସୌନ୍ଦର୍ଯ୍ୟ ସଂଦର୍ଶନ କରି ବିମୋହିତ ହୋଇ ପଡ଼ିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଗୋଟିଏ ଦୁଇଟି ପଦର ଉଲ୍ଲେଖ କରାଯାଇପାରେ ।

''ବଜ୍ରକରେ ଅବତରି ଏହି ଶୈଳ ଚୂଳେ,
ଛେଦି ଏ ଶଇଳ ବଜ୍ରୀ ରଚିଲେ କୌଶଳେ
ଉତ୍କଳର ମୁକ୍ତିଦ୍ୱାର ରୂପୀ ଏ ତୋରଣ
ସପ୍ତକ୍ରୋଶ ବ୍ୟାପୀ, ଶୈଳ-କୁଞ୍ଜେ ଅନ୍ଧାରିତ

x x x x

ପରମ ପବିତ୍ର ଗିରି, ସେବନ୍ତି ଆଦରେ
ଦେବ ଋଷି ସିଦ୍ଧେ ଯାର ଶୃଙ୍ଗ ଅଗଣିତ,
ମେଘାସନ ମେଘାସନ ମଘବା-ବାଞ୍ଛିତ
ସୁଚାରୁ ଚପଳା ଲାସ୍ୟେ ନିରତେ ଭାସ୍ୱର,
ନିରତେ ମୁଖର କେଳିକୁଳ-କେକାରବେ;
ପୂର୍ବ ବୈତରଣୀ-ସ୍ରୋତ ପ୍ରଭାବ-ଗୋନାସା ।''

କବିଙ୍କର ଉତ୍କଳୀୟ ପ୍ରୀତି ଖୁବ୍ ପ୍ରଚଣ୍ଡ ଓ ଗଭୀର । ସେଥିପାଇଁ ମହାଯାତ୍ରାର କାବ୍ୟାରମ୍ଭରେ ସେ ଭାରତବର୍ଷର କୌଣସି ଦେବଦେବୀଙ୍କ ବନ୍ଦନା କରିବା ପରିବର୍ତ୍ତେ ଉତ୍କଳର ବାଗ୍‌ଦେବୀ ମା' ଶାରଳାଙ୍କ ପାଦପଦ୍ମରେ ପ୍ରାର୍ଥନା କରି ତାଙ୍କୁ ହିଁ ସମ୍ବୋଧନ କରିଛନ୍ତି । ପୁନଶ୍ଚ ପାଣ୍ଡବମାନଙ୍କର ସ୍ୱର୍ଗଯାତ୍ରା କାଳରେ କବି ଭାରତ ଭୂମିରେ ବିଭିନ୍ନ ଦର୍ଶନୀୟ ପୀଠ ଓ ଉତ୍କଳର ବିଭିନ୍ନ ସ୍ଥାନ ସହିତ ସେମାନଙ୍କୁ ସୁପରିଚିତ କରାଇ ଦେଇଛନ୍ତି । ମାତ୍ର ଏସବୁ ସତ୍ତ୍ୱେ ସମଗ୍ର ଭାରତବର୍ଷରେ ଉତ୍କଳକୁ ହିଁ ଶ୍ରେଷ୍ଠ ସ୍ଥାନ ଭାବେ ଉଲ୍ଲେଖ କରି ପ୍ରକାଶ କରିଛନ୍ତି—

''ପର୍ଣ୍ଣଦଳେ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଲଳିତ
ଶ୍ରେଷ୍ଠ ଏ ଉତ୍କଳ ଭୂମି ଗୁଣେ ଗରୀୟସୀ
ଯାମ୍ୟେ ଯା'ର ଋଷିକୂଲ୍ୟା, କପିଶା ଉତ୍ତରେ
ପଶ୍ଚିମେ ଭାର୍ଗବାଶ୍ରମ ମହେନ୍ଦ୍ର ଶିଖରୀ
ଚିର କୋଳାହଳମୟ ପୂର୍ବେ ପୟୋନିଧି
ପୁଷ୍ପକୁଣ୍ଡେ ଶ୍ରେଷ୍ଠ ତା'ର କେଶର ଯେସନେ
ଶ୍ରେଷ୍ଠ ଏ ନୀଳାଦ୍ରି ଧାମ ସମଗ୍ର ଉତ୍କଳେ
ନିବସନ୍ତି ନାନାସ୍ଥାନେ ଦେବଦେବୀ ଯେତେ ।''

କାବ୍ୟର ପଞ୍ଚମ ସର୍ଗରେ କବି ଉତ୍କଳର ଗୁଣୀଜନ ମୟୁରଭଞ୍ଜାଧିପତି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କର ଗୁଣଗାନ କରିଛନ୍ତି । ସେହିପରି କାବ୍ୟର ଷଷ୍ଠ ସର୍ଗରେ ସେ ବାମଣ୍ଡାର ମହାରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଗୁଣର ପ୍ରଶଂସା କରିଛନ୍ତି । ଏହି ରାଜା ମହାରାଜାମାନେ ଥିଲେ ଆଧୁନିକ ଓଡ଼ିଆ ଓ ଓଡ଼ିଆ ଭାଷା ସାହିତ୍ୟର ନିର୍ମାତା । ଏହି ମହାରାଜାଙ୍କର ଗୁଣାବଳୀ ଉତ୍କଳୀୟ ଜନମାନସ ସମ୍ମୁଖରେ ବର୍ଣ୍ଣନା କରି ତତ୍‌କାଳୀନ ପରାଧୀନ ମୂକ ଓଡ଼ିଆ ପ୍ରାଣରେ ଆଶା ସଞ୍ଚାର କରିବା କବି ରାଧାନାଥଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

ମହାଯାତ୍ରାର ଷଷ୍ଠ ଓ ସପ୍ତମ ସର୍ଗରେ କବି ଭାରତବର୍ଷର ସ୍ୱାଭିମାନ ଯବନମାନଙ୍କ ଆକ୍ରମଣ ଫଳରେ କିପରି ଭୂପତିତ ହୋଇଛି ତାହା ବର୍ଣ୍ଣନା କରିଛନ୍ତି । ଅଗ୍ନିଦେବ ଦିବ୍ୟ ଆଜ୍ୟପାତ୍ରରେ ଦିବ୍ୟାଞ୍ଜନ ପ୍ରସ୍ତୁତ କରି ଯୁଧିଷ୍ଠିରଙ୍କ ଚକ୍ଷୁରେ ଲେପନ କରିବାରୁ ସେ ଭାରତବର୍ଷର ଭବିଷ୍ୟତକୁ ଲକ୍ଷ୍ୟ କରି ପାରିଛନ୍ତି । ଜୟଚନ୍ଦ୍ର ଓ ପୃଥ୍ୱୀରାଜଙ୍କ ବିବାଦ ମଧ୍ୟରେ ଆରମ୍ଭ ହୋଇଛି ଦିଲ୍ଲୀରେ ତିରୋରୀ ଯୁଦ୍ଧ । ଏହି ପ୍ରସଙ୍ଗରେ କବି ଇତିହାସକୁ ଅନୁଶୀଳନ କରିଛନ୍ତି । ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଏହି ଯୁଦ୍ଧ ହିଁ ତିକ୍ତ ବାତାବରଣ ସୃଷ୍ଟି କରିଛି । ହିନ୍ଦୁମାନଙ୍କ ପକ୍ଷରେ ରହି ସେନାପତି ଅମର୍ଷି ସୈନ୍ୟମାନଙ୍କୁ ପ୍ରବଳ ଉତ୍ସାହ ପ୍ରଦାନ କରିଥିଲେ ମଧ୍ୟ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ସଂଘଟିତ ଯୁଦ୍ଧ ଭୟଙ୍କର ରୂପ ଧାରଣ କରିଥିଲା ଓ ଏଥିରେ ବହୁ ସୈନ୍ୟ ମୃତାହତ ହୋଇଥିଲେ । ଫଳତଃ ଭାରତୀୟଙ୍କ ମଧ୍ୟରେ ଥିବା ଉତ୍ସାହ ଓ ଉଦ୍ଦୀପନା କ୍ରମଶଃ ରହିଲା ନାହିଁ । ସେମାନଙ୍କ ମନରୁ ଆଶାର ନବୋଦିତ ସୂର୍ଯ୍ୟ କ୍ରମଶଃ ଅସ୍ତାଚଳରେ ଅସ୍ତମିତ ହୋଇ ଯାଇଥିଲା । କବିଙ୍କର ପୃଥ୍ୱୀରାଜ ଓ ଜୟଚନ୍ଦ୍ରଙ୍କ ମଧ୍ୟରେ ସଂଘଟିତ ତିରୋରୀ ଯୁଦ୍ଧ କାହାଣୀ ବର୍ଣ୍ଣନା କରିବା ପଶ୍ଚାଦ୍‌ଭାଗରେ ଯେଉଁ ସତ୍ୟଟି ନିହିତ ଥିଲା ତାହା ହେଉଛି ଅତୀତ ଇତିହାସର ତର୍ଜମା କରିବା ଓ ପରାଧୀନ ପ୍ରପୀଡ଼ିତ ଉତ୍କଳୀୟଙ୍କୁ ନବ ଚେତନାରେ ଉଦ୍‌ଭାସିତ କରିବା । ସୁତରାଂ ମାତ୍ର ସାତଟି ସର୍ଗ ମଧ୍ୟରେ ମହାଯାତ୍ରା କାବ୍ୟ ବିଭିନ୍ନ କାରଣରୁ ଅସମ୍ପୂର୍ଣ୍ଣ ରହିଥିଲେ ହେଁ ଉତ୍କଳୀୟ ଜାତୀୟ ଜାଗରଣରେ ଏହା ପ୍ରମୁଖ ଭୂମିକା ଗ୍ରହଣ କରିଛି ।

ଏହି କାବ୍ୟରେ ସର୍ବପ୍ରଥମେ କବି ରାଧାନାଥ ଅମିତ୍ରାକ୍ଷର ଛନ୍ଦକୁ ପରୀକ୍ଷାମୂଳକ ଭାବେ ବ୍ୟବହାର କରିଛନ୍ତି । ଏ ସମ୍ପର୍କରେ କାବ୍ୟର ମୁଖବନ୍ଧରେ ମହାଯାତ୍ରା ସମ୍ବନ୍ଧରେ ନିଜସ୍ୱ ମନ୍ତବ୍ୟ ପ୍ରଦାନ କରିବାକୁ ଯାଇ ମଧୁସୂଦନ ରାଓ ଉଲ୍ଲେଖ କରନ୍ତି—"ମହାଯାତ୍ରା ଅମିତ୍ରାକ୍ଷର ଛନ୍ଦରେ ଲିଖିତ ହୋଇଅଛି । ଉତ୍କଳ କାବ୍ୟରେ ଅମିତ୍ର ଛନ୍ଦ ପ୍ରବର୍ତ୍ତନରେ ଏହି ପ୍ରଥମ ଶୁଭ ପ୍ରୟାସ । X X X ଯେଉଁ ଅତ୍ୟଳ୍ପ ସଂଖ୍ୟକ ଲେଖକ ଏ ବିଷୟରେ କୃତକାର୍ଯ୍ୟ ହୋଇ ଅଛନ୍ତି; ସେଥିମଧ୍ୟରେ ଆମ୍ଭମାନଙ୍କ କବି ଶ୍ରୀ ରାଧାନାଥ ଜଣେ ଅଟନ୍ତି । ଅମିତ୍ରାକ୍ଷର ଛନ୍ଦରେ ତାଙ୍କ ରଚିତ ଅନେକଗୁଡ଼ିଏ ବଙ୍ଗଳା କବିତା ଗୁଣୀଗଣାଗ୍ରଗଣ୍ୟ ଶ୍ରୀ ଭୂଦେବ ମୁଖୋପାଧ୍ୟାୟ ପ୍ରଭୃତିଙ୍କ ଦ୍ୱାରା ଭୂୟୋଭୂୟଃ ପ୍ରଶଂସିତ ହୋଇଅଛି । 'ମହାଯାତ୍ରା' ଛନ୍ଦ ମାତ୍ରା ନିୟମ ଓ ଯତିପାତ କୌଶଳ ହେତୁରୁ ଯେପରି ସୁଖପାଠ୍ୟ, ସେହିପରି ସୁଶ୍ରାବ୍ୟ ହୋଇଅଛି । ଓଡ଼ିଆ ଭାଷାରେ ଅମିତ୍ରାକ୍ଷର ଛନ୍ଦ ନୂତନ ବୋଲି ପ୍ରଥମେ

ଅନେକଙ୍କର ଅବଜ୍ଞାତ ବା ଉପହାସିତ ହୋଇପାରେ; କିନ୍ତୁ ସେମାନଙ୍କର ଜାଣିବା ଉଚିତ ଯେ, ଆବହମାନ କାଳରୁ ପୃଥିବୀର ପ୍ରସିଦ୍ଧ ସାହିତ୍ୟିକମାନଙ୍କ ମଧ୍ୟରେ ଅମିତ୍ରାକ୍ଷର ଛନ୍ଦ ପ୍ରଚଳିତ ହୋଇ ଆସୁଛି ଏବଂ ପୃଥିବୀର ସର୍ବୋତ୍କୃଷ୍ଟ ମହାକାବ୍ୟମାନ ସେହି ଛନ୍ଦରେ ଲିଖିତ ।(୪) ଏ କ୍ଷେତ୍ରରେ ଆଧୁନିକ ଓଡ଼ିଆ ସାହିତ୍ୟ ଜଗତରେ କବି ରାଧାନାଥ ହିଁ ବାସ୍ତବରେ ଏକ ନୂତନ ସରଣୀ ପ୍ରସ୍ତୁତ କରି ଆମ ସାହିତ୍ୟରେ ଏକ ନବ ଦିଗନ୍ତ ସୃଷ୍ଟି କରିଛନ୍ତି । ସେ ତାଙ୍କର ଅନ୍ୟାନ୍ୟ କାବ୍ୟମାନଙ୍କ ମଧ୍ୟରେ ବିଭିନ୍ନ ଛନ୍ଦ ଓ ରାଗର ପ୍ରୟୋଗ କରିଥିଲେ ହେଁ ମହାଯାତ୍ରା ରଚନା କାଳକୁ ସେ ନୂତନ ଅଥଚ ଅଭିଜ୍ଞ ଭାବେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କରି ଆମ ଆଧୁନିକ ଓଡ଼ିଆ କାବ୍ୟାବୃତ୍ତକୁ ସୁଦୃଢ଼ କରିବାର ପ୍ରଯତ୍ନ କରିଛନ୍ତି । ''ମହାଯାତ୍ରା''ର କଥା (Sage of the Great Journey) ଅଙ୍କିତ କରିବା ପାଇଁ ରାଧାନାଥ ଯେଉଁ ବିପୁଳାୟତନ କ୍ୟାନ୍‌ଭ୍ୟାସ୍ ବା ପରିସର ଘେନିଛନ୍ତି ତା'ର ପ୍ରକାଶ ମାଧ୍ୟମ (Medium) ରୂପେ ବାଛି ନେଇଛନ୍ତି—ଅମିତ୍ରାକ୍ଷର ଛନ୍ଦ । ଯେହେତୁ ତାହା ମୁକ୍ତ ଛନ୍ଦର ଏକ ସଂଯତ ରୂପାନ୍ତର । ଏଥିରେ ଗତାନୁଗତିକ ଓ ପ୍ରଚଳିତ ମିତ୍ରାକ୍ଷରଧର୍ମୀ ବୃତ୍ତ କିମ୍ବା ରାଗର ଆବଦ୍ଧାବସ୍ଥା ନାହିଁ । ମାଇକେଲ୍ ମଧୁସୂଦନଙ୍କଠାରେ ସେ ଏଥିଲାଗି ଋଣୀ ବୋଲି କୁହାଗଲେ ବି ସେ ଏହାର ପ୍ରୟୋଗରେ ତାଙ୍କର ସମକକ୍ଷ କବି ।(୫) ସୁତରାଂ ଏସବୁ ଦୃଷ୍ଟିରୁ ମହାଯାତ୍ରା ହୋଇଛି ଆଧୁନିକ ଓଡ଼ିଆ କାବ୍ୟ ପରମ୍ପରାର ମୁଖଶାଳା ।

ଓଡ଼ିଶାର ଭିଟାମାଟିକୁ ଭଲ ପାଇ ଓଡ଼ିଶାକୁ ନୂଆ ରୂପରେ ଦେଖିବାର କୌଶଳ ରାଧାନାଥ ତାଙ୍କର ଦୀକ୍ଷାଗୁରୁ ଭୂଦେବ ମୁଖୋପାଧ୍ୟାୟଙ୍କଠାରୁ ଶିକ୍ଷାଲାଭ କରିଥିଲେ । ରାଧାନାଥଙ୍କର ଖଣ୍ଡିଏ ବଙ୍ଗଳା କାବ୍ୟର ପାଣ୍ଡୁଲିପି ଦେଖି ଭୂଦେବ ମୁଖୋପାଧ୍ୟାୟ ତାଙ୍କୁ କହିଥିଲେ—''ପୁରାତନ ବିଷୟ ଘେନି ଶକ୍ତିର ଓ ଶ୍ରମର ଅଯଥା ବିନିଯୋଗ କର କାହିଁକି ? ତୁମ ପାଣ୍ଡୁଲେଖ୍ୟ ପାଠ କରି ମୁଁ ପ୍ରୀତ ହୋଇଅଛି, ଏହାକୁ ଏଡୁକେଶନ୍ ଗେଜେଟ୍‌ରେ ଛପାଇ ଦେବି । କିନ୍ତୁ ମୁଁ ଆଶା କରୁଅଛି, ତୁମେ ନୂଆ ଗଢ଼ିବାକୁ ଚେଷ୍ଟା କରିବ । ଦେଖ ! ତୁମେ ସୁଭଦ୍ରାର ଚିତ୍ର ଅଙ୍କନ କରିଅଛ, କିନ୍ତୁ ତୁମେ ସହସ୍ର ଚେଷ୍ଟା କଲେ ହେଁ ବ୍ୟାସଦେବଙ୍କ ସୁଭଦ୍ରାକୁ ଅଧିକତର ସୁନ୍ଦର କରି ପାରିବ ନାହିଁ । ନୂତନ ଗଢ଼ିବାର ଚେଷ୍ଟା କର । ତୁମର ଏଇ ପାଞ୍ଚୋଟି କବିତା ମଧ୍ୟରେ ଗୋଟିଏ ନୂଆ ରହିଅଛି ସତ୍ୟ, ମାତ୍ର ତହିଁରେ

---

୪. ରାଧାନାଥ ଗ୍ରନ୍ଥାବଳୀ, ପୃ-୧୯୫

୫. ଅଧ୍ୟାପକ ବେଣୁଧର ରାଉତ—ମହାଯାତ୍ରା ଓ ରାଧାନାଥ, ପୃ-୩୧-୩୨

ଆଦିରସର ଯେ ରୂପ ଅବତାରଣା ହୋଇଅଛି, ତାହା ଉଚିତ ସୀମା ଅତିକ୍ରମ କରିଅଛି । ଆଦିରସର ଏରୂପ ଅବତାରଣା ନୈତିକ ସ୍ୱାସ୍ଥ୍ୟର ପ୍ରତିକୂଳ, ସୁତରାଂ ପରିହାର୍ଯ୍ୟ । ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତା ଧାତ୍ରୀ (Meet nurse for a poetic child.) । ଓଡ଼ିଶାର ଯେଉଁ ଆଡ଼କୁ ଚାହିଁବ ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ରହଅଛି ।"(୬) ମହାଯାତ୍ରା କାବ୍ୟ ରଚନାକାଳକୁ କବି ପ୍ରାୟ ପଇଁଚାଳିଶି ବର୍ଷ ବୟସରେ ପଦାର୍ପଣ କରି ନିଜ ଜୀବନରୁ ଓ ତାଙ୍କ ଚତୁର୍ଦ୍ଦିଗରୁ ଗଭୀର ଅନୁଭୂତି ସଂଗ୍ରହ କରି ସାରିଥିଲେ । ଭୂଦେବ ମୁଖୋପାଧ୍ୟାୟଙ୍କ ଉପଦେଶ ତାଙ୍କୁ ଏପରି କାବ୍ୟ ରଚନା ପାଇଁ ପ୍ରେରଣାର ଉତ୍ସ ହୋଇଥିଲା ।

ରାଧାନାଥଙ୍କର 'ମହାଯାତ୍ରା' ବ୍ୟତୀତ ସମସ୍ତ କାବ୍ୟର ପ୍ରାରମ୍ଭ ପ୍ରାୟ ନାଟକୀୟ । ମାତ୍ର ମହାଯାତ୍ରାର ପ୍ରାରମ୍ଭ ହେଉଛି ଆଶୀର୍ନମସ୍କ୍ରିୟାରୁ । ଏହି ନମସ୍କ୍ରିୟା ପ୍ରାଚୀନ ବା ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଶୈଳୀ ଅନୁଯାୟୀ ନୁହେଁ, ବରଂ ଆଧୁନିକତା ରୀତିରେ । ମିଲ୍‌ଟନ୍‌ଙ୍କ 'Paradise Lost' କାବ୍ୟର ପ୍ରାରମ୍ଭ ହେଉଛି ମହାଯାତ୍ରା କାବ୍ୟର ଆଦର୍ଶ । 'Paradise Lost'ରେ ମହାକବି ମିଲ୍‌ଟନ୍ Heavenly Museଙ୍କୁ ଅନୁରୋଧ ଜଣାଇ ଉଲ୍ଲେଖ କରିଛନ୍ତି—

"Of man's first disobedience and the fruit
Of the forbidden tree, whose mortal taste
Brought death into the world, and all our woe,
With loss of Eden, till one great man
Restore us and regain the blissful seat,
Sing, heavenly muse." —Paradise Lost, Book-I

ତଦନୁଯାୟୀ କବି ଉତ୍କଳଭାରତୀଙ୍କର ବନ୍ଦନା ଗାନ କରି ପ୍ରକାଶ କରିଛନ୍ତି—

"ପଙ୍କଜବାସିନୀ ଦେବୀ ଉତ୍କଳ ଭାରତୀ
ଶାରଦେ ! କି କଲେ, କହ, କୁରୁଚୂଡ଼ାମଣି
ଶୁଣିଲେ ଯେକାଳେ ବୀର ବାର୍ତ୍ତାବହ ମୁଖୁ
ପ୍ରଭାସେ ଯାଦବଙ୍କର ଜ୍ଞାତି-କ୍ଷୟକାରୀ ।"

ରାଧାନାଥ ଥିଲେ ଜଣେ ବିଷାଦବାଦୀ ସ୍ରଷ୍ଟା । ନିଜ ଜୀବନର ଚଲାପଥର ପ୍ରତ୍ୟେକ ପାଦରେ ସେ ଦୁଃଖ ଓ ନୈରାଶ୍ୟ ଉପଲବ୍ଧି କରିଛନ୍ତି । ବର୍ଣ୍ଣିତ ମହାଯାତ୍ରା କାବ୍ୟରେ ମହାଭାରତୀୟ ଭାବନା କଥା ପ୍ରକାଶ ପାଇଥିଲେ ମଧ

୬. ରାଧାନାଥ ଜୀବନୀ (୧୯୪୧), ପୃ-୧୦୨

ପ୍ରସଂଗତଃ ସେହି ବିଷାଦବାଦର ଦୃଶ୍ୟ ମହାଯାତ୍ରା କାବ୍ୟରେ ସ୍ୱାଭାବିକ ଭାବରେ ଉପଲବ୍‌ଧ ହୋଇଥାଏ । ମହାଯାତ୍ରାରେ ଋଷିମାନଙ୍କର ଚରିତ୍ର ବର୍ଣ୍ଣନା କ୍ରମରେ କବି ସେମାନଙ୍କର ନିରବଚ୍ଛିନ୍ନ ସାଧନା 'ମହାଯାତ୍ରା'ରେ ନିମ୍ନ ଭାବେ ପ୍ରକାଶ କରିଛନ୍ତି—

"ଭଙ୍ଗୁର ଭବର ଭାଇ ! ସୁଖ ଏହିପରି
ଧନ୍ୟ ସେହି ଅତନ୍ଦ୍ରିତ ଋଷିବୃନ୍ଦ ଭବେ
ବିଷୟ ବିମୁଖ ହୋଇ ସାଧନ୍ତି ଯେ ସଦା
ସୁଖ ବୃଦ୍ଧି ତୃଷ୍ଣାକ୍ଷୟେ, ତୃଷ୍ଣାଲକ୍ଷେ ପାଣି
ସୀମାତୀତ ସୁଖରାଜ୍ୟେ ବିହରନ୍ତି ମୁଦେ
ନିରୁଦ୍‌ବେଗେ ରହନ୍ତି ସେ କାଳକୁ ଅନାଇ ।"

ଧର୍ମପୁତ୍ର ଯୁଧିଷ୍ଠିର ସଂସାରରେ ଜନ୍ମଗ୍ରହଣ କରୁଥିବା ମାନବ ଜୀବନ ଅଳୀକ ଓ କ୍ଷଣିକ ବୋଲି ମହାଯାତ୍ରାରେ ବାରମ୍ବାର ଉଲ୍ଲେଖ କରିଛନ୍ତି । ଜୀବନର ଅନ୍ୟନାମ ମୃତ୍ୟୁ । ସଂସାରରେ ମୃତ୍ୟୁ ବ୍ୟତୀତ କୌଣସି କଥା ଚିରସ୍ଥାୟୀ ନୁହେଁ । ମଣିଷର ଜନ୍ମ ମାଟିରୁ । ପୁନଶ୍ଚ ମୃତ୍ୟୁରେ ତା'ର ଶରୀର ଏହି ମାଟିରେ ହିଁ ମିଶିଯିବ । ମହାକାଳ ହିଁ ସଂସାରରେ ସବୁଠାରୁ ବଡ଼ ଓ ମହାନ୍ । ତା'ର ଗର୍ଭରେ ସମସ୍ତେ ଲୀନ ହୋଇଯା'ନ୍ତି । ସେ ପୃଥିବୀର ସର୍ବଶ୍ରେଷ୍ଠ ବୀର ସବ୍ୟସାଚୀଙ୍କଠାରୁ ଆରମ୍ଭ କରି ସମସ୍ତଙ୍କୁ ବିନା ଆୟାସରେ କବଳିତ କରିଥାଏ । ସେଥିପାଇଁ ମାନବ ମଧ୍ୟରେ ସୃଷ୍ଟ ଅହଂଭାବଠାରୁ ଆରମ୍ଭ କରି ଶୌର୍ଯ୍ୟ, ସୁଖ ସବୁ ଅଳୀକ ଓ କ୍ଷଣିକ । ଏହି କ୍ଷଣିକ ମୋହ ଓ ମାୟାରେ ବଶବର୍ତ୍ତୀ ନହୋଇ ଚିରନ୍ତନତାରେ ମନୋନିବେଶ କରିବା ପାଇଁ କବି ଯୁଧିଷ୍ଠିରଙ୍କ ମୁଖରେ ଏଇ ସଂସାରକୁ ନୀତିବାଣୀ ଶୁଣାଇଛନ୍ତି । ସୁତରାଂ ଯୁଧିଷ୍ଠିର ପ୍ରକାଶ କରିଛନ୍ତି—

"ଲଗାଇଛି ଫାଶ ସେହି ସମସ୍ତଙ୍କ ଗଳେ
କି ରାଜା, କି ପ୍ରଜା, କିବା ବୀର କିବା ଭୀରୁ
ଗୁଣୀ, ଗୁଣହୀନ ଅବା ସୁନ୍ଦର କୁତ୍ସିତ
ଧନିକ, ନିର୍ଦ୍ଧନ ଅବା ପ୍ରବଳ, ଦୁର୍ବଳ,
ସେ ଗୁପତ ଫାଶୁ କେହି ନୁହନ୍ତି ମୁକତ
ଜନ୍ମିବା ଆଗରୁ ସେହି ଫାଶ ପିନ୍ଧି ଗଳେ
ଭୂମିଷ୍ଠ ହୁଅଇ ଜୀବ ଜନନୀ-ଜଠରୁ ।"

ରାଧାନାଥ 'ମହାଯାତ୍ରା' କାବ୍ୟର ମୂଳ ଭିତ୍ତିଟିକୁ ସାରଳା ଦାସଙ୍କ ମହାଭାରତର ସ୍ୱର୍ଗାରୋହଣ ପର୍ବରୁ ଗ୍ରହଣ କରିଅଛନ୍ତି । ରାଧାନାଥଙ୍କ ସମୟକୁ

ଓଡ଼ିଶା ପରାଧୀନତାର ଗ୍ଲାନି ମଧ୍ୟରେ ନିର୍ବେଦ ଓ ପଙ୍ଗୁ । ୧୫୬୮ ମସିହାଠାରୁ ଏହାର ସ୍ୱାଧୀନତା ଅବଲୁପ୍ତ । ସେହିବର୍ଷଠାରୁ ଓଡ଼ିଶାକୁ ପ୍ରଥମେ ମୋଗଲ ଓ ପରେ ପରେ ମରହଟ୍ଟାମାନେ ଅଧିକାର କରି ଶାସନ କରିଥିଲେ ଏବଂ ଓଡ଼ିଶାର ଜନସାଧାରଣଙ୍କୁ ନାନାଭାବରେ ଶୋଷଣ କରିଥିଲେ । ସାରଳା ଦାସ ଚଣ୍ଡୀପୁରାଣ ଗ୍ରନ୍ଥରେ ଏହି ମୁସଲମାନମାନଙ୍କୁ ଅସୁର ଭାବେ ସମ୍ବୋଧନ କରିଛନ୍ତି । ସେହି ଅସୁରମାନଙ୍କୁ ନିଧନ କରିବା ପାଇଁ ଦେବୀ ଦୁର୍ଗା ପ୍ରଚଣ୍ଡମୂର୍ତ୍ତି ଧାରଣ କରିଛନ୍ତି । ଅନୁରୂପ ଭାବରେ ରାଧାନାଥଙ୍କ ସମୟକୁ ଓଡ଼ିଶା ବ୍ରିଟିଶ ଶାସନାଧୀନ । ଇଂରେଜମାନଙ୍କ ଚିନ୍ତା ଓ ଚେତନା ହେଉଛି ଆମ ଭାରତୀୟ ସାହିତ୍ୟ ଓ ସଂସ୍କୃତିର ପରିପନ୍ଥୀ । ଇଂରେଜମାନେ ରାଧାନାଥଙ୍କ ଦୃଷ୍ଟିରେ କଳି । ମହାଭାରତର ସ୍ୱର୍ଗାରୋହଣ ପର୍ବରେ ଯୁଧିଷ୍ଠିର ସମେତ ପାଣ୍ଡବ ଭ୍ରାତାମାନଙ୍କର ସ୍ୱର୍ଗାରୋହଣ ଓ ସେମାନଙ୍କର ପ୍ରିୟ ସଖା ଶ୍ରୀକୃଷ୍ଣଙ୍କର ମହାପ୍ରୟାଣ ପରେ ପରେ ଇଂରେଜ ରୂପୀ କଳି ହିଁ ପୃଥିବୀପୃଷ୍ଠରେ ତା'ର ଆସନ ଦୃଢ଼ କରିଛି । କଳିରୂପୀ ବିଦେଶୀ ଶିକ୍ଷା ଓ ସଂସ୍କୃତିର ପ୍ରସାର ଫଳରେ ଦେଶର ଚତୁର୍ଦ୍ଦିଗରେ ଅନ୍ୟାୟ ଓ ଅନାଚାର ବ୍ୟାପିଯାଇଛି । ଏହି ପ୍ରସଙ୍ଗ ରାଧାନାଥ ପରୋକ୍ଷ ଭାବରେ ମହାଯାତ୍ରାର ଚତୁର୍ଥ ସର୍ଗରେ ଉଲ୍ଲେଖ କରିଛନ୍ତି—

''ଊର୍ଦ୍ଧ୍ୱ ଓହ୍ଲାଇଲେ କଳି ନିଜ ଦଳବଳେ
ଲୋହିତ ମଙ୍ଗଳ ଗ୍ରହ ପ୍ରାୟେ ଭୟାବହ,
ଅମଙ୍ଗଳ ବେନିଚକ୍ଷୁ, ନିଃସରଇ ଯହୁଁ
ଭୀମ ଧୂମକେତୁ ପୁଚ୍ଛସମ ଜ୍ୟୋତିରେଖା,
କୃତାନ୍ତର କରପତ୍ର ପ୍ରାୟ ତ୍ରାସ ପ୍ରଦ
ଆବର୍ତ୍ତ ସନ୍ନିଭ ତୁଣ୍ଡେ ତୀକ୍ଷ୍ଣ ଦନ୍ତାବଳୀ ।''

ତେଣୁ ଏହି କଳିରୂପୀ ବିଦେଶୀମାନଙ୍କୁ ଓ ପାଶ୍ଚାତ୍ୟ ସଂସ୍କୃତିକୁ ଏ ଦେଶରୁ ବିତାଡ଼ିତ କରି ଏ ଦେଶର ସ୍ୱାଧୀନତା ପୁନର୍ବାର ଫେରାଇ ଆଣିବା ସହିତ ଭାରତୀୟ ସଂସ୍କୃତିର ପୁନଃ ପ୍ରତିଷ୍ଠା ପାଇଁ ପ୍ରୟାସୀ ହୋଇ କବି ମହାଯାତ୍ରା କାବ୍ୟର ସପ୍ତମ ସର୍ଗରେ ପୃଥ୍ୱୀରାଜ ସେନାପତି ଅମର୍ଷି ମୁଖରେ ପ୍ରକାଶ କରିଛନ୍ତି—

''ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟିକି ଆର୍ଯ୍ୟନାମ ଦାୟାଦ ଜଗତେ ?
ବିନା ଯୁଦ୍ଧେ ନଦେବାର ସୂଚ୍ୟଗ୍ରମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କରି ଶୋଣିତ

ବହେ ଟିକି ଆହେ ଯୋଧେ, ତୁମ ଧମନୀରେ
ଧିକ ! ଧିକ୍ ! ଶତ ଧିକ ! ଧିକ ଏ ମନ୍ତ୍ରଣା
ଏ ହୀନ ମନ୍ତ୍ରଣା, ଭୀରୁ-ପାମର ଉଚିତ ,
ଉଚ୍ଚାରି ଯା କଲ ଶୂରେ ଅପବିତ୍ର ଆଜ ।''

ସୁତରାଂ ମହାଯାତ୍ରାରେ ବର୍ଣ୍ଣିତ ଏହି ସାତଟି ସର୍ଗ ମଧ୍ୟରେ ସମଗ୍ର ଉତ୍କଳୀୟ ମାନବ ସମାଜକୁ କବି ସଚେତନ କରାଇ ସେମାନଙ୍କୁ ପୂର୍ବ ବଳ ବିକ୍ରମ ନେଇ ପୁନର୍ବାର ଜାଗ୍ରତ ହେବା ପାଇଁ ପ୍ରେରଣା ଦେଇଛନ୍ତି । ଫଳତଃ ଏହି କାବ୍ୟ ମଧ୍ୟରେ ପ୍ରତିଧ୍ୱନିତ ହୋଇଛି ରାଧାନାଥୀୟ କାବ୍ୟ ପ୍ରତିଭାର ଜୟଯାତ୍ରା ଓ ଏହା ହୋଇଛି ଆମ ଆଧୁନିକ ସାହିତ୍ୟର ଯଥାର୍ଥ ମୁଖଶାଳା ।



# ନନ୍ଦିକେଶ୍ୱରୀ କାବ୍ୟରେ ଐତିହାସିକ ବିଭବ

ଡଃ ସୁରେନ୍ଦ୍ର ନାଥ ଆଚାର୍ଯ୍ୟ

ଊନବିଂଶ ଶତାବ୍ଦୀରେ ଯେତେବେଳେ ଦୁଃଖ, ଦାରିଦ୍ର୍ୟ, ଅଶାନ୍ତି ପ୍ରଭୃତି ସରସ୍ୱତୀ ବିନୋଦନ ବିରୋଧୀ ଦୁର୍ଘଟଣାମାନଙ୍କ ଦ୍ୱାରା ସମସ୍ତ ଉତ୍କଳଖଣ୍ଡ ପ୍ରପୀଡ଼ିତ, କାଳକ୍ରମାଗତ ବିଦ୍ୟାନୁଶୀଳନ ବିସ୍ମୃତ ହେଉଥିଲା, ଯେତେବେଳେ ମଧ୍ୟଯୁଗର ଶବ୍ଦନିଗଡ଼ବନ୍ଧନ ଆଦି ରସାତ୍ମକ କାବ୍ୟାବଳୀ ଆଧୁନିକ ସଭ୍ୟ ରୁଚିର ବିରୁଦ୍ଧରେ ଏବଂ ସାଧାରଣରେ ଦୁର୍ବୋଧତା ହୋଇ ଶିକ୍ଷିତ ସମାଜର ଆଦର ହରାଉଥିଲା, ଯେତେବେଳେ ଉନ୍ନତ ସୁବିଶାଳ ବଙ୍ଗୀୟ ସାହିତ୍ୟ ଉତ୍କଳ ପ୍ରଦେଶରେ ସ୍ୱୀୟ ପ୍ରାଧାନ୍ୟ ବିସ୍ତାର କରିବାକୁ ପ୍ରୟାସୀ ହେଉଥିଲା, ସେତେବେଳେ ଅଜ୍ଞାନ ତମୋମୟ ଉତ୍କଳ ଆକାଶରେ କାବ୍ୟତାରା ରୂପେ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ସଦାହାସ୍ୟମୟୀ ରମଣୀୟ ପ୍ରକୃତିର ଶ୍ୟାମଳ କ୍ରୋଡ଼ରେ ଇତିହାସ ପ୍ରସିଦ୍ଧ ସୋର ଗ୍ରାମର ଏକକ୍ରୋଶ ଦକ୍ଷିଣ ପୂର୍ବରେ ଛବିଳ କେଦାରପୁରରେ ଭୂମିଷ୍ଠ ହୋଇଥିଲେ ରାଧାନାଥ ରୂପୀ ବାଳାରଣ । ଏହି ପୁତ୍ରରତ୍ନ ଆଧୁନିକ ଉତ୍କଳ ସାହିତ୍ୟ ସୌଧର ଭିତ୍ତିତ୍ରୟ ମଧ୍ୟରୁ ଅନ୍ୟତମ ।

ସେହି ଯୋଗଜନ୍ମାପୁରୁଷ ଓଡ଼ିଆ ସାହିତ୍ୟର ଏକ ସନ୍ଧିକ୍ଷଣରେ ଲେଖନୀ ଚାଳନା କରିଥିଲେ । ତାର ଅବ୍ୟବହିତ ପୂର୍ବକାଳକୁ "ଓଡ଼ିଆ ସାହିତ୍ୟରେ ଅନ୍ଧକାର ଯୁଗ ନାମରେ ନାମିତ କରାଯାଇଥାଏ । ରାଧାନାଥ ନିଜ ପ୍ରତିଭାବଳରେ ପୂର୍ବକାଳର ଅସ୍ପଷ୍ଟତାକୁ ଦୂରକରି ସାହିତ୍ୟରେ ଏକ ନୂତନମାର୍ଗ ଫିଟାଇ ଦେଇଗଲେ । ଶ୍ରୀ ନରସିଂହ ଚରଣ ଦାସଙ୍କ ଭାଷାରେ କହିଲେ— ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକଦିଗରେ ଭଞ୍ଜଯୁଗର ନବୀନ ସନ୍ଧ୍ୟା ଓ ଅପର ଦିଗରେ ନବଯୁଗର ନବୀନ ପ୍ରଭାତ । ଏହି ଘଡ଼ିସନ୍ଧି ସମୟରେ ତାଙ୍କର ଜନ୍ମ ଓ କବିତ୍ୱର ବିକାଶ । ସେ ଅଶ୍ରୁପୂର୍ଣ୍ଣ ନୟନରେ ଭଂଜ ଯୁଗକୁ ବିଦାୟ ଦେଇଥିଲେ ଏବଂ ଆନନ୍ଦାପ୍ଲୁତ ହୃଦୟରେ ନବଯୁଗର ଆଗମନୀ ବଂଶୀ ବଜାଇଥିଲେ । ଏହି ଉଭୟ କାର୍ଯ୍ୟ ସମାଧାନ କରିବାର ପ୍ରମାଣ ତାଙ୍କ ରଚନାବଳୀରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ରାଧାନାଥ ଉତ୍କଳ ସାହିତ୍ୟ ଇତିହାସରେ ନବକାବ୍ୟଯୁଗର ପ୍ରବର୍ତ୍ତକ । ତାଙ୍କ ସମୟଠାରୁ ଆଧୁନିକ ଯୁଗ ଓ ରାଧାନାଥ ଯୁଗ ଆରମ୍ଭ ।

କବିବର ରାଧାନାଥ ମହାଯାତ୍ରା ମହାକାବ୍ୟ, ଚିଲିକା, ଦରବାର, କେଦାରଗୌରୀ, ଉଷା, ଚନ୍ଦ୍ରଭାଗାର କାବ୍ୟ ସ୍ରଷ୍ଟା । ତାଙ୍କ ପ୍ରତିଭାର ଅନ୍ୟତମ ଦୃଷ୍ଟାନ୍ତ ନନ୍ଦିକେଶ୍ୱରୀ । ୧୮୮୭ ସାଲରେ ଏହା ପ୍ରକାଶିତ । ରାଧାନାଥଙ୍କ କାବ୍ୟ ସଂସାର ମଧ୍ୟରେ ନନ୍ଦିକେଶ୍ୱରୀର ପରିକଳ୍ପନା ଓ ପ୍ରତିଷ୍ଠା ଅତ୍ୟନ୍ତ ପବିତ୍ର ମନେହୁଏ । କାରଣ ଆଜି ପର୍ଯ୍ୟନ୍ତ ଓଡ଼ିଶାର ପାଠକ ସଂସାର ନନ୍ଦିକେଶ୍ୱରୀ କାବ୍ୟକୁ ରାଧାନାଥଙ୍କର ଏକ ସାର୍ଥକ ଐତିହାସିକ କାବ୍ୟ ଭାବରେ ଗ୍ରହଣ କରିସାରିଛନ୍ତି । ଜନମାନସରେ ଏହି ବିଶ୍ୱାସ ଓ ପ୍ରତିଷ୍ଠା ପାଇ ରାଧାନାଥଙ୍କର କବି ପ୍ରତିଭା ଯେ ବହୁ ପରିମାଣରେ ଦାୟୀ ଏଥିରେ ସନ୍ଦେହର ଅବକାଶ ନାହିଁ । ଓଡ଼ିଶା ଇତିହାସକୁ ତନ୍ନତନ୍ନ କରି ଅନୁଶୀଳନ କରି ନଥିବା ଶିକ୍ଷିତ ଓ ସମ୍ଭ୍ରାନ୍ତ ପାଠକଗଣ ବିଶ୍ୱାସ କରିଥାନ୍ତି ଯେ, ରାଧାନାଥ ତାଙ୍କର ପ୍ରତ୍ୟେକଟି କାବ୍ୟର କଥାବସ୍ତୁ ପାଇଁ ପାଶ୍ଚାତ୍ୟ ସାହିତ୍ୟ ସଂସାର ନିକଟରେ ଋଣୀ ହୋଇଥିଲେ ହେଁ, ନନ୍ଦିକେଶ୍ୱରୀ କାବ୍ୟ ପୀଠିକା ସଂପୂର୍ଣ୍ଣ ଭାବରେ ଭାରତୀୟ ଓ ଉତ୍କଳୀୟ । ଏପରି ବିଶ୍ୱାସର ପ୍ରଧାନ କାରଣ ହେଲା ଉତ୍କଳ କେଶରୀ ବଂଶର ସର୍ବଶେଷ ରାଜା ଥିଲେ ସୁବର୍ଣ୍ଣ କେଶରୀ । ସୁବର୍ଣ୍ଣ କେଶରୀଙ୍କର କନ୍ୟା ନନ୍ଦିକା ଓ ରାଧାନାଥଙ୍କ ପରିକଳ୍ପିତ କନ୍ୟା ନନ୍ଦିକା, ନନ୍ଦିକେଶ୍ୱରୀ କାବ୍ୟର ନାୟିକା ବୋଲି ସାଧାରଣ ପାଠକ ସଚେତନ ନୁହନ୍ତି । କାରଣ କଟକ ନଗର ନିକଟବର୍ତ୍ତୀ ମହାନଦୀ ଗର୍ଭରେ ନନ୍ଦିକେଶ୍ୱରୀ ପଠା ଅତୀତ ଇତିହାସର ସ୍ମୃତି ଓ ପ୍ରତ୍ୟୟ ଅତ୍ୟନ୍ତ ସ୍ୱାଭାବିକ । ଏଣୁ କେହି ପାଠକ କାବ୍ୟ ଆଲୋଚନା କାଳରେ ପ୍ରଶ୍ନ କରି ପାରେ ନାହିଁ ଯେ, ଓଡ଼ିଶାର ଇତିହାସ ପୃଷ୍ଠାରେ ନନ୍ଦିକେଶ୍ୱରୀ କାବ୍ୟର କଥାବସ୍ତୁ ଏକ ସଂପୂର୍ଣ୍ଣ କାଳ୍ପନିକ ଅଧ୍ୟାୟ । ବର୍ତ୍ତମାନ ଇତିହାସ ଗବେଷଣାରୁ ପ୍ରମାଣିତ ହୋଇଅଛି ଯେ, କେଶରୀ ଉପାଧିଧାରୀ ବହୁ ନରପତି ଉତ୍କଳ ସିଂହାସନରେ ଅଧିରୂଢ଼ ହୋଇଥିଲେ ହେଁ, କେଶରୀ ବଂଶ ନାମରେ କୌଣସି ରାଜବଂଶ ଉତ୍କଳରେ କେବେହେଲେ ରାଜତ୍ୱ କରୁ ନଥିଲେ, ଅବଶ୍ୟ ପୁରୀ ଶ୍ରୀମନ୍ଦିର ପ୍ରଚଳିତ ଓ ଲିଖିତ ମାଦଳାପାଞ୍ଜି ହିଁ ଏହି ବକ୍ତବ୍ୟର ଆଦି ଉତ୍ସ ଏବଂ ଯେଉଁମାନେ ଇଂରେଜ ରାଜତ୍ୱ କାଳରେ ଉତ୍କଳ ଇତିହାସ ପ୍ରଣୟନ କରିବା ପାଇଁ ଆଗ୍ରହ ପ୍ରକାଶ କରି ମାଦଳାପାଞ୍ଜିକୁ ପ୍ରଧାନ ଉପାଦାନ ଭାବରେ ଗ୍ରହଣ କରିଗଲେ, ସେମାନେ ମାଦଳାପାଞ୍ଜିକାରଙ୍କର ବହୁ କାଳ୍ପନିକ ବିବରଣୀକୁ ଐତିହାସିକ ସତ୍ୟରୂପେ ସ୍ୱୀକାର କରିଯିବା ସମ୍ଭବ ହୋଇ ପଡ଼ିଲା ।

କବିବର ରାଧାନାଥଙ୍କର ମାଦଳା ପାଞ୍ଜି ପଢ଼ିବାର ଅବକାଶ ନଥିଲା, କାରଣ ପ୍ରାଚୀସମିତି ଆନୁକୂଲ୍ୟରେ ୧୯୪୦ ଖ୍ରୀ.ଅରେ ପ୍ରଥମେ ମାଦଳା ପାଞ୍ଜି ପ୍ରକାଶିତ ହେଲା । ଅବଶ୍ୟ ଏହି ସମୟର ବହୁ ପୂର୍ବରୁ ଜଗବଂଧୁ ସିଂହଙ୍କର ''ପ୍ରାଚୀନ ଉତ୍କଳ'' ଗ୍ରନ୍ଥରେ ଏବଂ ପ୍ରାଚୀସମିତି ପ୍ରକାଶିତ ''ପ୍ରାଚୀନ ଓଡ଼ିଆ ଗଦ୍ୟ

ପଦ୍ୟାଦର୍ଶ'' ପୁସ୍ତକରେ ମାଦଳାପାଞ୍ଜିର କିଛି ଅଂଶ ଉଦ୍ଧାର କରାଯାଇଥିଲା । ମାଦଳାପାଞ୍ଜିରେ ନନ୍ଦିକା ଉପାଖ୍ୟାନ ଆଦୌ ସ୍ଥାନ ପାଇନାହିଁ । ସୁବର୍ଣ୍ଣ କେଶରୀ ସନ୍ତାନହୀନ ଥିଲେ ବୋଲି ଇତିହାସରେ ପ୍ରଥମରୁ କୁହାଯାଇଛି । କବିବର ରାଧାନାଥ ୧୯୦୩ରେ ଶେଷନିଃଶ୍ୱାସ ତ୍ୟାଗକଲେ, ତାଙ୍କ ପୂର୍ବରୁ ଓଡ଼ିଶାର ଇତିହାସ ସଂପର୍କରେ ଯେଉଁ କେତୋଟି ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ପ୍ରକାଶିତ ହୋଇଥିଲା, ତାହାର ବିବରଣୀ ଏହିପରି — History of Orissa –Starline -1825, Orissa - By W. H. Hunter 1872, ଓଡ଼ିଶା ଇତିହାସରେ ପ୍ୟାରୀମୋହନ ଆଚାର୍ଯ୍ୟ ୧୮୮୦ । History of Orissa—By Beams - 1882. ୧୮୮୭ରେ ନନ୍ଦିକେଶ୍ୱରୀ ପ୍ରକାଶିତ ହୋଇଥିବାରୁ ଏହି ସାଲ ପୂର୍ବରୁ ଓଡ଼ିଶାର ଇତିହାସ ବୋଲି ଯେଉଁ କେତେକ ଗ୍ରନ୍ଥ ମିଳୁଅଛି, ତହିଁରେ ନନ୍ଦିକେଶ୍ୱରୀ ବୋଲି ସୁବର୍ଣ୍ଣକେଶରୀଙ୍କର କୌଣସି ସନ୍ତାନ ଥିବାର ଉଲ୍ଲେଖ ନାହିଁ । ଯୁକ୍ତି ସ୍ୱରୂପ ଧରି ନେଲେ ଯେ, ରାଧାନାଥ ମାଦଳା ପାଞ୍ଜି ସଂପର୍କରେ ଆଲୋଚନା କରିଥିବେ ଓ ଶୁଣିଥିବେ, ତେବେ ବି ସେଥିରେ ଶେଷ କେଶରୀ ରାଜାଙ୍କର ଏପରି କନ୍ୟାଥିବାର କୌଣସି ପ୍ରମାଣ ନାହିଁ ।

ମାଦଳା ପାଞ୍ଜି (ପ୍ରାଚୀ) ରେ ଲେଖା ଅଛି— ''ଏ ଉତ୍ତାରେ ବସନ୍ତ କେଶରୀ ରାଜା ରାଜ୍ୟ କଲେ । ଏ ରାଜାଙ୍କ ଦେହେକେ ବାସୁଦେବ ବାହିନୀପତିଙ୍କ ସଂଗେ - କରିପାରୁ । ଏଥିକି ରାଜା ବାହିନୀପତିଙ୍କୁ ସଭାରୁ ଉଠାଇ ଦେଲେ । ସେଠାରୁ ବାହିନୀପତି ଯାଇ ଅନୁଷ୍ଠାନକରି ବରପାଇ ଦକ୍ଷିଣକୁ ଗଲେ । ସେଠାରୁ ଚୂଡ଼ଗଙ୍ଗଙ୍କୁ ଆଣିଲେ । ଏ କଟକ ମାଡ଼ି ବସିଲା । ବସନ୍ତକେଶରୀ ରାଜା ରାଜ୍ୟ ଛାଡ଼ିଗଲେ ।

ପ୍ରଥମ ପାଞ୍ଜି — ଏଥିରେ ସୁବର୍ଣ୍ଣ କେଶରୀଙ୍କ ନାମ ଉଲ୍ଲେଖ ନାହିଁ । ଅନ୍ୟତ୍ର ଚୋଡ଼ଗଙ୍ଗ ପରାସ୍ତ କରିଥିବା ରାଜାଙ୍କ ନାମ ଶୂନ୍ୟକେଶରୀ ବୋଲି ଲେଖା ଅଛି । ତେଣୁ ଏହି ଶୂନ୍ୟକେଶରୀ, ସ୍ୱର୍ଣ୍ଣକେଶରୀ ବା ସୁବର୍ଣ୍ଣକେଶରୀ, ବସନ୍ତ କେଶରୀ ବା ସିଦ୍ଧକେଶରୀ ହୁଏତ ତାଙ୍କର ନାମାନ୍ତର । ଏହାଙ୍କର ସନ୍ତାନସନ୍ତତି ଥିବାର ସୂଚନା ଏଠି ନାହିଁ ।

ଦ୍ୱିତୀୟ ପାଞ୍ଜି — ଏ ଚୂଡ଼ଗଙ୍ଗଦେବ ବେତାଳ ସାଧ, ନିତାଇମା ନଗ୍ର ଦେବୀ— କେଶରୀ ବଂଶର ରାଜା ସିଦ୍ଧକଣ୍ଠ କେଶରୀ ରାଜାଙ୍କୁ ଉଚ୍ଛନ୍ନ କରାଇ ରାଜାକଲା । କନ୍ୟା ୧୩ ଦିନ କୃଷ୍ଣ ତ୍ରୟୋଦଶୀ ଗୁରୁବାର ଦିନ ନାଟ ବେଶରେ ଆସି କଟକ ମାଡ଼ିବସି ରାଜା ହୋଇଲା । ବାସୁଦେବ ବାହିନୀପତି ମହାପାତ୍ର ହୋଇଲା ।

ଓଡ଼ିଶା ଇତିହାସ (ପ୍ୟାରୀମୋହନ ଆଚାର୍ଯ୍ୟ)— ରେ ବର୍ଣ୍ଣିତ ଅଛି – ସୁବର୍ଣ୍ଣ କେଶରୀ, କେଶରୀ ବଂଶର ଶେଷରାଜା ଥିଲେ । ତାଙ୍କର ସନ୍ତାନସନ୍ତତି ନଥିଲା । ଦକ୍ଷିଣ ଦେଶରୁ ଚୋରଗଙ୍ଗ ନାମକ ଜଣେ ନୃପତି ଓଡ଼ିଶା ଆକ୍ରମଣ କରି ୧୧୩୨ ଖ୍ରୀଷ୍ଟାବ୍ଦରେ ପରାସ୍ତ କଲେ ଏବଂ ଏହି ଜ୍ୟେଷ୍ଠ ରାଜପୁତ୍ର କ୍ରମଶଃ ଉତ୍ତର ଦିଗକୁ ରାଜ୍ୟବିସ୍ତାର କରିଥିଲେ । ଅବଶେଷରେ ଯୁଦ୍ଧାଦିଦ୍ୱାରା କେଶରୀ ବଂଶୀୟ ଶେଷ ନିଃସନ୍ତାନ ରାଜା ସୁବର୍ଣ୍ଣ କେଶରୀଙ୍କୁ ସିଂହାସନଚ୍ୟୁତ କରି ଆପେ ଓଡ଼ିଶା ସିଂହାସନରେ ଅଧିରୂଢ଼ ହେଲେ । "କୃପାସିନ୍ଧୁ" ମଧ ଉତ୍କଳ ଇତିହାସରେ କହନ୍ତି ସୁବର୍ଣ୍ଣ କେଶରୀ, କେଶରୀ ବଂଶର ଶେଷରାଜା ଥିଲେ ।

ପ୍ରାଚୀନ ଉତ୍କଳ (ଜଗବଂଧୁ ସିଂହ)— ରେ ଲେଖିଛନ୍ତି ଯଯାତି ୬ଷ୍ଠ ଶତାବ୍ଦୀର ଲୋକଥିଲେ । ସିଦ୍ଧକେଶରୀ ଯଯାତି ବଂଶର ଶେଷରାଜା ଥିଲେ । ସିଦ୍ଧକେଶରୀଙ୍କ ପ୍ରକୃତ ନାମ ଶୂନ୍ୟ କେଶରୀ ବା ସୁବର୍ଣ୍ଣ କେଶରୀ ଥିଲା । ଏ କୃତ୍ତିବାସଙ୍କ ନିକଟରେ ତପସ୍ୟା କରି "ସିଦ୍ଧେଶ୍ୱର" ବୋଲି ପରିଚିତ ହେଲେ । ଏ ସିଦ୍ଧେଶ୍ୱରଙ୍କୁ ଚୂଡ଼ଗଙ୍ଗ ଦେବ ପରାସ୍ତ କରି ଓଡ଼ିଶା ସିଂହାସନ ଅଧିକାରକଲେ ।

ମାଦଳା ପାଞ୍ଜିର ମତ ଉଲ୍ଲେଖ କରି ଡଃ. ହରେକୃଷ୍ଣ ମହତାବ ଲେଖିଛନ୍ତି- କିନ୍ତୁ ତାମ୍ର ଶାସନମାନଙ୍କରୁ ଜଣାଯାଏ ଯେ ଚୋଡ଼ଗଙ୍ଗ ଖ୍ରୀ ୧୧୧୩ ପୂର୍ବରୁ ପୂର୍ବଦିଗରେ ଉତ୍କଳର ଅଧୀଶ୍ୱର ଓ ପଶ୍ଚିମରେ ବଂଗ ରାଜ୍ୟର ଅଧୀଶ୍ୱରମାନଙ୍କୁ ପରାଜୟ କରି ପୁଣି ସେମାନଙ୍କ ନିଜରାଜ୍ୟ ସେମାନଙ୍କୁ ଫେରାଇ ଦେଇଥିଲେ ।

ଓଡ଼ିଶା ଇତିହାସ (ମହତାବ) — ସୁବର୍ଣ୍ଣ କେଶରୀ କେଶରୀ ବଂଶର ଶେଷ ରାଜା । ଏ ରାଜା ଅପୁତ୍ରକ ଥିଲେ ଓ ଏହାଙ୍କର ନନ୍ଦିକା ବୋଲି ଏକ କନ୍ୟାଥିଲେ । ନନ୍ଦିକା ପ୍ରଣୟାର୍ଥୀ ହୋଇ ଚୋଡ଼ଗଙ୍ଗ ସୁବର୍ଣ୍ଣ କେଶରୀଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବାରୁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ଶେଷରେ ଚୁଡ଼ଗଙ୍ଗ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଉତ୍କଳ ଅଧିକାର କଲେ ବୋଲି କଥିତ ଅଛି । ଅନ୍ୟତ୍ର ମଧ ଅଛି-ଯେ ସୁବର୍ଣ୍ଣ କେଶରୀ ନିଜ ମନ୍ତ୍ରୀ ବାସୁଦେବଙ୍କ ବିଶ୍ୱାସଘାତକତା ଓ ସ୍ୱକନ୍ୟା ନନ୍ଦିକାଙ୍କ ଚୋଡ଼ଗଙ୍ଗଙ୍କ ପ୍ରତି ଆକର୍ଷଣ ଜାଣିପାରି କ୍ଷୋଭରେ ରାଜ୍ୟ ଶତ୍ରୁ ହସ୍ତରେ ଅର୍ପଣ କରି ସନ୍ୟାସୀ ହୋଇ. ଯାଇ ଶେଷ ଜୀବନ ମହାନଦୀ ତୀରରେ ବାନପ୍ରସ୍ଥାଶ୍ରମରେ ଅତିବାହିତ କଲେ । ସେ ଯେଉଁଠି ଶେଷ ଜୀବନ କଟାଇ ଥିଲେ ତାହା ବାଙ୍କି ଅନ୍ତର୍ଗତ ଅଂଶୁପା ହ୍ରଦର ଅଦୂରବର୍ତ୍ତୀ ସୁବର୍ଣ୍ଣପୁର ଗ୍ରାମବୋଲି କଥିତ ଅଛି । କଟକର ଉତ୍ତରରେ ମହାନଦୀ ମଧ୍ୟରେ ଅବସ୍ଥିତ ଏକ ପଠା ନନ୍ଦିକାଙ୍କ ନାମାନୁସାରେ-ନନ୍ଦିକେଶ୍ୱରୀ ପଠା ବୋଲି ଅଭିହିତ ହୁଏ ।

ସୁବର୍ଣ୍ଣ କେଶରୀଙ୍କ ସଂପର୍କରେ ଦୁଇଟି କଥା ପ୍ରଚଳିତ ଅଛି -ମନ୍ତ୍ରୀ ବାସୁଦେବ ଅପମାନିତ ଓ ନିର୍ବାସିତ ହେବାରୁ ପ୍ରତିଶୋଧ ପାଇଁ ଆକ୍ରମଣ କରିବାକୁ କର୍ଣ୍ଣାଟ ରାଜା ଚୋରଗଙ୍ଗଙ୍କୁ ଉତ୍ତେଜିତ କରିଥିବା ବିଷୟ ବଂଶାବଳୀ ଗ୍ରନ୍ଥରେ ଏବଂ ସୁବର୍ଣ୍ଣ କେଶରୀ ନିଃସନ୍ତାନ ଥିବାରୁ ମନ୍ତ୍ରୀ ବାସୁଦେବଙ୍କ ଦକ୍ଷିଣରୁ ଜଣେ ରାଜାଙ୍କୁ ନିମନ୍ତ୍ରଣ କରି ସିଂହାସନରେ ବସାଇବା ଘଟଣା— ରାଜ ଚରିତ ଗ୍ରନ୍ଥରେ ବର୍ଣ୍ଣିତ ଅଛି । ପ୍ରଥମ ମତଟି ନନ୍ଦିକା ବିଷୟରେ ସଂପୂର୍ଣ୍ଣ ନୀରବ । ମାତ୍ର ଦ୍ୱିତୀୟଟି ନିଶ୍ଚିତ ଭାବରେ ତାଙ୍କର ଅସ୍ତିତ୍ୱ ଅସ୍ୱୀକାର କରୁଛି । ଐତିହାସିକ ମୂଲ୍ୟ ଦୃଷ୍ଟିରୁ ପ୍ୟାରୀମୋହନ ଏ ଦୁଇଟି ମତକୁ ଅଳୀକ ଓ କାଳ୍ପନିକ ବୋଲି ଉଲ୍ଲେଖ କରିଛନ୍ତି । କୃପାସିନ୍ଧୁ ମଧ୍ୟ ପ୍ୟାରୀମୋହନଙ୍କ ମତକୁ ସମର୍ଥନ କରିଛନ୍ତି । ତେବେ ନିଃସନ୍ତାନ ସୁବର୍ଣ୍ଣ କେଶରୀଙ୍କୁ ଅପୁତ୍ରକ ଅଥଚ କନ୍ୟାପିତା ବୋଲି ମହତାବ ଗ୍ରହଣ କରି ନେବାରେ ରାଧାନାଥଙ୍କ ନନ୍ଦିକେଶ୍ୱରୀ ହିଁ ବୋଧହୁଏ କେବଳ ହେତୁ । ଡଃ. ମହତାବ ସ୍ୱାଧୀନତା ପରବର୍ତ୍ତୀ କାଳରେ ତାଙ୍କର ଓଡ଼ିଶା ଇତିହାସ ଗ୍ରନ୍ଥ ପ୍ରଣୟନ କରି ତହିଁରେ ପ୍ରଥମେ କେଶରୀ ରାଜା ସୁବର୍ଣ୍ଣ କେଶରୀଙ୍କର ନନ୍ଦିକା ବୋଲି କନ୍ୟା ଥିଲା । ଦକ୍ଷିଣରୁ ଆଗତ ବିଡ଼ାନାସୀ ଦୁର୍ଗ ଅବରୋଧ କରି ବୀରପୁରୁଷ ଚୋଡ଼ଗଙ୍ଗଙ୍କୁ ପତିରୂପେ ଲାଭ କରିବା ପାଇଁ ଦେବୀଦତ୍ତ ପିତାଙ୍କର ଜୈତ୍ରମଣି ଅପହରଣ କରିଥିଲେ । ଇତିହାସ ଦୃଷ୍ଟିରୁ ଏହା ଆଦୌ ସତ୍ୟ ନୁହେଁ । କିନ୍ତୁ ରାଧାନାଥଙ୍କର କାବ୍ୟିକ ପରିକଳ୍ପନା କିପରି ଜଣେ ଐତିହାସିକଙ୍କ ମନରେ ସତ୍ୟର ପ୍ରତୀତି ସୃଷ୍ଟିକରି ପାରିଛି, ତାହା ପାଠକଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ତେଣୁ ପରବର୍ତ୍ତୀ କାଳରେ କିଛି ଲୋକ ପ୍ରଚଳିତ କିମ୍ବଦନ୍ତୀ କିପରି ମହାତାବଙ୍କ ଇତିହାସରେ ପ୍ରବେଶ କରିପାରିଛି, ଏହା ପ୍ରଥମେ ନିଜର ଆଲୋଚନାରେ ଅଧ୍ୟାପକ "ବେଣୁଧର ରାଉତ" ପାଠକ ସଂସାରର ଦୃଷ୍ଟି ଆକର୍ଷଣ କରିଥିଲେ । ସୁବର୍ଣ୍ଣ କେଶରୀ ବିଲକୁଲ ନିଃସନ୍ତାନ ଥିବା ସତ୍ତ୍ୱେ ତାଙ୍କର କନ୍ୟା ରାଜଜେମା ନନ୍ଦିକାକୁ ବାସୁଦେବ ଚୋଡ଼ଗଙ୍ଗଙ୍କ ସହିତ ବିବାହ ପ୍ରସ୍ତାବ ଦେବା ଏବଂ ତାହା ରାଜାଙ୍କ ଦ୍ୱାରା ଅସ୍ୱୀକୃତ ହେବାରୁ ବାସୁଦେବ ଶତ୍ରୁପକ୍ଷ ସାମିଲ ହୋଇ ତାହାକୁ ଉତ୍କଳ ସିଂହାସନ ଅଧିକାର କରିବାରେ ସାହାଯ୍ୟ କରିବା ଇତ୍ୟାଦି ଯାହା ଇତିହାସ ବିଶେଷରେ ପରିଣତ ହୋଇଛି, ଏସବୁ କେବଳ ରାଧାନାଥଙ୍କ କାବ୍ୟପାଠର ପରିଣତି ବୋଲି କହିବାକୁ ହେବ ।

ରାଧାନାଥ ନିଶ୍ଚିତ ଭାବରେ ହଣ୍ଟର, ଷ୍ଟାର୍ଲିଂଙ୍କ ଇତିହାସ ସହିତ ପ୍ୟାରୀମୋହନଙ୍କ ଇତିହାସ ପଢ଼ିଥିବେ । ଏ ସବୁ ଇତିହାସରୁ ସୁବର୍ଣ୍ଣ କେଶରୀ ନିଃସନ୍ତାନଥିବାରୁ ରାଧାନାଥଙ୍କ କାବ୍ୟରେ ସୁବର୍ଣ୍ଣ କେଶରୀଙ୍କ ସନ୍ତାନ ଭାବରେ

ନନ୍ଦିକାକୁ ଚିତ୍ରଣ କରିଥିବାରୁ ଆପାତତଃ ନନ୍ଦିକା କବି ରାଧାନାଥଙ୍କ ମାନସ କନ୍ୟା ବୋଲି ମନେହେବା ସ୍ୱାଭାବିକ । କିନ୍ତୁ ବହୁବାର ଆଲୋଚିତ ହୋଇଛି, ରାଧାନାଥଙ୍କର ପ୍ରତ୍ୟେକଟି କାବ୍ୟର କଥାବସ୍ତୁ ପାଇଁ ପାଶ୍ଚାତ୍ୟ ସାହିତ୍ୟ ସଂସାରକୁ ପ୍ରେରଣାର କ୍ଷେତ୍ରରୂପେ ଗ୍ରହଣ କରିଛନ୍ତି । ଏଥିରେ ମଧ କୌଣସି ବ୍ୟତିକ୍ରମ ଘଟିନାହିଁ । କାବ୍ୟରେ ବର୍ଣ୍ଣନା ବିଳାସ ମଧରେ ରାଧାନାଥ ଯେତେ ଐତିହାସିକ ସୌନ୍ଦର୍ଯ୍ୟ ସୃଷ୍ଟି କରିବାକୁ ଚେଷ୍ଟାକରିଥିଲେ ହେଁ ତାହା ଯେ ଯଥାର୍ଥରେ ଓଡ଼ିଶା ଇତିହାସ ନୁହେଁ, ଏ କଥା ବହୁ ଆଲୋଚକ ପ୍ରମାଣ କରିଛନ୍ତି ।

ପାଶ୍ଚାତ୍ୟ ସାହିତ୍ୟରୁ ଆହରଣ — ଡଃ. ଦେବେନ୍ଦ୍ର ନାଥ ମହାନ୍ତି ତାଙ୍କର ରାଧାନାଥ ସାହିତ୍ୟ ଆଲୋଚନାରେ ନନ୍ଦିକେଶ୍ୱରୀ ସଂପର୍କରେ ମତବ୍ୟକ୍ତ କରି କହିଛନ୍ତି– ''ନନ୍ଦିକେଶ୍ୱରୀ କାବ୍ୟର କଥାବସ୍ତୁ ପାଇଁ ରାଧାନାଥ ଗ୍ରୀକ୍ ପୁରାଣରୁ ''ସିଲା ଉପାଖ୍ୟାନ'' ଓ ବାଇରନଙ୍କର ''ସିଜ୍ ଅଫ କୋରିନ୍ଥ'' କାବ୍ୟକୁ ଗ୍ରହଣ କରିଛନ୍ତି । ଏହି କାବ୍ୟର କଥାବସ୍ତୁରେ କବି ଓଡ଼ିଶାର ଇତିହାସକୁ କେତେକାଂଶରେ ଗର୍ହିତ କରିବାକୁ ଚେଷ୍ଟାକରି ନିଜ କଳ୍ପନାପ୍ରବଣତାର ପରିଚୟ ଦେବା ସଂଗେ ସଂଗେ ଐତିହାସିକ ଉପାଦାନର ମୂଲ୍ୟକୁ ଅସ୍ୱୀକାର କରିଛନ୍ତି । ଏହି କାବ୍ୟର କଥାବସ୍ତୁରେ ଯେଉଁ କେତେକ ଅଂଶ ଓଡ଼ିଶାର ଇତିହାସ ସ୍ୱରୂପ ପ୍ରତିଭାତ ହୁଏ ତାହା ଯଥାର୍ଥରେ ଇତିହାସ ବୋଲି କୁହାଯାଇ ପାରିବ ନାହିଁ। ଅଧ୍ୟାପକ ମହାନ୍ତି ତାଙ୍କର ଦୀର୍ଘ ଆଲୋଚନା ପ୍ରସଙ୍ଗରେ ପ୍ରତିପାଦନ କରିଛନ୍ତି ଯେ ବାସ୍ତବିକ ଗ୍ରୀକ୍ ପୁରାଣର ସିଲା ଉପାଖ୍ୟାନ ହିଁ ନନ୍ଦିକେଶ୍ୱରୀ କାବ୍ୟର ପ୍ରେରଣାର ପ୍ରଧାନ ଉପାଦାନ । ଏଥିରେ ଅଛି କ୍ରୀଟର ରାଜା ମିନାସ । ମିନାସଙ୍କ ଦୁର୍ଗ ମୋଗାରକୁ ଅବରୋଧ କରନ୍ତି । ମିନାସଙ୍କ ସୁନ୍ଦରୀ କନ୍ୟା ଶିଲା ଦୁର୍ଗ ମଧରୁ ନିନସଙ୍କୁ ଦେଖି ମୁଗ୍ଧହୁଅନ୍ତି ଏବଂ ତାଙ୍କର ପ୍ରେମ ଲାଭ କରିବା ପାଇଁ ଗଡ଼ଦେବୀଙ୍କର ରକ୍ଷାକବଚ ମିନାସଙ୍କ ମୁଣ୍ଡରେ ଥିବା ସ୍ୱର୍ଣ୍ଣାଭ କେଶଗୁଚ୍ଛକୁ ଅପହରଣ କରି ରାଜା ନିନସଙ୍କୁ ପ୍ରଦାନ କରନ୍ତି । କିନ୍ତୁ ରାଜା ନିନସ ସିଲାଙ୍କର ପ୍ରଣୟନକୁ ପ୍ରତ୍ୟାଖ୍ୟାନ କରନ୍ତେ ସେ ଲଜ୍ଜାରେ ଘରକୁ ନ ଫେରି ସମୁଦ୍ରରେ ଆତ୍ମ ବିସର୍ଜନ କରନ୍ତି ଏବଂ ପ୍ରଣୟର ପୁଣ୍ୟ ହେତୁ ପକ୍ଷୀରୂପ ଧାରଣ କରନ୍ତି । ପ୍ରତିଶୋଧପରାୟଣ ସିଲାଙ୍କର ପିତା ମିନାସ ଇଗଲ ହୋଇ ତାହାକୁ ଅନୁଧାବନ କରିବାର ଜଣାଯାଇଛି । ସିଲା ଯେପରି ଦୁର୍ଗ ମଧରୁ ମିନାସଙ୍କ ପ୍ରତି ଆକୃଷ୍ଟ, ନନ୍ଦିକା ମଧ ସେହିପରି ଚୋଡ଼ଗଙ୍ଗଙ୍କ ପ୍ରତି ଆକୃଷ୍ଟ । ରାଧାନାଥ ମୋଗାର ସ୍ଥାନରେ ବିଡ଼ାନାସୀ ଦୁର୍ଗର ପରିକଳ୍ପନା କରି, ସେହି ଦୁର୍ଗର ଅଧିପତି ସୁବର୍ଣ୍ଣକେଶରୀଙ୍କ କନ୍ୟାରୂପେ ନନ୍ଦିକାର ପରିକଳ୍ପନା କରିଛନ୍ତି। ସିଲା ପରି ନନ୍ଦିକା ମଧ ମିନାସ ରୂପୀ ଚୋଡ଼ଗଙ୍ଗଙ୍କର ପ୍ରେମଲାଭ ପାଇଁ ବ୍ୟାକୁଳ ହୋଇଛି । ସିଲା

ଗଡ଼ଦେବୀଙ୍କର ରକ୍ଷାକବଚ ପିତାଙ୍କର ସ୍ୱର୍ଣ୍ଣାଭ କେଶଗୁଚ୍ଛକୁ ଅପହରଣ କରି ପ୍ରେମିକ ପୁରୁଷକୁ ପ୍ରଦାନ କଲାପରି, ନନ୍ଦିକା ମଧ୍ୟ ବିଡ଼ାନାସୀ ଦୁର୍ଗର ରକ୍ଷାକବଚ ଦେବୀଦତ୍ତ ଜୈତ୍ରମଣିକୁ ପିତା ସୁବର୍ଣ୍ଣକେଶରୀଙ୍କ ମୁକୁଟରୁ ଅପହରଣ କରି ଚୋଡ଼ଗଙ୍ଗଙ୍କୁ ଅର୍ପଣ କରିଛନ୍ତି । ଗ୍ରୀକ୍ ଉପଖ୍ୟାନରେ ନାୟିକା ନାୟକ ଦ୍ୱାରା ପ୍ରତ୍ୟାଖ୍ୟାତା । ତେଣୁ ରାଧାନାଥ ଅବିକଳ ତାଙ୍କର ପରିକଳ୍ପିତ ନାୟିକାକୁ ଚୋଡ଼ଗଙ୍ଗଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତା ରୂପେ ଚିତ୍ରଣ କରିଛନ୍ତି । ତେବେ ମୂଳ କଥାବସ୍ତୁରେ ସିଲା ଆତ୍ମହତ୍ୟା କଲା ପରି, ରାଧାନାଥଙ୍କର କାବ୍ୟ ନାୟିକା ନନ୍ଦିକା ଆତ୍ମହତ୍ୟା କରିଥିଲେ ହେଁ, ଭାରତୀୟ ସଂସ୍କୃତିର ସୌନ୍ଦର୍ଯ୍ୟ ରକ୍ଷାକରି ରାଧାନାଥ ନନ୍ଦିକାର ମନରେ ଚୋଡ଼ଗଙ୍ଗ ପତିର ଆସନ ଲାଭ କରିଥିବା କଥା ଉଲ୍ଲେଖ କରିଛନ୍ତି । ସେହି ବିଶ୍ୱାସର ଅନୁରୋଧରେ ନନ୍ଦିକା ପିତାଙ୍କୁ ଅନୁରୋଧ କରିଛି ଚୋଡ଼ଗଙ୍ଗଙ୍କୁ ଜାମାତା ରୂପେ ବରଣ କରି ପୁତ୍ର ରୂପେ ଗ୍ରହଣ କରିବା ପାଇଁ । ଗ୍ରୀକ୍ ଗଳ୍ପରେ ପିତା ମିନାସ ପ୍ରତିଶୋଧପରାୟଣ ହୋଇ ଇଗଲ ପକ୍ଷୀରୂପରେ କନ୍ୟାର ଅନୁଧାବନ କଲାଭଳି, ନନ୍ଦିକେଶ୍ୱରୀ କାବ୍ୟରେ ତାହା ହୋଇନାହିଁ । ବରଂ ରାଧାନାଥ ତାହାକୁ ଏକ ଭାରତୀୟ ରଙ୍ଗ ଦେବା ପାଇଁ ସୁବର୍ଣ୍ଣକେଶରୀଙ୍କୁ କରିଛନ୍ତି ଏକ ସ୍ନେହ ପାଗଳ ପିତା ଏବଂ ଚୋଡ଼ଗଙ୍ଗଙ୍କୁ ଯଥାର୍ଥ ବୀରର ମର୍ଯ୍ୟାଦା ପ୍ରଦାନ କରିଅଛନ୍ତି । ଚୋଡ଼ଗଙ୍ଗ ନନ୍ଦିକାଙ୍କର ପ୍ରସ୍ତାବରେ ରାଜି ନ ହେଲେ ବି ତାହାକୁ ସସମ୍ମାନେ ଅନୁଚରମାନଙ୍କ ତତ୍ତ୍ୱାବଧାନରେ ଶିବିକା ଆରୋହଣ କରାଇ ନନ୍ଦିକାକୁ ସ୍ୱଗୃହକୁ ଫେରାଇ ଦେଇଛନ୍ତି । ସେହିପରି ସୁବର୍ଣ୍ଣକେଶରୀ ମଧ୍ୟ କନ୍ୟାର ମୃତ୍ୟୁରେ ବିଚଳିତ ହୋଇ ଚୋଡ଼ଗଙ୍ଗଙ୍କୁ ରାଜ୍ୟ ପ୍ରଦାନ କରି ବାଙ୍କୀ ନିକଟବର୍ତ୍ତୀ ଜନପଦରେ ବାନପ୍ରସ୍ଥ ଅବଲମ୍ବନ କଲେ ବୋଲି ପରିକଳ୍ପନା କରାଯାଇଛି । ଏଣୁ ପାଶ୍ଚାତ୍ୟ ସାହିତ୍ୟର କଥାବସ୍ତୁ ଆହରଣ କରିଥିଲେ ହେଁ ରାଧାନାଥଙ୍କର କିଞ୍ଚିତ ସ୍ୱାତନ୍ତ୍ର୍ୟ ସମ୍ପୂର୍ଣ୍ଣ ଲକ୍ଷ୍ୟ କରାଯାଏ ।

ଉଭୟ ଆଲୋଚକ ଅଧ୍ୟାପକ ରାଉତ ଓ ଅଧ୍ୟାପକ ମହାନ୍ତି ମତ ପ୍ରଦାନ କରିଛନ୍ତି ଯେ, ଗ୍ରୀକ୍ ପୁରାଣର ସିଲା କଥାବସ୍ତୁ ସହିତ ନନ୍ଦିକେଶ୍ୱରୀ କାବ୍ୟରେ ବାଇରନଙ୍କର ସିଜ ଅଫ କୋରିନ୍ଥ (କୋରିନ୍ଥ ଅବରୋଧର ପ୍ରଭାବମଧ୍ୟ ପଡ଼ିଅଛି) ବିଶେଷ କରି କାଠଯୋଡ଼ି ତୀରରେ ସମର ସଜ୍ଜାର ବିସ୍ତୃତ ବର୍ଣ୍ଣନା ନନ୍ଦିକେଶ୍ୱରୀ କାବ୍ୟରେ ବର୍ଣ୍ଣିତ ହୋଇଛି, ତାହା କୋରିନ୍ଥ ଅବରୋଧ କାବ୍ୟରେ ଆଲକଙ୍କର ସମୁଦ୍ରତୀରରେ ଶିବିର ସ୍ଥାପନ ଦୃଶ୍ୟର ପ୍ରେରଣା ବୋଲି ଅଧ୍ୟାପକ ମହାନ୍ତିଙ୍କର ମତ ।

ଏ ସମ୍ପର୍କରେ ଅଧ୍ୟାପକ ବେଣୁଧର ରାଉତ ଏକ ବିଶ୍ଳେଷଣାତ୍ମକ ଆଲୋଚନା ଅନୁରୋଧରେ କହିଛନ୍ତି—ପ୍ରଭାବଶାଳୀ କାବ୍ୟର ବୈଶିଷ୍ଟ୍ୟ କେତୋଟି ନିର୍ଦ୍ଦେଶ

କରିଛି-ଏହାର ଦୁଇଟି ଭାଗ—ପୂର୍ବାର୍ଦ୍ଧରେ କାଠଯୋଡ଼ି ତୀରର ଶିବିର ବର୍ଣ୍ଣନାରେ ବାଇରନଙ୍କ ସିଜ ଅଫ କୋରିନ୍ଥର ଶିବିର ସ୍ଥାପନ ଏବଂ ଯୁଦ୍ଧକାଳୀନ ନୈଶଚିତ୍ର (ପ୍ରଥମ ଓ ଦ୍ୱିତୀୟ ଦୃଶ୍ୟ ଅବଲମ୍ବିତ) ଉଭୟତ୍ର ବର୍ଣ୍ଣିତ ରାତ୍ରି ଯୁଦ୍ଧ । ସେଠି ଖ୍ରୀଷ୍ଟଧର୍ମଚ୍ୟୁତ ଓ ମୁସଲିମ ଦୀକ୍ଷିତ ନାୟକ ଆଲକ ସମୁଦ୍ର ତଟରେ ଚିନ୍ତାମଗ୍ନ, ଏଠାରେ ଚୋଡ଼ଗଙ୍ଗ ହ୍ରଦକୂଳରେ ଚିନ୍ତାମଗ୍ନ । କିନ୍ତୁ ଏହି ହ୍ରଦ ଶୃଙ୍ଗ ହ୍ରଦ ନାମରେ କବିଙ୍କ ପୁନଃ ସୃଜନା । ସେଠି ନାୟିକା ଫ୍ରାନସେସକାଙ୍କ ହଠାତ୍ ଆବିର୍ଭାବ, ପ୍ରେମିକା ନାୟକଠାରେ ଏଠି ଗଙ୍ଗାଙ୍କ ଆବିର୍ଭାବ ଭକ୍ତ ଚୋଡ଼ଗଙ୍ଗଙ୍କଠାରେ, ଉଭୟ ଚମକପ୍ରଦ । ଉଭୟ ଉଭୟ ବୀରଙ୍କୁ ଧର୍ମବୀର ହେବାକୁ ପ୍ରେରଣା ଦେଇଛନ୍ତି । କିନ୍ତୁ ଲକ୍ଷ୍ୟ ସ୍ୱତନ୍ତ୍ର । ସ୍ୱଧର୍ମ ଚ୍ୟୁତ ଆଲକ ସ୍ୱଧର୍ମକୁ ଫେରି ଆସନ୍ତି, କିନ୍ତୁ ଗଙ୍ଗା କହୁଛନ୍ତି ଶାକ୍ତ ଧର୍ମର ଉଚ୍ଛେଦ କରି ବୈଷ୍ଣବଧର୍ମ ପ୍ରତିଷ୍ଠାକରିବାକୁ । ମୂଳ ଗଳ୍ପଟି ଐତିହାସିକ । ଗଙ୍ଗବଂଶରେ ବୈଷ୍ଣବଧର୍ମ ପ୍ରତିଷ୍ଠା ଐତିହାସିକ ହେଲେ ହେଁ ଏଠି ଇତିହାସର ସୃଷ୍ଟି ହୋଇଛି । କବିତ୍ୱଭିତ୍ତିରେ ସମଗ୍ର ପୂର୍ବାର୍ଦ୍ଧଟି ସୁନ୍ଦର ବିଶେଷତଃ ଚାରିତ୍ରିକ ସୃଷ୍ଟି ହିସାବରେ ।

ଅଧ୍ୟାପକ ଡକ୍ଟର କ୍ଷେତ୍ରବାସୀ ନାୟକ ମଧ୍ୟ ପାରମ୍ପରିକ ଆଲୋଚନାର ଅନୁରୋଧରେ ନନ୍ଦିକେଶ୍ୱରୀ କାବ୍ୟରେ ଗ୍ରୀକ୍ ପୁରାଣର ସିଲାଗଳ୍ପ ଏବଂ ବାଇରନଙ୍କ ସିଜ୍ ଅଫ୍ କୋରିନ୍ଥର ପ୍ରଭାବ ଅନୁମାନ କରିଥିଲେ ହେଁ, ତାଙ୍କର ଦୀର୍ଘ ଆଲେଚନାରେ ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ସିଜ୍ ଅଫ୍ କୋରିନ୍ଥର ମୁଖ୍ୟ କଥାବସ୍ତୁ ସହିତ ନନ୍ଦିକେଶ୍ୱରୀ କାବ୍ୟର କୌଣସି ସମ୍ପର୍କ ନାହିଁ । ଉଭୟ କାବ୍ୟରେ ତାଙ୍କରି ଭାଷାରେ ପ୍ରଣୟର ବ୍ୟର୍ଥତା ରହିଛି । ଉଭୟ କାବ୍ୟ ବିୟୋଗାତ୍ମକ । ମାତ୍ର ଏ ଦୁଇଟି କାବ୍ୟର ମର୍ମ ଓ ସ୍ୱରୂପ ସମାନ ନୁହେଁ । ରାଧାନାଥଙ୍କ କାବ୍ୟ ନାୟିକା ନନ୍ଦିକା ଚିତ୍ରିତ ହୋଇଛି ଦେଶଦ୍ରୋହିଣୀ, ଜାତିଦ୍ରୋହିଣୀ ଏବଂ ପିତୃଦ୍ରୋହିଣୀ ରୂପରେ, ମାତ୍ର ବାଇରନ୍‌ଙ୍କର କାବ୍ୟ ନାୟିକା ଫ୍ରାନସେସକା ନିଜର ସ୍ୱଦେଶ ଓ ସ୍ୱଧର୍ମରେ ଅଟଳ । ନିଜର ପ୍ରଣୟୀ ସ୍ୱଦେଶ ବିରୁଦ୍ଧରେ ଯିବାରୁ ସେ ଆତ୍ମହତ୍ୟା କରି ପ୍ରମାଣ ଦେଇଛି ଯେ, ତାହା ନିକଟରେ ପ୍ରଣୟ ଅପେକ୍ଷା ସ୍ୱଧର୍ମ ଅଧିକ ମୂଲ୍ୟବାନ । ସୁତରାଂ ସିଜ୍ ଅଫ୍ କୋରିନ୍ଥ ମୁଖ୍ୟ କଥାବସ୍ତୁ ସହିତ ନନ୍ଦିକେଶ୍ୱରୀର ସାମ୍ୟ ନାହିଁ କି ରାଧାନାଥ ସେଥିରୁ କଥାନକ ଆହରଣ କରି ନାହାନ୍ତି । କେବଳ ଚୋଡ଼ଗଙ୍ଗଙ୍କ କାଠଯୋଡ଼ି ତୀରରେ ସମରସଜ୍ଜା ବର୍ଣ୍ଣନା ଆଲପକଙ୍କର ସଜ୍ଜାତୁଲ୍ୟ ହୋଇଛି । ଏ କ୍ଷେତ୍ରରେ ରାଧାନାଥଙ୍କର ଆହରଣ ବର୍ଣ୍ଣନା ବୈଚିତ୍ର୍ୟରେ ହିଁ ସୀମାବଦ୍ଧ । ଓଭିଡ଼ଙ୍କ ପ୍ରଭାବ ନନ୍ଦିକେଶ୍ୱରୀରେ ମୁଖ୍ୟ ମେଟାମରଫେସିସ୍‌ରୁ ଆହରଣ ମାତ୍ରା ଅଧିକ । ବାସ୍ତବିକ ଗ୍ରୀକ୍ ପୁରାଣର ସିଲା କଥାବସ୍ତୁର କଙ୍କାଳ ହିଁ ରାଧାନାଥଙ୍କ ନନ୍ଦିକେଶ୍ୱରୀ କାବ୍ୟର ମୁଖ୍ୟ ଉପଜୀବ୍ୟ



ଉପାଦାନ । ଏଥିରେ ସନ୍ଦେହର କୌଣସି ଅବକାଶ ନାହିଁ । ଆଲୋଚକମାନେ ସିଜ୍ ଅଫ୍ କୋରିନ୍ଥ କାବ୍ୟର କୌଣସି ବର୍ଣ୍ଣନା ସହିତ ନନ୍ଦିକେଶ୍ୱରୀ କାବ୍ୟର ବର୍ଣ୍ଣନା ବିଳାସ ମଧ୍ୟରେ ଯେଉଁ ପ୍ରତିଧ୍ୱନି ଶୁଣି ପାରିଛନ୍ତି ତାହା ଏପରି ପ୍ରାମାଣିକ ଅଥବା ଯୌକ୍ତିକତାରେ ପରିପୂର୍ଣ୍ଣ ନୁହେଁ ।

ବହୁ ପାଠୀ ରାଧାନାଥ କାବ୍ୟ ରଚନା କଲାବେଳେ ନିଜର କଳ୍ପନା ବିଳାସର ବିସ୍ତୃତ କାନଭାସ ମଧ୍ୟରେ ବହୁସାର୍ଥକ କାବ୍ୟାନୁଭୂତିର ସ୍ୱରଝଙ୍କାର ଅନୁରଣିତ ହୋଇଥିବେ, କିମ୍ବା ପ୍ରତିଭାସମ୍ପନ୍ନ କବି ରାଧାନାଥଙ୍କର ବର୍ଣ୍ଣନା ବିଳାସର କେତୋଟି ଚିତ୍ର ହୁଏତ କୌଣସିଟିରେ ସମତୁଲ ଭାବରେ ପ୍ରତିରୂପ ସାମ୍ୟ ଭାବନା ସୃଷ୍ଟି କରୁଥିବ, ତାହା ବୋଲି ରାଧାନାଥ ସର୍ବତ୍ର କେବଳ ସଂଗ୍ରହ କରି ଆସିଛନ୍ତି କହିବା ଦ୍ୱାରା ତାଙ୍କର ବିରାଟ କବିପୁରୁଷ ପ୍ରତି ଅବମାନନା ହେବ ବୋଲି କୁହାଯାଇପାରେ ।

ରାଧାନାଥଙ୍କ କାବ୍ୟଗୁଡ଼ିକ ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ପ୍ରଭାବିତ ହେଲେ ମଧ୍ୟ ସେଥିରେ ଥିଲା କବିଙ୍କର ମୌଳିକ ଚିନ୍ତାଧାରା ଓ କଳା ନିପୁଣତା । ରାଧାନାଥ ଲେଖନୀରେ ଥିଲା ଅମୋଘଶକ୍ତି । ବିଷୟବସ୍ତୁ ଯାହା ହେଉନା କାହିଁକି ରାଧାନାଥଙ୍କ ଲେଖନୀ ଝଙ୍କାରରେ କାବ୍ୟ ସାହିତ୍ୟ ପାଉଥିଲା ନୂତନ ରୂପ । ରାଧାନାଥଙ୍କ କାବ୍ୟରେ ପ୍ରତ୍ୟେକ ପଙ୍କ୍ତିଟି ଭାବ ଓ ଭାଷାର ଲାସ୍ୟ । ଜୀବନଦର୍ଶନ ପ୍ରକୃତି ପ୍ରେମର ଅଫୁରନ୍ତ ସରଳତରଳ, ରସଢଳଢଳ କୋମଳ ବର୍ଣ୍ଣନା । ରୂପପ୍ରେମୀ ରାଧାନାଥ ଦୁଃଖରୂପର ମଧ୍ୟଦେଇ କରିଛନ୍ତି ବୀକ୍ଷଣ ଓ ଅନ୍ୱେଷଣ । କରୁଣ ରସ ହିଁ ସମଗ୍ର କାବ୍ୟର ହୃତ୍‌ପିଣ୍ଡ । ନନ୍ଦିକେଶ୍ୱରୀ କାବ୍ୟ ବିଦେଶୀୟ କାବ୍ୟଧାରାର ଅନୁଚିନ୍ତନ ଓ ଅନୁସରଣ ବହୁସ୍ଥଳରେ ରହିଥିଲେ ମଧ୍ୟ କଥାବସ୍ତୁର ପରିଣତି ରାଧାନାଥ ମାନସର ସ୍ୱରୂପ ଉଦ୍‌ଘାଟନ କରି ସର୍ବଦା ଅଶ୍ରୁଳ ଓ ବିୟୋଗାନ୍ତକ ହୋଇ ଉଠିଛି ।

ନନ୍ଦିକେଶ୍ୱରୀ କାବ୍ୟ ଉର୍ଜସ୍ୱଳ ବୀର କାବ୍ୟ । ପାଠକ ପ୍ରାଣରେ ଯେତେ ଜାତୀୟ ପ୍ରୀତି ବା ସମବେଦନା ସୃଷ୍ଟି ନ କରେ ନନ୍ଦିକାର ଦୁର୍ବିସହ ଯୌବନଜ୍ୱାଳା ଓ ତାର ପ୍ରେମର ଶୋଚନୀୟ ପରିଣତିଠାରୁ ଅଧିକ ଅଶ୍ରୁବ୍ୟଥା ଓ କାରୁଣ୍ୟର ସଞ୍ଚାର କରିଥାଏ । ରାଜନନ୍ଦିନୀ ନନ୍ଦିକା ଅପ୍ରାପ୍ତ ଜନିତ ବ୍ୟଥାରେ ଯେପରି ଏକ ଅପ୍ରାପ୍ତ ରୂପ ପ୍ରତିମା, ମୃତ୍ୟୁର ଅମର ଦାୟିନୀ କ୍ରୋଡ଼ରେ ଶେଷ ବିଶ୍ରାମ ନେବା ପୂର୍ବରୁ ତାର କଜ୍ଜଳାକ୍ତ ଲୋତକାଙ୍କିତ ପତ୍ରର ଭାଷା କି କରୁଣ କି ମର୍ମସ୍ପର୍ଶୀ ଏବଂ ବ୍ୟଥାର ଫଲ୍‌ଗୁ ମୁହୂର୍ତ୍ତକ ପାଇଁ ଭୂଗର୍ଭରୁ ଆତ୍ମ ପ୍ରକାଶ କରି ପୁଣି ଚିରଦିନ ପାଇଁ ଭୂଗର୍ଭରେ ଯେପରି ସ୍ତିମୀତ ଓ ସମାଧିସ୍ଥ ହୋଇଛି ।

"ତାତଜୀବ ଲୀଳା ସରୁଛି ମୋହର
ଅନ୍ତିମେ ବନ୍ଦିଲି ତୁମ୍ଭ ଶ୍ରୀପୟର
ଶିରେ ଘେନି ଯାଉଅଛି ପାପଭାର
ତହିଁ, ଯହିଁ ଚିର-ମୁକ୍ତ କୃପାହାର
କୁଳପାଂଶୁଳାକୁ ବହୁ ଦିନ ବହି
ପାପଭାରୁ ଏବେ ମୁକ୍ତ ହେବ ମହୀ ।"

X X X

ରାଜଜେମା ନନ୍ଦିକା ଆପଣାର ପାପଭାରା ବହନକରି ଧରଣୀ ବକ୍ଷରୁ ବିଦାୟ ନେଇଛି । ଦେଶଦ୍ରୋହୀ ରାଜଦ୍ରୋହୀ, ପିତୃଦ୍ରୋହୀ ତାର ଭାରା ଯେତେ ନୁହେଁ, ତାଠାରୁ ଅଧିକ ଆପଣାର ଯୌବନର ବ୍ୟଥାଭାରା । ଏହି ତିନି ପାପର ଅନୁତାପ ବା ପ୍ରାୟଶ୍ଚିତ୍ତ ପାଇଁ ନନ୍ଦିକା ସହାନୁଭୂତିର ଅଧିକାରିଣୀ ନୁହେଁ, ସେ ସହାନୁଭୂତିର ପାତ୍ରୀ କେବଳ ତାର ବ୍ୟଥିତ ପ୍ରେମର ଅସରନ୍ତି ଅଶ୍ରୁଧାରା ଓ ଦହନଜ୍ୱାଳା ପାଇଁ । ସ୍ମୃତି ଆତ୍ମକୃତ ପାପର ସ୍ମୃତି ନୁହେଁ ବରଂ ପକ୍ଷାଘାତ ପ୍ରାପ୍ତ ପ୍ରଣୟ ଜନିତ ବ୍ୟଥାର ସ୍ମୃତି । ନନ୍ଦିକାର ଅନୁତପ୍ତ ମାନସ ଚିତ୍ରର ବର୍ଣ୍ଣନା ଅତ୍ୟନ୍ତ ପାଂଶୁଳ ନୁହେଁ, ବରଂ ନନ୍ଦିକାର ପତ୍ର ବର୍ଣ୍ଣିତ ଅଶ୍ରୁ ଆବେଗମୟୀ ଭାଷାରେ ଯେଉଁଠି ଅନ୍ତିମ ଅନୁରୋଧ ପିତାଙ୍କୁ ଜଣାଇଛି, ନିଜକୁ ଦୁଃସ୍ୱପ୍ନ ଭଳି ଭୁଲିଯାଇ ତାର ପ୍ରଣୟୀକୁ ପୁତ୍ର ସ୍ନେହରେ ଦେଖିବା ପାଇଁ ।

"ଦୁଃସ୍ୱପ୍ନ ପରାଏ ପାସୋରି ଅଚିରେ, ମୋସ୍ମୃତି ନିହିବ ମୋହ ସମାଧିରେ
କହିବ ମାତାଙ୍କୁ ସୁତାଙ୍କୁ ନଶୋଚି, ସ୍ମୃତିପଟୁ ତାକୁ ପକାଇବେ ପୋଛି
କରିଥିଲି ଯାକୁ ପ୍ରାଣ ପତିବରି, ବାତ୍ସଲ୍ୟେ ଜାଣିବ ନିଜ ପୁତ୍ରପରି ।

ପ୍ରଣୟିନୀ ପକ୍ଷରେ ଏହାଠାରୁ ଅଧିକ ହୃଦୟ ବିଦାରକ ଓ କରୁଣତମ ଦୀର୍ଘଶ୍ୱାସ କଅଣ ହୋଇପାରେ । ରାଜଜେମା ନନ୍ଦିକା କରୁଣ ରସର ଏକ ବିଗ୍ରହବନ୍ତ ପ୍ରତୀକ । ଯୌବନାଭିଳାଷୀ ନନ୍ଦିକାର ଲଜ୍ଜାହୀନା ଦୁର୍ବିସହ ପ୍ରେମ ଯୁଗୋପଯୋଗୀ ବାସ୍ତବଚିତ୍ରର ନିଦର୍ଶନ ହେଲେ ହିଁ, ଚୋରଗଙ୍ଗଙ୍କ ରାଜ୍ୟ ଲିପ୍‌ସା, କର୍ମନିଷ୍ଠା, ନିନ୍ଦ୍ୟ ସ୍ୱାର୍ଥ ଓ ନିରସ କର୍କଶଭରା ପ୍ରତ୍ୟାଖ୍ୟାନ ହେତୁ ବିଡ଼ମ୍ବିତା, ଅତୀବ କାରୁଣ୍ୟ ମୁଖର । ତେଣୁ ନନ୍ଦିକାର ତ୍ୟାଗ ହାର୍ଦ୍ଦିକ ଶୋକୋଚ୍ଛ୍ୱାସରେ ପ୍ରକାଶିତ । ପ୍ରେମ ପାଇଁ ଯୁଗେଯୁଗେ ନାରୀ ଉନ୍ମାଦିନୀ, ଆତ୍ମହରା, ସର୍ବହରା ତିଳତିଳ ହୋଇ ଦଗ୍ଧୀଭୂତା । କବିଙ୍କ ଭାଷାରେ ନନ୍ଦିକାର କରୁଣ ଦୃଶ୍ୟ ପାଠକ ପ୍ରାଣରେ ଯୁଗପତ୍ ଦୁଃଖ ପ୍ରଦାନକରେ, ତଥାପି ରସ ଦୃଷ୍ଟିରୁ ଏହା ଉପଭୋଗ୍ୟ । ମନସ୍ୱିନୀ ହୃଦୟରେ ଯେଉଁ ପ୍ରବାଳ ପ୍ରେମନଦୀ ପ୍ରବାହିତ ହୋଇଥିଲା, ତାହା ବାତ୍ୟାବିକ୍ଷୋଭିତ ଉତ୍ତାଳ ତରଙ୍ଗମୟ ଏବଂ କୁଳପ୍ଲାବନକାରୀ, ତ୍ୟାଗସର୍ବସ୍ୱ ନହୋଇ ଭୋଗସର୍ବସ୍ୱ

ହୋଇଥିଲା । ଯଦି ତାହା ସୀତା, ସାବିତ୍ରୀଙ୍କ ପ୍ରେମ ପ୍ରବାହ ସଦୃଶ ଧୀର । ଗମ୍ଭୀର ପ୍ରଶାନ୍ତ ହୋଇଥାନ୍ତ । ତେବେ ନନ୍ଦିକା ଉତ୍କଳ ଇତିହାସରେ ଅମର ହୋଇଥାନ୍ତା, ପ୍ରେମର ଉଚ୍ଛୃଙ୍ଖଳତାରୁ ରାଜଦ୍ରୋହୀ, ଦେଶଦ୍ରୋହୀ ଓ ପିତୃଦ୍ରୋହୀ ହେଲା ।

"ସ୍ଖଳିତ କଦାପି ନୁହେ ଫିଙ୍ଗିବାର
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର"

"Facts are often Stronger than fiction"

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ରାଧାନାଥଙ୍କ କାବ୍ୟ କାନନ ପାଶ୍ଚାତ୍ୟ ବିଷୟବସ୍ତୁ ଦ୍ୱାରା ସୁଶୋଭିତ ହୋଇଥିଲେ ମଧ୍ୟ ରାଧାନାଥଙ୍କ ଲେଖନୀର ମୃଦୁ ଝଙ୍କାରରେ ତାହା ସୁରଭିତ ଓ ସୁବାସିତ । ଏହାଦ୍ୱାରା ରାଧାନାଥଙ୍କ କବି ପ୍ରତିଭା ନ୍ୟୂନ ବା ହ୍ରାସ ହୋଇ ନାହିଁ । ଅନେକ ଅନୁଦାର ସମାଲୋଚକମାନେ ରାଧାନାଥଙ୍କର ଏହି କଥାବସ୍ତୁର ଆହରଣ ଓ ବିଷୟ ପରିବେଷଣ ଜନିତ ପାଶ୍ଚାତ୍ୟ ପ୍ରଭାବ ପାଇଁ ତାଙ୍କୁ ଦୋଷୀକରି ବେଳେବେଳେ ଅତ୍ୟନ୍ତ କଠୋର ଭାବରେ ତାହାଙ୍କୁ ଅନୁବାଦକ ବୋଲି ଆକ୍ଷେପ କରିଥାନ୍ତି । କିନ୍ତୁ କଳା ପାଇଁ କଳାର କବି ରାଧାନାଥ ନାରୀ ସ୍ୱାଧୀନତାର ଆଦ୍ୟ ଝଙ୍କାର ଶୁଣାଇଛି କବିତା ମାଧ୍ୟମରେ—

"ସୁତରେ ପିତାଙ୍କ ପୂର୍ଣ୍ଣ ଅଧିକାର
ଭଣେ ଯେଉଁ ଶାସ୍ତ୍ର ତାକୁ ନମସ୍କାର ।"

ଯୁଗେଯୁଗେ କବିମାନେ ପ୍ରତିଭାତ ହୁଅନ୍ତି ଏବଂ ପରବର୍ତ୍ତୀ କବିମାନଙ୍କୁ ପ୍ରଭାବିତ କରିଥାନ୍ତି । ପାଶ୍ଚାତ୍ୟ ସମାଲୋଚକ ମାଥ୍ୟୁ ଆରନଲୋଡ଼ଙ୍କର ମତବ୍ୟକ୍ତ କରିଥାନ୍ତି—It is an inventor only who knows how to borrowed, if Shakespeare borrow his plots, he liquidated his loans with double and triple interest. କବିବର ରାଧାନାଥଙ୍କ ପକ୍ଷରେ ମଧ୍ୟ ଉପରୋକ୍ତ ମତ ପ୍ରଯୁଜ୍ୟ । କାରଣ ସେ କାଳରେ ଓଡ଼ିଶା ସାହିତ୍ୟରେ ଯେଉଁ ଅଭାବ ବୋଧ ସୃଷ୍ଟି ହୋଇଥିଲା ତାର ଦୂରୀକରଣ ପାଇଁ ଜାତୀୟବାଦୀ କବି ରାଧାନାଥ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମହାକବିମାନଙ୍କର କାବ୍ୟର ଆଦର୍ଶ ଅତ୍ୟନ୍ତ ସାର୍ଥକ ଭାବେ ସମ୍ମିଳିତ କରି ଏପରି ନବୀନରୂପରେ ପରିବେଷଣ କରିଛନ୍ତି ଯେ, ତାହାଦ୍ୱାରା ତତ୍କାଳୀନ ଓଡ଼ିଆ ସାହିତ୍ୟ ଋଦ୍ଧିମନ୍ତ ହୋଇପାରିଛି, ରାଧାନାଥଙ୍କର ସାହିତ୍ୟ ସାଧନା ଓ ଅବଦାନକୁ ସ୍ୱୀକାର କରି । ରାଧାନାଥ ସାହିତ୍ୟର ବଳିଷ୍ଠ ଆଲୋଚକ "ଦୁର୍ଗାଚରଣ ରାୟ" ଯଥାର୍ଥରେ ମତ ପ୍ରକାଶ କରିଛନ୍ତି—"ସେ ଓଡ଼ିଆ ସାହିତ୍ୟର ପୂର୍ବ ପଶ୍ଚିମର ଆଦାନପ୍ରଦାନର ରାଜପଥକୁ ପ୍ରତିଭା ବଳରେ ଭଲ ରୂପେ ମିଶାଇ ଦେଇଛନ୍ତି । ଏହି ମିଳନତତ୍ତ୍ୱ ଉତ୍କଳ ସାହିତ୍ୟର ମଧ୍ୟସ୍ଥଳରେ ପ୍ରତିଷ୍ଠିତ ହୋଇ ସୃଷ୍ଟି ଶକ୍ତିକୁ ଜାଗ୍ରତ କରିଦେଇଛି ।




ଉପସଂହାରରେ ଏତିକି ବକ୍ତବ୍ୟ ପ୍ରଦାନ କରାଯାଇ ପାରେ ଯେ, କବିବର ରାଧାନାଥ ପାଶ୍ଚାତ୍ୟ କାବ୍ୟ ଦ୍ୱୟର ଆଙ୍ଗିକ କଥାବସ୍ତୁକୁ ଗ୍ରହଣ କରି, ନିଜସ୍ୱ କଳାକୁଶଳତା ଓ ଲେଖନୀ ଚାତୁରୀରେ ଓଡ଼ିଶାର ଇତିହାସ ଓ କିମ୍ବଦନ୍ତୀର ଏକ ମଧୁର ମିଳନ ଘଟାଇ ନନ୍ଦିକେଶ୍ୱରୀ କାବ୍ୟର ପରି କଳ୍ପନା କରିଛନ୍ତି । ଏବେ ମଧ୍ୟ ଜାତୀୟବାଦୀ ଓ ଉତ୍କଳପ୍ରେମୀ ଯୁବପ୍ରାଣରେ ନନ୍ଦିକେଶ୍ୱରୀ ପଠା ଓ କାଠଯୋଡ଼ି ସମରସଜ୍ଜା ସ୍ମୃତିର ସାମଗ୍ରୀ ହୋଇ ରହିଛି । ତାହାହିଁ କବିଙ୍କର କଳାପାଟବତା । ସେଥିପାଇଁ ପାଠକ ହୃଦକନ୍ଦରରେ ଦୃଢ଼ ଆସନ କାଳ କାଳ ପାଇଁ ରଖି ଚିରସ୍ମରଣୀୟ ହୋଇଛନ୍ତି ।



# ପାଠ୍ୟପୁସ୍ତକ ଓ ରାଧାନାଥ

ଡଃ ନାରାୟଣ ସାହୁ

ଉନବିଂଶ ଶତାବ୍ଦୀରେ ଶେଷ ତିନିଦଶକ ହେଉଛି ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ମେଷ କାଳ । ୧୮୭୦ ମସିହାଠାରୁ ହିଁ ଓଡ଼ିଶାରେ ପରିବର୍ତ୍ତନର ପ୍ରବାହ ଦେଖାଯାଏ । ୧୮୪୫ ବେଳକୁ ଓଡ଼ିଶାରେ ଶିକ୍ଷାର ପ୍ରସାର ଆରମ୍ଭ ହୁଏ । ରାଧାନାଥ ୧୮୭୦ ବେଳକୁ ଓଡ଼ିଆ ରଚନାରେ ମନୋନିବେଶ କରନ୍ତି । ସେତେବେଳେ ତାଙ୍କ ସମ୍ମୁଖରେ ରହିଛି ସଂସ୍କୃତ ସାହିତ୍ୟ, ପଡ଼ୋଶୀ ବଂଗଳା ସାହିତ୍ୟ, ଇଂରେଜୀ ସାହିତ୍ୟ ଏବଂ ମଧ୍ୟଯୁଗୀୟ କାବ୍ୟ ସାହିତ୍ୟ । ଲର୍ଡ ହାର୍ଡିଞ୍ଜଙ୍କ ଅର୍ଡର ଅନୁସାରେ ୧୮୪୫ ବେଳକୁ ଦେଶରେ ମାତ୍ର ଆଠଟି ସ୍କୁଲ ଦେଖିବାକୁ ମିଳେ । ୧୮୭୦ ବେଳକୁ ଏଫ.ଏ. ଶ୍ରେଣୀ, ଲ କ୍ଲାସ,. ଟିଚର୍ସ ଟ୍ରେନିଙ୍ଗ, ପଣ୍ଡିତ ଟ୍ରେନିଙ୍ଗ କ୍ଲାସ, ୩ଟି ହାଇସ୍କୁଲ, ୧୭ଟି ମଧ ଇଂରାଜୀ ସ୍କୁଲ୍ ଏବଂ ୧୧୩ଟି ଭର୍ଣ୍ଣାକୁଲାର ସ୍କୁଲ୍ ଦେଶରେ ଦେଖାଯାଏ । ଅର୍ଥାତ୍ ୧୮୪୫ରୁ ୧୮୭୦ ପର୍ଯ୍ୟନ୍ତ ହେଉଛି ଶିକ୍ଷାର ପ୍ରସ୍ତୁତି ସମୟ । ଏହି ସମୟ ମଧରେ ଆସିଛନ୍ତି ରାଧାନାଥ । ୧୮୪୮ ଅର୍ଥାତ୍ ରାଧାନାଥଙ୍କ ଜନ୍ମବେଳକୁ ଏ ଦେଶରେ ଏତେଟା ଶିକ୍ଷାୟତନ ନଥିଲା ।

୧୮୪୫ ଆଠଟି ଆଧୁନିକ ବିଦ୍ୟାଳୟ ପ୍ରତିଷ୍ଠା ହୁଏ ଏବଂ ଏହି ସମୟରୁ ହିଁ ଆଧୁନିକ ପାଠ୍ୟପୁସ୍ତକ ରଚନାର ପରଂପରା ଆରମ୍ଭ ହୁଏ । କିନ୍ତୁ ସେତେବେଳେ ଚାଟଶାଳୀମାନଙ୍କରେ କେଶବକୋଇଲି, ମଥୁରାମଙ୍ଗଳ, ଗୋପୀଭାଷା ଆଦି ପଠିତ ହେଉଥିଲା, ମାତ୍ର ଆଧୁନିକ ସ୍କୁଲ୍‌ରେ ଏ ସବୁ ବର୍ଜିତ ହୋଇପଡ଼ିଲା । ୧୮୨୨ ବେଳକୁ ଓଡ଼ିଶାରେ କେବଳ ଗୋଟିଏ ଅଭିଧାନ ଏବଂ ଗୋଟିଏ ନିମ୍ନମାନର ପାଠ୍ୟପୁସ୍ତକ ଦେଖିବାକୁ ମିଳୁଛି । ଯାହା ପ୍ରକାଶିତ ହୋଇଥିଲା କଲିକତାରେ କିମ୍ବା ଶ୍ରୀରାମପୁର ଛାପାଖାନାରେ ମିସନାରୀ ପ୍ରଚେଷ୍ଟାରେ । ୧୮୫୭-୫୮ ଶିକ୍ଷାବିଭାଗ ରିପୋର୍ଟରୁ ଜଣାଯାଏ, ୧୮୪୨ ପର୍ଯ୍ୟନ୍ତ କେତୋଟି ମାତ୍ର ପାଠ୍ୟପୁସ୍ତକ ପ୍ରଚଳିତ ଥିଲା ଯଥା:- ସଟନଙ୍କର ଇଂରାଜୀ ଓଡ଼ିଆ ବ୍ୟାକରଣ (୧୮୩୧), ପଦାର୍ଥ ବିଦ୍ୟାସର (୧୮୩୨), ଇତିହାସ ପୁସ୍ତକ (୧୮୩୯), ଓଡ଼ିଆ ଅଭିଧାନ (୧୮୪୧), ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କର ଓଡ଼ିଆ ବ୍ୟାକରଣ (୧୮୪୧), ନାମହୀନ ଲେଖକଙ୍କ ଭୂଗୋଳ ବିବରଣ (୧୮୩୯) ଏବଂ ନୀତିକଥା (୧୮୪୦) ।

ଆଧୁନିକ ସ୍କୁଲଗୁଡ଼ିକ ହିଁ ଆଧୁନିକ ଶିକ୍ଷାର ବିସ୍ତାର କରିବସନ୍ତି । ୧୮୪୨ ରୁ ୧୮୫୭ ସାଲ ମଧ୍ୟରେ ଯେଉଁସବୁ ପାଠ୍ୟପୁସ୍ତକ ଦେଖିବାକୁ ମିଳେ, ସେଗୁଡ଼ିକ ହେଲା — ସଟନଙ୍କ ଇନ୍‌ଟ୍ରୋଡ଼କ୍‌ଟରୀ ଲେସନ, ଅଭିଧାନ ଇଂରାଜୀରେ ପ୍ରଥମ ଶିକ୍ଷାପୁସ୍ତକ, ଭର୍ଣ୍ଣାକୁଲାର କ୍ଲାସବୁକ୍ ରିଡ଼ର, ଓଡ଼ିଆ ଇନ୍‌ଷ୍ଟ୍ରକଟର, ଓଡ଼ିଶାର ଇତିହାସ, ଓଡ଼ିଆ ପ୍ରାଇମର, ନୀତିକଥା । ଏହାଛଡ଼ା ସଟନ ମଧ୍ୟ ସଂପାଦନା କରିଥିଲେ – ବତ୍ରିଶସିଂହାସନ, ଗୀତଗୋବିନ୍ଦ, ଅମରକୋଷ । ପାଠ୍ୟପୁସ୍ତକ ଭିତରେ ଥିଲା ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କ ଓଡ଼ିଆ ବ୍ୟାକରଣ, ଓଡ଼ିଆ ଗଣିତ, ଲେସି ସାହେବଙ୍କର ଓଡ଼ିଆ ବ୍ୟାକରଣ, ନୀତିକଥା, ହିତୋପଦେଶ, ଫିଲିପ୍‌ସ ସାହେବଙ୍କର ଓଡ଼ିଆ ଭୂଗୋଳ, ନାମହୀନ ଲେଖକ ଓଡ଼ିଆ ଗଣିତ, ବର୍ଣ୍ଣବୋଧ ଇତ୍ୟାଦି ।

୧୮୫୭ ରୁ ୧୮୭୦ ମଧ୍ୟରେ ଓଡ଼ିଆରେ ପାଠ୍ୟପୁସ୍ତକ ରଚନାର ଧାରା ବୃଦ୍ଧିପାଏ । କାରଣ ଏହି ସମୟରେ ନୂଆକରି ସୃଷ୍ଟି ହୋଇଥିବା ଇନ୍‌ସପେକ୍ଟର ପଦବୀଧାରୀ ବ୍ୟକ୍ତି ସରକାରଙ୍କଠାରେ ଓଡ଼ିଆ ଭାଷାର ଅଭାବକୁ ଉପସ୍ଥାପିତ କରିବାର ସୁଯୋଗ ପାଇଥିଲେ । ସ୍କୁଲ୍ ସଂଖ୍ୟା ବଢ଼ିଥିବାରୁ ପାଠ୍ୟପୁସ୍ତକର ଅଭାବ ଦେଖା ଦେଇଥିଲା । ତେଣୁ ପାଠ୍ୟପୁସ୍ତକ ରଚନା ଉପରେ ଗୁରୁତ୍ୱ ଦିଆଯାଇଥିଲା । ଆଧୁନିକ ଶିକ୍ଷା ପ୍ରତି ଲୋକଚିତ୍ତର ପରିବର୍ତ୍ତନ ଦେଖାଦେଇଥିଲା । ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀ ଏହି ସମୟ ମଧ୍ୟରେ ପାଠ୍ୟପୁସ୍ତକ ରଚନାରେ ମନୋନିବେଶ କରନ୍ତି । ଏହି ସମୟ ମଧ୍ୟରେ ଅନୁବାଦ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି । ପ୍ରସନ୍ନ କୁମାର ସର୍ବାଧିକାରୀଙ୍କ ବଂଗଳା ପାଟୀଗଣିତ, ତାରିଣୀଚରଣ ବନ୍ଦୋପାଧ୍ୟାୟଙ୍କ ବଂଗଳା ଭୂଗୋଳ ବିବରଣ, ଇଉକ୍ଲିଡଙ୍କ କ୍ଷେତ୍ରତତ୍ତ୍ୱ (ଇଂରାଜୀ) ଅନୁବାଦ କରାଯାଇଥିଲା । କେବଳ ଅନୁବାଦ ନ କରି ବିଭିନ୍ନ ସୂତ୍ରରୁ ପାଠ୍ୟ ସଂଗ୍ରହ କରିବାର ପ୍ରବୃତ୍ତି ମଧ୍ୟ ଏହି ସମୟରେ ଦେଖାଯାଇଛି । ଉଦାହରଣସ୍ୱରୂପ—ଫକୀର ମୋହନଙ୍କ ଭାରତବର୍ଷର ଇତିହାସ, ପ୍ୟାରୀମୋହନ ସେନଙ୍କ ଶିଶୁପାଠ, ବିଚ୍ଛନ୍ଦ ପଟ୍ଟନାୟକଙ୍କ ବ୍ୟାକରଣ ସଂକ୍ଷେପ, ଫକୀରମୋହନଙ୍କ ଅଙ୍କମାଳା, ଗୌରୀଶଙ୍କରଙ୍କ ଭୂଗୋଳ ତତ୍ତ୍ୱ, ଦ୍ୱାରିକାନାଥ ଚକ୍ରବର୍ତ୍ତୀଙ୍କ ଶିକ୍ଷାଭିଧାନକୁ ନିଆଯାଇପାରେ ।

୧୮୭୦ ସାଲ ପରଠୁ ଓଡ଼ିଶାରେ ଓଡ଼ିଆ ପାଠ୍ୟପୁସ୍ତକର ଏକ ନୂତନ ଧାରା ଦେଖିବାକୁ ମିଳେ । ଏହି ସମୟରୁ ପାଠ୍ୟପୁସ୍ତକର ଦୃଷ୍ଟିକୋଣ ପରିପ୍ରସାର ହୋଇଥିବା ଲକ୍ଷ୍ୟ କରାଯାଏ । ଇତିହାସ, ଭୂଗୋଳ, ଗଣିତ, ଜ୍ୟାମିତି, ବୀଜଗଣିତ, ବିଜ୍ଞାନ, ସ୍ୱାସ୍ଥ୍ୟରକ୍ଷା, ଭାଷା ଶିକ୍ଷା ପାଇଁ ରଚନା, ବ୍ୟାକରଣ ଇତ୍ୟାଦି

ବିଷୟ ପାଠ୍ୟପୁସ୍ତକର ଅନ୍ତର୍ଭୁକ୍ତ ହୋଇଥିଲା । ଗଦ୍ୟ ସହିତ ପଦ୍ୟ ସାହିତ୍ୟ ମଧ୍ୟ ରଚିତ ହେଲା । ୧୮୭୦ ରୁ ୧୮୯୪ ପର୍ଯ୍ୟନ୍ତ ସମୟର ପ୍ରାଣ ସ୍ପନ୍ଦନ ଉପରେ ଆଲୋକପାତ କରି ସମାଲୋଚକ ଡଃ. ନଟବର ସାମନ୍ତରାୟ କହନ୍ତି —"ଏଇ ସମୟରେ ପୁସ୍ତକ ରଚନା କ୍ଷେତ୍ରରେ ମିସନାରୀମାନେ ନିଜର ଆଧିପତ୍ୟ ହରାଇ ବସିଥିଲେ । ଏମାନଙ୍କ ସ୍ଥାନରେ ଏ ଦେଶର ଲେଖକମାନେ ଦେଖାଦେଇଥିଲେ । ଓଡ଼ିଆ ପାଠ୍ୟପୁସ୍ତକ ରଚନାବେଳେ ବଂଗଳା ପାଠ୍ୟପୁସ୍ତକର ଅନୁବାଦକୁ ଏକମାତ୍ର ଅବଲମ୍ବନ ରୂପେ ଗ୍ରହଣ ନ କରି ସେମାନଙ୍କ ଅନୁସରଣରେ ସ୍ୱତନ୍ତ୍ର ମୌଳିକ ରଚନାମାନ ସେମାନେ ଲେଖିବସିଲେ । ଆଧୁନିକ ଓଡ଼ିଆ ସାହିତ୍ୟର କ୍ରମଉଦ୍‌ବର୍ତ୍ତନ ଜାଣିବାକୁ ହେଲେ ସାହିତ୍ୟ ବିକାଶର ଏଇ ମୌଳିକ ନୀତି ପ୍ରତି ଦୃଷ୍ଟି ଦେବା ଏକାନ୍ତ ବାଞ୍ଛନୀୟ । ପ୍ରଥମତଃ ପୂର୍ଣ୍ଣ ଅନୁବାଦ, ଦ୍ୱିତୀୟତଃ ସ୍ୱତନ୍ତ୍ରତା ପ୍ରତିଷ୍ଠା ଭିତ୍ତିରେ ଅନ୍ୟରଚନାର ଅନୁସରଣ ଓ ତୃତୀୟତଃ ମୌଳିକ ସୃଷ୍ଟିର ରଚନା— ଆଧୁନିକ ପାଠ୍ୟପୁସ୍ତକର ଏଇ ଯେଉଁ ତିନୋଟି ପର୍ଯ୍ୟାୟ ଆମେ ଦେଖିବାକୁ ପାଉ, ସେଇ ତିନୋଟି ପର୍ଯ୍ୟାୟ ମଧ୍ୟ ଆଧୁନିକ ଓଡ଼ିଆ ସାହିତ୍ୟ ଭିତରେ ପରିଲକ୍ଷିତ ହୁଏ ।" (ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, ପୃ. ୭/୮) ।

୧୮୭୦ ରୁ ୧୮୯୪ ପର୍ଯ୍ୟନ୍ତ ସମୟ ହେଉଛି ଆଧୁନିକ ଓଡ଼ିଆ ପାଠ୍ୟପୁସ୍ତକ ରଚନାର ଯୁଗ । ରାଧାନାଥଙ୍କ ଚାକିରି ଜୀବନର ପ୍ରଥମ ପର୍ଯ୍ୟାୟ ହେଉଛି, ପାଠ୍ୟପୁସ୍ତକ ରଚନାର ସମୟ । ୧୮୬୮ ରୁ ୧୮୮୫ ମଧ୍ୟରେ ରାଧାନାଥଙ୍କ ସମସ୍ତ ପାଠ୍ୟପୁସ୍ତକ ଦୃଷ୍ଟିଗୋଚର ହୁଏ । ୧୮୬୪ ରେ ରାଧାନାଥଙ୍କ ଶିକ୍ଷକ ଜୀବନ ଆରମ୍ଭ ହୁଏ । ୧୮୭୧ ଏପ୍ରିଲ ପହିଲାରୁ ବାଲେଶ୍ୱର ଜିଲ୍ଲାର ଡେପୁଟି ଇନ୍‌ସପେକ୍ଟର ପଦବୀ ମଣ୍ଡନ କରନ୍ତି ରାଧାନାଥ । ୧୮୭୭ ନଭେମ୍ବର ୨୭ ତାରିଖରେ ସେ ଜଏଣ୍ଟ ଇନ୍‌ସପେକ୍ଟର ପଦବୀରେ ନିଯୁକ୍ତ ହୁଅନ୍ତି । ଶିକ୍ଷାବିଭାଗ ସହିତ ଜଡ଼ିତ ଥିବା ବେଳେ ସେ ଓଡ଼ିଆ ପାଠ୍ୟପୁସ୍ତକର ଅଭାବ ଦୂର କରିବା ପାଇଁ ଆପ୍ରାଣ ଚେଷ୍ଟା କରିଛନ୍ତି । ଏଥିପାଇଁ ତାଙ୍କୁ ବହୁ ବିଦ୍ୱେଷର ସମ୍ମୁଖୀନ ହେବାକୁ ପଡ଼ିଛି । ଶିକ୍ଷାବିଭାଗର ସର୍ବୋଚ୍ଚକର୍ତ୍ତା ଥିବା ସମୟରେ ତାଙ୍କ ବିରୁଦ୍ଧରେ ଅପପ୍ରଚାର ଆରମ୍ଭ ହୋଇଥିଲା, "ରାଧାନାଥ ଯେଉଁସବୁ ପାଠ୍ୟପୁସ୍ତକ ନିର୍ବାଚନ କରୁଛନ୍ତି ସେସବୁ ପୁସ୍ତକର ଭାଷା ଖାଣ୍ଟି ଓଡ଼ିଆ ନୁହେଁ, ତାହା ବଂଗଳାମୁଖୀ ଓଡ଼ିଆ ଭାଷା ମାତ୍ର । ଏଇ ମିଶ୍ରିତ ଭାଷା ହେତୁ ଓଡ଼ିଆ ଭାଷା ଦିନେ ତାର ସମସ୍ତ ବୈଶିଷ୍ଟ୍ୟ ହରାଇ ବଙ୍ଗଭାଷା ସହିତ ମିଶିଯିବ" ଏମିତି ଏକ ଧାରଣା ସେମାନେ ପ୍ରଚାର କରିଥିଲେ । ରାଧାନାଥ ଭାଂଗି ପଡ଼ିଥିଲେ ସତ, ହେଲେ ଲେଖନୀ ଚାଳନା ବନ୍ଦ କରି ନ ଥିଲେ । ୧୮୬୪ ରୁ ୧୮୭୭ ପର୍ଯ୍ୟନ୍ତ ବାଲେଶ୍ୱର ରହଣି କାଳ ମଧ୍ୟରେ ସେ ପାଠ୍ୟପୁସ୍ତକ ରଚନାରେ ମନୋନିବେଶ କରିଛନ୍ତି ।

ରାଧାନାଥଙ୍କ 'ମେଘଦୂତ' ର ଓଡ଼ିଆ ଅନୁବାଦ ଫକୀରମୋହନଙ୍କ 'ବୋଧଦାୟିନୀ' ମାସିକ ପତ୍ରିକାରେ ଅସଂପୂର୍ଣ୍ଣ ଭାବେ ପ୍ରକାଶିତ ହୋଇଥିଲା, ଯାହା କଟକ ନର୍ମାଲ ସ୍କୁଲର ପାଠ୍ୟକ୍ରମରେ ସ୍ଥାନ ପାଇଥିଲା । 'ଉତ୍କଳ ରଚନା' ପ୍ରଥମ ଖଣ୍ଡ ୧୮୭୬ ଫେବୃୟାରୀ ମାସରେ ବୈକୁଣ୍ଠନାଥ ଦେଙ୍କ ଦ୍ୱାରା ଉତ୍କଳ ପ୍ରେସରେ ପ୍ରକାଶିତ ହୋଇଥିଲା । ଏହା ପାଠ୍ୟପୁସ୍ତକରେ ସ୍ଥାନ ପାଇଥିଲା, ଯାହାର ବିଷୟବସ୍ତୁ ଥିଲା— ଶବ୍ଦ ଓ ତାର ବ୍ୟବହାର, ବାକ୍ୟ ପରିବର୍ତ୍ତନ ଏବଂ ସଂକ୍ଷେପନୀ, ସୂକ୍ଷ୍ମପ୍ରୟୋଗ, ପ୍ରତିଶବ୍ଦ, ବିପରୀତାର୍ଥବୋଧକ ଶବ୍ଦ, ଯୁଗ୍ମଶବ୍ଦ, ରୂପାନ୍ତର ସଂପାଦନ ଇତ୍ୟାଦି । ରାଧାନାଥଙ୍କ 'କ୍ଷେତ୍ରତତ୍ତ୍ୱ' ଜ୍ୟାମିତି ବହିଟି ୧୮୭୭ରେ ଛାତ୍ରବୃତ୍ତି, ମାଇନର ଏବଂ ମଧ୍ୟବର୍ତ୍ତୀ ପରୀକ୍ଷା ପାଇଁ ପାଠ୍ୟପୁସ୍ତକ ରୂପେ ସ୍ଥାନ ପାଇଥିଲା । ଏଥିରେ ସହଯୋଗିତା କରିଥିଲେ ବାଲେଶ୍ୱର ନର୍ମାଲ ସ୍କୁଲରେ ଦ୍ୱିତୀୟ ଶିକ୍ଷକ ଶିବ ନାରାୟଣ ନାୟକ । ୧୮୭୬ ନଭେମ୍ବର ମାସରେ ବୈକୁଣ୍ଠନାଥ ଦେ'ଙ୍କ ପ୍ରେସରୁ ପ୍ରକାଶିତ 'କବିତାବଳୀ' ପ୍ରଥମ ଭାଗରେ ରାଧାନାଥ—ମଧୁସୂଦନଙ୍କ ରଚନା ସ୍ଥାନ ପାଇଥିଲା । ରାଧାନାଥଙ୍କ ଶିବାଜୀଙ୍କ ଉତ୍ସାହବାଣୀ, ପବନ କବିତା ରହିଥିଲା । ଏହା ମଧ୍ୟ ପାଠ୍ୟପୁସ୍ତକର ଅନ୍ତର୍ଗତ ଥିଲା ।

ଅନ୍ୟତମ ପାଠ୍ୟପୁସ୍ତକ 'ଭୂଗୋଳ ବ୍ୟାବହାରିକ' ୧ମ ଭାଗ ରାଧାନାଥ ଏବଂ ଶିବନାରାୟଣ ନାୟକଙ୍କ ଦ୍ୱାରା ରଚିତ । ଏହାର ବିଷୟ ଥିଲା ଜଳ, ମହାସାଗର, ସ୍ଥଳ, ମହାଦ୍ୱୀପ, ନଦୀ, ପର୍ବତ, ଦ୍ୱୀପ, ଉପଦ୍ୱୀପ, ହ୍ରଦ, ମରୁଭୂମି, ଜଳବାୟୁ, ବାୟୁ, ମେଘ ଓ ଇପଟି, ହିମ ଓ କୁଆପଥର, ଶିଶିର ଓ କୁହୁଡ଼ି, ଜଳପ୍ରପାତ, କୁଆର, ଇତର ପ୍ରାଣୀ, ମନୁଷ୍ୟ, ଭାରତବର୍ଷ ଓ ଓଡ଼ିଶା, ପୃଥିବୀର ସଭ୍ୟତାର ଇତିହାସ, ଭାରତବର୍ଷର ସଂକ୍ଷିପ୍ତ ଇତିହାସ ଇତ୍ୟାଦି । ଶିବ ନାରାୟଣ ନାୟକଙ୍କ ସହିତ ମିଶି ରାଧାନାଥ ମଧ୍ୟ– "Geometry, Mensuration and Surveying" ଇଉକ୍ଲିଡ୍ ଏବଂ କ୍ଷେତ୍ର ବ୍ୟବହାର'' ନାମରେ ଏକ କ୍ଷୁଦ୍ର ପୁସ୍ତକ ରଚନା କରିଥିଲେ । ତାଙ୍କ ଉଦ୍ୟମରେ ଆଦର୍ଶପ୍ରଶ୍ନାବଳୀ ୧ମଖଣ୍ଡ (ମାନସାଙ୍କ) ୧୮୭୬ ସାଲରେ ପ୍ରକାଶିତ ହୋଇଥିଲା । ଛାତ୍ରବୃତ୍ତି ପରୀକ୍ଷାର୍ଥୀମାନଙ୍କ ପାଇଁ 'ଭୂଗୋଳ' ପ୍ରାକୃତିକ' ଦ୍ୱିତୀୟ ଭାଗ ୧୮୭୮ ସାଲରେ ଉତ୍କଳ ପ୍ରିଣ୍ଟିଙ୍ଗ କୋମ୍ପାନୀ ପ୍ରେସରୁ ପ୍ରକାଶିତ ହୋଇଥିଲା । ଭୀମଚରଣ ପଣ୍ଡା ଏବଂ ରାଧାନାଥଙ୍କ ଉଦ୍ୟମରେ 'ଭୂଗୋଳ ସାର ସଂଗ୍ରହ' ୧୮୭୮ ରେ ବାଲେଶ୍ୱରରୁ ପ୍ରକାଶିତ ହୋଇଥିଲା ।

ରାଧାନାଥ ଏବଂ ମଧୁ ସୂଦନଙ୍କ ରଚନାରେ ସମୃଦ୍ଧ 'କବିତାବଳୀ' ୨ୟଭାଗ ୧୮୮୬ରେ ଉତ୍କଳ ପ୍ରେସରୁ ବାହାରିଥିଲା । ଏହି ପାଠ୍ୟପୁସ୍ତକରେ ରାଧାନାଥଙ୍କ ଭାରତ ଈଶ୍ୱରୀ, ବେଣୀସଂହାର ସ୍ଥାନ ପାଇଥିଲା । ରାଧାନାଥଙ୍କ 'ବ୍ୟାକରଣ'



ପୁସ୍ତକ ୧୮୮୧ରେ କାଲକାଟା ସ୍କୁଲ୍ ବୁକ ସୋସାଇଟି ଦ୍ୱାରା ବାପଟିଷ୍ଟ ମିସନ ପ୍ରେସ୍‌ରୁ ବାହାରିଥିଲା । ୧୮୬୯ ଅଗଷ୍ଟ ମାସରେ କଟକ ପ୍ରିଣ୍ଟିଙ୍ଗ କମ୍ପାନୀ ଦ୍ୱାରା ସାହିତ୍ୟ ବିଷୟକ ଆଦର୍ଶ ପ୍ରଶ୍ନାବଳୀ ''Model Questions on Oriya Literature''ପ୍ରକାଶିତ ହୋଇଥିଲା । ଏ ବହିର ଉପର ପୃଷ୍ଠାରେ ଭୁବନେଶ୍ୱର ଦତ୍ତଙ୍କ ନାମ ଥିଲେ ମଧ୍ୟ ଏହା ଥିଲା ରାଧାନାଥଙ୍କର । ଏଥିରେ ଈଶ୍ୱର ଚନ୍ଦ୍ର ପଣ୍ଡିତ ବିଦ୍ୟାସାଗରଙ୍କ 'ଆଖ୍ୟାନମଞ୍ଜରୀ', ପଣ୍ଡିତ ରାମପତି ନ୍ୟାୟାଳୟଙ୍କାରଙ୍କ 'ବସ୍ତୁବିଚାର', ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣଙ୍କ 'ରାମବିଳାସ', ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ 'ଶକୁନ୍ତଳା ଉପାଖ୍ୟାନ', କବିତାବଳୀ, ଜଗମୋହନ ଲାଲାଙ୍କ 'ଭ୍ରମଞ୍ଜନ' ଆଦି ଉପରେ ପ୍ରଶ୍ନ ଥିଲା । ରାଧାନାଥଙ୍କ 'ବ୍ୟାକରଣ ପ୍ରବେଶ' ୧୮୯୯ ରେ ପ୍ରକାଶିତ ହୋଇଥିବା ମନେହୁଏ ।

ରାଧାନାଥ ତେରଟି ପୁସ୍ତକ ମଧ୍ୟରୁ ୬ଟି ପୁସ୍ତକ ଭୂଗୋଳ ପ୍ରାକୃତିକ ୨ୟଭାଗ, ଭୂଗୋଳ ସାରସଂଗ୍ରହ, ସାହିତ୍ୟ ବିଷୟକ ଆଦର୍ଶ ପ୍ରଶ୍ନାବଳୀ, ବ୍ୟାକରଣ, କବିତାବଳୀ ୨ୟଭାଗ, ବ୍ୟାକରଣ ପ୍ରବେଶ ଆଦିକୁ ଜଏଣ୍ଟ ଇନ୍‌ସପେକ୍ଟର ହେବାପରେ ଲେଖିଥିଲେ । ଡଃ. ନଟବର ସାମନ୍ତରାୟଙ୍କ ମତରେ— ''ଆଲୋଚ୍ୟ ସମୟରେ ନିମ୍ନଲିଖିତ ଚାରୋଟି ସମସ୍ୟା ଲେଖକମାନଙ୍କ ସମ୍ମୁଖରେ ଦେଖା ଦେଇଥିଲା । ଯଥା :- (କ) ବିଭିନ୍ନ ପାଠ୍ୟପୁସ୍ତକର ସଂଖ୍ୟାବୃଦ୍ଧି (ଖ) ବଂଗଳା ପୁସ୍ତକର ପୂର୍ଣ୍ଣ ଅନୁବାଦ ଅପେକ୍ଷା ସ୍ୱାଧୀନ ଭାବରେ ପୁସ୍ତକ ରଚନା କରିବା (ଗ) ଓଡ଼ିଆ ଭାଷାରୁ ବଙ୍ଗଭାଷାର ପ୍ରଭାବ ଲୋପ କରିବା (ଘ) ପାଠ୍ୟପୁସ୍ତକ ରଚନା ଭିତ୍ତିରେ ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି । ଏଥିରୁ ପ୍ରଥମ ଦୁଇଟି ସମସ୍ୟାର ସମାଧାନ ଅନ୍ୟ ଲେଖକମାନଙ୍କ ଦ୍ୱାରା କରାଯାଇପାରିଥିଲା । ଓଡ଼ିଆ ଭାଷାରେ ଥିବା ବଂଗଳା ଭାଷାର ପ୍ରାଧାନ୍ୟ ୧୮୮୦ ସାଲପରେ ବହୁ ତର୍କବିତର୍କର କେନ୍ଦ୍ର ହୋଇପଡ଼ିଥିଲା, କେବଳ ରାଧାନାଥ ଓ ମଧୁସୂଦନଙ୍କ ଦ୍ୱାରା ଚତୁର୍ଥ ସମସ୍ୟାଟିର ସମାଧାନ କରାଯାଇଥିଲା । ହେଲେ ହେଁ, ଆଲୋଚ୍ୟ ସମୟ ହେଉଛି ରାଧାନାଥଙ୍କ ପକ୍ଷରେ କେବଳ ପାଠ୍ୟପୁସ୍ତକ ରଚନାର ସମୟ । ''

(ଓଡ଼ିଆ ସାହିତ୍ୟର ଇତିହାସ, ପୃ. ୨୬୫/୨୬୬)

ସ୍କୁଲ୍ ସଂଖ୍ୟା ବଢ଼ିଥିବାରୁ ପାଠ୍ୟପୁସ୍ତକର ଯଥେଷ୍ଟ ଆବଶ୍ୟକତା ଅନୁଭୂତ ହୋଇଥିଲା । ଏଥିପାଇଁ ଲେଖକମାନଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ଶିକ୍ଷାବିଭାଗ ପୁରସ୍କାରର ଯୋଜନା ମଧ୍ୟ କରିଥିଲେ । ନିଜେ ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ଥିବା ସମୟରେ ବହୁ ପୁସ୍ତକର ଅଭିମତ ପ୍ରକାଶ କରିଥିଲେ । ମଧୁସୂଦନଙ୍କ 'ଛାନ୍ଦମାଳା' ଉପରେ ''The present revised edition of chhand Mala is




a decided imporvement on the older edition, I have no hesitation in stating that it is comparably the best Poetical premier in the Oriya language'' ଖାଲି ସେତିକି ନହେଁ ରାଧାନାଥ ଅନେକ ପୁସ୍ତକ ଲେଖା ସଂଶୋଧନ ଏବଂ ସଂଯୋଜନ ମଧ୍ୟ କରିଛନ୍ତି ।

ନୂତନ ଶିକ୍ଷାନୀତି ସହିତ ଭଲଭାବେ ପରିଚିତ ଥିଲେ ରାଧାନାଥ । ତଦନୁଯାୟୀ ସେ ବିଷୟବସ୍ତୁ ଚୟନ କରୁଥିଲେ ପାଠ୍ୟପୁସ୍ତକ ପାଇଁ । ନୂତନ ରୁଚି ଅନୁସାରେ ନୂତନ ସାହିତ୍ୟ ସାମଗ୍ରୀ ସୃଷ୍ଟି ଥିଲା ରାଧାନାଥଙ୍କ ଅଭିପ୍ରାୟ । ତତ୍କାଳୀନ ପାଠ୍ୟପୁସ୍ତକ ଆନ୍ଦୋଳନ ସହିତ ସକ୍ରିୟ ଭାବରେ ଜଡ଼ିତ ହୋଇଥିଲେ ରାଧାନାଥ । ସେ ଯଦି ସାହାଯ୍ୟ କରିନଥାନ୍ତେ, ଏତେ ସଂଖ୍ୟାର ପାଠ୍ୟପୁସ୍ତକ ଦେଖିବାକୁ ମିଳିନଥାନ୍ତା । ଓଡ଼ିଆ ଲୋକେ ତାଙ୍କ ବିରୁଦ୍ଧରେ ଯେତେ ଅବାଂଛିତ ସ୍ଲୋଗାନ ଦେଇଥିଲେ ମଧ୍ୟ, ପାଠ୍ୟପୁସ୍ତକ ଆନ୍ଦୋଳନରେ ତାଙ୍କର ଅଗ୍ରଗଣ୍ୟ ଭୂମିକା କେହି ଅସ୍ୱୀକାର କରିପାରିବେ ନାହିଁ ।



# ଭାଷା କାବ୍ୟରେ ରାଧାନାଥଙ୍କ
# ଆହରଣ ଓ ସମୀକରଣ

ଡଃ ବନଜ କୁମାର ବିଶ୍ୱାଳ

ପ୍ରତିଭାର ଜ୍ୱଳନ୍ତ ସ୍ୱାକ୍ଷର ବହନ କରି ଯେଉଁ କେତୋଟି କାବ୍ୟ କବିବର ରାଧାନାଥଙ୍କ ରୋମାଣ୍ଟିକ୍ ଚେତନାର ପରିଚୟ ଦେଇଥାନ୍ତି, ସେମାନଙ୍କ ମଧ୍ୟରେ ୧୮୮୮ ମସିହାରେ ରଚିତ 'ଉଷା' କାବ୍ୟ ଅନ୍ୟତମ । ରାଧାନାଥଙ୍କ ସୃଷ୍ଟିର ଧାରାକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ୧୮୮୦ ମସିହାରୁ ୧୮୯୦ ମସିହା ମଧ୍ୟରେ କବି-ପ୍ରତିଭା ଅନନ୍ୟସାଧାରଣ ଭାବରେ ପ୍ରକାଶ ଲାଭ କରିଅଛି । ଏହି ସମୟରେ କବିଙ୍କ ଲେଖନୀରୁ ସୃଷ୍ଟ ପାଞ୍ଚଗୋଟି ରଚନାର ସୃଷ୍ଟି-ସୌନ୍ଦର୍ଯ୍ୟ ମଧ୍ୟରେ କବି-ପ୍ରତିଭାର କ୍ରମିକ ଅଭିବୃଦ୍ଧି ଯେପରି ଲକ୍ଷ୍ୟଣୀୟ ସେହିପରି ପାଶ୍ଚାତ୍ୟ ଚିନ୍ତାଧାରାର ଆହରଣ ଓ ଦେଶୀୟ ଉପାଦାନ ସହିତ ତାହାର ସମୀକରଣ ମଧ୍ୟ ସୁସ୍ପଷ୍ଟ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରାର ସାର୍ଥକ ସମୀକରଣ କରିବା ଦିଗରେ ରାଧାନାଥ ଯେପରି ସଫଳତା ଅର୍ଜନ କରିଅଛନ୍ତି ସମକାଳୀନ ଅନ୍ୟ କେହି ସେପରି ସଫଳତା ହାସଲ କରିଥିବା ମନେହୁଏ ନାହିଁ । କାରଣ ତାଙ୍କର ଅଳ୍ପ କେତେକ ରଚନାକୁ ବାଦ୍ ଦେଲେ ଅନ୍ୟସବୁ କାବ୍ୟ କବିତାର ଭିତ୍ତିଭୂମି ପାଶ୍ଚାତ୍ୟ ସାହିତ୍ୟ— ଏହା ନିଃସନ୍ଦେହରେ କୁହାଯାଇପାରେ । ମାତ୍ର ରାଧାନାଥ ନିଜ ପ୍ରତିଭାର କାଉଁରୀ ସ୍ପର୍ଶରେ ତାକୁ ଏପରି ଗଢ଼ି ତୋଳିଛନ୍ତି ଯେ ସାଧାରଣ ପାଠକ ଅକୁଣ୍ଠ ଚିତ୍ତରେ ତାହାକୁ ନିଜର ବୋଲି ଗ୍ରହଣ କରିନେଇଥାଏ । ତେଣୁ ରାଧାନାଥଙ୍କ କାବ୍ୟ ସାହିତ୍ୟରେ ମୁଖ୍ୟତଃ ତିନିଗୋଟି ବିଭାବ ଲକ୍ଷ୍ୟ କରାଯାଏ । ଯଥା—

(କ) ବିଦେଶୀ କଥାବସ୍ତୁର ଆହରଣ ।

(ଖ) ଆହୃତ ଉପାଦାନର ଦେଶୀୟ ଉପାଦାନ ଭିତ୍ତିରେ ସାମ୍ୟ ଅନୁସନ୍ଧାନ ।

(ଗ) ଉଭୟର ସାର୍ଥକ ସମୀକରଣ ।

ତୀକ୍ଷଣ ବିଚାର ବୁଦ୍ଧି ସମ୍ପନ୍ନ କବି ପାଶ୍ଚାତ୍ୟ ସାହିତ୍ୟରୁ କାହାଣୀ ନିର୍ବାଚନ କରି ସାରିବା ପରେ ସ୍ଥାନୀୟ ପରିବେଶ, ପୁରାଣ, କିମ୍ବଦନ୍ତୀ, ଇତିହାସ ଓ ଲୋକବିଶ୍ୱାସ ଭିତରେ ନିର୍ବାଚିତ ପାଶ୍ଚାତ୍ୟ କାହାଣୀର ସାମ୍ୟ ଅନୁସନ୍ଧାନ କରି ତାକୁ ଭାଷାର

ମନୋହର ଛଟା ଓ ବର୍ଣ୍ଣନାର ମଧୁର ପରିପାଟୀରେ ଏପରି ସୌନ୍ଦର୍ଯ୍ୟ ମଣ୍ଡିତ କରି ଗଢ଼ିତୋଳିଛନ୍ତି ଯେ ଆହୃତ ବିଦେଶାଗତ ଚିନ୍ତାଧାରାଟି ପାଠକ ନିକଟରେ ଆଦୌ ଅପରିଚିତ ମନେହୁଏ ନାହିଁ । ବରଂ ପାଠକ ଉକ୍ତ ରଚନା ସହିତ ଏକ ଐକାନ୍ତିକ ଓ ସୁଦୀର୍ଘ ସମ୍ପର୍କ ଅନୁଭବ କରିଥାଏ । ଏହି ପରିପ୍ରେକ୍ଷୀରେ କବିଙ୍କର ଅନ୍ୟତମ ରୋମାଣ୍ଟିକ୍ କାବ୍ୟ 'ଉଷା ବିଚାର୍ଯ୍ୟ ।

ବିଦେଶୀ କଥାବସ୍ତୁ ଓ ଲୋକବିଶ୍ୱାସରେ ପ୍ରଚଳିତ ପୁରାଣାଗତ ପ୍ରେମୋପାଖ୍ୟାନର ସମୀକରଣରେ 'ଉଷା' କାବ୍ୟ ରଚିତ । ରୋମାନ୍ କବି ଓଭିଡ୍‌ଙ୍କର "Hippomenes and Atlanta" (Metamorphoses-Book-X) ଆଖ୍ୟାୟିକା କାବ୍ୟ ଏବଂ ଇଂରେଜ କବି ଉଇଲିୟମ ମରିସଙ୍କ ରଚିତ 'The Earthly Paradise' କାବ୍ୟଗ୍ରନ୍ଥର "Atlanta Race"ରୁ କାହାଣୀର ଉପାଦାନ ସଂଗ୍ରହ କରି ସାରିବା ପରେ ଦେଶୀୟଭିତ୍ତିରେ ସମଧର୍ମୀ ଉପାଦାନ ଦ୍ୱାପର ଯୁଗରେ ଦୁର୍ବାସାଙ୍କ ଅଭିଶାପରେ ତିଳୋତ୍ତମାର ବାଣାସୁର ରାଜନନ୍ଦିନୀ ଉଷା ରୂପରେ ଜନ୍ମ ଏବଂ ଅନିରୁଦ୍ଧ ସହ ପ୍ରଣୟ ଆଖ୍ୟାନକୁ ଅନୁସନ୍ଧିତ୍ସୁ କବିମନ ଗ୍ରହଣ କରିଛି । ଆହରଣ ପଟୁ ରାଧାନାଥ ନିଜର କଳ୍ପନା ଓ ନିର୍ମାଣ-ନିପୁଣତାରେ ଉଭୟର ସାର୍ଥକ ସମୀକରଣ କରି ଏହାକୁ ବାଲେଶ୍ୱରର ପରିବେଶରେ ଅତି ସୁନ୍ଦର ଭାବରେ ଆରୋପିତ କରିଛନ୍ତି ।

ରାଧାନାଥଙ୍କ ବର୍ଣ୍ଣନା ଅନୁସାରେ ପିତାଙ୍କ ତତ୍ତ୍ୱାବଧାନରେ ଉଷାର ଶୈଶବ-ଜୀବନ ଅତିବାହିତ ହୋଇଥିବାରୁ ସେ ହୋଇଛି ଶିକାର ଓ ପାରିଧି-କଳା କୁଶଳା । ଶିକାର ପ୍ରବୀଣା ଉଷା ପାରିଧି ବେଶରେ ଅରଣ୍ୟାଞ୍ଚଳରେ ସାଥିଙ୍କ ମେଳରେ ନିର୍ଭୟରେ ଭ୍ରମଣ କରି ବଣ୍ୟଶୂକର, କୁମ୍ଭୀର ଆଦି ଶିକାର କରିଅଛି । ଉଷାଠାରେ ଏହି ଶିକାରୀ ବ୍ୟକ୍ତିତ୍ୱର ଆରୋପରେ ଓଭିଡ୍‌ଙ୍କ ଆଟଲାଣ୍ଟା ଚରିତ୍ରର ଛାୟାପତନ ଅନୁଭବ କରିହୁଏ । ସେହିପରି ଉଷା ସହିତ ଜୟନ୍ତର ପ୍ରଥମ ଦର୍ଶନ ସଂଘଟିତ ନିମନ୍ତେ କବି ଯେଉଁ ଘଟଣାର ସଂଯୋଜନା କରିଛନ୍ତି, ସେଥିରେ ରୋମାନ୍ କବି ଓଭିଡ୍ ଓ ଇଂରେଜ କବି ମରିସ୍‌ଙ୍କର ପ୍ରଭାବ ରହିଛି । ନାୟକ ଜୟନ୍ତ ଶିକାରିଣୀ ଉଷା ପ୍ରତି ଯେପରି ପ୍ରଣୟାସକ୍ତ ହୋଇଛନ୍ତି ସେହିପରି ହିପୋମିନେସ୍ ଓ ମିଲାନିୟନ ଶିକାରିଣୀ ଆଟଲାଣ୍ଟା ପ୍ରତି ପ୍ରଣୟାସକ୍ତ ହୋଇଛନ୍ତି ।

ଉଷା ଓଭିଡ୍‌ଙ୍କ ଆଟଲାଣ୍ଟା ପରି ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟର ଅନୁପମ ପ୍ରତିମା ଓ ଗତି ପ୍ରବୀଣା । ଆଟଲାଣ୍ଟା ପରି ସେ ମଧ ଗତିବେଗ ବା ଦୌଡ଼ ପ୍ରତିଯୋଗିତାରେ ଜିଣିବାର ସଂକଳ୍ପ କରିଅଛି । ଆଟଲାଣ୍ଟାର ସଂକଳ୍ପ ଓଭିଡ୍‌ଙ୍କ ଭାଷାରେ—

"I am not to be had, quoth she 'unless ye able be.
In running for to vanquish me. Yet must contend with me.
In footmanship; and who so wins the wager.
I agree to be his wife, but if that he be found too slow,
Then he shall lose his head,
this of your game the very law shall be."

ଉଇଲିୟମ ମରିସ୍‌ଙ୍କ ଭାଷାରେ —

"The maid has vowed even such a man to wed.
As in the course her swift feet can outrun.
But who so fails herein his days are done."

ଉଷାର ସଂକଳ୍ପ ରାଧାନାଥଙ୍କ ଭାଷାରେ—

"ବିଷମ ପ୍ରତିଜ୍ଞା ମନେ ମନାସିଲା ସୁନ୍ଦରୀ ସାର
ଗତିବେଗେ ତାକୁ ଯେ ଜିଣିବ ହେବ ପତି ସେ ତା'ର ।
ସଙ୍ଗେ ଧାଇଁ ଆଗେ ସ୍ତମ୍ଭକୁ ଛୁଇଁବ ଯେ ଯୁବମଣି
ସଭାସ୍ଥଳେ ତାକୁ ବରମାଳା ଦେଇ ବରିବ ଧନୀ ।
ହାରିଗଲେ ଶିରଚ୍ଛେଦ ଦଣ୍ଡ ତା'ର ହେବ ନିଶ୍ଚୟ ।"

ସଂକଳ୍ପ ଓ ପରିଣାମକୁ ବିଚାରକଲେ ଓଭିଡ୍ ଓ ଉଇଲିୟମ ମରିସ୍‌ଙ୍କ ନାୟିକା ସହିତ ରାଧାନାଥଙ୍କ କାବ୍ୟ-ନାୟିକା ଉଷାର ସାଦୃଶ୍ୟ ଲକ୍ଷ୍ୟ କରିହୁଏ ।

ଉଷାରେ ଉପରୋକ୍ତ ଦାରୁଣ ତଥା ନିଷ୍ଠୁର ସଂକଳ୍ପ ରାଧାନାଥଙ୍କ ମତରେ ହୋଇଛି 'ରୂପର ଯୋଗ୍ୟ' । ରାଧାନାଥଙ୍କର ଏହି ମତ ଓଭିଡ୍‌ଙ୍କ ଅନୁଭବ ଦ୍ୱାରା କିପରି ସମ୍ପୂର୍ଣ୍ଣ ପ୍ରଭାବିତ ଦେଖାଯାଉ । ଓଭିଡ୍‌ଙ୍କ ଅନୁଭବ ହେଉଛି—

"She was indeed unmerciful, but such is beauty's power.
That though the said condition were extreme and over sour.
Yet many suitons were so rash to undertake the same."

ଏହି ଅନୁଭବରେ ପ୍ରଭାବିତ ହୋଇ ରାଧାନାଥ ବର୍ଣ୍ଣନା କରିଛନ୍ତି—

"ସ୍ୱୟମ୍ବରେ କରିଅଛି ଯେଉଁପଣ ବାଳାରତନ
ଏ ରୂପ ଯୋଗ୍ୟ ଅଟଇ ସିନା ସେ ଦାରୁଣ ପଣ ।"

ବ୍ୟକ୍ତିଗତ ଭାବେ ହିପୋମିନେସ୍ ବା ମିଲାନିୟନର କୌଣସି ପରିଚିତି ଆଟଲାଣ୍ଟା ପାଖରେ ନଥିଲା ଏବଂ ଆଟଲାଣ୍ଟାର ପରିଚିତି ମଧ୍ୟ ହିପୋମିନେସ୍ ବା ମିଲାନିୟନଙ୍କ ନିକଟରେ ନଥିଲା । ସାଧାରଣ ଦ୍ରଷ୍ଟା ଭାବରେ ସେମାନେ

ଆଟଲାଣ୍ଟାର ଦୌଡ଼ ଦେଖିଥିଲେ। ସେହିପରି ନାୟକ ଜୟନ୍ତର କୌଣସି ପରିଚିତି ଉଷା ନିକଟରେ ପୂର୍ବରୁ ନାହିଁ। ଜୟନ୍ତ କେବଳ ଶିକାରିଣୀ ପାରିଧିବେଶା ଉଷାକୁ ଦେଖିଛି ଘୋର ଅରଣ୍ୟରେ । ପୁନଶ୍ଚ ଜୟନ୍ତର ଏହି ଦୃଷ୍ଟିରେ ଭରି ରହିଛି ଅନୁମାନ ଓ ସନ୍ଦେହର ସମ୍ମିଶ୍ରିତ ଭାବ । ସଂପର୍କ ବା ପରିଚିତିର କୌଣସି ନିଶ୍ଚିତତା ସେଥିରେ ନାହିଁ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଉଷା ନିକଟରେ ଜୟନ୍ତକୁ ଅପରିଚିତ ରଖିବାର ପଶ୍ଚାଦ୍‌ପଟରେ କବି ପାଶ୍ଚାତ୍ୟ କବି-ଦ୍ୱୟଙ୍କ କଥା-କୌଶଳକୁ ଅନୁସରଣ କରିଛନ୍ତି ।

ଆଟଲାଣ୍ଟାର ଅନୁଦାର ସଂକଳ୍ପରେ ହିପୋମିନେସ୍‌ଙ୍କ ମନରେ ପ୍ରତିକ୍ରିୟା ଦେଖା ଦେଇଥିଲେ ମଧ ସେହି ପ୍ରତିକ୍ରିୟା ଆଟଲାଣ୍ଟାଙ୍କ ଅନାବୃତ ଅଙ୍ଗଶୋଭା ନିକଟରେ ମ୍ଲାନ ହୋଇ ଯାଇଛି । ଆଟଲାଣ୍ଟାର ଅନାବୃତ ଅଙ୍ଗଶୋଭା ଦର୍ଶନରେ ହିପୋମିନେସ୍ ଆଟଲାଣ୍ଟାଙ୍କ ପ୍ରତି ପ୍ରଣୟାମୁଗ୍ଧ ହୋଇ ପଡ଼ିଛନ୍ତି । ଓଭିଡ଼ଙ୍କ ବର୍ଣ୍ଣନାରେ—

"As he praiseth, the beauty of her, in himself.
The fire of love he raiseth."

ଅପରପଟରେ ଉଷାର ଦାରୁଣ ସଂକଳ୍ପ ଜୟନ୍ତ ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରିନାହିଁ। କିନ୍ତୁ ହିପୋମିନେସ୍‌ଙ୍କ ପରି ଜୟନ୍ତ ଉଷା ରୂପରେ ମୁଗ୍ଧ ହୋଇ ଉଠିଛି । ଉଷାର ସୌନ୍ଦର୍ଯ୍ୟ ଓ ଶୌର୍ଯ୍ୟ ଜୟନ୍ତର ମନରେ ପ୍ରଣୟର ଉନ୍ମତ୍ତ ତରଙ୍ଗ ସୃଷ୍ଟି କରିଛି । ରାଧାନାଥଙ୍କ ବର୍ଣ୍ଣନା ଅନୁସାରେ—

"ପାର୍ଥମନ ଶୌର୍ଯ୍ୟେ ସୌନ୍ଦର୍ଯ୍ୟ ଯେସନ ଯଦୁକୁମାରୀ
ଉଷା ସେହିପରି ଜୟନ୍ତର ମନ ନେଲା ଓଟାରି ।"

ଅପୂର୍ବ ରୂପର ଉତ୍ସ ଉଷାର ସୌନ୍ଦର୍ଯ୍ୟରେ ମୁଗ୍ଧ ଜୟନ୍ତ ସ୍ୱୟଂବରରେ ପ୍ରାର୍ଥୀ ହେବାକୁ ମନସ୍ଥ କରିଥିଲେ ହେଁ ଗଣକ ରିଷ୍ଟ ଆଶଂକା କରିବାରୁ ତାକୁ ଏକ ବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଛି । ଜୟନ୍ତର ଏହି ପ୍ରତୀକ୍ଷାକୁ ଉଇଲିୟମ ମରିସଙ୍କର କାବ୍ୟ-ନାୟକ ମିଲାନିୟନର 'ଏକମାସ ପ୍ରତୀକ୍ଷା' ସହିତ ତୁଳନା କରାଯାଇପାରେ ।

ଆଣ୍ଟଲାଣ୍ଟାର ନିଷ୍ଠୁର ପ୍ରତିଯୋଗିତାରେ ଭାଗ ନ ନେବା ପାଇଁ ସୋନିୟସ୍ (Schoeneus)ଙ୍କ ବାରମ୍ବାର ବାରଣ ମିଲାନିୟନଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରିନାହିଁ । ନିଜର ଅଭିଳାଷରେ ଦୃଢ଼ ରହିଛନ୍ତି ମିଲାନିୟନ । ମରିସ୍‌ଙ୍କ ଭାଷାରେ—

"But if thou losest life, then all is lost.
Nay, king Millanion said, Thy words are vain.
Doubt not that I have counted well the cost,
But say, on what day wilt thou that, that I gain
Fulfilled delight or death to end my pain ?"

ସେହିପରି ନୁରୁ ରାଜାଙ୍କର ସ୍ନେହପୂର୍ଣ୍ଣ ବାରଣ ନାୟକ ଜୟନ୍ତର ଚିନ୍ତାଧାରାକୁ ପରିବର୍ତ୍ତନ କରିପାରିନାହିଁ । ଉଷାର ଚିନ୍ତାକୁ ଜୟନ୍ତ ଆଦୌ ପରିତ୍ୟାଗ କରି ପାରି ନାହାନ୍ତି । ସେ ଚିନ୍ତା କରିଛନ୍ତି—

"ଭାଗ୍ୟେ ଥିଲେ ମୋର ପାଇଁ ସଙ୍ଗୀ ହେବ ସେ ମଦାଳସା
ନତୁବା ଭଜିବି ପୂର୍ବ ପ୍ରାର୍ଥୀରାଜସୁତଙ୍କ ଦଶା
ଥରେ ମାତ୍ର ପଡ଼ି ନେତ୍ରପଥେ ସେହି ରଙ୍ଗ ରଙ୍ଗିଣୀ
ହୋଇଅଛି ଚିରଦିନ ପାଇଁ ମନୋନେତ୍ରେ-ସଙ୍ଗିନୀ
ବିଫଳ ହେବ ଏ ଜୀବନ ମୋହର ଉଷା ବିହୁନେ
ଏଭଳି ଜୀବନ ଠାରୁ ମୃତ୍ୟୁ ଶ୍ରେୟଃ ସହସ୍ର ଗୁଣେ ।"

ଦୌଡ଼ ପ୍ରତିଯୋଗିତା ପୂର୍ବରୁ ଇଷ୍ଟଦେବଙ୍କୁ ସ୍ମରଣ ଓ ବରଲାଭ ନିମନ୍ତେ ପ୍ରାର୍ଥନା ଓଭିଡ୍ ଓ ରାଧାନାଥଙ୍କ କାବ୍ୟରେ ସମାନ । ହିପୋମିନେସ୍ ବରଲାଭ ପାଇଁ ଦୌଡ଼ ପ୍ରତିଯୋଗିତା ପୂର୍ବରୁ ଭେନସ (Venus)ଙ୍କୁ ପ୍ରାର୍ଥନା କରିଛି ଏହିପରି—

"O Venus, favour mine attempt and sent me down thine aid,
To compass my desire love which thou hast on me laid."

ହିପୋମିନେସ୍ ପରି ଜୟନ୍ତ ମଧ୍ୟ ପ୍ରତିଯୋଗିତା ଆରମ୍ଭ ପୂର୍ବରୁ କୁମାରଦେବ କାର୍ତ୍ତିକେୟଙ୍କୁ ସ୍ମରଣ କରିଛନ୍ତି । କବିଙ୍କ ଭାଷାରେ—

"ଜୟନ୍ତ ଏ କାଳେ ଶକ୍ତିଧର ପଦେ କଲା ଜଣାଣ
ଭୋ ଦେବକୁମାର, କର ସେବକଙ୍କୁ ସଂକଟୁ ତ୍ରାଣ ।
କୃପା କଟାକ୍ଷରେ କରିପାର ପ୍ରଭୁ ସଂକଟେ ପାରି
ଘେନା ହେଉ ଦିବ୍ୟ ଅବଧାନେ ଦୁଃଖୀ ଜନ ଗୁହାରି ।"

ଏଠାରେ ପ୍ରାର୍ଥନାର ଆବେଗତା, ବରପ୍ରାର୍ଥୀଙ୍କ ମନରେ ଆତୁରତା ଏବଂ ଭାଷାର ଆବେଗ ଶକ୍ତି ଉଭୟ କ୍ଷେତ୍ରରେ ସମାନ ।

ବର-କାମନା ପରି ବର-ପ୍ରାପ୍ତି ମଧ୍ୟ ଉଭୟ କ୍ଷେତ୍ରରେ ସମାନ । ଭେନସ୍ (Venus) ସାଇପ୍ରିୟାନ୍ (Cyprian) କ୍ଷେତ୍ରରେ ଗୋଟିଏ ବୃକ୍ଷରୁ ତିନୋଟି ସ୍ୱର୍ଣ୍ଣ ଆତ ଆଣି ଅନ୍ୟମାନଙ୍କ ଅଜାଣତାରେ ହିପୋମିନେସଙ୍କୁ ଅର୍ପଣ କରିବା ସହିତ




ତାଙ୍କୁ ତାହାର ବ୍ୟବହାର କିପରି ହେବ ତାହା ଜଣାଇ ଦେଇଛନ୍ତି । ଓଭିଡ୍‌ଙ୍କ ଭାଷାରେ—

"I came and gathered golden apples three and bearing thence the same.

Within my hand, immediately to Hippomenes I gat

Invisible to all wights else save me and taught him

What to do with them."

ଉଷା କାବ୍ୟରେ ସେହିପରି କୁମାର ଦେବ କାର୍ତ୍ତିକେୟ ମାନସ ଜାତ ତିନୋଟି ସ୍ୱର୍ଣ୍ଣ ପଦ୍ମ ଅନ୍ୟମାନଙ୍କ ଅଜ୍ଞାତରେ ଜୟନ୍ତର ହାତରେ ଅର୍ପଣ କରିବା ସହିତ ସେହି ପଦ୍ମର ବ୍ୟବହାର ଉପାୟ ବତାଇ ଦେଇଛନ୍ତି । କବିବରଙ୍କ ଭାଷାରେ—

"ଅନ୍ୟେ ଦୃଶ୍ୟ ନୋହି ସ୍କନ୍ଦ ଉଭା ହେଲେ ଭକ୍ତ ଅଗ୍ରତେ
କରିଦେଲେ ବୀର ତରିବ ଯେ ରୂପେ ଦୁରୂହ ବ୍ରତେ ।
ମାନସର ଜାତ ତିନି ସ୍ୱର୍ଣ୍ଣ ପଦ୍ମ ଦେଇ ତା' କରେ
ଆଦେଶିଲେ ତାକୁ ପଥେ ଫିଙ୍ଗିବାକୁ ଗତି କାଳରେ ।"

ସ୍ୱର୍ଣ୍ଣ ଆତ ଏବଂ ସ୍ୱର୍ଣ୍ଣ ପଦ୍ମ — ଏହି ପାର୍ଥକ୍ୟ ବ୍ୟତୀତ ଅନ୍ୟକିଛି ପାର୍ଥକ୍ୟ ଏଠି ଲକ୍ଷ୍ୟ କରାଯାଏ ନାହିଁ । ତେଣୁ ଏ କ୍ଷେତ୍ରରେ ବିଷୟବସ୍ତୁର ଅଗ୍ରଗତି ନିମନ୍ତେ ଘଟଣାର ପରିକଳ୍ପନା ଓ ସମୟୋପଯୋଗୀ ଉପସ୍ଥାପନାରେ ରାଧାନାଥ ଯେ ଓଭିଡ୍‌ଙ୍କ ଦ୍ୱାରା ପ୍ରଭାବିତ— ଏହା ସ୍ୱୀକାର୍ଯ୍ୟ ।

ପ୍ରତିଯୋଗିତାର ଆରମ୍ଭ ଓ ଦୌଡ଼ର କ୍ଷିପ୍ରତା ବର୍ଣ୍ଣନାରେ ରାଧାନାଥ ଓଭିଡ଼ିଙ୍କ ଦ୍ୱାରା ପ୍ରଭାବିତ । ଦୌଡ଼ର ଆରମ୍ଭ ଉଭୟ କ୍ଷେତ୍ରରେ ବାଦ୍ୟର ସଂକେତ ଦ୍ୱାରା ଆରମ୍ଭ ହୋଇଛି । ପ୍ରଥମେ ଓଭିଡ୍‌ଙ୍କ ରଚନାକୁ ଦେଖାଯାଉ—

"The trumpets blew and girding forth and both
Set forth and on the hovering dust with nimble feet each goeth.
A man would think they able were upon-the sea to go and never
wet their feet."

'ଉଷା' କାବ୍ୟରେ ମଧ୍ୟ ବାଦ୍ୟ ଓ ସଂକେତ ଶିଙ୍ଗା ବାଜିକରି ପ୍ରତିଯୋଗିତା ଆରମ୍ଭ ହୋଇଛି । ପ୍ରତିଯୋଗୀ ମାନଙ୍କର ଦୌଡ଼ର କ୍ଷିପ୍ରତା ବର୍ଣ୍ଣନାରେ ଓଭିଡ୍‌ଙ୍କ ପରି ରାଧାନାଥ ସାଗର ଲହରୀ ଉପରେ ଦୌଡ଼ିବାର କଥା କହିଛନ୍ତି । କବିଙ୍କ ଭାଷାରେ —

ଛନକ୍ୟା ପଶିଲା ଲୋକ ମନେ ଭେରୀ ସଂକେତ ସ୍ୱନେ
ଦଉଡ଼ିଲେ ରାଜକୁମାର କୁମାରୀ ଦ୍ରୁତ ଚରଣେ

ଗତି ଦେଖି ଚିତ୍ତେ ଆସଇ, ସାଗର ଲହରୀ ପରେ
ଦଉଡ଼ିଲେ ବେନି ନଲାଗିବ ପାଣି ମୂଳୁଁ ପୟରେ ।''

ପ୍ରତିଯୋଗିତାର ଶେଷ ପର୍ଯ୍ୟାୟ ବେଳକୁ ଉଭୟ କ୍ଷେତ୍ରରେ କାବ୍ୟ ନାୟିକାଙ୍କ କ୍ଷିପ୍ରତାରେ ନିଜକୁ ଅସହାୟ ମଣିଛନ୍ତି ନାୟକ ମାନେ । ହିପୋମିନେସ୍ ଆଟଲାଣ୍ଟାର ଦୌଡ଼ କ୍ଷିପ୍ରତାରେ ନିଜକୁ ଅସହାୟ ଓ ଉପାୟଶୂନ୍ୟ ମନେକରି ଭେନସ୍ (Venus) ଙ୍କୁ ଆକୁଳ ଭାବରେ ପ୍ରାର୍ଥନା କରିଛି—

''O goddess thou !
That art the author of this gift
Assist me friendly now. ''

ସେହିପରି ଜୟନ୍ତ ଦୁଇଟି ସ୍ୱର୍ଣ୍ଣ କମଳ ଫିଙ୍ଗି ଉଷାର ଦୌଡ଼ର କ୍ଷିପ୍ରତାକୁ କିଛି ପରିମାଣରେ ପ୍ରତିହତ କରିଥିଲେ ମଧ୍ୟ ଶେଷ ପର୍ଯ୍ୟାୟ ବେଳକୁ ଉଷା ଦୌଡ଼ର କ୍ଷିପ୍ରତାରେ ନିଜର ଆସନ୍ନ-ପରାଜୟ ଦେଖି ଆତଙ୍କିତ ହୋଇ ଉଠିଛି ଏବଂ ଏହି ବିପଦ ସମୟରେ ସାହା ହେବା ନିମନ୍ତେ କୁମାର ଦେବ କାର୍ତ୍ତିକେୟଙ୍କୁ ସ୍ମରଣ କରିଛି—

''ବିହି କି ଲିହିଛି ଏ କଷଣ ମୋହୋ ଲଲାଟ ପଟେ
ଦେବ ଶକ୍ତିଧର, ସାହା ହୁଅ ଏହି ଘୋର ସଂକଟେ ।''

ଆଶଂକା ଓ ଆକୁଳତା ଉଭୟ କ୍ଷେତ୍ରରେ ଏକା କରି ପ୍ରକାଶିତ ହେଲା ପରି ନାୟକର ବିଜୟର ଅନ୍ତରାଳରେ ବର୍ଣ୍ଣିତ ଘଟଣାଟି ସମାନ । ଓଭିଡ୍‌ଙ୍କ କାବ୍ୟରେ ହିପୋମିନେସ୍ ଅନିଶ୍ଚିତତା ଓ ଆଶଂକା ମଧ୍ୟରେ ତୃତୀୟ ସ୍ୱର୍ଣ୍ଣ ଆଟଟିକୁ ବହୁ ଦୂରକୁ ଫିଙ୍ଗିଛି ଏବଂ ଆଟଲାଣ୍ଟା ତାକୁ ସନ୍ଦିଗ୍ଧ ଚିତ୍ତରେ ତୋଳିନେବା ପାଇଁ ଉଦ୍ୟମ କରିବା ସମୟରେ ଭେନସ୍ (Venus) ସେହି ଆଟଟିକୁ ଓଜନିଆ କରିଦେଇଛନ୍ତି । ଫଳରେ ଆଟଲାଣ୍ଟାର ଦୌଡ଼ କ୍ଷିପ୍ରତା କମିଛି ଓ ହିପୋମିନେସ୍ ଜୟଲାଭ କରିଛି । ଓଭିଡ୍‌ଙ୍କ ବର୍ଣ୍ଣନାନୁସାରେ—

''The lady seemed to make / A doubt in taking of it up
I forced her to take it up
And to the apple I did put a heavey weitht
And made it of such massiness / She could not lift it straight.''

ଠିକ୍ ସେହିପରି ହୋଇଛି ଜୟନ୍ତଙ୍କ କ୍ଷେତ୍ରରେ । ଜୟନ୍ତ ପ୍ରତିଯୋଗିତାର ଶେଷ ପର୍ଯ୍ୟାୟରେ ଅନନ୍ୟୋପାୟ ହୋଇ ସ୍ୱର୍ଣ୍ଣ କମଳଟିକୁ ଦୂରକୁ ଫିଙ୍ଗିଦେବା ପରେ ଦୂରରୁ ସେହି ସ୍ୱର୍ଣ୍ଣ କମଳକୁ ଆଣିବ କି ନାହିଁ — ଏହି ଭାବନାରେ ଉଷା ସନ୍ଦେହପ୍ରାଣା ହୋଇଉଠିଛି । ମାତ୍ର ପ୍ରଲୋଭନର ଶିକାର ହୋଇ ଉକ୍ତ ସ୍ୱର୍ଣ୍ଣ

କମଳକୁ ଆଣିବାକୁ ଗଲାବେଳେ କାର୍ତ୍ତିକେୟ କୁହୁକ ବଳରେ କମଳକୁ ବହୁତ ଓଜନିଆ କରିଦେଇଛନ୍ତି । ପରିଣାମରେ ଉଷା ଏହିଠାରେ ପଛାଇ ଯାଇଛି ଓ ଜୟନ୍ତ ବିଜୟ ସ୍ତମ୍ଭ ସ୍ପର୍ଶ କରି ବିଜୟୀ ହୋଇଅଛି । ରାଧାନାଥଙ୍କ ବର୍ଣ୍ଣନାନୁସାରେ—

"ଦୂରୁ ଆଣିବିକି ନ ଆଣିବି ଫୁଲ ଭାଳି ତରୁଣୀ
ପ୍ରଲୋଭନେ ପଡ଼ି ଦଉଡ଼ି ଦଉଡ଼ି ନେଲା ତା ପୁଣି
କୁହୁକ ଲଗାଇ ଦେଲେ ତହିଁ ଶୂର କୃତ୍ତିକା ସୁତ
ତୋଳି ନେବାବେଳେ କୁମାରୀ ହେଲା ସେ ଭାରି ବହୁତ ।"

କାବ୍ୟର ପରିଣତିରେ ମଧ ଓଭିଡ଼ଙ୍କ ପ୍ରଭାବ ଦେଖିବାକୁ ମିଳେ । ଓଭିଡ଼ି ପ୍ରତିଯୋଗିତାର ପର ପର୍ଯ୍ୟାୟକୁ ପରିଣୟମୁଖର କରିବା ସହିତ ଦୈବ ଅଭିଶାପ ଯୋଗୁ ନାୟକ ହିପୋମିନେସ୍ ଓ ଆଟଲାଣ୍ଟାର ଘଟାନ୍ତର ଘଟାଇଛନ୍ତି । ବିବାହ ପରେ ମନ୍ଦିରର ଉପକଣ୍ଠରେ ଉଭୟ ରମଣ ଲଗ୍ନ ଯାପନ କରିଥିବାରୁ ଦେବୀ ଅଭିଶାପ ଗ୍ରସ୍ତ ହୋଇ ସିଂହ ଓ ସିଂହୀରେ ରୂପାନ୍ତରିତ ହୋଇଛନ୍ତି । ସେହିପରି ରାଧାନାଥ ହସ୍ତଗଣ୍ଠି ପଡ଼ିବା ସମୟରେ ଉଷା ଓ ଜୟନ୍ତର ବିୟୋଗ ଘଟାଇଛନ୍ତି । ଏହି ବିୟୋଗର ପଶ୍ଚାଦ୍‌ପଟରେ ଦୈବୀ ଅଭିଶାପ ରହିଛି, ଯାହାକି ସ୍ୱପ୍ନରେ ମାଆକାଳୀ ନୁରୁ ରାଜାଙ୍କୁ ଜଣାଇ ଅଛନ୍ତି । ମୋଟ ଉପରେ ଉଷା କାବ୍ୟର ବିୟୋଗାନ୍ତକ ପରିଣତି ବର୍ଣ୍ଣନାରେ ଓଭିଡ଼ିଙ୍କ ପ୍ରଭାବ ରହିଛି ।

ରାଧାନାଥଙ୍କ ଆହରଣ ପ୍ରକ୍ରିୟାରେ ଆମେ ରୋମାନ କବି ଓଭିଡ୍ ଓ ଇଂରେଜ କବି ଉଇଲିୟମ ମରିସ୍‌ଙ୍କ କାବ୍ୟକୁ ଦେଖୁଥିଲେ ହେଁ ରାଧାନାଥ ଓଭିଡ୍‌ଙ୍କ ଉପରେ ବେଶୀ ନର୍ଭର କରିଛନ୍ତି । କାରଣ ମରିସଙ୍କ କାବ୍ୟରେ କଥାବସ୍ତୁର ବ୍ୟାପ୍ତ ପରିସର ଯଥା — ମିଲାନିୟନ ଆଟଲାଣ୍ଟାର ଦୌଡ଼ ପ୍ରତିଯୋଗିତାରେ ଦୁଇଥର ଉପସ୍ଥିତ ହେବା, ଆଟଲାଣ୍ଟାକୁ ପାଇବା ନିମନ୍ତେ ମିଲାନିୟନର ଭେନସଙ୍କୁ ତପସ୍ୟା କରିବା, ତପସ୍ୟାରେ ସିଦ୍ଧି ପ୍ରାପ୍ତି ପରେ ଭେନିସ୍‌ଙ୍କର ତିନୋଟି ସ୍ୱର୍ଣ୍ଣ ଆତ ପ୍ରଦାନ, ଅଦୃଶ୍ୟ ଭାବରେ ଦୌଡ଼ ପ୍ରତିଯୋଗିତା ସମୟରେ ଭେନିସ୍ ଆଟଲାଣ୍ଟାକୁ ଅବଶ ଓ ଦୁର୍ବଳ କରାଇବା, ଆଟଲାଣ୍ଟା ମୂର୍ଚ୍ଛିତ ହେବା, ମୂର୍ଚ୍ଛିତା ଆଟଲାଣ୍ଟାଙ୍କୁ ମିଲାନିୟନ କୋଳ କରିବା ଇତ୍ୟାଦି, ରାଧାନାଥଙ୍କ ଆଲୋଚ୍ୟ କାବ୍ୟରେ ଦେଖିବାକୁ ମିଳେ ନାହିଁ । ଅପର ପଟରେ ଓଭିଡ଼ଙ୍କ କାବ୍ୟର ବର୍ଣ୍ଣନା କ୍ରମରେ ସାଦୃଶ୍ୟ ପୂର୍ବ ଆଲୋଚନାରୁ ସ୍ପଷ୍ଟ । ତେଣୁ ରାଧାନାଥଙ୍କ ଉପରେ ଉଇଲିୟମ ମରିସ୍‌ଙ୍କ ଅପେକ୍ଷା ଓଭିଡ଼ିଙ୍କ ପ୍ରଭାବ ଅଧିକ ।

କବିବର ରାଧାନାଥ ଆହରଣ ଅପେକ୍ଷା ଆହୃତ ବିଦେଶୀ ଉପାଦାନକୁ ଦେଶୀୟ ଉପାଦାନ ସହିତ ସମୀକରଣ କରିବାରେ ନିଜର ଦକ୍ଷତା ଅଧିକ ପ୍ରଦର୍ଶନ କରିଛନ୍ତି । ଗଳ୍ପ ଭାଗଟିକୁ ପାଶ୍ଚାତ୍ୟ ସାହିତ୍ୟରୁ ଗ୍ରହଣ କରି ନିଜସ୍ୱ କଳ୍ପନା ମିଶାଇ ଓଡ଼ିଆ ସାହିତ୍ୟରେ ଏପରି ଭାବରେ ଅଙ୍ଗୀଭୂତ କରିଦେଇଛନ୍ତି ଯେ ପାଠକ ଏହାକୁ ସତ୍ୟବୋଲି ମନେକରେ । ଏପରି ମନେକରିବାର ପ୍ରଧାନ କାରଣ ହେଉଛି ଉତ୍କଳର ବିଭିନ୍ନ ଅଞ୍ଚଳର ଭୌଗୋଳିକ ଅବସ୍ଥାନର ବର୍ଣ୍ଣନା, ଦେବଦେବୀମାନଙ୍କର ବର୍ଣ୍ଣନା, ଇତିହାସ, କିମ୍ବଦନ୍ତୀ, ଲୋକ ବିଶ୍ୱାସ ଓ ପୌରାଣିକ ଆଖ୍ୟାନ ସହିତ ଖାପ ଖୁଆଇ ଆହୃତ କାହାଣୀର ମନୋରମ ବର୍ଣ୍ଣନା । 'ଉଷା' କାବ୍ୟରେ ଉପରୋକ୍ତ କାରଣ ଗୁଡ଼ିକ ବିଦ୍ୟମାନ ।

ବାଲେଶ୍ୱର ସହରର ଅବସ୍ଥିତି ବର୍ଣ୍ଣନା ପରିପ୍ରେକ୍ଷୀରେ ପ୍ରାକୃତିକ ଭୌଗୋଳିକ ଅବସ୍ଥାକୁ ସୁନ୍ଦର ଭାବରେ ଚିତ୍ରଣ କରିଛନ୍ତି । ମୟୁରଭଂଜର ଶିମୂଳି ପାହାଡ଼ରୁ ବୁଢ଼ାବଳଙ୍ଗ, ଗଙ୍ଗାହାର ଓ ସୋନ ନଦୀ ତ୍ରୟ ବାହାରି ଫୁଲାଡ଼ି ଘାଟର କିଛି ଦୂରରେ ତେମୁହାଁଣି ଠାରେ ମିଳିତ ହୋଇ କେବଳ ବୁଢ଼ାବଳଙ୍ଗ ନାମରେ ପରିଚିତ ହୋଇ ବାଲେଶ୍ୱର ନିକଟ ଦେଇ ଯାଇ ବଙ୍ଗୋପସାଗରରେ ପଡ଼ିଛନ୍ତି । ସେହି ନଦୀ ତୀରରେ ଅବସ୍ଥିତ ବାଲେଶ୍ୱରର ନୁରୁପୁର ସ୍ଥାନର ବର୍ଣ୍ଣନା କରିବାକୁ ଯାଇ କବି ନିଜସ୍ୱ ବର୍ଣ୍ଣନା କୌଶଳରେ ପ୍ରାକୃତିକ ଭୌଗୋଳିକ ଅବସ୍ଥାକୁ ଅତି ମନୋରମ କରି ରଚନା କରିଛନ୍ତି । ଏଠାରେ ଗୋଟିଏ ଉଦାହରଣ ଯଥେଷ୍ଟ ମନେହୁଏ । କବିଙ୍କ ଭାଷାରେ—

"ଉତ୍ତରେ ବଳାଙ୍ଗୀ ମଧ୍ୟେ ଗଙ୍ଗାହାର ଶୋଣ ଦକ୍ଷିଣେ
ଜଳବେଣୀ-ବର୍ଣ୍ଣେ କୁରଙ୍ଗ -ନୟନ -ନୀଳିମା ଜିଣେ ।
ରଜ,ତମ, ସତ୍ତ୍ୱ ମିଶିଲା ପରାୟେ ବଳାଙ୍ଗୀ-ପଦେ
ଶୋଣ, ଗଙ୍ଗାହାର ମିଶନ୍ତି ଯେ ଯାହା ନୀର ସମ୍ପଦେ ।"

ସେହିପରି ପ୍ରତିଯୋଗିତାରେ ଭାଗନେଇ ପ୍ରାଣ ହରାଇଥିବା ରାଜକୁମାର ମାନଙ୍କର ପରିଚିତି ଦେବା ପରିପ୍ରେକ୍ଷୀରେ ବଭିନ୍ନ ସ୍ଥାନର ବର୍ଣ୍ଣନା ରହିଛି । କବିଙ୍କ ବର୍ଣ୍ଣନାନୁସାରେ ବୀରକୁଳ, କମରଦା, ଭୋଗରାଇ, ଯାମକୁଣ୍ଡା, ବୋଲଙ୍ଗ, ଲଙ୍ଗଳେଶ୍ୱର, ଜଳେଶ୍ୱର, ରାଇବଣିଆ, ନୀଳଗିରି, ଚୋକାଝର, ସୋର, ଶିରାପୁର, ମଙ୍ଗଳପୁର, ପାଟଣା, କୁପାରି, ବିଶାଳଖଣ୍ଡ, ସରହାର, ଗୁଡୁ, ପାଳିଆ ଅଞ୍ଚଳ, ଧାମରା ମୁହାଣ, ଭେଡ଼ା ଅଞ୍ଚଳ, ଗୋହିରାଟିକିରି, ସୀତାକୁଣ୍ଡ, ଭଦ୍ରକ, ଦପା, ଆଖଣ୍ଡଳମଣି ଆଦି ବାଲେଶ୍ୱର ଜିଲ୍ଲାର ଉତ୍ତର ଓ ଦକ୍ଷିଣ ଦିଗବର୍ତ୍ତୀ ସମସ୍ତ ପ୍ରସିଦ୍ଧ ସ୍ଥାନର ବର୍ଣ୍ଣନା ରହିଛି । ଏହି ବର୍ଣ୍ଣନା ଆଲୋଚ୍ୟ କାବ୍ୟରେ ସ୍ଥାନୀୟ ଚିତ୍ରର ଏକ




ମନୋରମ ସମାବେଶ ସୃଷ୍ଟି କରିଛି । ଚିତ୍ରରଥ ଓ ତିଳୋତ୍ତମାର ନୃତ୍ୟ ଦର୍ଶନ ନିମନ୍ତେ ଉପସ୍ଥିତ ଦେବଦେବୀଙ୍କ ମଧ୍ୟରେ କବି ଚତୁରତାର ସହିତ ବୈତରଣୀ ତଟବର୍ତ୍ତୀ ଗରୁଆ ନିକଟବର୍ତ୍ତୀ କୀଚକେଶ୍ୱରୀ, କେନ୍ଦୁଝର ଅନ୍ତର୍ଗତ ଘଟଗାଁର ମାଆ ତାରିଣୀ ଓ ଦଣ୍ଡଦେବୀ, ସୋରର ଖେଳାଇ ଦେବୀ, ଭଦ୍ରଖରେ ଭଦ୍ର କାଳିକା, ଦେବଗିରିର ମଣ୍ଡଳେଶ୍ୱରୀଙ୍କ ଉପସ୍ଥିତି ସହିତ ଦେବୀପୀଠ ଗୁଡ଼ିକର ବର୍ଣ୍ଣନା କରି ଦେଇଛନ୍ତି । ଏଠାରେ ଏହା ସ୍ୱୀକାର୍ଯ୍ୟ ଯେ କୌଣସି ଭୂଗୋଳ ବା କିମ୍ବଦନ୍ତୀ ଲେଖକ ଉପରୋକ୍ତ ସ୍ଥାନର ମାହାତ୍ମ୍ୟ ଏପରି କବିତ୍ୱ ପୂର୍ଣ୍ଣ ବର୍ଣ୍ଣନା ସହ କେଉଁଠାରେ କରି ନାହାନ୍ତି ।

ଦେବଦେବୀମାନଙ୍କ କରୁଣାରୁ ଲୋକମାନେ କୃତକାର୍ଯ୍ୟ ହେବା ବହୁଜନବିଦିତ ଘଟଣା ଓଡ଼ିଶାରେ ଶୁଣିବାକୁ ଓ ଦେଖିବାକୁ ମିଳିଥାଏ । ଅନେକ ସ୍ଥଳରେ ଦେବଦେବୀ ମୂର୍ତ୍ତି ପ୍ରାପ୍ତି ଓ ସ୍ଥାପନ ଏକ ଅଲୌକିକ ବ୍ୟାପାର ହୋଇଥାଏ । ଦେବଦେବୀଙ୍କ ପ୍ରସାଦରୁ ଲୋକେ ରାତାରାତି ବଡ଼ଲୋକ ହେବାକଥା ଏବଂ ଭାଗ୍ୟବାନ ଲୋକମାନେ ଦୈବ ପ୍ରଭାବରେ ସନ୍ତାନ ସନ୍ତତି ଲାଭ କରିବାର କଥା ଓଡ଼ିଶାରେ ବହୁ ପ୍ରଚଳିତ । ରାଧାନାଥ ଓଡ଼ିଆ ମାନଙ୍କର ଏହି ଲୋକବିଶ୍ୱାସକୁ ଆହୃତ ଉପାଦାନ ଉପରେ ଏକ ସୁନ୍ଦର ଆସ୍ତରଣ ରୂପେ ପ୍ରୟୋଗ କରିଛନ୍ତି, ଯାହାକି ପାଠକମାନଙ୍କ ହୃଦୟରେ ଦୃଢ଼ ପ୍ରତ୍ୟୟ ଜାତ କରିବାରେ ସକ୍ଷମ ହୋଇପାରିଛି ।

ଉଷା କାବ୍ୟରେ ବାଲେଶ୍ୱରର ମାଣିଖମ୍ବଠାରେ ପ୍ରାପ୍ତ ମାଆ କାଳୀ ମୂର୍ତ୍ତିର ସ୍ଥାପନ ଏବଂ ସେହି ଦେବୀଙ୍କର ପ୍ରସାଦରେ ନୁରୁରାଜା ବଳୀୟାନ୍ ହେବା, ସ୍ୱପ୍ନରେ ମାଆ କାଳୀଙ୍କର କରୁଣା ଲାଭ କଲାଭଳି ନୁରୁରାଜାଙ୍କ ରାଣୀ ସ୍ୱପ୍ନରେ ଗର୍ଭଧାରଣ କରିବାର ଯେଉଁ ବର୍ଣ୍ଣନା ଦେଖିବାକୁ ମିଳେ ସେଥିରେ ସନ୍ଦେହ ଅପେକ୍ଷା ବିଶ୍ୱାସ ଅଧିକ ସୃଷ୍ଟି ହୋଇଥାଏ । ପୁନଶ୍ଚ ଅଦୃଶ୍ୟ ଭାବରେ କୁମାର ଦେବ ଜୟନ୍ତକୁ ସ୍ୱର୍ଣ୍ଣକମଳ ପ୍ରଦାନ କରିବା, କୁହୁକ ବିଦ୍ୟା ଦ୍ୱାରା ତୃତୀୟ ସ୍ୱର୍ଣ୍ଣ କମଳକୁ ଓଜନିଆ କରିଦେଇ ଉଷା-ଦୌଡ଼ର କ୍ଷିପ୍ରତାକୁ କମାଇ ଦେବାର ପଛରେ ଉତ୍କଳୀୟମାନଙ୍କ ଦେବ-ଦେବୀ ସମ୍ପର୍କିତ ଦୃଢ଼ ବିଶ୍ୱାସ ବିଦ୍ୟମାନ ।

ଉଷା କାବ୍ୟର ଅନ୍ତିମ ପରିଣତି ବିୟୋଗାତ୍ମକ । ବିବାହ ମଣ୍ଡପରେ ହସ୍ତଗ୍ରନ୍ଥି ବନ୍ଧନ ସମୟରେ ଚେତନାଶୂନ୍ୟ ହୋଇ ଜୟନ୍ତ ଓ ଉଷା ପ୍ରାଣତ୍ୟାଗ କରିଛନ୍ତି । ନୁରୁରାଜା ଶୋକାକୁଳ ଅବସ୍ଥାକୁ ଲଘୁ କରିବା ନିମନ୍ତେ କବି ଇଷ୍ଟଦେବୀ ମାଆ ମାଳୀଙ୍କ ମୁଖରେ ସେମାନଙ୍କ ଜନ୍ମ ବୃତ୍ତାନ୍ତ ଶୁଣାଇଛନ୍ତି—‘‘ନୀଳଗିରି ପାହାଡ଼ମାଳାର ପବିତ୍ରତମ ସ୍ଥାନ ପଞ୍ଚୁଲିଙ୍ଗ ଶୈଳ ଉପରେ ଦିନେ ଗନ୍ଧର୍ବମାନେ ଉତ୍ସବ କଲେ । ଚିତ୍ରରଥ ହର ବେଶରେ ଓ ତିଳୋତ୍ତମା ପାର୍ବତୀ ବେଶରେ

ହାତଧରାଧରି ହୋଇ ନୃତ୍ୟ କଲେ ଓ ଅନ୍ୟାନ୍ୟ ଗନ୍ଧର୍ବମାନେ ବିଚିତ୍ର ସଙ୍ଗୀତ ଓ ବାଦ୍ୟରେ ରତ ଥିଲେ । ଏହି ନୃତ୍ୟକୁ ଦେଖିବା ପାଇଁ ବନଦେବୀ, ସ୍ୱର୍ଗର ଦେବତାଗଣଙ୍କ ସହିତ ଚତୁର୍ଦ୍ଦିଗରୁ ଦେବୀଗଣ ସେଠାରେ ଉପସ୍ଥିତ ଥିଲେ । ମୁଁ ମଧ୍ୟ ସେଠାକୁ ଯାଇଥିଲି । ମୋର କୁତ୍ସିତ ରୂପ ଦେଖି ଗନ୍ଧର୍ବମାନେ ହସିଲେ । ଏପରିକି ଚିତ୍ରରଥ ଓ ତିଳୋତ୍ତମା ମଧ୍ୟ ମୋତେ କେତେ ଉପହାସ କଲେ । ମୁଁ କୁପିତ ହୋଇ ଅଭିଶାପ ଦେଲି । ଅଭିଶାପ ଭୟରେ ସକଳ ଗନ୍ଧର୍ବ ବିଶେଷତଃ ତିଳୋତ୍ତମା ବିକଳ ହୋଇ ମୋର ଶରଣାପନ୍ନ ହେବାରୁ ଓ କୃପାଭିକ୍ଷା କରିବାରୁ ମୁଁ ସନ୍ତୁଷ୍ଟ ହୋଇ କହିଲି ଯେ ଏ ଅଭିଶାପ ଅଳ୍ପକାଳ ପାଇଁ ସ୍ଥାୟୀ ହେବ—ଏ ଗନ୍ଧର୍ବମାନେ ତୋର ଜନ୍ମ ସ୍ଥାନରେ ପ୍ରାଣ ବିସର୍ଜନ କରିବେ । ଉଭୟଙ୍କର ହସ୍ତ ସ୍ପର୍ଶରେ ହିଁ ଅଭିଶାପରୁ ମୁକ୍ତ ହେବ ।" କବିଙ୍କ ବର୍ଣ୍ଣନାନୁସାରେ—

ସର୍ବଶେଷେ ତୋର ସଙ୍ଗେ
            ଚିତ୍ରରଥ ଗନ୍ଧର୍ବ ପତି,
ଶାପୁଁ ମୁକ୍ତ ହୋଇ ବାହୁଡ଼ି
            ଆସିବ ସୁର ବସତି ।
ହସ୍ତ ଧରାଧରି ହୋଇ ବେନି
            ହେଲେ ଶାପରେ ଯୁକ୍ତ
ହସ୍ତ ସ୍ପର୍ଶ ମାତ୍ରେ ମର୍ତ୍ତ୍ୟେ ବେନି
            ହେବ ଶାପରୁ ମୁକ୍ତ ।

ରାଧାନାଥଙ୍କର ଏହି ପରିକଳ୍ପନାର ପୃଷ୍ଠପୀଠିକା ଭାବରେ ବାଣାସୁର ରାଜନନ୍ଦିନୀ ଉଷା ଅନିରୁଦ୍ଧର ପ୍ରଣୟ ଆଖ୍ୟାନ ସ୍ମରଣୀୟ ।

ଉପରୋକ୍ତ ଆଲୋଚନାରୁ ଏହା ସୁସ୍ପଷ୍ଟ ଯେ ପାଶ୍ଚାତ୍ୟ ସାହତ୍ୟରୁ କାହାଣୀ ଆହରଣ କରିଥିଲେ ହେଁ ଦେଶୀୟ ଉପାଦାନର ସାର୍ଥକ ସମୀକରଣରେ ରାଧାନାଥ ନିଜର ଦକ୍ଷତା ଅଧିକ ପ୍ରତିପାଦନ କରିପାରିଛନ୍ତି । ଘଟଣାର ବର୍ଣ୍ଣନାରେ ଯେଉଁଠାରେ ପାଶ୍ଚାତ୍ୟ କଥାବସ୍ତୁ ଅସଙ୍ଗତ ମନେ ହୋଇଛି ସେଠାରେ କବି ଦେଶୀୟ ବିଶ୍ୱାସ ଓ ଦୃଷ୍ଟିଭଙ୍ଗୀ ଅନୁଯାୟୀ ଘଟଣାର ବର୍ଣ୍ଣନା କରଛନ୍ତି । ଯାହା ତାଙ୍କ ପ୍ରତିଭାର ପରିଚୟ ଦେଇଥାଏ । ଉଦାହରଣ ସ୍ୱରୂପ ହିପୋମିନେସ୍ ଓ ଆଟଲାଣ୍ଟା ଦୈବ ଅଭିଶାପ ଯୋଗୁ ସିଂହ ଓ ସିଂହୀରେ ପରିଣତ ହୋଇଯିବା ଅସଙ୍ଗତ ମନେ ହେଉଥିବାବେଳେ ଜୟନ୍ତ ଓ ଉଷାର ଅନ୍ତିମ ପରିଣତି ଶାପମୁକ୍ତ ତଥା ମୃତ୍ୟୁ ବେଶ୍ ସଙ୍ଗତ ବୋଧ ହୋଇଅଛି । ମୋଟ ଉପରେ ଏତିକି କହିଲେ ଯଥେଷ୍ଟ ହେବ ଯେ କବିବର ରାଧାନାଥଙ୍କ କାବ୍ୟ "ଉଷା" ଆହରଣ ଓ ସମୀକରଣର ଏକ ମନୋହର ପରିପ୍ରକାଶ ।



# ରାଧାନାଥୀ ପ୍ରତିଭାର ପ୍ରଶାନ୍ତି
# ''ଯଯାତିକେଶରୀ''

ଡଃ ବନମାଳୀ ବେହେରା

କେଉଁ ଏକ ଶୁଭ କ୍ଷଣରେ ଓଡ଼ିଆ ସାହିତ୍ୟର ମନ୍ତ୍ରଦାତା କବିବର ରାଧାନାଥ ରାୟଙ୍କ ସହ ପୂଜ୍ୟପାଦ ଭୂଦେବ ମୁଖୋପାଧାୟଙ୍କର ସାକ୍ଷାତ ହୋଇଥିଲା କେଜାଣି, ସେହି କ୍ଷଣଠାରୁ ଓଡ଼ିଆ ସାହିତ୍ୟର ଭାଗ୍ୟ ବଦଳିଗଲା । ଭୂଦେବ ବାବୁ ଯଦି ପରାମର୍ଶ ଦେଇ ନଥାନ୍ତେ, କବିବରଙ୍କ କାବ୍ୟ ପ୍ରତିଭା ଯେ କେଉଁ ଦିଗ ଦେଇ ଯାଇଥାନ୍ତା, ଆଜି ତାହା କହିବା କଷ୍ଟସାଧ୍ୟ । ଭୂଦେବ ବାବୁଙ୍କର ଏଇ କେଇପଦ କଥା, ''ମୁଁ ଆଶାକରୁଛି, ତୁମେ ନୂଆ ଗଢ଼ିବାକୁ ଚେଷ୍ଟା କରିବ ।.... ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତା ଧାତ୍ରୀ । ଓଡ଼ିଶାର ଯେଉଁଆଡ଼କୁ ଚାହିଁବ ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ଅଛି'' (ରାଧାନାଥ ଜୀବନୀ-୧୯୫୭, ଦୁର୍ଗାଚରଣ ରାୟ,ପୃ-୯୭)ରେ ନୂଆ କିଛି ଗଢ଼ିବାର ଶପଥ ନେଲେ କବିବର । ତାର ଫଳସ୍ୱରୂପ ଜନ୍ମନେଲା ଏକାଧିକ କାବ୍ୟ-କବିତା, ମାହାକାବ୍ୟ, ପ୍ରବନ୍ଧ । ଜୀବନ୍ୟାସ ପାଇଲା ଓଡ଼ିଶା ମାଟିର ପ୍ରକୃତି-ପରିବେଶ, ଇତିହାସ, ଭୂଗୋଳ, କିମ୍ବଦନ୍ତୀ- ଜନଶ୍ରୁତି ସହିତ ଅନେକ ପ୍ରତିଶ୍ରୁତି । 'ଯଯାତିକେଶରୀ' (୧୮୯୪) ସେହି ପ୍ରତିଶ୍ରୁତିରୁ ଗୋଟିଏ । ଏହା ରାଧାନାଥ ପ୍ରତିଭାର ଅବରୋହନୀ ପର୍ବର ପ୍ରସ୍ତୁତିକାଳର ରଚନା । ପ୍ରଥମେ ଏହା 'ଉତ୍କଳପ୍ରଭା' ରେ ୧୮୯୪ରେ ରଚକର ନାମ ସଂଯୁକ୍ତ ନ ହୋଇ ପ୍ରକାଶ ପାଇଥିଲା । ପରେ ବାମଣ୍ଡା ଜଗନ୍ନାଥବଲ୍ଲଭ ପ୍ରେସରୁ ନାମ ସମ୍ବଳିତ ପୁସ୍ତକ ହୋଇ ବାହାରିଥିଲା ।

'ଯଯାତିକେଶରୀ'ର ସୃଷ୍ଟି ସ୍ୱଭାବସୁଲଭ ହେଲେ ହେଁ ପ୍ରଭାବମୁକ୍ତ ନୁହେଁ । ଏହା ସେକ୍ସପିୟରଙ୍କ 'Twelveth Night' ଓ 'Cymbelive' ନାଟକ ଏବଂ ବଙ୍ଗଳା କବି ଭରତଚନ୍ଦ୍ରଙ୍କ 'ବିଦ୍ୟାସୁନ୍ଦର' କାବ୍ୟ ଦ୍ୱାରା ପ୍ରଭାବିତ ବୋଲି ସମାଲୋଚକମାନେ କହନ୍ତି । ତଥାପି ଏହାର ରଚନାଶୈଳୀ ଓ ମୌଳିକତା ହିଁ ଆଧୁନିକ ଅପେକ୍ଷା ପ୍ରାଚୀନ କବିଙ୍କର ନିକଟତର ହୋଇଛି । ସମୁଦାୟ ପାଞ୍ଚଗୋଟି ସର୍ଗରେ ସୀମିତ କାବ୍ୟଟିରେ ଶୃଙ୍ଗାରରସର ବହୁଳ ପ୍ରକାଶ ଘଟିଛି ।

ମଗଧ ନିବାସୀ କ୍ଷତ୍ର ବଂଶଜାତ ଯାମଳ ଭାଇ-ଭଉଣୀ ଥିଲେ ଯଯାତି ଓ ବିମଳା । ଦୁହେଁ ଥିଲେ ଦେବୀ ବିରଜାଙ୍କ ଭକ୍ତ । ମାତୃହୀନା । ପିତା ମଗଧରାଜ ସାବତମାତାର କୁମନ୍ତ୍ରଣାରେ ଏମାନଙ୍କ ପ୍ରତି ନିର୍ମମ ବ୍ୟବହାର କରିବାରୁ ପ୍ରାଣ ଭୟରେ ରାଜ୍ୟଛାଡ଼ି ପଳାଇ ଆସି ଶ୍ରୀକ୍ଷେତ୍ର ଯିବା ପଥରେ ବୈତରଣୀ ତଟ ଦେବୀ ବିରଜାଙ୍କ ଆସ୍ଥାନରେ ଅବସ୍ଥାନ କଲେ । ଅସ୍ତ୍ର ଚାଳନାରେ ସିଦ୍ଧି ଲାଭ କରିଥିବାରୁ ଦୁଇ ଭାଇଭଉଣୀ ଅଧିକାଂଶ କାଳ ମୃଗୟାରେ କାଟୁଥିଲେ । ଭ୍ରାତା ଯଯାତି ପରି 'ପୁଂସ ପ୍ରାୟେ ସଦା ବିମଳାର ବେଶ, ପୁଂସ ପ୍ରାଏ ଥିଲା କେଶ ।'' ଦୁହିଁଙ୍କର ଶୋଭା ଥିଲା ଅପୂର୍ବ ''ଖେଳୁଥିଲା ନବ ଲାବଣ୍ୟ ତରଙ୍ଗ କିଶୋରୀ କିଶୋର କାୟେ ।'' ପାରିଧିର ବେଶେ ଦୁହେଁ ଦିଶୁଥିଲେ ''ଅଶ୍ୱିନୀ କୁମାର ପ୍ରାଏ ।'' ପୁଣି ଏକ ବୃନ୍ତେ ବେନିପୁଷ୍ପ ଏକ ମୃଣାଳେ ବେନି କମଳ ସଦୃଶ । ସେହି ଯମଜ ଭାଇ-ଭଉଣୀ କେବଳ ''ଭାଗ୍ୟକୁ ଆଦରି ପଡ଼ିଥିଲେ ତହିଁ ଦେବୀ-ପାଦ-ପଦ୍ମ ଧ୍ୟାଇ ।''

ସେତେବେଳେ 'ଉତ୍ତର କୋଶଳ'ରେ କପାଳେଶ ଦୁର୍ଗର ଭୂପତି ଥିଲେ ହିରଣ୍ୟ ବର୍ମା । ଲଳିତା ରାଜାର ଏକମାତ୍ର ସୁତା । ରୂପଗୁଣରେ ଅନୁପମା । ସୁକୁମାର କଳାଠାରୁ ଶସ୍ତ୍ରବିଦ୍ୟା ପର୍ଯ୍ୟନ୍ତ ସବୁଥିରେ ସେ ଧୁରୀଣା ଥିବାରୁ ''ମୃଗୟା ବିହାରେ ଅନୁକ୍ଷଣେ ତେଣୁ ବଳାଉଣ ଥିଲା ମତି ।'' ଦିନେ ଲଳିତା ସଖୀ ସହିତ ବୈତରଣୀ ତୀରସ୍ଥ ବନକୁ ମୃଗୟା ଉଦ୍ଦେଶ୍ୟରେ ଯାଇ ଦେବୀ ବିରଜାଙ୍କୁ ଦର୍ଶନ କରିଥିଲେ । ଏହି ସମୟରେ ସେଠାରେ ଯଯାତି ଦେବୀଙ୍କ ପାଇଁ ପୁଷ୍ପହାର ଗୁନ୍ଥୁଥିଲେ । ମୃଗୟା ବେଶରେ ଅପୂର୍ବ ଶୋଭା ପିନ୍ଧୁଳି ଯୁବା ମଉଳି ଲଳିତାକୁ ଦେଖି ଯଯାତି ମୁଗ୍ଧ ହୋଇଗଲେ । ଅଲକ୍ଷ୍ୟରେ ସେ 'ବିନାମୂଲ୍ୟେ ନିଜ ହୃଦୟକୁ ଦେଲା ବିକି ।'' ଅନଙ୍ଗ ଫୁଲଶର ବିନ୍ଧି ଯଯାତିର ହୃଦୟକୁ ଜର୍ଜର କରି ଦେଲା । ଏକାଳେ ସୁନେତ୍ରାଲଳିତା ଯଯାତି ଆଡ଼କୁ ଅଜ୍ଞାତ ଚାହାଣୀ ଢାଳି କି ଛଟାରେ ଲେଉଟାଇ ଆଣିଲେ । 'କାମକାଣ୍ଡ ସଙ୍ଗେ ସେ କଟାକ୍ଷ ଗଲା ଯଯାତି ମରମେ ପଶି ।' ନବପ୍ରେମୀ ସ୍ରୋତ ଉଚ୍ଛ୍ୱାସରେ ଧୈର୍ଯ୍ୟ ତଟ ମୂଳ ଧସି ପଡ଼ିଲା । ପରସ୍ପରର ଦୃଷ୍ଟି ବିନିମୟରେ ପ୍ରେମ ସଞ୍ଚାର ହେଲା । ଦେବୀ ଦର୍ଶନ ସାରି ଲଳିତା ଫେରିଲେ ସ୍ୱଶିବିରକୁ ।

ଯଯାତି ହୃଦୟରେ ନବପ୍ରେମର ଯାବତୀୟ ଅନୁଚିନ୍ତା ଜାଗ୍ରତ ହେଲା । ଲଳିତା ରୂପରେ ମୁଗ୍ଧ ଯଯାତି ଅପ୍ରାପ୍ତିର ଯନ୍ତ୍ରଣାରେ ଛଟପଟ ହେଲେ । ନୟନରଞ୍ଜନ ନବଇନ୍ଦୁକଳା ପରି ଦୂରୁଁ ପ୍ରେମପୁଷ୍ପେ ପୂଜିବାକୁ ଚିନ୍ତା କରି ମନରେ ଆଶା ବାନ୍ଧିଲେ । ''ଦିନେ ହେଲେ ହେବ ଶ୍ଳାଘ୍ୟ ଅଙ୍ଗ ବାଳା ଶ୍ରୀଅଙ୍ଗ ସେବାରେ ଆସି ।''

ଏକ ଦିନେ ଲଳିତା ସଖୀମେଳରେ ବୈତରଣୀ କୂଳକୁ ମୃଗୟା ବିନୋଦରେ ଯାଇ ଏକ ଚିତ୍ରବିଚିତ୍ରାଙ୍ଗ ମୃଗକୁ ଦେଖି ତାକୁ ଅନୁଧାବନ କଲେ । ନିବିଡ଼

କାନନରେ ଯାଉ ଯାଉ ଗୋଟିଏ ତରୁମୂଳେ ଏକ କନ୍ଦର୍ପ ସୁନ୍ଦର ଯୁବା ମୃଗୟା ବେଶରେ ଶୋଇଥିବାର ଦେଖିଲେ । ଯୁବାଜଣକ ଥିଲେ ସ୍ୱଭାବେ ପୁରୁଷ ନୁହେଁ ସେ, ମାତ୍ର ପୁରୁଷ ରୂପୀ ଅବଳା । "ଆନ କେହି ନୁହେଁ ମଗଧ ନରେନ୍ଦ୍ର ନନ୍ଦନା ସେହି କମଳା ।" ସେହି ରୂପଦର୍ଶନରେ ରାଜକୁମାରୀ ଲଳିତାର କୁମାରୀ ଦମ୍ଭ ତୁଟିଗଲା । ସ୍ୱେଦେ ଆର୍ଦ୍ର ହୋଇ ପଦ୍ମକର ତଳେ ଶରୀର ଭଜିଲା ସ୍ତମ୍ଭ । ରାଗାଙ୍କୁର-ନିଭ ପୁଲକ ପଟଳେ ଟାଙ୍କୁରିଲା ଗଣ୍ଡସ୍ଥଳ । ନବ ଭାବୋଚ୍ଛ୍ୱାସେ ସଘନେ ସ୍ଫୁରିଲା କିଶୋର କୁଚଯୁଗଳ । ମନରେ ଚିନ୍ତାକଲା ଲଳିତା—

"ପ୍ରେମ ସିଂହାସନେ ଏହିପରି ଜଣେ ବସିବା ପାଇଁ ଭାଜନ
ମର୍ତ୍ତ୍ୟମଣ୍ଡଳେ ତ ଆଜିଯାଏ ଦେଖି ନ ଥିଲା ମୋର ନୟନ ।"

ପୁରୁଷରୂପୀ ବିମଳାକୁ ଦେଖି, ମୋହିତ ହୋଇଗଲେ ଏବଂ ପଣ କଲେ ସେ "କୁମାର ଏ ଯେବେ କରିବି ଏହାକୁ, ପ୍ରେମତରୀ କର୍ଣ୍ଣଧାର/କୁମାର ନୋହିଲେ ଲେଖାଅଛି ମୋର ଲଲାଟେ ଚିର କୌମାର ।"

ବିମଳାର ନିଦ୍ରା ତୁଟିବାରୁ ସେ ଆଖି ଖୋଲି ଚାହିଁଲା । ଚାରିଚକ୍ଷୁର ମିଳନ ଘଟିଲା । ପରେ ବିମଳା ନିଜର ପରିଚୟ ଦେବାରୁ ସେ ନାରୀ ଥିବାର ଜାଣି ପାରିଲେ । ପୂର୍ବ ପୁଂସଭ୍ରମ ତୁଟିବାରୁ ଲଳିତାର ମର୍ମ ଦହିଦେଲା । ବିଦ୍ଧସ୍ମର-ଶର ଆସିଲା ବାହାରି, ମାତ୍ର ଫଳା ଗଲା ରହି ।" ସ୍ତୋକ ପରିଚୟେ ବେନି ହୋଇ ଗଲେ ବେନିଙ୍କର ପ୍ରେମଦାସୀ । ପୁଣି ଲଳିତାର ଅନୁରୋଧରେ ବିମଳା ତାର ପୁରୁଷବେଶ ତ୍ୟାଗ କରି ନାରୀ ବେଶରେ ତାଙ୍କ ସଙ୍ଗେ ରାଜନବରକୁ ବିଜେ ହେଲେ ।

କପାଳେଶ ଦୁର୍ଗରେ ବିମଳା କିଛିକାଳ ଅବସ୍ଥାନ କଲେ । ପାଟ ମହାଦେଈ ତାଙ୍କୁ ଆଦର ସମ୍ମାନ କଲେ, ପ୍ରେମାଦରରେ ରାଜଜେମା ଲଳିତା ବିମଳାଙ୍କୁ ନିଜ ଗମ୍ଭୀରୀକି ଘେନିଗଲେ । ଏକତ୍ରେ ଅଶନ ଆଦି ନୀତି ସାରି ଶୋଇଲେ । ଏକ ପର୍ଯ୍ୟଙ୍କେ ଏବଂ "ପ୍ରେମ ଯୋଗୁଁ ଯେଣୁଁ ହୋଇଥିଲା ବେନି ବେନି ଦେହେ ଏକ ଦେହୀ ।" ଲଳିତା ମନରୁ ପୁଂସ ଚିତ୍ର ଭ୍ରମ ଦୂର ହୋଇଥିଲେ ସୁଦ୍ଧା ଅନୁରାଗ ଦୂର ହୋଇ ନାହିଁ । ତେଣୁ "ବିମଳାକୁ ଜେମା ସଂକଳ୍ପେ ପୁରୁଷ ଗଢ଼ିନେଇ ସେହିପରି/ ଲଳିତ ସମ୍ଭୋଗ ରୀତିମାନ ମନେ ଆଚରିଲା ଅମ୍ଭୋଦରୀ । ସ୍ୱପ୍ନରେ ଚିତ୍ର ପୁରୁଷ ସହ ସମ୍ଭୋଗ ରଚନାର ସ୍ୱପ୍ନ ଦେଖି ସ୍ୱପ୍ନାନ୍ତେ ଦୁଃଖିତ ହେଉଥିଲା । "ଜାଗରଣ ଆସି ନିମିଷେ ସେ ସୁଖ ଦେଉଣ ଥିଲା ସଂହାରି ।" ପ୍ରେମୋଦ୍‌ଗମ ଓ ବିରହର ଯାବତୀୟ ଲକ୍ଷଣ ତାଙ୍କଠାରେ ପ୍ରକାଶ ପାଇଲା । ଲଳିତା ବାଛିଲା, "ସୁଖ ଦେଇ ବିଧି ସାଧିଲା କିପାଁ ଏ ବାଦ ? ଅନୁଭବ କଲା ସତେ ଅବା ସୁଖର ଶଇଳ ଶୃଙ୍ଗୁ

ପେଲିଦେଲା ଗଭୀର-ଦୁଃଖ-ଗହ୍ୱରେ ?'' କିଛିଦିନ ପରେ ବିମଳା ଦୁର୍ଗତ୍ୟାଗ କରି ବିରଜା କ୍ଷେତ୍ରକୁ ଫେରିଗଲେ । ଯାତ୍ରା କାଳରେ ମହାଦରେ ଢେମା ତାକୁ ମହାର୍ଘ ଶାଢ଼ୀ ପିନ୍ଧାଇ ନିଜ କଣ୍ଠରତ୍ନ କଣ୍ଠୀ ତା ବେକରେ ଲମ୍ବାଇ ଦେଇଥିଲେ ।

ମାଗଧସୁନ୍ଦରୀ ତିନିଦିନ କାଳ ବନପଥରେ ଭ୍ରମି ଭ୍ରମି ସୋଦର ସହିତ ନିଜ କୁଟୀରରେ ପ୍ରବେଶ ହେଲେ । ଉତ୍କଳେଶ ଢେମା ସଙ୍ଗରେ ତାଙ୍କର ଭେଟ ନବରଗମନ ପ୍ରଭୃତି ଯଯାତିଙ୍କୁ ଜଣାଇଲେ ଏବଂ ଆଣିଥିବା ଉପହାର, ବସ୍ତ୍ର ଆଭରଣମାନ ଦେଖାଇଲେ । ବିମଳାର କଥା ଓ ଅଙ୍ଗଭଙ୍ଗୀରୁ ଯଯାତି ଜାଣିପାରିଲେ ଯେ ଉତ୍କଳଢେମା ଲଳିତା ବିମଳାର ପ୍ରେମରେ ମୁଗ୍ଧା । ଯଯାତି ମନରେ ଲଳିତା ପ୍ରାପ୍ତି ଇଚ୍ଛା ଅଧିକ ହେଲା ଏବଂ ଉପହାର ବସନାଦି ତାଙ୍କ ମନରେ ଆଶା ସଞ୍ଚାର କଲା । ଲଳିତାକୁ ନେଇ ନାନା ଚିନ୍ତା ଖେଳିଗଲା । ତାଙ୍କୁ ପାଇବା ପାଇଁ ସଂକଳ୍ପ କଲେ ଓ ଗୁପ୍ତ ବେଶରେ ଢେମାଙ୍କୁ ରାଜନବରରେ ଭେଟିବାକୁ ସ୍ଥିର କଲେ । ''ମଲେ ପଛେ ମୁହିଁ ମରିବି, ଏ କାର୍ଯ୍ୟେ ପ୍ରାଣକୁ କରିବି ହୁଡ଼/ଚନ୍ଦ୍ରଲୋକୁଁ ସୁଧା ହରଣେ କୁଳିଶେ ଡରି କି ଥିଲେ ଗରୁଡ଼ ?''

ବିମଳାଠାରୁ ଉପହାର ଓ ଅଙ୍ଗବସ୍ତ୍ର ନେଇ ଯଯାତି ଦେବୀ ବିରଜାଙ୍କୁ ସାଷ୍ଟାଙ୍ଗ ପ୍ରଣତି କରି କପାଳେଶ ଦୁର୍ଗ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ପଥ ମଧ୍ୟରେ ନାରୀବେଶ ପରିଧାନ କରି ପ୍ରଦୋଷ ସମୟରେ ସେ ଦୁର୍ଗ ଦ୍ୱାର ନିକଟରେ ଉପସ୍ଥିତ ହେଲେ । ''ଢେମା ସଖୀ ମଣି ବାଟ ଛାଡ଼ିଦେଲେ ଅନ୍ତଃପୁର ପ୍ରତିହାରୀ ।'' ଲଳିତା ବାମାରୂପୀ ନୃପ କୁମାର ଯଯାତିକୁ ସ୍ୱାଗତ କଲେ । ପୂର୍ବପରି ରାତ୍ରିରେ ଯଯାତିଙ୍କ ସହ ଭୋଜନ ଓ ଏକ ପଲଙ୍କରେ ଶୟନ କଲେ । ପ୍ରେମାତୁରା ଲଳିତା ଆଗରେ ଯଯାତି ମିଥ୍ୟା ଚରିତ ଅବତାରଣା କରି ନିଜେ ବିମଳାଥିବା ଏବଂ ଉଦୟଗିରି ଆଶ୍ରମରେ ଅଧ୍ୟାପଡ଼ି ତପସ୍ୱୀଙ୍କ ବରପ୍ରଦାନରୁ ପୁଂସଅଙ୍ଗ ଲାଭ କରିବା ପ୍ରକାଶ କଲେ । ପ୍ରେମବିହ୍ୱଳା ଲଳିତାକୁ କହିଲେ—

''ତୋହରି କିଙ୍କର ହେବା ଆଶାରେ ମୁଁ ଆଶ୍ରିଲି ପୁଂସ ବିଗ୍ରହ
ପୁଂସ ହେଲି ବୋଲି ମାଗୁଛି ପୟରେ ଉଣା ନୋହୁ ଅନୁଗ୍ରହ ।''

ପରେ ପରେ ସେହି ଭାବ ବିହ୍ୱଳା ପ୍ରେମୋନ୍ମାଦିନୀ ଲଳିତାକୁ ସ୍ୱରୂପ ଦେଖାଇଲାବେଳେ ''ବିସ୍ମୟ ହରଷ ଏକପରେ ଏକ ରାଜସୁତା ହୃଦେ ଆସି/କଲେ ପ୍ରଭୁପଣେ, ଅବଶେଷେ ତାକୁ ଲଜ୍ଜା ପକାଇଲା ଗ୍ରାସି ।'' ଏକ ପକ୍ଷରେ ପ୍ରେମ ଓ ଅପର ପକ୍ଷରେ ଲଜ୍ଜା- ଦୁହିଁଙ୍କର ସଂଘର୍ଷରେ ଲଜ୍ଜା ପଳାଇଗଲା । ପ୍ରେମର ଜୟ ହେଲା । ସ୍ୱରୂପ, ଯୌବନ ଓ ପ୍ରେମ ବିବେକର ବୈରୀ ହୋଇଥିଲେ ସୁଦ୍ଧା ବିବେକାନୁରୋଧରେ ଉଭୟେ ଗାନ୍ଧର୍ବ ବିବାହ କରି ଦାମ୍ପତ୍ୟ କ୍ରୀଡ଼ା କଲେ ।

ଏହିରୂପେ ରସିକ ରସିକା ପରସ୍ପରେ ମିଳି ସଂଗୋପନରେ ଚୋରା ସୁଖରେ ରତି ହୋଇ ଆନନ୍ଦିତ ମନରେ ଦିନ କଟାଇଲେ । ମହାଶଙ୍କାରେ ଉଭୟଙ୍କ ଚିତ୍ତ ଆନ୍ଦୋଳିତ ହେଉଥାଏ । କିଛି ଦିନ ପରେ ସଖୀଗହଣରେ ସେହି ଗୁପ୍ତ ଚରିତ ପ୍ରକଟିତ ହେଲା । ରାଜା ଏ ସମ୍ବାଦ ଶୁଣି ସ୍ଥବିର କଞ୍ଚୁକୀ ଦ୍ୱାରା ଅନୁସନ୍ଧାନ କରି ତାହା ସତ୍ୟ ବୋଲି ବୁଝିନେଲେ । ସଭାରେ ବିଚାର ହୋଇ ଯଯାତିକୁ ପ୍ରାଣଦଣ୍ଡ ଆଜ୍ଞା ହେଲା । ମାତ୍ର ଯଯାତି ବୀର ହୋଇ ଥିବାରୁ କରପତ୍ର ଯୋଡ଼ି ରାଜା ସମ୍ମୁଖରେ ପ୍ରକାଶ କଲେ—

''ଭୋଦେବ, କ୍ଷତ୍ରିର କୁଳେ ଜାତ ମୁହିଁ ସଦାକ୍ଷତ୍ର ଧର୍ମାଚାରୀ
କ୍ଷତ୍ରିୟ ମରଣ ଆଜ୍ଞା ହେଉ ମତେ ଏତିକି ପାଦେ ଗୁହାରି ।''

ଯଯାତିଙ୍କ ପ୍ରାର୍ଥନା ଅନୁସାରେ ରାଜଅସ୍ତ୍ରାଗାରୁ ଆୟୁଧ,ବର୍ମ ଓ ବାହନ ଦେବା ବ୍ୟବସ୍ଥା ହେଲା । ରାଜ ବାହିନୀରୁ ସପ୍ତବୀର ତାଙ୍କ ସହ ଯୁଦ୍ଧ କରି ନିହତ କରିବା ସ୍ଥିର ହେଲା, ମାତ୍ର ''ସଭାଜନ ନେତ୍ରୁ ନୀରବେ ଏକାଳେ ଝରୁଥିଲା ଅଶ୍ରୁଧାର ।''

ସେହିଦିନ ନିଶା ଶେଷଯାମେ ରାଜା ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ଦେବୀ ବିରଜା ଏକ କରାଳ ରୂପ କେଶରୀ ପୃଷ୍ଠରେ ବସି ରାଜାଙ୍କୁ ପ୍ରକୃତ ପରିଚୟ ଦେଲେ ଓ କହିଲେ 'ବୈତରଣୀ ତୀରେ ମୋର ଅଧିଷ୍ଠାନ । ବିରଜା ଦେବୀ ମୁଁ ଆସିଲି ବାଳୁତ ମନାସି ତୋର କଲ୍ୟାଣ । ଯଯାତି ମୋର ଭକ୍ତ । ଏହି ଯୁବା ମଗଧ ରାଜକୁମାର । ସେ ତୁମ କନ୍ୟାର ଯୋଗ୍ୟବର । ତାଙ୍କୁ ହତ୍ୟା କରିବାର ଅଧର୍ମ ଆଦେଶ ନ ଦେଇ ବରଂ ତାଙ୍କ ସହ ଜେମାଙ୍କୁ ବିବାହ କର । ପରଦିନ ରଣ ଆରମ୍ଭ ପୂର୍ବରୁ ସପ୍ତବୀର ସମସ୍ତେ ଏକ ପ୍ରକାର ସ୍ୱପ୍ନ ଦେଖିଥିବା କଥା ରାଜାଙ୍କ ସମ୍ମୁଖରେ ପ୍ରକାଶ କଲେ । ଯଯାତି ବିରଜାଙ୍କର ଭକ୍ତ ଓ ଦେବୀ ତାଙ୍କର ଭକ୍ତଙ୍କୁ ରକ୍ଷା କରୁଥିବା ସମସ୍ତଙ୍କର ଧାରଣା ହେଲା । ସ୍ୱପ୍ନରେ ଦେବୀ ବିରଜା ରାଜାଙ୍କୁ ଯଯାତି ସମ୍ପର୍କରେ କହିଥିଲେ—ଅଖିଳ ଉତ୍କଳରେ ଯଯାତି ଅନଶ୍ୱର କୀର୍ତ୍ତିରାଜି ସ୍ଥାପନ କରିବେ । ବୈତରଣୀ ତଟରେ· ଅଧିଷ୍ଠାନ ବନରେ ଦିବ୍ୟନବର ରଚିବେ, ଯୁଗେ ଯୁଗେ ଏହି ଯଯାତିର ଯଶ ଉତ୍କଳୀୟ ଗାଇବେ, ପୁଣି ଚକ୍ରବର୍ତ୍ତୀ ହୋଇ ଯଯାତି ବଂଶ ଏହି କ୍ଷିତି ମଣ୍ଡିବ । ନାନା ଦେବଦେବୀ ଅଧିଷ୍ଠାନରେ ଉତ୍କଳ ମର୍ତ୍ତ୍ୟ ତ୍ରିଦିବ ହେବ । ଏପରିକି ନିଜେ ଦେବୀ ଯଯାତି ଲଳିତାଙ୍କ ବିବାହରେ ଶକୁନ ହେବେ ବୋଲି ଆଜ୍ଞା ଦେଇଥିବା କଥା ଶୁଣି ଉପସ୍ଥିତ ସମସ୍ତେ ଆନନ୍ଦିତ ହେଲେ ।

ରାଜା ହିରଣ୍ୟବର୍ମ ନିଜ କନ୍ୟା ଲଳିତାକୁ ଯଯାତି ହସ୍ତରେ ଅର୍ପଣକରି ଯୌତୁକ ସ୍ୱରୂପ ନିଜର ସମସ୍ତ ରାଜସମ୍ପଦ ଦାନକରି ବାନପ୍ରସ୍ଥ ଧର୍ମ ଆଶ୍ରୟକଲେ । ବନ୍ଦୀମାନେ ଯଯାତିଙ୍କ ସ୍ତୁତି ସଂଗୀତ ଗାନ କଲେ । ଏହି ସମୟରେ ହଠାତ୍ ପୂର୍ବ

ଦିଗରେ ନବୋଦିତ ରବି ଉପରେ ଇନ୍ଦ୍ରଧନୁର ପରିବେଶ ଦେଖାଗଲା । ସୂର୍ଯ୍ୟ ମଣ୍ଡଳ ଭିତରେ ସେହି ପରିବେଶରେ ସ୍ୱର୍ଣ୍ଣ-ବର୍ଣ୍ଣ କେଶରୀର ଆବିର୍ଭାବ ହେଲା, ଚତୁର୍ଦ୍ଦିଗ ସ୍ୱର୍ଣ୍ଣ ଆସ୍ତରଣ ପରି ଦେଖାଗଲା । ପୁଣି ସ୍ୱର୍ଗରୁ ସୁବର୍ଣ୍ଣ ଦିନ ଆସି ମର୍ତ୍ତ୍ୟ ଦିନରେ ମିଶିଯିବା ପରି ଜଣାଗଲା । କେଶରୀ ପୃଷ୍ଠରୁ ରଂଗ ସ୍ଫୁରିଲା ଏବଂ ରଙ୍ଗ ଜ୍ୟୋତିଃ ପଦ୍ମାସନ ଉପରେ ଆଭାପୁଞ୍ଜ ଦେଖାଗଲା । ପ୍ରଭାର ଝଲକ ବରବଧୂଙ୍କ ଶିର ଉପରେ ଉଡ଼ି ଶୁଭର ଓ ଦେବୀ ବାହନ କେଶରୀ ଦେବୀଙ୍କର ପ୍ରସାରର ସୂଚନା ଦେଲା । ଉପସ୍ଥିତ ଜନତା ଆନନ୍ଦରେ 'ଜୟ ଜୟ ସିଂହବାହିନୀ ବିରଜେ' ଓ ଯଯାତିକେଶରୀ' 'ଯଯାତି କେଶରୀ' ବୋଲି ସଘନେ ଉଚ୍ଚ ଧ୍ୱନି କଲେ ।

ରାଜା ଯଯାତି ଯଥା ସମୟରେ ଭଗ୍ନୀ ବିମଳାକୁ ଯୋଗ୍ୟ ରାଜପୁତ୍ର ହସ୍ତରେ ଅର୍ପଣ କଲେ । ବୈତରଣୀ ତୀରରେ ସୁରମ୍ୟ ପ୍ରାସାଦ ନିର୍ମାଣ ''କରି ପାଳିଲେ ସୁଖେ ଉତ୍କଳ'' ।

ରୀତିଯୁଗୀୟ ପ୍ରକୃତି ବର୍ଣ୍ଣନା ଥିଲା ଗତାନୁଗତିକ, ମେକାନିକାଲ, କେବଳ ବାହ୍ୟ ପ୍ରକୃତିର କମନୀୟ ରୂପ ବର୍ଣ୍ଣନା ହିଁ ଓଡ଼ିଆ ସାହିତ୍ୟକୁ ବିମଣ୍ଡିତ କରିଥିଲା । ରାଧାନାଥ ରାୟ ପ୍ରକୃତରେ ଥିଲେ ପ୍ରକୃତି-ପୁରୋଧା । ରୂପାନ୍ୱେଷୀ କବି । ତାଙ୍କ କାବ୍ୟ କବିତା ଚାରୁହାସିନୀ ରୁଦ୍ରମୂର୍ତ୍ତିଧାରିଣୀ ପ୍ରକୃତିର ଅପରୂପ ଲାବଣ୍ୟରେ ହେଲା ବିଳସିତ । ସେ ପ୍ରକୃତି ବର୍ଣ୍ଣନାରେ ଆଣିଦେଲେ ଅଭିନବ ରୂପ ସମ୍ଭାର । ତାଙ୍କ ପ୍ରକୃତି ଜଡ଼ ବା ନିର୍ବାକ ନୁହେଁ ବରଂ ସମ୍ବେଦନଶୀଳ, ମାନବିକ ଗୁଣରେ ବିଭୂଷିତ । ବାହ୍ୟ ପ୍ରକୃତି ଓ ଅନ୍ତଃପ୍ରକୃତିର ସମନ୍ୱିତ ରୂପାୟନରେ ରାଧାନାଥଙ୍କ କାବ୍ୟ କବିତା ହେଲା ପ୍ରାଣବନ୍ତ ।

କବିଙ୍କର 'ଚିଲିକା' ଓ 'ମହେନ୍ଦ୍ରଗିରି' ଦୁଇଟି ପ୍ରକୃତିମୂଳକ କାବ୍ୟ ହୋଇଥିଲେ ହେଁ ସମଗ୍ର ରାଧାନାଥୀ କାବ୍ୟ ସାହିତ୍ୟରେ ପ୍ରକୃତିର ବର୍ଣ୍ଣବିଭା ବିଚ୍ଛୁରିତ ହୋଇଛି । ଓଡ଼ିଶାର ପ୍ରକୃତିର ଯେ ପ୍ରାଣ ଅଛି, ତା'ର ଯେ ବିଶାଳତା ଅଛି, ତାକୁ ହୃଦୟଙ୍ଗମ କରି ରାଧାନାଥ ନିଜର ସୃଷ୍ଟିରାଜିରେ ପ୍ରାଣ ପ୍ରତିଷ୍ଠା କଲେ । ନିଜର ଅନୁଭବ ମାଧ୍ୟମରେ ପ୍ରକୃତିର ବର୍ଣ୍ଣୋତ୍ସବ, ଋତୁଚିତ୍ର, ସନ୍ଧ୍ୟା, ପ୍ରଭାତ, ସରୋବର ବର୍ଣ୍ଣନା କିମ୍ବା ଅରଣ୍ୟ ବର୍ଣ୍ଣନା ଆଦିକୁ ପ୍ରକଟିତ କରିବା ସହିତ ଏହି ପ୍ରକୃତି ମାଧ୍ୟମରେ ଐଶୀରିକ ସତ୍ତାର ସନ୍ଧାନ କଲେ । ପୁଣି ଅବା କେଉଁଠି ଏହି ପ୍ରକୃତି ମଧ୍ୟଦେଇ ଅତୀତ ଇତିହାସକୁ ରଙ୍ଗାୟିତ କଲେ ନିଜର କଳ୍ପନାର ପୁଟରେ ।

ରାଧାନାଥଙ୍କ 'ଯଯାତି କେଶରୀ' ସେହି ପ୍ରକୃତି ଚିତ୍ରଣରୁ ବାଦ ପଡ଼ିନାହିଁ । ଯଦିଓ ରାଧାନାଥ ପ୍ରତିଭାର ଏକ ଅବରୋହ ପର୍ବରେ ଏହି କାବ୍ୟଟି ସୃଷ୍ଟି, ତଥାପି ପ୍ରକୃତିର ଜୀବନ୍ତ ରୂପଛବି ପ୍ରକାଶିତ ହୋଇଛି । ଏହି ପ୍ରକୃତି ନାୟକ ନାୟିକାଙ୍କର

ଶୃଙ୍ଗାରଭାବକୁ ତ୍ୱରାନ୍ୱିତ କରିବାଠାରୁ ଆରମ୍ଭ କରି ଜୀବନର ସାମସଙ୍ଗୀତ ଗାନ କରିଛି । ରାଧାନାଥ ଥିଲେ ଭବଭୂତିଙ୍କର ଶିଷ୍ୟ, ଜୟଦେବଙ୍କର ନୁହେଁ । ଭବଭୂତିଙ୍କର ପ୍ରକୃତିଚର୍ଯ୍ୟାରେ ଗିରି, ବନ, ନଦୀ ଓ ସରୋବର ଇତ୍ୟାଦିର ବହିରଙ୍ଗ ବର୍ଣ୍ଣନା ପରି ଯଯାତି କେଶରୀରେ ସେହି ପ୍ରକୃତି ଚିତ୍ରଣର ଭୌଗୋଳିକ ସ୍ଥିତି ଅବସ୍ଥିତିର ବିପୁଳ ବର୍ଣ୍ଣନା ଦେଖାଯାଏ । ଏହି ପ୍ରକୃତି କେତେବେଳେ ନାୟକ ନାୟିକାର ପ୍ରଣୟ ବ୍ୟାପାରରେ ମଧ୍ୟସ୍ଥତା କରିଛି ତ ପୁଣି କେତେବେଳେ ବିରହାବସ୍ଥାରେ ସମବେଦନା ଜ୍ଞାପନ କରିଛି ।

କାବ୍ୟର ପ୍ରଥମ ସର୍ଗରେ ବିରଜା କ୍ଷେତ୍ରସ୍ଥ ବନ ପ୍ରଦେଶରେ ଯେଉଁ ପ୍ରକୃତି ବର୍ଣ୍ଣନା ତାହା ଯେପରି ମନୋମୁଗ୍ଧକର, ସେହିପରି ବାସ୍ତବ ମନେହୁଏ ।

"ଏବେ ଯା ନଗରୀ ଥିଲା ଆଗେ ତାହା ମହାନିକାଞ୍ଚନ ସ୍ଥଳ,
ବିହଙ୍ଗ ସଙ୍ଗୀତେ ପୂର୍ଣ୍ଣ, ନାନା ଜାତି ତରୁ ଲତାରେ ଗହଳ
କଷ୍ଟ ଫେଡ଼ଃ-କଣ୍ଠ-ତାନପୁରା ତହିଁ ବାଜୁଥାଇ ଦିନଯାକ
ଦିନେ ଅନ୍ତ ପୁଣି ଧରୁଥିଲେ ତାନ ଚକ୍ରବାକୀ ଚକ୍ରବାକ ।
ଭଦଭଦଳିଆ ମାଳେ ମାଳେ ନଭେ ପ୍ରକାଶି ବିଚିତ୍ର ତନୁ
ରଚିଥିଲେ ରଙ୍ଗ ନବ ଜୀମୂତର ମୁହୂର୍ତ୍ତ ମଣ୍ଡନ ଧନୁ ।"

ଏହି ବନପ୍ରଦେଶର ବର୍ଣ୍ଣନା ମଧ୍ୟରେ କବି ବନସ୍ଥ ସରୋବରର ଚିତ୍ର ପ୍ରଦାନ କରିବାରେ କୁଣ୍ଠାପ୍ରକାଶ କରିନାହାନ୍ତି । ନିଜର କଳ୍ପନା ତଥା ଅଭିଜ୍ଞତାର ପୁଟରେ ସେ କାବ୍ୟର ଦ୍ୱିତୀୟ ସର୍ଗରେ ସରୋବର ବର୍ଣ୍ଣନାକୁ ଅତ୍ୟନ୍ତ ଜୀବନ୍ତ ଏବଂ ରମଣୀୟ କରିଛନ୍ତି—

"ସ୍ୱଚ୍ଛ ସୁଗଭୀର ଦୂରଆଭାସଇ ନଭ ପ୍ରାୟେ ନୀଳିମାରେ
ଝଙ୍କାରିତ ଉର୍ଦ୍ଧ୍ୱେ ଆକାଶେ ଉଡ୍‌ଡ଼ୀନ ମରାଳିକୁଳ ଝଙ୍କାରେ
ନୀର ଦେଖି ପ୍ରତେ ଆସେ କି ପୁଞ୍ଜିତ ତ୍ରିଭୁବନ ପୁଣ୍ୟରାଶି
ସ୍ୱବିଭବ ଅବା ନିଭୃତେ ଥୋଇଛି ଶରତର ପୌର୍ଣ୍ଣମାସୀ ?

x x x x x

ନୀରବସନର ଧଡ଼ି ପ୍ରାୟେ ଫୁଟି ରହିଛି ରମ୍ୟ କମଳ
ତୀରଭୂମି ସଦା ହରିତ, ଚାହିଁଲେ ଲୋଚନ ହୁଏ ଶୀତଳ ।"

ପ୍ରକୃତିର ନିସର୍ଗ ଚିତ୍ର ପ୍ରଦାନରେ କବି ରାଧାନାଥ ନିଜର ରୋମାଣ୍ଟିକ ଭାବଚେତନାର ପ୍ରକାଶ କରିଛନ୍ତି । ପ୍ରାୟ ପ୍ରତ୍ୟେକ କାବ୍ୟରେ ସନ୍ଧ୍ୟା, ପ୍ରଭାତ, ପକ୍ଷୀ, ଫୁଲ, ବିଭିନ୍ନ ରଙ୍ଗ, ଜ୍ୟୋତ୍ସ୍ନା, ନଦୀ, ପର୍ବତ ଓ ନଦୀ ସୈକତର ଚିତ୍ର ପ୍ରକଟିତ ହୋଇଛି । 'ଯଯାତି କେଶରୀ'ରେ ସେହି ଜ୍ୟୋତ୍ସ୍ନା ସୈକତ ରାତ୍ରିର ନିସର୍ଗ ଶୋଭା ବର୍ଣ୍ଣନା ରହିଛି । ଚନ୍ଦ୍ରାଲୋକ ଧୌତ ଧରିତ୍ରୀ, ଚନ୍ଦ୍ରିକା ସ୍ନାତ ସୈକତ, ଝିଲ୍ଲୀ

ମୁଖରିତ ନିର୍ଜନ ରଜନୀର ଛାୟାଲୋକମଣ୍ଡିତ ଗମ୍ଭୀର ରହସ୍ୟମୟୀ ରାତ୍ରିର ଚିତ୍ର ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଛି । କାବ୍ୟର ତୃତୀୟ ସର୍ଗରେ ଜେମା ଲଳିତାର ବିରହ ଯନ୍ତ୍ରଣାକୁ ବହୁଗୁଣିତ କରିଛି ପ୍ରକୃତି । ଯାହା ଜନ ନେତ୍ରରେ ଆମୋଦ ଦାୟକ, ତାହା ନାୟିକା ପ୍ରାଣରେ ବ୍ୟଥା ସୃଷ୍ଟି କରିଛି । "ଚନ୍ଦ୍ରାଲୋକେ ଧୌତ ଧରିତ୍ରୀ ଗଗନ", "ତରୁତଳେ ଅନ୍ଧକାରେ ହୋଇଥିଲା ଜ୍ୟୋତ୍ସ୍ନା ତିଳତଣ୍ଡୁଳିତ", "ବିରୂପା ମିଶାଇ ନିଜ କଳନାଦି ସୁଗମ୍ଭୀର ଝିଲ୍ଲୀ ନାଦେ" ଦିଶୁଥିଲା । ଦୂରେ ଦିଗନ୍ତ ବିସ୍ତାରୀ ଚନ୍ଦ୍ରିକା ସ୍ନାତ ସୈକତ, ମାନିନୀ, ଚକୋରୀ-ମାନ ଫେଡୁଥିଲା ଚନ୍ଦ୍ରିକା ପୀୟୁଷପାୟୀ ଇତ୍ୟାଦିର ପ୍ରକାଶ ମଧ୍ୟରେ ପ୍ରକୃତିର ଜୀବନ୍ତ ଚିତ୍ର ଯେପରି ପ୍ରକାଶ ପାଇଛି, ସେହିପରି ମଧ୍ୟ ପ୍ରକାଶ ପାଇଛି କବିଙ୍କର ପ୍ରକୃତି ବର୍ଣ୍ଣନାର ପାଟବତା । ରାଧାନାଥଙ୍କ ପ୍ରକୃତି କେଉଁଠି ଆଲମ୍ବନ ବିଭାବ ତ କେଉଁଠି ଉଦ୍ଦୀପନ ବିଭାବ ରୂପେ ନାୟକ ନାୟିକାଠାରେ ଦେଖାଯାଇଛି ।

ଯଯାତିକେଶରୀ ରଚନା କରିବା ପୂର୍ବରୁ କବି ଚିଲିକା, ପାର୍ବତୀ, ଉଷା, ମହାଯାତ୍ରା, ପରି ମୂଲ୍ୟବାନ ପ୍ରକୃତି ସମ୍ପଦରେ ଭରା କାବ୍ୟ ମହାକାବ୍ୟ ସୃଷ୍ଟି କରି ସାରିଥିଲେ, ଯେଉଁଠି ପ୍ରକୃତିର ଏକ ନବ ମୂଲ୍ୟାୟନ କରାଯାଇଥିଲା । ମାତ୍ର ଉକ୍ତ କାବ୍ୟରେ ପ୍ରକୃତି ବର୍ଣ୍ଣନା ଏକ ସ୍ୱତନ୍ତ୍ର ସ୍ୱାଦର । ରୀତିଯୁଗୀୟ ପ୍ରକୃତି ବର୍ଣ୍ଣନା ପରି ଏଥିରେ ପ୍ରକୃତି ବର୍ଣ୍ଣନା କ୍ଷେତ୍ରରେ କୋମଳ ପଦାବଳୀ, ଉପମା, ଉତ୍ପ୍ରେକ୍ଷା ଓ ଗଭୀର କଳ୍ପନାର ସମ୍ୟକ୍ ବ୍ୟବହାର କରି ତାହାକୁ ଅତ୍ୟନ୍ତ କବିତ୍ୱପୂର୍ଣ୍ଣ ଓ ରମଣୀୟ କରି ପାରିଛନ୍ତି । ରୀତିଯୁଗୀୟ କବିଗଣ ସେମାନଙ୍କର କାବ୍ୟରାଜିରେ ପ୍ରାତ-ପ୍ରଦେଶର ବର୍ଣ୍ଣନା ମଧ୍ୟରେ ଯେଉଁ ପାଟବତା ପ୍ରଦର୍ଶନ କରିଥିଲେ, ଯଯାତିକେଶରୀରେ ରାଧାନାଥଙ୍କ ସନ୍ଧ୍ୟା ମଧ୍ୟ ଯେତିକି ଜୀବନ୍ତ, ସେତିକି ପ୍ରାଣସ୍ପର୍ଶୀ—

"ଅସ୍ତ ଯାଉଥିଲେ କପିଳାସ ଶୃଙ୍ଗେ
ଏକାଳେ ଦେବ ତପନ
ବିଶ୍ୱରାଜ ତେଜ- ଭଣ୍ଡାର-ମେକାପ
ପଦ୍ମିନୀ-ମୁଦ-କରଣ
x x x x x x x
ଚଉଦିଗେ ସ୍ୱର୍ଣ୍ଣ- ବର୍ଣ୍ଣେ ବୋଳିଥିଲା
ଅସ୍ତଗାମୀ ସୂର୍ଯ୍ୟାଂଶୁକ
ଜୀବନ, କେଦାର ଟଙ୍କ, ନଦୀ ସ୍ରୋତେ
ଶବଳ, ମେଦିନୀ-ମୁଖ ।"

(ଯଯାତି କେଶରୀ, ୪ର୍ଥ ସର୍ଗ)

ରାଧାନାଥ ରାୟ ଆଧୁନିକ ଯୁଗର କବି କୁଳଗୁରୁ । ତାଙ୍କର ଶୃଙ୍ଗାର ରସପ୍ରଧାନ ଯଯାତିକେଶରୀ କାବ୍ୟ ସୃଷ୍ଟି ପୂର୍ବରୁ ନନ୍ଦିକେଶରୀ, ଉଷା ଓ ପାର୍ବତୀ ଆଦି ରଚିତ ହୋଇ ବେଶ୍ ଆଦରଣୀୟ ହୋଇ ପାରିଥିଲା । ପରବର୍ତ୍ତୀ କାଳରେ 'ମହାଯାତ୍ରା' ପାଲଟିଛି ରାଧାନାଥୀ ପ୍ରତିଭାର ଜୈତ୍ରଯାତ୍ରା । ମହାଯାତ୍ରା ପରି ମହାକାବ୍ୟର ସୃଷ୍ଟି ପରେ ହାସ୍ୟ ଲଘୁଧର୍ମୀ କାବ୍ୟ 'ଯଯାତିକେଶରୀ' ସୃଷ୍ଟି କରିବା କବିଙ୍କ ପ୍ରତିଭାର ବିପର୍ଯ୍ୟୟ ବୋଲି କୁହା ନ ଯାଇ କଣ କୁହାଯାଇପାରେ ? ତଥାପି ପ୍ରତିଭାର ଲୁପ୍ତ ଘଟିନାହିଁ । ବିଷୟ ବସ୍ତୁର ନିର୍ବାଚନଠାରୁ ଚରିତ୍ରଚିତ୍ରଣ, କଳ୍ପନା, ସ୍ୱପ୍ନାଦେଶ, ନାୟକ ନାୟିକାଙ୍କର ଅନୁରାଗ-ବିରାଗ ସହିତ ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା, ନାୟକର ବୀରତ୍ୱ ବର୍ଣ୍ଣନା, ଦୈବୀ ଆଦେଶ ଐତିହାସିକ ତଥ୍ୟ ପ୍ରଦାନ ଓ କିମ୍ବଦନ୍ତୀର ବର୍ଣ୍ଣନା ମଧ୍ୟରେ କବିଙ୍କ ସ୍ୱପ୍ରତିଭାର ପରିଚୟ ମିଳେ ।

ନାରୀର ବେଶ ବର୍ଣ୍ଣନାରେ କବିଙ୍କର ବର୍ଣ୍ଣନାଶୈଳୀର ଚମତ୍କାରିତା ପ୍ରକାଶ ପାଇଛି । ଉତ୍କଳେଶ ରାଜଜେମା ଲଳିତାର ବେଶ ବର୍ଣ୍ଣନା ଯେପରି ଆକର୍ଷଣୀୟ, ସେହିପରି ମୌଳିକ । ଜଗତ ଉପରେ ବସି ଜଗତମୋହିନୀ ନିଜର ବେଶ ବିନ୍ୟାସରେ ବ୍ୟସ୍ତ । କରଯୁଗଳରେ ଚୁଡ଼ି, ବାହୁରେ ବାଜୁବନ୍ଧ, ଗ୍ରୀବାରେ ଗ୍ରୈବେୟକ, ତଡ଼ିତ୍‌ଲତାରେ ଫୁଲ ଫୁଟିବାର ପ୍ରମାଦ ସୃଷ୍ଟି କରୁଛି । ବାଳାର ଅଙ୍ଗ ଯଷ୍ଟି ସରଳ ସୁଢ଼ଳ ସୁଲଳିତ, ସତେ ଅବା ଅନଙ୍ଗୀ ଶିଳ୍ପୀର ଶାଣଯନ୍ତ୍ରରେ ସୁବଳିତ ହୋଇଛି —

''କରେ ଚୁଡ଼ିବାହୁ ଯୁଗେ ବାଜୁବନ୍ଧ ଗ୍ରୀବା ଦେଶେ ଗ୍ରୈବେୟକ
ଗୌରବ ଗଣ୍ଡ ଚୁମ୍ବି ହୀରା ଅବତଂସ କରୁଥିଲା ଜକଜକ
x x x x x x x
ନିତମ୍ବିନୀ ଗୋଲ ପୃଥୁଳ ନିତମ୍ବେ ଶୁଭୁଥିଲା କାଞ୍ଚିଦାମ
ସ୍ଥାନ ଜାଣି ଅବା ନିହିଥିଲା ତହିଁ କାର୍ମୁକ ଶିଞ୍ଜନୀ କାମ ।''
(ଚତୁର୍ଥ ସର୍ଗ)

କେଶ ବିନ୍ୟାସର ବିଧାନ ପ୍ରାଚୀନ କବିମାନଙ୍କ ବର୍ଣ୍ଣନାଠାରୁ ଭିନ୍ନ ନୁହେଁ—

''ପଛେବସି ସଖୀ ଚାଳୁଥିଲା କେଶେ ଗଜଦନ୍ତ-କଂକତିକା
ମଞ୍ଜୁ ପାଦପଦ୍ମ ରଞ୍ଜୁଥିଲା ଅଗ୍ରେ ଲାକ୍ଷାରସେ ପ୍ରସାଧିକା ।''

ଅବନୀରମ୍ଭାର ଉଲଟ କନକରମ୍ଭାଚରଣର ପାହୁଡ଼କୁ ଦେଖି ରସିକ ଜନର ମନ ଈର୍ଷାରେ ଦହି ହୋଇଯାଉଛି । କମନୀୟ ଉରୁ ସତେ ଯେପରି ଶତ ମନୋରାଜ୍ୟ ହୃଦୟେ ମନୋଜ ମନୋରାଜ୍ୟ ଦୀକ୍ଷାଗୁରୁ ।'' କର ପଦ୍ମରେ ଯୁବା ମନୋରାଜ୍ୟ-ରୂପିଣୀ ରୂପସୀ ବିମଳ ହେମଦର୍ପଣ ଧରି କ୍ଷଣେ କ୍ଷଣେ ପୂର୍ଣ୍ଣଚନ୍ଦ୍ରାନନକୁ ଦେଖୁଥିଲା ।

ଯଯାତି ଲଳିତାଙ୍କ ଗୁପ୍ତ ପ୍ରଣୟ ଲୀଳାର ବର୍ଣ୍ଣନା ଅସ୍ୱାଭାବିକ ମନେ ହେଉଥିଲେ ହେଁ, ତାହା ଯଥେଷ୍ଟ ଉତ୍କଣ୍ଠା ସୃଷ୍ଟି କରିଛି । ବିନ୍ଦୁ ମଧରେ ସିନ୍ଧୁ ଦର୍ଶନ ପରି ରାଧାନାଥ ରାୟ ନିଜର ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି କ୍ଷୁଦ୍ର ପରିସରରେ । ଅଙ୍ଗକ୍ରୀଡ଼ା ତୁଳନାରେ ହୃଦୟକ୍ରୀଡ଼ାର ସ୍ଥାନ ନ୍ୟୂନ ନୁହେଁ , ଏହି ହୃଦୟହୃଦୟ ମିଳନକୁ କବି ଅତି ଚମତ୍କାର ଢଙ୍ଗରେ ବ୍ୟକ୍ତ କରିଛନ୍ତି —

"ଦିବାଯୋଗେ ଯୁବା-ଠାରୁ ମଞ୍ଜୁକେଶୀ ହେଉଥିଲେ ଅସଂଯୁତା
ନିଶାଯୋଗେ ବେନି ତନୁ ମଧ୍ୟେ ଗଳୁ ନଥିଲା ମୃଣାଳ ସୂତା
ହୃଦପରି ଦେହେ ମିଶାଇ ଦେବାକୁ ସୌଚିକ କୁସୁମ ଧନୁ
ସିଇଁ ଦେଉଥିଲା ସୂକ୍ଷ୍ମ ପୁଷ୍ପଶର ସୂଚୀରେ କି ବେନି ତନୁ ।"

(୪ର୍ଥ ସର୍ଗ)

ପ୍ରେମିକ ପ୍ରେମିକାର ପ୍ରେମ କାହାଣୀରେ ମାନ, ଅଭିମାନ,ଲଜ୍ଜା, ମିଳନ-ସୁଖ ପ୍ରଭୃତି ଅତ୍ୟନ୍ତ ସ୍ୱଭାବ ଶୈଳୀରେ ବର୍ଣ୍ଣିତ ।

"ସ୍ମରାଚାର୍ଯ୍ୟ ଶିକ୍ଷା ଫଳେ ସେ ଛଇଳା କେତେ ଛଇ ପ୍ରକଟଇ
ନେଉଥାଇ ନାନା ରଙ୍ଗେ ସେ ନବୀନ-ନାଗର-ମନ ରସାଇ
ଅଳୀକ କାତର-ପଣକୁ ଦେଖାଇ କେବେ କର ପଦ୍ମ ଯୋଡ଼େ
କେବେ ଅବା ମୌନୀ ହୋଇ ଅଭିମାନ ବନଜ ବଦନ ମୋଡ଼େ

x x x x x

ହାବଭାବ-ବଶେ ଥରେ ଥରେ ଥରି ଉଠୁଥାଇ ବାଳା ଅଙ୍ଗ
ଉତ୍ତରଳ ସିନ୍ଧୁ-ବକ୍ଷେ ଆହା, କିସେ ଶାରଦ ଚନ୍ଦ୍ରିକା-ରଙ୍ଗ ।"

(ଚତୁର୍ଥ ସର୍ଗ)

ମୃଗୟା ବେଶରେ ବିମଳାର ରୂପବର୍ଣ୍ଣନା, ସଖୀମେଳରେ ଲଳିତାର ଶୋଭା ଓ ମୃଗୟା ବିନୋଦିନୀ ଲଳିତା ସଖୀ ମେଳରେ ଥିବା ସମୟର ଚିତ୍ର ଅତି ସୁନ୍ଦର ହୋଇଛି । ସୁନ୍ଦରୀ ନାୟିକାକୁ ସୁନ୍ଦର ସଖୀ ମେଳ ସାଜି ଅପୂର୍ବ ଶ୍ରୀ ଧାରଣ କରିଛି । ଅପସରୀ ନିନ୍ଦିତ ସଖୀ ଗହଣରେ ଉତ୍କଳ ରାଜକିଶୋରୀ ସ୍ୱର୍ଗପୁରନ୍ଦରୀ ପ୍ରାୟେ ଆଭା ଧାରଣ କରିଛି । ସତେଅବା

"ବିକସି ଥିଲେ ହେଁ କୋଟି କୋଟି ତାରା
ନିର୍ମଳ ଶାରଦ ନଭେ
ପୁନର୍ବସୁ ସଙ୍ଗେ ଆନ କେହି କେବେ
ସରି କି ପ୍ରଭା ବିଭବେ ।"

ବିମଳା ଲଳିତାର ପ୍ରଥମ ଭେଟ ଏ ବିରଜା ମନ୍ଦିରରେ ଯଯାତି-ଲଳିତାର ପ୍ରଥମ ସାକ୍ଷାତର ଅପୂର୍ବଚିତ୍ର ରାଧାନାଥଙ୍କ ଯୋଗ୍ୟ ପଦାବଳୀ ତୁଳିକାରେ ଅପୂର୍ବ ରସରଙ୍ଗ ସୃଷ୍ଟି କରିଛି ।

'ଯଯାତି କେଶରୀ'ରେ ଆଶ୍ରମ ବର୍ଣ୍ଣନା ରାଧାନାଥ ପ୍ରତିଭାର ଅନ୍ୟଏକ ନିଦର୍ଶନ । ଯେଉଁ ଆଶ୍ରମ ଏକ ବିଚିତ୍ର ଆଶ୍ରମ, ସେଠି "ଶୋଇ ଅଛି ଅହି ନୀଳକଣ୍ଠ ପୁଚ୍ଛ ତଳେ" ଓ "କୁରଙ୍ଗ ଶିଶୁଙ୍କୁ ପିଆଉଛି ସ୍ତନ୍ୟ ଶାର୍ଦ୍ଦୁଳୀ ସ୍ନେହବସ୍ଥଳେ ।" ଆଶ୍ରମସ୍ଥ ସରୋବର ବର୍ଣ୍ଣନା ଚମତ୍କାର ।

"ଆଶ୍ରମର ମଧ୍ୟସ୍ଥଳେ ଦିବ୍ୟସର ମୁକୁର ପ୍ରାୟେ ନିର୍ମଳ
ସମସ୍ତ ଆଶ୍ରମ ଛବି ହୃଦେ ବହି ଜଳକରେ ଢଳ ଢଳ ।"

ଯେଉଁଠି ସ୍ନାନ କରିଲେ ନାରୀ ମଧ ପୁରୁଷ ହୋଇପାରେ । ଲିଙ୍ଗ ପରିବର୍ତ୍ତନ ଅର୍ଥାତ୍ ସ୍ତ୍ରୀର ପୁରୁଷରେ ଓ ପୁରୁଷର ସ୍ତ୍ରୀରେ ପରିଣତ ହେବାର ଯେଉଁ ଲୋକ ବିଶ୍ୱାସ, ତାହାକୁ ଆଶ୍ରୟ କରି ଯଯାତି ଓ ଲଳିତାର ମିଳନକୁ କବି ଅତି ବିଶ୍ୱାସଯୋଗ୍ୟ କରିଛନ୍ତି । କିନ୍ତୁ କବିବର ଏ ପ୍ରକାର ଘଟଣା ବିନ୍ୟାସ ଉଚ୍ଚମାନର କବିପ୍ରତିଭାର ପରିଚୟ ଦିଏ ନାହିଁ ।

ଅପର ପକ୍ଷରେ ଯଯାତି କେଶରୀରେ ଆଦର୍ଶବାଦର ପ୍ରତିଷ୍ଠା ବ୍ୟକ୍ତ ହୋଇଛି । ଏଥିରେ ବାସ୍ତବବାଦର ଜୟଗାନ କରାଯାଇଛି । 'ସ୍ୱରୂପ, ଯୌବନ, ପ୍ରେମ ଏ ତିନିହେଁ ବିବେକ ବୈରୀ ସର୍ବଥାର ବାସ୍ତବ ରୂପ ଏଥିରେ ପ୍ରକାଶ ପାଇଛି । ସୁଷମାର ଆକର୍ଷଣ ଶକ୍ତି ଉଦ୍ଦାମ, ଯୌବନର ମାଦକତା, ପ୍ରେମର ଅନ୍ଧତ୍ୱ ବିବେକର ମଥାକୁ 'ମୋଡ଼ି ଦେବା କିବା କଥା' ।

"ସ୍ୱରୂପ ଯୌବନ ପ୍ରେମ ଏ ତିନିହେଁ ବିବେକ ବୈରୀ ସର୍ବଥା
ତିନିହେଁ ମିଳିଲେ ବିବେକର ବେକ ମୋଡ଼ି ଦେବା କିବା କଥା" ।
(୪ର୍ଥ ସର୍ଗ)

ପ୍ରାଚୀନ କବି ମାନଙ୍କ ପରି ରାଧାନାଥ ମଧ ଦୈବୀକ ଶକ୍ତି ଉପାୟ ଦ୍ୱାରା ବହୁ ଜଟିଳ ସମସ୍ୟା ସମାଧାନ କରିଛନ୍ତି । ଦୈବୀବାଣୀ, ସ୍ୱପ୍ନରେ ଦେବଦେବୀଙ୍କ ଆଜ୍ଞା ପ୍ରଭୃତି ରାଧାନାଥଙ୍କ ବହୁ କାବ୍ୟରେ ବର୍ଣ୍ଣିତ । ଆଲୋଚ୍ୟ ଯଯାତିକେଶରୀ ସେଥିରୁ ମୁକ୍ତି ପାଇବ ବା କପରି ? ଉଷା, ନନ୍ଦିକେଶରୀ, ପାର୍ବତୀ ଓ ମହାଯାତ୍ରାରେ ଦୈବୀ ଶକ୍ତିର ପ୍ରଭାବ ପରି ଏଥିରେ ଦୈବୀ ସ୍ୱପ୍ନାଦେଶ ନାୟକ ଯଯାତିର ଜୀବନ ରକ୍ଷା କରିଛି । ଏକ ଜଟିଳ ପରିସ୍ଥିତିକୁ ସୂକ୍ଷ୍ମ ଓ ସରଳ କରିଦେଇଛି । ନାୟକକୁ ଆସନ୍ନ ମୃତ୍ୟୁ ମୁଖରୁ ରକ୍ଷା କରିବା ପାଇଁ କବିଙ୍କର ଏହା ହିଁ ଚତୁରପଣ । ମିଳନାନ୍ତକ ଦୃଶ୍ୟରାଜି ମଧରେ କାବ୍ୟର ପରିସମାପ୍ତି ହିଁ କବିଙ୍କର ଇଚ୍ଛା ଥିଲା । ତେଣୁ ଏ ପ୍ରକାର ଉପାୟକୁ ସେ ସହଜ ଭାବେ ଗ୍ରହଣ କରିନେଇ ସପ୍ତବୀର ଓ ଉତ୍କଳ ନରେଶଙ୍କର ମୁଖରେ ଏହି ଦୈବୀ ଆଜ୍ଞା ଓ ସ୍ୱପ୍ନାଦେଶର ବାର୍ତ୍ତା ପ୍ରକାଶ କରାଇ ନେଇଛନ୍ତି ।

ଓଡ଼ିଶା ଇତିହାସରେ 'ଯଯାତି' କେଶରୀ ବଂଶର ପ୍ରତିଷ୍ଠାତା ଥିବା ଜଣାଯାଏ ନାହିଁ । ଯଯାତିଙ୍କ ପିତା ଜନ୍ମେଜୟ ଏହି ବଂଶର ପ୍ରତିଷ୍ଠାତା । ଯଯାତି ନିଜ ପିତାଙ୍କ ସିଂହାସନ ଲାଭ କିରଥିଲେ ଏବଂ ନିଜକୁ 'ମହାଶିବ ଗୁପ୍ତ' 'ଶିବରକ୍ଷିତ' ବୋଲି ପରିଚିତ କରାଇଥିବା ତାମ୍ର ଶାସନରୁ ମିଳିଥାଏ । ତେବେ ଚୌଦ୍ୱାର ଦୁର୍ଗ (କପାଳେଶ ଦୁର୍ଗ) ଜନ୍ମେଜୟ ପ୍ରତିଷ୍ଠା କରିଥିବାର ଜଣାଯାଏ । ଯଯାତି ଯାଜନଗ୍ର ଓ ପୁରୀ ମନ୍ଦିର ନିର୍ମାଣ କରିଥିବାର ପ୍ରମାଣ ମିଳେ । ରାଧାନାଥ କିନ୍ତୁ ଯଯାତିଙ୍କୁ ଉତ୍କଳରେ କେଶରୀ ବଂଶର ପ୍ରତିଷ୍ଠାତା ରୂପେ ଗ୍ରହଣ କରି କାବ୍ୟରେ ଯଯାତିଙ୍କର ଜୟଗାନ କରାଇଛନ୍ତି (ପଞ୍ଚମସର୍ଗ) । କବି କାବ୍ୟ ମଧ୍ୟରେ କେଶରୀ ବଂଶର ପ୍ରତିଷ୍ଠାତା, ଯାଜପୁର ନଗର ନିର୍ମାତା, ଚୌଦ୍ୱାରର କପାଳେଶ ଦୁର୍ଗ ପ୍ରଭୃତି ଐତିହାସିକ ପ୍ରସଙ୍ଗରେ ସୂଚନା ଦେଇଛନ୍ତି । ମାତ୍ର ଇତିହାସ ଦୃଷ୍ଟିରୁ ଏହି ତଥ୍ୟ ଦୁର୍ବଳ ଅଟେ । ଏହି ଇତିହାସର ତଥ୍ୟ ଉପସ୍ଥାପନରେ କବି ସତ୍ୟ ଉପରେ ନିର୍ଭର ନ କରି କିମ୍ବଦନ୍ତୀରେ ବିଶ୍ୱାସ ରଖିଛନ୍ତି ।

ରସ କାବ୍ୟର ଆତ୍ମା ସ୍ୱରୂପ । ପ୍ରାଚୀନ କବିଙ୍କର ପ୍ରେମକାବ୍ୟରେ ରସହିଁ ପ୍ରଧାନ ସ୍ଥାନ ଅଧିକାର କରିଛି । କାବ୍ୟକୁ ରସାପ୍ଲୁତ କରିବାପାଇଁ କବିମାନେ ଯେଉଁ କୌଶଳ ପ୍ରୟୋଗ କରିଥାନ୍ତି, ରାଧାନାଥ ମଧ୍ୟ ସେହି କୌଶଳକୁ ଗ୍ରହଣ କରିଛନ୍ତି । ନାୟକ ନାୟିକାଙ୍କ ଶୃଙ୍ଗାର ରସାଶ୍ରିତ କାହାଣୀରେ ଗୁଣସ୍ମୃତି, ମିଳନାକାଙ୍କ୍ଷା, ପ୍ରଥମ ଦର୍ଶନରେ ଦୃଷ୍ଟି ବିନିମୟ, ସ୍ୱପ୍ନ, ବିରହବ୍ୟଥା, ବିରହାନୁଚିନ୍ତା ପ୍ରଭୃତି ବର୍ଣ୍ଣନା ଦ୍ୱାରା ରସର ଉଦ୍ଦୀପନ ହୋଇଥାଏ । କବି ଏ କ୍ଷେତ୍ରରେ ସେହି ମାର୍ଗ ଅନୁସରଣକରି ଯଯାତି କେଶରୀକୁ ସୃଷ୍ଟି କରିଛନ୍ତି । ମାତ୍ର ପ୍ରାଚୀନ କବିଙ୍କର ଉତ୍କଟ, ବୀଭତ୍ସ ଶୃଙ୍ଗାରରସ ବର୍ଣ୍ଣନା ପନ୍ଥାକୁ ତ୍ୟାଗ କରି ନିଜର ସଂଯମତାପୂର୍ଣ୍ଣ ବର୍ଣ୍ଣନା ମାଧ୍ୟମରେ ଏହାକୁ ସୁଖପାଠ୍ୟ କରିଛନ୍ତି ।

ଉପସଂହାରରେ ଏତିକି କୁହାଯାଇପାରେ ଯେ ଯଯାତି କେଶରୀ କାବ୍ୟଟି କ୍ଷୁଦ୍ର ହେଲେ ମଧ୍ୟ କବିତ୍ୱ ଦୃଷ୍ଟିରୁ ଏହା ଉଚ୍ଚସ୍ଥାନ ଅଧିକାର କରିଛି । ସମୁଦାୟ ପାଞ୍ଚଗୋଟି ସର୍ଗ ବଙ୍ଗଳାଶ୍ରୀ ରାଗରେ ରଚିତ । ଶୃଙ୍ଗାର ରସାଶ୍ରିତ ଏହି କ୍ଷୁଦ୍ର କାବ୍ୟଟିରେ ପ୍ରାଚୀନ କବିମାନଙ୍କର ଶୈଳୀ ବହୁଳାଂଶରେ ପ୍ରକାଶିତ ହୋଇଥିଲେ ହେଁ ସରସ ମାର୍ଜିତ ପଦଯୋଜନା ମଧ୍ୟରେ କବିଙ୍କର ବାର୍ଣ୍ଣନା କୃତି ଓ ଆଳଙ୍କାରିକ ପ୍ରୟୋଗ, କାବ୍ୟଟିକୁ ସୌନ୍ଦର୍ଯ୍ୟମୟ ଓ ରସମୟ କରିଛି ।



# ସାରସ୍ୱତ ସାଧକ ପ୍ରକୃତି ପ୍ରେମିକ ରାଧାନାଥ

ଅଧ୍ୟାପକ ନାରାୟଣ ପଣ୍ଡା

ଯେଉଁ ସମୟରେ ରୀତିଯୁଗୀୟ ଓଡ଼ିଆ ସାହିତ୍ୟର ଶେଷ ଆଲୋକ ରେଖା ମ୍ଳାନ ଓ ନିଷ୍ପ୍ରଭ ହୋଇ ଆସୁଥିଲା, ମଧ୍ୟଯୁଗୀୟ କାବ୍ୟଭାରତୀଙ୍କ ହସ୍ତରେ ବୀଣାତନ୍ତ୍ରୀର ସ୍ୱର କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇ ଯାଇଥିଲା, ଉତ୍କଳର ଜନସମାଜ ଶିକ୍ଷା, ଶାସନ, ବାଣିଜ୍ୟ, ଶିଳ୍ପ ଓ ରାଜନୀତି ପ୍ରଭୃତି ସାମାଜିକ ବିକାଶର ଅନୁନ୍ନତ ସ୍ତରରେ ଅବସ୍ଥାନ କରୁଥିଲେ, ପଡ଼ୋଶୀ ଅଣଓଡ଼ିଆମାନଙ୍କ ଦ୍ୱାରା ଓଡ଼ିଆ ଭାଷା ଓ ସାହିତ୍ୟର ବିଲୋପ ସାଧନର ଯେତେବେଳେ ପ୍ରବଳ ଉଦ୍ୟମ ଚାଲିଥିଲା, ଠିକ୍ ସେହି ସମୟରେ ଉତ୍କଳ-ବାଣୀ-କାନନରେ କବିବର ରାଧାନାଥଙ୍କର ଆବିର୍ଭାବ ଓଡ଼ିଶାର ଅଗଣିତ ସାହିତ୍ୟପ୍ରାଣ ବ୍ୟକ୍ତିଙ୍କ ଅନ୍ତରକୁ ସାରସ୍ୱତ ସୌରଭରେ ସୁରଭିତ କଲା ।

କବି ରାଧାନାଥ ରାୟ ୧୮୪୮ ମସିହା ସେପ୍‌ଟେମ୍ବର ମାସ ୨୮ ତାରିଖରେ ବାଲେଶ୍ୱର ଜିଲ୍ଲାର କେଦାରପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । କବିଙ୍କ ପିତାଙ୍କ ନାମ ଥିଲା ସୁନ୍ଦର ନାରାୟଣ ରାୟ ଓ ମାତାଙ୍କ ନାମ ଥିଲା ତାରିଣୀ ଦେବୀ । ରାଧାନାଥଙ୍କ ଜନ୍ମ ହେବାର ଅଳ୍ପଦିନ ପରେ ମାତା ତାରିଣୀ ଦେବୀ ଇହଧାମ ତ୍ୟାଗ କରିଥିଲେ । ତେଣୁ ପୁତ୍ରର ଲାଳନ ପାଳନ ଭାର ପିତା ସୁନ୍ଦର ନାରାୟଣଙ୍କ ଉପରେ ପଡ଼ିଥିଲା । ରାଧାନାଥ ବାଲ୍ୟକାଳରୁ ଅତ୍ୟନ୍ତ ରୁଗ୍‌ଣ ଥିଲେ, ବିଭିନ୍ନ ସମୟରେ ତାଙ୍କୁ ରୋଗ ଯନ୍ତ୍ରଣା ଭୋଗ କରିବାକୁ ପଡୁଥିଲା; କିନ୍ତୁ ତାଙ୍କର ବୁଦ୍ଧି ଓ ମେଧାଶକ୍ତି ଅତି ପ୍ରଖର ଥିଲା । ରୁଗ୍‌ଣ ସ୍ୱାସ୍ଥ୍ୟ ସତ୍ତ୍ୱେ ସେ ସ୍ୱଳ୍ପ ସମୟ ମଧ୍ୟରେ ଅତି ଦକ୍ଷତାର ସହିତ ପାଠ୍ୟକ୍ରମକୁ ଆୟତ୍ତ କରିଥିଲେ । ୧୮୬୪ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ପ୍ରବେଶିକା ପରୀକ୍ଷାରେ ତାଙ୍କର କୃତିତ୍ୱପୂର୍ଣ୍ଣ ସାଫଲ୍ୟ ସେ ସମୟରେ ବାଲେଶ୍ୱରର ଶିକ୍ଷିତ ଜନସାଧାରଣ ମଧ୍ୟରେ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଥିଲା । ସୁନ୍ଦର ନାରାୟଣ ଜଣେ ସ୍ୱଳ୍ପ ବେତନ ଭୋଗୀ ସାଧାରଣ ସରକାରୀ କର୍ମଚାରୀ ହୋଇଥିଲେ ହେଁ ପୁତ୍ରର ଉଚ୍ଚଶିକ୍ଷା ନିମିତ୍ତ ଯତ୍ନବାନ ହେଲେ । ସୁତରାଂ ପୁତ୍ରକୁ ଉଚ୍ଚଶିକ୍ଷା ଲାଭ ପାଇଁ କଲିକତା ପ୍ରେରଣ କଲେ । କିନ୍ତୁ କଲିକତାରେ ସ୍ୱାସ୍ଥ୍ୟଭଙ୍ଗ ହେତୁ ରାଧାନାଥ ସେଠାରୁ ବାଲେଶ୍ୱର ପ୍ରତ୍ୟାବର୍ତ୍ତନ କଲେ । ସେହି ସମୟରେ

ଓଡ଼ିଶାରେ ଉଚ୍ଚଶିକ୍ଷା ଲାଭ ନିମିତ୍ତ କଲେଜ ପ୍ରତିଷ୍ଠିତ ହୋଇନଥିଲା । ତେଣୁ ସେ ଉଚ୍ଚଶିକ୍ଷା ଲାଭରୁ ବଂଚିତ ହୋଇ ବାଲେଶ୍ୱର ଜିଲ୍ଲା ସ୍କୁଲରେ ତୃତୀୟ ଶିକ୍ଷକ ରୂପେ ନିଯୁକ୍ତି ପାଇଲେ । ଏହାପରେ ସେ ପୁରୀ, ବାଲେଶ୍ୱର ଓ ବଂଗଦେଶର ବାଙ୍କୁଡ଼ା ପ୍ରଭୃତି ବିଭିନ୍ନ ସ୍ଥାନରେ ଶିକ୍ଷକତା କଲେ । ତା'ପରେ ବାଲେଶ୍ୱର ଜିଲ୍ଲାସ୍କୁଲ ସମୂହର ଡେପୁଟି ଇନ୍‌ସପେକ୍ଟର ରୂପେ ନିଯୁକ୍ତି ଲାଭ କଲେ । କିଛିକାଳ ଡେପୁଟି ଇନ୍‌ସପେକ୍ଟର ପଦରେ ଅବସ୍ଥାପିତ ହେବାପରେ ଜଏଣ୍ଟ ଇନ୍‌ସପେକ୍ଟର ୧୮୮୨ ମସିହାରେ ଇନ୍‌ସପେକ୍ଟର ପଦକୁ ଉନ୍ନୀତ ହୋଇଥିଲେ । ୧୯୦୧ ମସିହାରେ ସେ ଓଡ଼ିଶାର ଶିକ୍ଷାବିଭାଗର ସର୍ବୋଚ୍ଚ ପରିଦର୍ଶକ ଭାବରେ ନିଯୁକ୍ତି ପାଇଥିଲେ ।

କବିଙ୍କର ପ୍ରତିଭା ଓ କାର୍ଯ୍ୟଦକ୍ଷତାରେ ମୁଗ୍ଧ ହୋଇ ତତ୍‌କାଳୀନ ଇଂରେଜ ସରକାର ତାହାଙ୍କୁ "ରାୟବାହାଦୁର" ଉପାଧିରେ ଭୂଷିତ କରିଥିଲେ । ଶିକ୍ଷକତା କରୁଥିବା ସମୟରେ ସେ ଯେତେବେଳେ ବାଲେଶ୍ୱରରେ ଅବସ୍ଥାନ କରୁଥିଲେ ସେତେବେଳେ ବ୍ୟାସକବି ଫକୀରମୋହନଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା ଓ ଆତ୍ମୀୟତା ପ୍ରତିଷ୍ଠିତ ହୋଇଥିଲା । ପୁରୀରେ ଅବସ୍ଥାନ କରୁଥିବା କାଳରେ ଭକ୍ତକବି ମଧୁସୂଦନ ରାଓ ତାହାଙ୍କର ଛାତ୍ର ଥିଲେ । ରାଧାନାଥ ଯୁଗର ଫକୀରମୋହନ, ରାଧାନାଥ ଓ ମଧୁସୂଦନ ଏହି ତିନିଜଣ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ପରିପୁଷ୍ଟ କରିଥିଲେ ।

କବି ରାଧାନାଥ ରାୟଙ୍କର ଥିଲା ଅସାଧାରଣ ପ୍ରତିଭା ଓ ବ୍ୟତିକ୍ରମ ବ୍ୟକ୍ତିତ୍ୱ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ସାହିତ୍ୟରେ କବିଙ୍କର ଗଭୀର ପାଣ୍ଡିତ୍ୟ ଓ ଧୀଷଣା ଥିଲା । କବିଙ୍କ କାବ୍ୟ କବିତା ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ଏକ ମିଳନ ସେତୁ । ଓଡ଼ିଶା ଓ ଓଡ଼ିଶା ବାହାରର ବହୁ ବିଦ୍ୱାନଙ୍କୁ କବିଙ୍କ ପ୍ରତିଭା ପ୍ରଭାବିତ କରିଥିଲା । କବି ରାଧାନାଥଙ୍କ ପ୍ରତିଭାରେ ମୁଗ୍ଧ ହୋଇ ଭୂଦେବ ବାବୁ ୧୮୭୯ ମସିହା ମଇମାସ ୨୩ ତାରିଖରେ ପ୍ରକାଶିତ ଏଜୁକେଶନ ଗେଜେଟ୍‌ରେ ଯେଉଁ କବିତାଟି ପ୍ରକାଶ-କରିଥିଲେ ତାହା ବେଶ୍ ଉଲ୍ଲେଖଯୋଗ୍ୟ :

ରାଧାନାଥ ଓଡ଼ିଶାର ଗୌରବ କେତନ;
ଉଦାର ବିନୀତ ବୀର ସୁବୋଧ ସୁଜନ
ନାନା ଭାଷା ବିଭୂଷିତ
ନାନା ଶାସ୍ତ୍ର ସୁପଣ୍ଡିତ
କବିତା-କାନନେ ପିକବର ପ୍ରିୟବର
ସ୍ୱର୍ଗୀୟ ସ୍ୱଭାବେ ପୂତ ତୋ'ମାର ଅନ୍ତର ।

ଭୂଦେବ ବାବୁଙ୍କ ଏହି ଉକ୍ତି ରାଧାନାଥଙ୍କ ପ୍ରତି ଯଥାର୍ଥ ଭାବରେ ଉଦ୍ଦିଷ୍ଟ ଥିଲା । ବିଚାର କରି ଦେଖିଲେ ପ୍ରକୃତ ପକ୍ଷରେ ରାଧାନାଥ ଥିଲେ ସାରସ୍ୱତ ଓଡ଼ିଶା ରାଜ୍ୟର ଗର୍ବ ଓ ଗୌରବ । କବିଙ୍କର ନୈସର୍ଗିକ କବିପ୍ରତିଭା ତଥା ଭାଷା ଓ ଶାସ୍ତ୍ରଜ୍ଞାନର ପ୍ରକୃଷ୍ଟ ପରିଚୟ ଦେଇଛି, ତାଙ୍କ ମହନୀୟ ଲେଖନୀସୃତ ମହାର୍ଘ କୃତିରାଜି । ଉତ୍କଳର ଓଡ଼ିଆ ଭାଷାଭଣ୍ଡାରକୁ କବିଙ୍କର ଅବଦାନ ହେଉଛି : କେଦାରଗୌରୀ, ଚନ୍ଦ୍ରଭାଗା, ଉଷା, ନନ୍ଦିକେଶ୍ୱରୀ, ପାର୍ବତୀ, ଯଯାତିକେଶରୀ, ଚିଲିକା, ମହାଯାତ୍ରା, ଉର୍ବଶୀ, ଦରବାର, ତୁଳସୀସ୍ତବକ, ମେଘଦୂତ ପ୍ରଭୃତି । ଏତଦ୍ ବ୍ୟତୀତ କବିଙ୍କ ଲେଖନୀ ମୁନରୁ ''ବିବେକୀ'' ପ୍ରବନ୍ଧ ତଥା ''ଇତାଲୀୟଯୁବା'' ଗଳ୍ପତୁଲ୍ୟ ଉଚ୍ଚକୋଟୀର ଗଦ୍ୟ ରଚନାମାନ ସୃଷ୍ଟି ହୋଇଥିଲା । ଧବଳେଶ୍ୱର ସ୍ତୋତ୍ରମ୍ ''କାଳିକାସ୍ତୁତିଃ'', ''ଭାରତୀଗୀତିକା'' ତଥା ''ସତ୍ୟବାଦୀ'' ପ୍ରଭୃତି ସଂସ୍କୃତ ଗୀତିକା କବିଙ୍କର ଉଚ୍ଚକୋଟୀର ସଂସ୍କୃତଜ୍ଞାନର ପରିଚୟ ପ୍ରଦାନ କରେ । ''ଚିଲିକା'' କାବ୍ୟରେ ପ୍ରକୃତି ପ୍ରୀତି ସଙ୍ଗେ ସଂଗେ ଜୀବନ ଦର୍ଶନ, ଜାତୀୟତାବୋଧ ତଥା ଉଚ୍ଚକୋଟୀର ମନ୍ମୟ କଳ୍ପନାବିଳାସ ପ୍ରକଟିତ ହୋଇଛି । ପୃଥିବୀର ଇତିହାସରେ ଅତୁଳନୀୟ ମହାକୁରୁକ୍ଷେତ୍ର-ଯୁଦ୍ଧରେ ବିଜୟଶ୍ରୀମଣ୍ଡିତ ଅଖଣ୍ଡ ଭାରତ ସାମ୍ରାଜ୍ୟର ଅଧୀଶ୍ୱର ଅଥଚ ବିଜୟୋତ୍ସବାନ୍ତେ ଐଶ୍ୱର୍ଯ୍ୟ-ତୃପ୍ତ ମହାଶୂନ୍ୟାୟିତ ହୃଦୟ, ଶୋକନିର୍ବେଦନିମଗ୍ନ, ବୈରାଗ୍ୟବ୍ୟାକୁଳ ଶାନ୍ତି ପ୍ରୟାସୀ ଧର୍ମନନ୍ଦନ ଯୁଧିଷ୍ଠିର ପ୍ରମୁଖ ପାଣ୍ଡବ ବୀରେନ୍ଦ୍ରମାନଙ୍କର ସେହି ପରମସ୍ମରଣୀୟ ମହାପ୍ରସ୍ଥାନ ରୂପ ଚିରାମୃତ କଥା ''ମହାଯାତ୍ରା''ର ବର୍ଣ୍ଣନୀୟ ବିଷୟ । ଭାରତର ଚିରାରାଧ ମହାଭାରତ ରୂପ ବିରାଟ ମହାକାବ୍ୟର ସେହି ମହାଶୋକବୈରାଗ୍ୟାନ୍ତ ମହାଯାତ୍ରା—ମହାଯାତ୍ରା ଉପାଖ୍ୟାନ ପରି ଉଦାର ବା ଗମ୍ଭୀର ଗାଥା ଆଉ କ'ଣ ଅଛି ? କବି ରାଧାନାଥ ଶୁଭକ୍ଷଣରେ ଏହି ମହାବିଷୟ ନିର୍ବାଚନ କରି ନିଜ କବି ଜୀବନକୁ ଧନ୍ୟ ଓ ସାର୍ଥକ କରିଛନ୍ତି ଏବଂ ଆଧୁନିକ ଉତ୍କଳ ସାହିତ୍ୟର ଆଶା ଓ ଗୌରବକୁ ଶତଗୁଣିତ କରିଛନ୍ତି ।

'ମହାଯାତ୍ରା' ଆଧୁନିକ ଉତ୍କଳ ସାହିତ୍ୟର ପ୍ରଥମ ମହାକାବ୍ୟ । ଏଥିରେ କବିଙ୍କ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରାର ଅପୂର୍ବ ସୁସମନ୍ୱୟ ଦେଖିବାକୁ ମିଳେ । ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା ଓ ପାର୍ବତୀ ପ୍ରଭୃତି କାବ୍ୟରେ କବିଙ୍କର ଉଚ୍ଚାଙ୍ଗ ସୌନ୍ଦର୍ଯ୍ୟବୋଧ, ବର୍ଣ୍ଣନାବିଳାସ ତଥା ପ୍ରକୃତିପ୍ରିୟତା ସଂଗେ ସଂଗେ ଉତ୍କଳୀୟ ଭୌଗୋଳିକ ଚିତ୍ରର ମନ୍ମୟ ପ୍ରକାଶ ସମ୍ଭବ ହୋଇଛି । ମେଘଦୂତ ମହାକବି କାଳିଦାସଙ୍କ ଅମର କୃତି 'ମେଘଦୂତମ' ଉପରେ ଆଧାରିତ । ଏହା ମୂଳତଃ ଏକ ପଦ୍ୟାତ୍ମକ ଅନୁବାଦ ହେଲେହେଁ ଏଥିରେ କବିଙ୍କ ମୌଳିକ ଚିନ୍ତାଧାରା ସମ୍ୟକ୍

ଭାବରେ ପ୍ରତିଫଳିତ ହୋଇଛି । 'ଦରବାର' କବିଙ୍କ ପ୍ରଜ୍ଞାଦୀପ୍ତ ପ୍ରତିଭା ଓ ପ୍ରତିଭାଦୀପ୍ତ ପ୍ରଜ୍ଞାର ସ୍ମାରକୀ ବହନକରେ । 'ଦରବାର' ଏକ ଉଚ୍ଚକୋଟୀର ବ୍ୟଙ୍ଗାତ୍ମକ ରଚନା । ଏଥିରେ ତତ୍କାଳୀନ ସମାଜଚିତ୍ର କବି ପ୍ରଦାନ କରିବା ସଙ୍ଗେ ସଙ୍ଗେ, ଜୀବନ ଓ ଜଗତ ପ୍ରତି ବ୍ୟକ୍ତିଗତ ଅନୁଭୂତିକୁ ପରିବେଷଣ କରିଛନ୍ତି ।

## ଦୁଇ

କବି ରାଧାନାଥଙ୍କ କାବ୍ୟ କବିତାରେ ପ୍ରଦତ୍ତ ପ୍ରକୃତି ଜୀବନ୍ତ, ଚିତ୍ରପଟ ପରି ସ୍ଥିର ମେକାନିକାଲ । ପ୍ରକୃତିର କମନୀୟ ଚିତ୍ରକୁ କବି ସରସ ସୁନ୍ଦର ଭାବରେ କାବ୍ୟରେ ବର୍ଣ୍ଣନା କରିଛନ୍ତି । ଜଡ଼ ପ୍ରକୃତିକୁ କବି ମାନବୀୟ ଗୁଣରେ ଭୂଷିତ କରିଛନ୍ତି । ରାଧାନାଥଙ୍କ ପ୍ରକୃତି ନିଷ୍ପ୍ରାଣ ନିର୍ବାକ ନୁହେଁ, ସେ ମଣିଷ ସହ ସମଭାଗୀ, ସମ୍ବେଦନଶୀଳ । ବାହ୍ୟ ପ୍ରକୃତି ଓ ଅନ୍ତଃପ୍ରକୃତିର ବର୍ଣ୍ଣନା କାବ୍ୟ କବିତାଗୁଡ଼ିକୁ ବେଶ ମନୋମୁଗ୍ଧ କରି ଗଢ଼ିତୋଳିଛି । ରାଧାନାଥ ହେଉଛନ୍ତି ପ୍ରାଚ୍ୟ ଜଗତର Wordsworth । କବି ବିଶିଷ୍ଟ ସୌନ୍ଦର୍ଯ୍ୟବାଦୀ କବି ୱାର୍ଡ଼ସ୍‌ୱାର୍ଥ ପରି ପ୍ରକୃତି ପ୍ରେମୀ ଓ ଯଥେଷ୍ଟ ସୌନ୍ଦର୍ଯ୍ୟ ସଚେତନ । ଉତ୍କଳ ସାହିତ୍ୟରେ ପ୍ରକୃତିକୁ ସ୍ଥାଣୁ ଓ ଚେତନାଶୂନ୍ୟ ମନେ ନକରି ତା'ଭିତରେ କବି ପ୍ରାଣର ସ୍ପନ୍ଦନ ଅନୁଭବ କରିଥିଲେ । କବି ରାଧାନାଥଙ୍କ ଦୃଷ୍ଟିରେ ଚିଲିକା ନଥିଲା ପର୍ବତ, ବନାନୀ ବେଷ୍ଟିତ ଏକ ପ୍ରାଣହୀନ ଜଳରାଶି; ତାହା ଥିଲା ରୂପ, ରସ ଗନ୍ଧର ଏକ ଜୀବନ୍ତ ପ୍ରକୃତି, ଏକ ଶାନ୍ତକାନ୍ତ ଅନୁଭୂତି; ଏକ ରମଣୀୟ ରମଣୀ ତୁଲ୍ୟ ଲାବଣ୍ୟର ରଂଗସ୍ଥଳୀ । 'ଚିଲିକା' ପ୍ରକୃତିର ମନୋରମ ଅନୁପମା କନ୍ୟା । କବି ରାଧାନାଥ ଆବେଗଭରା ପ୍ରାଣରେ କାବ୍ୟ ଆରମ୍ଭ କରିଛନ୍ତି :

ଉତ୍କଳ-କମଳା-ବିଳାସ-ଦୀର୍ଘିକା
ମରାଳ ମାଳିନୀ ନୀଳାମ୍ବୁ ଚିଲିକା ।
(ଚିଲିକା, ରାଧାନାଥ ରାୟ)

କବି ଚିଲିକାର ଆଭ୍ୟନ୍ତରୀଣ ତଥା ବେଳାଭୂମିର ଅଂଗ, ଯଥା ସୈକତ, ନୀଳଗଣ୍ଡ, କାଳିଜାଈ, ଚଢ଼େଇଗୁହା, ଟଙ୍କବନାନୀର ଶୋଭାର ରୂପାୟନ କରି ନିଜେ ଆତ୍ମବିଭୋର ହେବା ସଙ୍ଗେ ସଙ୍ଗେ ପାଠକ ମନରେ ମଧ୍ୟ ଉକ୍ତ ଦୃଶ୍ୟର ରୂପ ଚଳଚ୍ଚିତ୍ର ପରି ଫୁଟାଇ ଅପାର ଆନନ୍ଦ ସଂଚାର କରିପାରିଛନ୍ତି । କବି ରୂପ ମାଧୁରୀ ଆସ୍ୱାଦନ କରି ସ୍ୱତଃ ପ୍ରକାଶ କରିଛନ୍ତି :

ଏତେ ଛବି ଯେହ୍ନେ ଏକାଧାରେ ଠୁଳ
ଛବିଳ ଉତ୍କଳେ ତୋ' ଛବି ଅତୁଳ ।




କବି ନିଜ ଜୀବନରେ ହିମାଳୟ, ରାଜସ୍ଥାନ ମରୁଭୂମି, ଦଣ୍ଡକାରଣ୍ୟ ଆଦି ଭାରତୀୟ ପ୍ରକୃତି ଅବଲୋକନ କରିବାର ସୌଭାଗ୍ୟ ଲାଭ କରିଥିଲେ । ସେ ସମସ୍ତ ରୂପର ଚିତ୍ର କବିଙ୍କ ଐନ୍ଦ୍ରଜାଲିକ ତୁଳିକାରେ ପ୍ରାଞ୍ଜଳ ଓ ଜୀବନ୍ତ ଭାବରେ ପାଠକ ପ୍ରାଣରେ ପୁଲକ ସୃଷ୍ଟି କରିଛି । କବିଙ୍କ କୋମଳ ଚିତ୍ତକୁ ଚିଲିକାର ଶାନ୍ତକାନ୍ତ ରୂପ ଉଲ୍ଲସିତ କରିଛି । କବି ପ୍ରକାଶ କରିଛନ୍ତି :

ଗୁରୁପ୍ରାୟ ତାଙ୍କୁ ଦୂରୁଁ କରି ଭୀତି
ସଖୀ ପ୍ରାୟେ ତୋତେ ସ୍ମରୁଥିଲି ନିତି
ଇତର ଜନର ଅବସାଦକର
ଯୋଗୀ ଋଷିଙ୍କି ସେ ସ୍ଥାନ ମନୋହର ।

ଚିଲିକା ବକ୍ଷରେ ଶରତ-ଶୋଭା-ପାଟବ ବର୍ଣ୍ଣନା ଏପରି ମଞ୍ଜୁଳ ହୋଇପାରିଛି ଯେ କୌଣସି ପାଠକ ନିଜ ଗୃହରେ ଅବସ୍ଥାନ କରି ମଧ୍ୟ କବିଙ୍କର ଚିଲିକା ପାଠକରି ତା'ର ଶରତ ସୁଷମା ଅନୁଭବ କରିବାରେ କ୍ଷମ ହୋଇପାରିବ । ଚିଲିକାର ଶରତ ବର୍ଣ୍ଣନାକୁ ଉଦ୍ଧାର କଲେ ସହଜରେ ଅନୁଭବ କରିହେବ :

କଲୁଷିତ ବାରି କଲୁଷ ହାରକ
କାସାରେ କୁମୁଦ-ହାସ-ପ୍ରକାଶକ ।
ଦକ୍ଷିଣାଶା-ବଧୂ-ଅବତଂସ-ମୋତି
ମହୋଜ୍ଜ୍ୱଳ କୁମ୍ଭ-ସମ୍ଭୁବ-ଜ୍ୟୋତି ।
ଉଇଁଲେ ଆକାଶେ ଆସି ଦଳେଦଳେ
ପୂରାନ୍ତି ଜଳ ଏ କଳ କୋଳାହଳେ ।
ଏମାନେ କି ସହଚର ଶରତର
ଶରତ ସଙ୍ଗତେ ହୁଅନ୍ତି ଅନ୍ତର ?

ଶରତ ବର୍ଣ୍ଣନା କବିଙ୍କ ଲେଖନୀରେ ପ୍ରକୃଷ୍ଟ ରୂପ ଲାଭ କରିଅଛି । ଶରତ ଋତୁରେ ଯାହାଯାହା ପ୍ରାକୃତିକ ପରିବେଷ୍ଟନୀରେ ସମ୍ଭବ, ସେସବୁର ବର୍ଣ୍ଣନା କବିଙ୍କ ଲେଖନୀରେ ଏକ ମନୋଜ୍ଞ ରୂପଲାଭ କରିଅଛି । ଚିଲିକାର ତଟ ପ୍ରଦେଶର ଶୋଭାରାଶିର ବର୍ଣ୍ଣନା ଏତେ ବିଶଦାକାର ଧାରଣ କରିଅଛି ଯେ ପାଠକ ତାହା ପାଠକରିବା ସମୟରେ ଭାବେ ସତେ ଯେପରି ସେ ଚିଲିକା ତୀରରେ ସେସବୁ ସୌନ୍ଦର୍ଯ୍ୟ ଉପଭୋଗ କରୁଅଛି । ଚିଲିକାର ପଶ୍ଚିମ ତୀରର ଶୋଭା ସନ୍ଧ୍ୟା ସମୟରେ ରାଧାନାଥଙ୍କ ଚକ୍ଷୁରେ ଏକ ବର୍ଣ୍ଣୋତ୍ସବ ସୃଷ୍ଟି କରିଅଛି । ଏହି ବର୍ଣ୍ଣନାରେ କବିଙ୍କର କଳ୍ପନାବିଳାସର ଯଥେଷ୍ଟ ପରିଚୟ ମିଳିଛି । ସୌନ୍ଦର୍ଯ୍ୟବାଦୀ ରାଧାନାଥ ଏହି ସୌନ୍ଦର୍ଯ୍ୟରେ ଏତେଦୂର ମୁଗ୍ଧ ହୋଇପଡ଼ିଛନ୍ତି ଯେ, ସେ ପ୍ରକାଶ କରିଛନ୍ତି :

ଆହା ଏ ଶୋଭାର କାହିଁ ପଟାନ୍ତର ?
ଥିଲେ ଥିବ ସ୍ୱର୍ଗେ ମର୍ତ୍ତ୍ୟେ ଅଗୋଚର,
ପାସୋରିବ ଦେଖି କହ କେଉଁ ଜନ
ଏ ଶୋକପାଶୋରା ଅପ୍‌ସରା ଭୁବନ ?
ଭାରତୀ ଭକତ କେଉଁ ରୂପପାୟୀ
ତୃପ୍ତ ହେବ ଏହା ଥରେ ମାତ୍ର ଧାୟି ?
ବଚନ ବିଷୟ ନୁହଇ ଏ ଛବି,
ହୃଦ ସେ କେବଳ ପାରେ ଅନୁଭବି ।

ଚିଲିକାର ପ୍ରାକୃତିକ ବର୍ଣ୍ଣନାକୁ ମଂଜୁଳ ରୂପଦେବା ଭିତରେ କବି ଚିଲିକା କୂଳରେ ବସି ଦିନେ ଅତୀତ ଉତ୍କଳର କେତେଗୋଟି ଐତିହାସିକ ଘଟଣା ସ୍ମରଣ କରିବା ନିମିତ୍ତ ସେ କଳ୍ପନାର ଆଶ୍ରୟ ନେଇଛନ୍ତି । କବି କଳ୍ପନା-ସୁନ୍ଦରୀଙ୍କୁ ବର୍ଣ୍ଣନା କଲାବେଳେ ତାଙ୍କୁ ବୀଣାପାଣିଙ୍କ ଚିରସହଚରୀ ରୂପେ ପ୍ରକାଶ କରିଛନ୍ତି ।

ବିଷୟବସ୍ତୁର ନିର୍ବାଚନ ଦୃଷ୍ଟିରୁ ମଧ ଚିଲିକାର ଶୈଳୀ ବିଚାର କରାଯାଇପାରେ । ରାଧାନାଥଙ୍କ ପୂର୍ବବର୍ତ୍ତୀ ମଧ୍ୟଯୁଗର କବିମାନେ ସାଧାରଣତଃ ରାମାୟଣ, ମହାଭାରତ ବା ପୁରାଣ ମାନଙ୍କରୁ ବିଷୟବସ୍ତୁ ସଂଗ୍ରହକରି କାବ୍ୟ ରଚନା କରୁଥିଲେ । କବି ରାଧାନାଥ ପ୍ରାଚ୍ୟ ସାହିତ୍ୟରୁ ବିଷୟବସ୍ତୁ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ପ୍ରାଚ୍ୟ ସାହିତ୍ୟରୁ ମଧ ତଥ୍ୟ ସଂଗ୍ରହ କରିଛନ୍ତି । ରାଧାନାଥଙ୍କର ଆଠଗୋଟି ବିଶିଷ୍ଟ କାବ୍ୟ କିପରି ଇଂରାଜୀ ସାହିତ୍ୟର ବିଷୟବସ୍ତୁ ଉପରେ ପରିକଳ୍ପିତ ତାହା ସମାଲୋଚକଗଣ ପ୍ରଦର୍ଶନ କରିଯାଇଛନ୍ତି । କବିଙ୍କର ଯେଉଁ କାବ୍ୟଗୁଡ଼ିକ ଉପରେ ଇଂରେଜୀ ସାହିତ୍ୟ ରଚନାର ପ୍ରଭାବ ପଡ଼ିଚି ତାହା ଆଲୋଚନା କଲେ ସହଜରେ ଅନୁମାନ କରିହେବ ।

ଚିଲିକାର ପ୍ରକୃତି ବର୍ଣ୍ଣନାରେ କବି ରଧାନାଥଙ୍କ ଉପରେ ପାଶ୍ଚାତ୍ୟ କବି Sellyଙ୍କ ପ୍ରଭାବ ପଡ଼ିଛି । ଇଂରାଜୀ କବି ସେଲ୍ଲୀ ତାଙ୍କ ଅନବଦ୍ୟ କୃତି "The Sensitive Plant"ରେ ପ୍ରକାଶ କରିଛନ୍ତି :

And the Leaves, brown, yellow and gray and red
And white with the whiteness of what is dead
(The Sensitive Plant, Selly)

ତଦନୁରୂପେ କବି ରାଧାନାଥ 'ଚିଲିକା' ରେ ପ୍ରକାଶ କରିଛନ୍ତି :

କଳା, ନୀଳ, ପୀତ, ହରିତ ଲୋହିତ
ବିହଙ୍ଗମେ ଊର୍ମି କାହିଁ ବିମଣ୍ଡିତ । (ଚିଲିକା - ରାଧାନାଥ)

ଅଧ୍ୟାପକ ଡଃ. ଗୋପାଳ ଚନ୍ଦ୍ର ମିଶ୍ର ଯଥାର୍ଥରେ ପ୍ରକାଶ କରିଛନ୍ତି : ଚିଲିକା କାବ୍ୟରେ 'ରୂପତତ୍ତ୍ୱ' କବିତ୍ୱପୂର୍ଣ୍ଣ ବିଳାସରେ ଯେଉଁ ଦାର୍ଶନିକ ବିଶ୍ଳେଷଣ କରାଯାଇଛି, ଉତ୍କଳର ଜାତୀୟତା ତଥା ମହାନୁଭବତା ଯେପରି ପ୍ରକାଶ ପାଇଅଛି, ରସିକ କବିର "ଆଶା ଯେପରି ଭାବରେ ପ୍ରକୃତି ସହିତ ଘନ-ଆଶ୍ଳେଷରେ ଜଡ଼ିତ ହୋଇଛି, ତାହା ରାଧାନାଥଙ୍କ ଅନ୍ୟାନ୍ୟ ରଚନା ମାନଙ୍କରେ ପରିଦୃଷ୍ଟ ହୁଏ ନାହିଁ।" ଚିଲିକା ସହିତ ରାଧାନାଥଙ୍କର ଏକାତ୍ମ ଭାବ ପ୍ରକୃତି ସହିତ ପୁରୁଷର ଚିରନ୍ତନ ମିଳନ ଇଚ୍ଛାର ପ୍ରତିବିମ୍ବ । 'ଚିଲିକା' ବର୍ଣ୍ଣନା କଲାବେଳେ କବି ମାନବୀୟ ଚେତନାରୁ ଉର୍ଦ୍ଧ୍ୱକୁ ଯାଇ ଅନ୍ୟଏକ ଚିରାନନ୍ଦମୟ ଜଗତର ଅଧିବାସୀ ହୋଇ ପଡ଼ିଛନ୍ତି । ନିଜର ଭାବାବେଶରେ ସେ ବିହ୍ୱଳ ଓ ମୁଗ୍ଧ । ରାଧାନାଥୀ-ପ୍ରତିଭାର ଶ୍ରେଷ୍ଠ ସ୍ୱାକ୍ଷର ବହନ କରି ଚିଲିକା ଆଜି ଅବିସ୍ମରଣୀୟ ।

## ତିନି

'ନନ୍ଦିକେଶ୍ୱରୀ' କାବ୍ୟର ପ୍ରଥମ ସର୍ଗରେ ରାଜା ଚୋଡ଼ଗଙ୍ଗଙ୍କ ଉତ୍କଳ ଆକ୍ରମଣର ଦୃଶ୍ୟ ଉଦ୍‌ଭାସିତ ହୋଇଛି । କାବ୍ୟରେ କବି ରାଧାନାଥ ରାୟ ଚୋଡ଼ଗଙ୍ଗଙ୍କ ସମର ସଜ୍ଜା କଥା ଯେପରି ବର୍ଣ୍ଣନା କରିଛନ୍ତି ତାହାଠାରୁ ତତୋଽଧିକ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି ଉତ୍କଳବୀରଙ୍କର ଆବାସସ୍ଥଳୀ ସମୂହର । ଉତ୍କଳର କମନୀୟ ପ୍ରକୃତି ସହ ରାଧାନାଥଙ୍କ ମନପ୍ରାଣ ସଂପୂର୍ଣ୍ଣଭାବରେ ଏକତ୍ର ହୋଇଛି କହିଲେ ବାର୍ତ୍ତାର ଅପଳାପ ହେବ ନାହିଁ । କବିଙ୍କର କର୍ଣ୍ଣିକା ପ୍ରସୂତ ଏକ ବର୍ଣ୍ଣନାରୁ ପ୍ରକୃତି ଚିତ୍ରକୁ ଅନୁଭବ କରିହୁଏ । ଯଥାର୍ଥରେ :

ବିରଜା ମଣ୍ଡଳେ ଯେତେ ବୀର ପଲ୍ଲୀ
ପୂଗମାନେ ଯହିଁ ଜଡ଼େ ନାଗବଲ୍ଲୀ,
ପରସ୍ପରେ ଭୁଜ ଛନ୍ଦିବାରେ ସଦା
ଚଂପାଚୂତ ଯହିଁ ବଳାନ୍ତି ଚିରଧା ।
ଉଦ୍ଭବ ଯା' ପାଦେ ବେଢ଼ିଅଛି ଛନ୍ଦି
ଉତ୍କଳେ କାଳିନ୍ଦୀ ରୂପିଣୀ ସାଳନ୍ଦୀ
ଯୋର, ଗର୍ବ, ଯାର, କରଇ ପ୍ରସାର
ପଶ୍ଚିମେ ପର୍ବତ ପୂର୍ବେ ପାରାବାର ।

କବିଙ୍କର ଲେଖନୀରେ ପ୍ରକୃତି ବର୍ଣ୍ଣନା ହୋଇଛି, ତାହା ନୁହେଁ, ଭୌଗୋଳିକ ଦୃଷ୍ଟିକୋଣରୁ ବିଚାର କରି ଦେଖିଲେ ଏହାର ଯଥାର୍ଥତା ରହିଛି । ରାଧାନାଥଙ୍କ ପ୍ରକୃତି କେବଳ କଳ୍ପନାର ଦୋଳାରେ ସୁକୁମାରୀ ରାଜନନ୍ଦିନୀ ନୁହେଁ, ଏହା

ବାସ୍ତବତାର ପଟ୍ଟଭୂମିରେ ଛବିଳ ଉତ୍କଳର ନୁପୂର ନିକ୍ୱଣ ଛନ୍ଦିତ ପଲ୍ଲୀବଧୂଟିଏ । ଉତ୍କଳର ଚାରୁ ଚିତ୍ରଶାଳାର ବହୁଚିତ୍ର ''ନନ୍ଦିକେଶ୍ୱରୀ'' ର ପୃଷ୍ଠା ମଣ୍ଡନ କରିଛି । କୌଣସି ଏକ ଦନ୍ତାହସ୍ତୀର ବିହାରସ୍ଥଳ ସଂପର୍କରେ ବର୍ଣ୍ଣନା ଦେବାକୁ ଯାଇ କବିବର ଉତ୍କଳୀୟ ପ୍ରକୃତିକୁ ଏପରି ମନୋଜ୍ଞ କରିଦେଇଛନ୍ତି, ଯାହାକି ଅତ୍ୟନ୍ତ ଆକର୍ଷଣୀୟ ହୋଇପାରିଛି । ସେ ପ୍ରକାଶ କରିଛନ୍ତି :

ସପ୍ତକୋଶୀ ଗଣ୍ଡରାଜେ ଶୈଳକୁଂଜେ
ସୁଶୀତଳ ତୁଂଗ ଶୈଳଛାୟା ପୁଞ୍ଜେ
ନିର୍ଜନେ ଦିଅନ୍ତି ନବ ଦ୍ରୁମାବଳୀ
ଜଳ ଦେବତାଙ୍କୁ ଯହିଁ ପୁଷ୍ପାଞ୍ଜଳି,
ତହିଁ ମହାନଦୀ ପ୍ରବାହେ ନିଦାଘେ
ପ୍ରିୟା ସଂଗେ ଖେଳୁଥିଲା ଅନୁରାଗେ
ମତ୍ତଦନ୍ତାବଳ, ଏବେ ରଣସ୍ଥଳ
କରିଅଛି ନିଜ ଅସ୍ଥିରେ ଧବଳ ।

ରାଧାନାଥଙ୍କର ପ୍ରତ୍ୟେକ କାବ୍ୟ ହେଉଛି ପ୍ରାକୃତିକ ଦୃଶ୍ୟାବଳୀର ଏକ ମନୋରମ ଚିତ୍ରଶାଳା । ପ୍ରକୃତି ଚିତ୍ର ମଧ୍ୟରେ କବିଙ୍କର ଅପୂର୍ବ କଳ୍ପନାଚାତୁରୀ ଓ କମନୀୟ କବିତ୍ୱ ବିଳାସ ପ୍ରକଟିତ ହୋଇଛି । 'ମହାଯାତ୍ରା' କାବ୍ୟରେ କବି ବିଭିନ୍ନ ପ୍ରସଙ୍ଗରେ ପ୍ରାକୃତିକ ଶୋଭା ସମ୍ଭାରର ଚିତ୍ର ଅଙ୍କନ କରିଛନ୍ତି । 'ମହାଯାତ୍ରା' କାବ୍ୟରେ କବି ରାଧାନାଥ ପାଣ୍ଡବମାନଙ୍କର ବାନପ୍ରସ୍ଥାଶ୍ରମ ବର୍ଣ୍ଣନା ପ୍ରସଙ୍ଗରେ ସେମାନଙ୍କୁ ଭାରତବର୍ଷର ବିଭିନ୍ନ ତୀର୍ଥ ଭ୍ରମଣ କରାଇଛନ୍ତି । ସେହି ସମୟରେ ଅଗ୍ନିଦେବଙ୍କ ସହିତ ପାଣ୍ଡବମାନେ ଉତ୍କଳଭୂମିରେ ପଦାର୍ପଣ ପୂର୍ବକ ତୀର୍ଥ ଦର୍ଶନ କରିଥିଲେ । ସେହି ପ୍ରସଙ୍ଗରେ କବି ଉତ୍କଳୀୟ ପ୍ରକୃତିର କେତେଗୋଟି ବିଶିଷ୍ଟ ଦୃଶ୍ୟ ବର୍ଣ୍ଣନା କରିଛନ୍ତି । ଓଡ଼ିଶାର ପୂର୍ବଦିଗସ୍ଥ ସମୁଦ୍ରର ବର୍ଣ୍ଣନା କବି ଯେପରି ଭାବରେ କରିଛନ୍ତି ତାହା ବେଶ୍ ହୃଦ୍ୟସ୍ପର୍ଶୀ । କବିଙ୍କ ଭାଷାରେ :

ଉତ୍କଳର ପ୍ରାଚ୍ୟ-ନୀର ପ୍ରାଚୀର ଆକୃତି
ନୀଳ- ଫେନାକୁଳ-ତୁଂଗ-ତରଂଗ ଭଂଗୁର
ନୀଳାଚଳ ତଟେ ଯହିଁ ଲୋଟେ ବାରାଂନିଧି
ଗମ୍ଭୀର ନିର୍ଘୋଷ ଘୋଷି ବିଶ୍ୱ ଚରାଚରେ
ଗର୍ଜଇ କି ନିଜ ବିଷଜ୍ୱାଳା ଅସମ୍ଭାଳେ
ଫଣୀନ୍ଦ୍ର ବାସୁକୀ ଅବା ଫଣା ଶ୍ରେଣୀ ତୋଳି !
ଅନନ୍ତ ନୀଳିମାମୟ ସେ ଜଳକାନ୍ତାରେ

କଲ୍ଲୋଳ-ଉଲ୍ଲୋଳ-ଲୀଳା ହେରି କୁତୂହଳେ
ବୀରବୃନ୍ଦ ସର୍ବେ ହେଲେ ସ୍ତବ୍ଧ ବିସ୍ମୟେ ।
(ମହାଯାତ୍ରା-ରାଧାନାଥ ରାୟ)

ଉତ୍କଳର ମହୋଦଧିର ଚିତ୍ର 'ମହାଯାତ୍ରା' କାବ୍ୟର ପ୍ରକୃତି ଚିତ୍ରଣରେ ସ୍ପଷ୍ଟ ହୋଇଛି । ଯେଉଁମାନେ ପୁରୀ କ୍ଷେତ୍ରକୁ ଯାଇ ତାହାର ତୀରବର୍ତ୍ତୀ ତରଙ୍ଗାୟିତ ସାଗରକୁ ଦେଖିଛନ୍ତି, ସେମାନେ 'ମହାଯାତ୍ରା'ର ଉପର୍ଯ୍ୟୁକ୍ତ ବର୍ଣ୍ଣନାର ଗୁରୁତ୍ୱ ସହଜରେ ଉପଲବ୍ଧି କରିପାରିବେ । ଓଡ଼ିଶାର ପ୍ରାଚ୍ୟ ଦିଗସ୍ଥ ପ୍ରାଚୀରାକୃତି ତରଙ୍ଗାୟିତ ଦଗନ୍ତ ବିସ୍ତାରୀ ସାଗର ପ୍ରତ୍ୟେକ ଭାବୁକ ବ୍ୟକ୍ତିକୁ ବିସ୍ମୟାଭିଭୂତ କରି ଦେଇଥାଏ । ପ୍ରକୃତି ପ୍ରେମୀ ଓ କଳ୍ପନାବିଳାସୀ ରାଧାନାଥ ମଧ୍ୟ ଏହି ଭୀମକାନ୍ତ ଦୃଶ୍ୟ ଦେଖି ଏକଦା ସ୍ତବଧି ଓ ବିସ୍ମିତ ହୋଇ ଯାଇଥିବା ସ୍ୱାଭାବିକ୍ ।

ପ୍ରକୃତି ପ୍ରାଣ ସାରସ୍ୱତ ସାଧକ ରାଧାନାଥଙ୍କ 'ମହାଯାତ୍ରା' କାବ୍ୟର ଅନ୍ୟତମ ପ୍ରାକୃତିକ ଚିତ୍ର ହେଉଛି ମହାନଦୀ ତୀରବର୍ତ୍ତୀ ଅରଣ୍ୟ ଓ ପାର୍ବତ୍ୟ ଭୂମିର ଦୃଶ୍ୟ ବର୍ଣ୍ଣନା । କବିଙ୍କ ଲେଖନୀସୃତ ମହାନଦୀ ତୀରବର୍ତ୍ତୀ ଅରଣ୍ୟ ବର୍ଣ୍ଣନା ବେଶ ଚିତ୍ତାକର୍ଷକ । କବି ଯଥାର୍ଥରେ ପ୍ରକାଶ କରିଛନ୍ତି :

କଲ୍ଲୋଳିନୀ-କୁଳେଶ୍ୱରୀ-ମହାନଦୀକୂଳେ
ଗଗନ-ପରଶୀ ବେନି ଦିଗେ ତୁଂଗ ଭୃଗୁ
ସଙ୍କଟେ ସଂକୋଚି ବପୁ, ବାହାରଇ ଯହିଁ
ପୁଣି ପୂର୍ବାକାରେ ସ୍ରୋତ ପୂର୍ବସିନ୍ଧୁ ଗାମୀ
ବିଜନ-ଭୀଷଣ ସ୍ଥଳୀ, ବନଗଜବ୍ରଜ—
କଣ୍ଡୂଳ-କପୋଳ-ପିଣ୍ଡ-ଘର୍ଷଣେ-କମ୍ପିତ—
ଦ୍ରୁମାବଳୀ-ଦେହୁଁ ଯହିଁ ଝରଇ ପ୍ରବାହେ
ସୁରଭି ଅରଣ୍ୟ ପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ,
ବନ ଦେବୀଙ୍କର କି ସେ ଅର୍ଘ୍ୟ-ଲାଜାଞ୍ଜଳି ?
(ମହାଯାତ୍ରା- କବି ରାଧାନାଥ ରାୟ)

ରାଧାନାଥଙ୍କ ମହନୀୟ କର୍ଣ୍ଣିକା ପ୍ରସୂତ 'ମହାଯାତ୍ରା' କାବ୍ୟରେ ଓଡ଼ିଶାର ଅରଣ୍ୟ ପ୍ରକୃତି ଚିତ୍ର ଅଙ୍କିତ ହୋଇଛି । ତନ୍ମଧ୍ୟରେ ଓଡ଼ିଶାର ଅରଣ୍ୟ ପ୍ରକୃତି ସର୍ବାପେକ୍ଷା ଅଧିକ ଚିତ୍ତାକର୍ଷକ ବୋଧହୁଏ । ମନୋହର ବର୍ଣ୍ଣନାକୁ ସହଜ ଓ ସରଳଭାବରେ କବି ପ୍ରକାଶ କରିଛନ୍ତି । ଯଥାର୍ଥରେ :

ନୀଳ ବନସ୍ଥଳୀ ମଧ୍ୟେ ଦୂର ପ୍ରସାରିତ
ସୌର କରୋଦଭାସୀ ଶୁଭ୍ର ନଦୀବାଲି ରେଖା

ସ୍ନିଗ୍ଧଚ୍ଛାୟା-ଦ୍ରୁମବତୀ ଭୀମ ମହାଟବୀ
ଆବରିଛି ମହୀନଭଃ ପଲ୍ଲବ ଗହଳେ
× × × × ×
କାହିଁ ମୁଖରିତ ସ୍ଥଳୀ ଶ୍ୱାପଦ-ନିର୍ଘୋଷେ
ପ୍ରତି ଘୋଷେ ପ୍ରତିବାଣୀ ଦିଅଇ ଯା’ ଶୁଣି
ପ୍ରତିଧ୍ୱନି ଗିରିଗୁହା-କ୍ରୋଡ଼-ପ୍ରଣୟିନୀ
ଶିଳାଶଯ୍ୟା-ପ୍ରବାହିଣୀ ଶୈଳ ସ୍ରୋତସ୍ୱତୀ
ଉପଳେ ସ୍ଖଳିତ ହୋଇ ଯାର ବାରିଧାରା ।
(ମହାଯାତ୍ରା - ରାଧାନାଥ ରାୟ)

## ଚାରି

କେବଳ ‘ଚିଲିକା’, ‘ମହାଯାତ୍ରା’ ନୁହେଁ ରାଧାନାଥ ତାଙ୍କର ପ୍ରତ୍ୟେକ କାବ୍ୟରେ ପ୍ରକୃତିକୁ ସ୍ଥାନଦେଇ, ତାକୁ ମନୁଷ୍ୟ ଜୀବନର ଏକ ଅବିଚ୍ଛେଦ୍ୟ ଅଂଗ ରୂପେ ଗ୍ରହଣ କରିଛନ୍ତି । ପ୍ରତ୍ୟେକ କାବ୍ୟର ଅନ୍ତରାଳରେ ‘ପ୍ରକୃତି’ ପ୍ରଚ୍ଛନ୍ନ ଭାବରେ ରହିଥିବାର ଦୃଷ୍ଟିଗୋଚର ହୁଏ । କବି ନିଜର ଅନ୍ତର୍ଦୃଷ୍ଟି ବଳରେ ପ୍ରକୃତିର ସୁଷମାକୁ ବିଚିତ୍ର ଓ ବିବିଧ ଭାବରେ ଉପଲବ୍ଧି କରି ନିପୁଣତାର ସହିତ ଚିତ୍ର ଅଙ୍କନ କରିଛନ୍ତି । କବି ରାଧାନାଥ ଜଣେ ଯଥାର୍ଥରେ ନିସର୍ଗ ଶୋଭାର ଜଣେ ସ୍ୱଭାବ କବି, ତେଣୁ ତାଙ୍କର କେଦାରଗୌରୀ, ଯଯାତୀକେଶରି, ପାର୍ବତୀ, ଉଷା ପ୍ରଭୃତି ପ୍ରତ୍ୟେକ କାବ୍ୟରେ ପ୍ରକୃତି-ପ୍ରୀତିର ପରିଚୟ ଯଥାର୍ଥ ଭାବରେ ପ୍ରତିଭାତ ହୋଇଛି ।

‘ଚନ୍ଦ୍ରଭାଗା’ କାବ୍ୟର ଆରମ୍ଭରେ କବି ଜଗନ୍ନାଥଙ୍କର ପୌଷମାସରେ ରାମାଭିଷେକ ଉତ୍ସବର ବର୍ଣ୍ଣନା ପ୍ରଦାନ କରିଛନ୍ତି । ସେହି ଉତ୍ସବ ଉପଲକ୍ଷେ ଉତ୍କଳର ବିଭିନ୍ନ ପ୍ରାନ୍ତରୁ ଅନେକ ଦେବଦେବୀ ନିଜ ନିଜର ଉପହାର ଓ ପୂଜାସମ୍ଭାର ଧରି ସିଂହ ଦ୍ୱାରରେ ଉପନୀତ । କବିବର ରାଧାନାଥ ଦେବଦେବୀଙ୍କ ଆଗମନକୁ ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି । କବିଙ୍କ ଲେଖନୀରୁ ଝରି ପଡ଼ିଛି :

ଅଭିଷେକୋତ୍ସବ ଦର୍ଶନ
ଆସେ ସିଂହଦୁଆରେ
ବିଜେ ଆଜ ଦେବ-ଦେବୀଏ
ଯେଝା ପୂଜାସମ୍ଭାରେ

କେତକୀ-କାନନ-ସଂକୁଳ
ରମ୍ୟ ସିକତା ସ୍ଥଳ
ଛାଡ଼ି ହରଚଣ୍ଡୀ ଆଗତ
ଆଜ ଶ୍ରୀ ନୀଳାଚଳ
ଭଗବତୀ ବାଣପୁରରୁ
ଉପନୀତ ସ୍ୱଗଣେ
ଶୋଭିଲରି ଦେଖଇ ସ୍ୱମୁଖ
ଯଦି ହ୍ରଦ-ଦର୍ପଣେ ।
ପ୍ରଭାମଣ୍ଡଳରେ ମଣ୍ଡିତ
ତନୁ କନକ ଗୋରା
ତୈଲଙ୍ଗୀ ବସନ ଭୂଷଣେ
ପୁଣି ଦିଶଇ ତୋରା ।
(ଚନ୍ଦ୍ରଭାଗା- କବିବର ରାଧାନାଥ ରାୟ)

କବି ରାଧାନାଥ ଛବିଳ ଉତ୍କଳର ବିଭିନ୍ନ ତୀର୍ଥସ୍ଥଳୀର ହୃଦୟଗ୍ରାହୀ ବର୍ଣ୍ଣନା ଅତି ସଂକ୍ଷିପ୍ତ ସୁନ୍ଦର ଭାବରେ 'ଚନ୍ଦ୍ରଭାଗା' କାବ୍ୟରେ ପ୍ରକାଶ କରିଛନ୍ତି । ପ୍ରତ୍ୟେକ ଦେବଦେବୀଙ୍କର ପରିଚୟ ଛଳରେ, ସେମାନଙ୍କର ଅଧିଷ୍ଠିତ-ପୀଠର ପ୍ରାକୃତିକ ବର୍ଣ୍ଣନା, କାବ୍ୟରେ ରାଧାନାଥ ପ୍ରକାଶ କରିବା ଫଳରେ ତାଙ୍କର ଭୌଗୋଳିକ ଜ୍ଞାନ ସୌନ୍ଦର୍ଯ୍ୟ-ପିପାସୁ କବିପ୍ରାଣ ଓ ରସାନ୍ୱେଷୀ ଦୃଷ୍ଟିକୋଣର ପରିଚୟ ମିଳିଥାଏ ।

ଉପସଂହାରରେ ଏତିକି କହିଲେ ଯଥେଷ୍ଟ ହେବ ସାରସ୍ୱତ ସାର୍ଥକ କବି ରାଧାନାଥ ଥିଲେ ପ୍ରକୃତିର ଉପାସକ । ପ୍ରତ୍ୟେକ କାବ୍ୟ କବିତାରେ ପ୍ରକୃତି ପୂଜାର୍ଚ୍ଚନା ଦୃଷ୍ଟିଗୋଚର ହୁଏ । କବି ପାର୍ଥିବ ଶରୀର ତ୍ୟାଗ କରିଥିଲେ ବି ଆଜି ତାଙ୍କ ମହନୀୟ ସାହିତ୍ୟକୃତି ପାଇଁ ଅମର ।



# ରାଧାନାଥ : ରୋମାଣ୍ଟିକ୍ ରମ୍ୟତା

ଡଃ ନଟବର ଶତପଥୀ

## ।। ଏକ ।।

"ଯୁବତୀ ସୁଲଭ ସୌନ୍ଦର୍ଯ୍ୟ ମିଶିଲା ଶୌର୍ଯ୍ୟ ପ୍ରଖର
ବେନି ଗୁଣ ମିଳି କଲେ ରମଣୀକି ରୁଦ୍ର ସୁନ୍ଦର ।" (ଉଷା)

ଉଷାର ରୂପ ବର୍ଣ୍ଣିବାରେ ରାଧାନାଥ ଏଇ ଯୋଉ କଳ୍ପନାଟି କଲେ ଓଡ଼ିଆ ସାହିତ୍ୟରେ ତାହା ପ୍ରଥମ । ରମଣୀ ଅଦ୍ୟାବଧି ଥିଲା ଯୁବତୀର ସମସ୍ତ କମନୀୟ ଅଙ୍ଗ ସୌଷ୍ଠବର ମୂର୍ତ୍ତିମତୀ ଅବଳା, ସେ ରମଣୀୟ; ଯେମିତିକି ରମଣଯୋଗ୍ୟା ହେବା ଥିଲା ତାର ନିୟତି । ଆମର ରୀତିକବିକୁଳ ଏଇ ଧାରଣାଟି ଦେଇଥିଲେ । 'ସର୍ବଶୋଭାଧାର ବିମ୍ବାଧରୀ' ଠାରୁ ମାଧୁରୀ ଆଣି ଧାତା ଅନୁପମ କରି ସେ ରମଣୀକୁ ଗଢ଼ିଥିଲେ । ଏବେ ବି ରାଧାନାଥଙ୍କ ପଙ୍କ୍ତିରେ ସେ ଅବିକଳ ସେପରି ଗଢ଼ା । କିନ୍ତୁ ପୂର୍ବ କଳ୍ପନା ଠାରୁ କେତେ ପାଦ ଆଗେଇ ଯାଇ ରାଧାନାଥ ଅବଳାର ଅବଳତ୍ୱକୁ ହଟାଇ ଦେଇଛନ୍ତି । ସହଜେ ସେ (ଉଷା) ସୁନ୍ଦରୀ ସାର, ତା ସହିତ ମିଶିଛି 'ପ୍ରଖର ଶୌର୍ଯ' । ଶୌର୍ଯ ଓ ବୀର୍ଯ ସବୁବେଳେ ପୌରୁଷର ଉପାଦାନ ବାଣଭଟ୍ଟ ଠାଏ କହିଥିଲେ 'ପୂର ପ୍ରବୃତ୍ତ ପ୍ରତୀପପ୍ରହଣଃ', ପଛାନଃ ପୌରୁଷସ୍ୟ'– ପୌରୁଷର ମାର୍ଗ ଆଗେ ଆଗେ ଚଳିବା ପରେ ପ୍ରତାପ ଦ୍ୱାରା ପ୍ରଶସ୍ତ ହୋଇଥାଏ । ରାଧାନାଥଙ୍କ କଳନା ଭିତରେ ଏଇ ସବୁକ୍ତିଟି ଯେମିତିକି ଗମ୍ଭୀର ହୋଇ ଯାଇଛି । ଉଷାର ପୁରୁଷ ସୁଲଭ ଆଚରଣ-ଶସ୍ତ୍ରଶିକ୍ଷା, ମୃଗୟା ପିପାସା ଓ ବିଷମ ପ୍ରତିଜ୍ଞା ତାକୁ ଅଦ୍ୟାବଧି ଅନନ୍ୟ କରିଛି । ସୌନ୍ଦର୍ଯ୍ୟର ସର୍ବଗୁଣେ ସେ 'ନୟନ କାରା, ରୂପ-ବତୀ ସ୍ମୃତି ନଭେ ପ୍ରଭାତୀ ତାରା' ସଦୃଶ୍ୟ, କିନ୍ତୁ ପୂର୍ବ ରମଣୀଙ୍କ ଠାରୁ ପାର୍ଥକ୍ୟ ଯେ ସେ ରୁଦ୍ର ସୁନ୍ଦର ।

ରାଧାନାଥ କହିଁକି କଲେ ଏ କଳ୍ପନା, ଏକ ବ୍ୟତିକ୍ରମ କଳ୍ପନା ? କବିର କଳ୍ପନା ସ୍ୱାଧୀନ, ତାର ବ୍ୟକ୍ତିଗତ ରୁଚି ଓ ସାମର୍ଥ୍ୟ ଜନିତ ଏକ ବ୍ୟାପାର ବୋଲି ଯୁକ୍ତ ହେବ । କିନ୍ତୁ ରାଧାନାଥ ଓଡ଼ିଆ କବି ମଣ୍ଡଳୀ ମଧ୍ୟରେ ବ୍ୟତିକ୍ରମ; ସ୍ଥଳ ବିଶେଷର ଅନନ୍ୟ ମଧ୍ୟ । ଜଣେ କବି ପାଇଁ ଆବଶ୍ୟକ ସବୁ ଯୋଗ୍ୟତାରେ ବିଭୂଷିତ । ବିଶେଷକରି କଳାର କଳାତ୍ମକ ମୂଲ୍ୟବୋଧ ପ୍ରତି ସେ ଜଣେ ନିଷ୍ଠାପର ସ୍ରଷ୍ଟା ।

କଳାର ଅଙ୍ଗିକାରପ୍ରବଣତା ଅପେକ୍ଷା କଳାର ମହତ୍ତର ରୂପ ଅଙ୍କନ ତାଙ୍କର କବି ଦୃଷ୍ଟିର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରେ । ଏଇଠି କଳାର ସହୋଦର ହେଉଛି ସୌନ୍ଦର୍ଯ୍ୟ । ଉଭୟେ ଘନିଷ୍ଠ ପରିପୂରକ ବସ୍ତୁବୋଧ ଭିତରେ ଉଭୟଟି ଆତ୍ମୀୟତା ରକ୍ଷା କରନ୍ତି ଓ ଅଭିନ୍ନ ହୋଇ କଳ୍ପନାର ଚମତ୍କାରିତା ପ୍ରକଟ କରନ୍ତି । କଳାର ସୌନ୍ଦର୍ଯ୍ୟପ୍ରବଣତା ଏଥିପାଇଁ ମହତ୍ତର, କାରଣ ସୌନ୍ଦର୍ଯ୍ୟ ହେଉଛି ବିଶୁଦ୍ଧ; ଅନ୍ୟକୌଣସି ବସ୍ତୁବୋଧ ଠାରୁ ଭିନ୍ନ । ଏକଦା ଅସ୍କର ୱାଇଲ୍ଡ଼ କହିଥିଲେ 'Beauty is the symbol of symbols. Beauty reveals everything, becasue in expresses nothing' (The Critic as Artist) ସୁନ୍ଦର ବସ୍ତୁ କିଛି କୁହେ ନାହିଁ, ସେ କେବଳ ପ୍ରଦର୍ଶନ କରାଇଦିଏ, ନିଜେ ମୂର୍ତ୍ତିମନ୍ତ ହୋଇଯାଏ । ଭାବମୟୀ ପ୍ରତିମା ରୂପେ ଠିଆହୋଇଯାଏ । ନିଜେ ନିର୍ବାକ କିନ୍ତୁ ଦ୍ରଷ୍ଟାକୁ କରେ ସବାକ୍, ସପ୍ରତିଭା ପ୍ରଗଳଭ ହୋଇଉଠେ ସେ । କହିବା ଅପେକ୍ଷା କୁହାଇବା ହେଉଛି ସୌନ୍ଦର୍ଯ୍ୟର ବୈଶିଷ୍ଟ୍ୟ । ଦ୍ରଷ୍ଟା ଗୋଟିକେ ଭାବ ହୁଏତ କୋଟିଏ ହୋଇପାରେ । ତେଣୁ ସେ ପ୍ରତୀକସାର, ନୂଆ ନୂଆ ଅର୍ଥବୋଧରେ ଅଧିରୂଢ଼ ହେବା ତାର ସ୍ୱଧର୍ମ ।

ସୌନ୍ଦର୍ଯ୍ୟ ଆବେଗ ସଂବାହକ । ଏଇ ଆବେଗ କେବଳ ବିଶୁଦ୍ଧ ଆବେଗ ସ୍ତରରେ ରହିଲେ କଳା ଉତ୍କର୍ଷ ଲାଭକରେ , କିନ୍ତୁ ଆବେଗ କର୍ମଚଞ୍ଚଳ ହେଲେ ଜୀବନର ଉଦ୍ଦେଶ୍ୟ ସଫଳ ହୁଏ । ୱାଇଲ୍ଡ଼ କହୁଛନ୍ତି—Emotion for the sake of emotion is the aim of art, and emotion for the sake of action is the aim life ( I bid ). ଆବେଗର ମୂର୍ତ୍ତରୂପ ହେତୁ କଳା ହୁଏ ଅନୈତିକ (all art is immoral) ହେଉପଛେ ଅନୈତିକତାର ଶରବ୍ୟ, କିନ୍ତୁ କଳାର ନିଷ୍କକ୍ଷ ମୂଲ୍ୟବୋଧଟିର ଉତ୍ତରଣ ଘଟୁ । ଯାହା ଏକଦା ନୈତିକତାର ବିଜୟ ମାଳରେ ଅଭିନନ୍ଦିତ ହୁଏ କାଳାନ୍ତରରେ ତାହା ନିଷ୍କକ୍ଷ ହେବାର ସାମର୍ଥ୍ୟ ହରାଇବସେ ଓ ସେହି ହେତୁ କାଳୋତୀର୍ଣ୍ଣତା ବ୍ୟାହତ ହୁଏ ।

ରାଧାନାଥ ନିଷ୍କକ୍ଷ; ଏଣୁ କାଳାନ୍ତରେ ପକ୍ଷଧର । ନିଷ୍କକ୍ଷ ଏଇଥି ପାଇଁ ଯେ ସେ ସୌନ୍ଦର୍ଯ୍ୟର ପ୍ରବକ୍ତା ତଥାଚ ବସ୍ତୁନିରପେକ୍ଷ କଳ୍ପନାର ସମର୍ଥକ । ନରୁଡା ସୌନ୍ଦର୍ଯ୍ୟର ଅଙ୍ଗନରେ ତାଙ୍କର କବିପ୍ରାଣ ସତତ ନୃତ୍ୟରତ । ଏକଥା ଅବଶ୍ୟ ସତ୍ୟ ଯେ ଇନ୍ଦ୍ରିୟବୋଧରୁ ସେ ନିଜ ଜୀବନରେ ଲାଭ କରିଥିବା ଅନୁଭୂତି ଏବଂ ତାହିଁରୁ ପାଇଥିବା ସୁଖ ବା ଦୁଃଖ ସଂପର୍କରେ ଧାରଣା ଦ୍ୱାରା ପ୍ରଚ୍ଛନ୍ନଭାବେ ପ୍ରଭାବିତ ହୋଇଛନ୍ତି । କବି ଏହି ଧାରଣାରୁ ପ୍ରାଥମିକ ପର୍ଯ୍ୟାୟରେ ଅପସରି ଯାଇ ସୃଜନ ଶକ୍ତିର ଶରଣ ପଶିଛନ୍ତି । ଇନ୍ଦ୍ରିୟଦତ୍ତ ଜାଗତିକ ଧାରଣାରୁ ମୁକ୍ତ ରହି ସୃଜନର

ସ୍ୱପ୍ନରେ ବିଭୋର ହେବା ଏବଂ ସୌନ୍ଦର୍ଯ୍ୟ ସୂକ୍ଷ୍ମ ଅନୁଚିନ୍ତାରେ ପ୍ରଗଲ୍‌ଭ ହେବା କ୍ୱଚିତ କବିଙ୍କ ଭାଗ୍ୟରେ ଜୁଟେ । ଏ ଦୃଷ୍ଟିରୁ ରାଧାନାଥଙ୍କ ବୈଶିଷ୍ଟ୍ୟ ଅନେକ । କବିଙ୍କ ବ୍ୟକ୍ତିଗତ ଜୀବନରୁ ଜଣାଯାଏ ସେ ବିଜନତାରେ ଦିନ କାଟୁଥିଲେ, ଦୁଃଖର ପର୍ଯ୍ୟାପ୍ତ ତାଡ଼ନାରେ ହୃଦୟର ସୁକୁମାର ବୃତ୍ତିଟି ମଉଳି ପଡ଼ିଥିଲା । ଯେମିତିକି ଦୁଃଖ ଫର୍ଦ୍ଦେ ଚିରା କାଗଜ କରିଦେଇଥିଲା ଜୀବନକୁ । ଦରିଦ୍ରର ଚିରା ଲୁଗାଟିଏ ପରି ସୁକୁମାର ପଣକୁ ସାତ ସିଲେଇର ଜବରଦସ୍ତି ସାତ ପଣରେ ବାନ୍ଧିରଖିବାକୁ ମନ ବ୍ୟାକୁଳ ହୋଇଥିବ । ସେ ବ୍ୟାକୁଳତା କବିପଣର ଏକ ସ୍ୱତ ପ୍ରବୃତ୍ତ ଆଚରଣ । ସୃଜନଶୀଳ ମନର ଅହରହ ପୀଡ଼ନ; ଭାଙ୍ଗି ପଡୁଥିବା ସବୁ ପ୍ରତିଶ୍ରୁତି ଓ ପାରମ୍ପରିକ ପାରିବାରିକ କଟକଣା ସ୍ୱାଧୀନତାର ବାଟ ଓଗାଳି ବିକରାଳ କରିଦେଇଥିବ ସୁନ୍ଦର ପରି ଜଣାଯାଉଥିବା ସାଂସାରିକ ଜୀବନ, ପ୍ରେମ ଓ ତାର ତଥାକଥିତ ବନ୍ଧନ । ଏସବୁ ଯେ ତାଙ୍କର ଦୁଃଖ ଗୁରୁଙ୍କର ଗୁରୁତ୍ୱପୂର୍ଣ୍ଣ ଶାସନର ଅଂଶ ବିଶେଷ, ଏଥିରେ ସନ୍ଦେହ ନାହିଁ । ବାହୁଲ୍ୟ ଯେ କବିବର ଏ ସଂପର୍କରେ ସୂକ୍ଷ୍ମାତିସୂକ୍ଷ୍ମ ଅନୁଭବ ଦୁନିଆକୁ ଭିନ୍ନ କରି ଶିଖିବାକୁ ପ୍ରେରଣା ଦେଇଛି । ଚିଲିକା କାବ୍ୟର ସୌନ୍ଦର୍ଯ୍ୟର ନବନୀତ ଅଙ୍ଗନରେ ଦୁଃଖ ଗୁରୁଙ୍କର ପ୍ରେତାତ୍ମାକୁ ସେ ଉନ୍ମୋଚନ ନ କରି ରହି ପାରିନାହାନ୍ତି । ପରିଶ୍ରମ, ଯନ୍ତ୍ରଣା, ଅଶାନ୍ତି ଅଥବା ଦୁଃଖ ଆଦି ଜୀବନ କ୍ଷେତ୍ରରେ ବିଭିନ୍ନ ଧରଣର ହୁଅନ୍ତି । ଏଥିରୁ ରୂପ ନେଉଥିବା ଶାରୀରିକ ଯନ୍ତ୍ରଣାର ଧାରଣା ମଧ୍ୟ ଭିନ୍ନ ଭିନ୍ନ ହୁଏ । କିନ୍ତୁ ମନେରଖିବା ପରି କଥାଟିଏ ଆମକୁ ସ୍ମରଣ କରାଇଛନ୍ତି ଏଡମଣ୍ଡ ବର୍କ । ସ୍ୱର୍ଗତ ବର୍କ କହିଛନ୍ତି "ଯନ୍ତ୍ରଣାର ଧାରଣା ମହାନର ମୂଳ ଭିତ୍ତି । ଯେଉଁସବୁ ବସ୍ତୁ ମନରେ ଭୟ, ଯନ୍ତ୍ରଣାର ଆବେଗ ସୃଜିଥାନ୍ତି ସେ ସବୁ ଭୀଷଣ ବସ୍ତୁ ସହ ଘନିଷ୍ଠ, ସେ ସବୁର କାର୍ଯ୍ୟକଳାପରେ ଭୀଷଣତା ସହ ସାଦୃଶ୍ୟ ଥାଏ । ଏପରି ଭୀଷଣ ବିଷୟ ପ୍ରମୁଖ ହେଉଛି ମହାନର ମୂଳ ଉତ୍ସ । ଏହାର ଅର୍ଥ ମନ ଯେତେ ଆବେଗର ବଶବର୍ତ୍ତୀ ହୁଏ ସେ ସବୁ ମଧ୍ୟରେ ସବୁଠାରୁ ଶକ୍ତିଶାଳୀ ଆବେଗ ତିଆରି କରେ ଏହି ଭୀଷଣ ବସ୍ତୁ ପ୍ରମୁଖ । ବର୍କ ଉଦାହରଣ ଦେଇଛନ୍ତି, ଜଣେ କାମୁକର ବର୍ଣ୍ଣନା ସୁସ୍ଥ ଶରୀରଧାରୀର ଜୀବନ୍ତ ବର୍ଣ୍ଣନା ଠାରୁ ଅଧିକ ତୀବ୍ର । ପ୍ରଥମଟିରୁ ଝରି ଆସୁଥିବା ଯନ୍ତ୍ରଣା ଦ୍ୱିତୀୟର ସୁଖପ୍ରଦ ଅନୁଭବ ଠାରୁ ଅଧିକ ଗଭୀର ଓ ତୀବ୍ର ହେବହିଁ ।" ଆମେ ପ୍ରତ୍ୟେକ ସଂସାରୀ ବ୍ୟକ୍ତିଗତ ଅନୁଭୂତିରୁ ଜାଣନ୍ତି ସୁଖର ଆବେଗ ଠାରୁ ଯନ୍ତ୍ରଣାର ଆବେଗ ଅଧିକ ପ୍ରଭାବଶାଳୀ । ବର୍କ ତାଙ୍କର ଦାର୍ଶନିକ ଅନୁସନ୍ଧାନରୁ ଏଇଟି ସହ ମହାନତାକୁ ବେଶ ପାଣ୍ଡିତ୍ୟରେ ଯୋଡ଼ି ଦେଇ କହିଛନ୍ତି ଯାହାସବୁ ମହାନ ପରି ଦୃଶ୍ୟମାନ ସେଗୁଡ଼ିକର ପୃଷ୍ଠଭୂମିରେ ଚିତ୍ରପରି ଶୋଭା ପାଉଥାନ୍ତି ଯନ୍ତ୍ରଣା, ଭୟଙ୍କରିତା । ଯେଉଁସବୁ ବିଷୟର ପରିଣତି

କରୁଣ ବା ଭୟଙ୍କର ତାହା ଯେତେ ତୃପ୍ତିର ବା ସୁଖର ଇଙ୍ଗିତ ଦେଲେ ମଧ୍ୟ ତାକୁ ବରିନେବା ପାଇଁ ଲୋକଟିଏ ମିଳିବ ନାହିଁ । ଏହାର କାରଣ କ'ଣ ? ବିଜ୍ଞ ପାଠକ ମାତ୍ରକେ ଜାଣନ୍ତି ଯନ୍ତ୍ରଣାକୁ ସବୁ ସୁଖ ସତ୍ତ୍ୱେ ସ୍ୱାଗତ କିଏ କରେ ନାହିଁ ।

ଯେମିତି ଯନ୍ତ୍ରଣା ସୁଖଠାରୁ ଅଧିକ ପ୍ରଭାବଶାଳୀ, ସେହିପରି ମୃତ୍ୟୁ ସାଧାରଣ ଭାବେ ଯନ୍ତ୍ରଣା ଠାରୁ ଅନେକ ପରିମାଣରେ ଅଧିକ ପ୍ରଭାବଶାଳୀ । ଏମିତି କାହିଁକି ? ଏହାହିଁ କାରଣ ଯେ ଯନ୍ତ୍ରଣା ଯେତେ ତୀବ୍ର ହେଉପଛେ ମୃତ୍ୟୁ ବିକଳ୍ପରେ ଗ୍ରହଣୀୟ । ମୃତ୍ୟୁ ଇହଧାମର ଭୀତିର ସମ୍ରାଟ; ମଉଡ଼ମଣି । ସେହି ସମ୍ରାଟର ରାଜଦୂତ ତୁଲ୍ୟ ସବୁ ଯନ୍ତ୍ରଣା ଯେତେବେଳେ ଜୀବନ ଆକାଶରେ ଉଇଁ ଆସନ୍ତି ଆନନ୍ଦ ରବିଟି ବୁଡ଼ିଯାଏ । ରାଧାନାଥଙ୍କ ଭାଗ୍ୟାକାଶରେ ଏହାହିଁ ଘଟିଥିଲା । ମୃତ୍ୟୁରାଜଦୂତ ଯନ୍ତ୍ରଣା ତାଙ୍କୁ ବିଧୁନ୍ତୁଦ ପରି ଆକ୍ରୋଶି ବସିଥିଲା । ତାର ସୁନ୍ଦର ଉଲ୍ଲେଖ ଆମେ 'ଚିଲିକା' ଦେଖିଛେ । 'ଜୀବନ ନୁହଁଇ ଜୀବନ୍ତ ମରଣ' ର ଭୂଇଁ ସଂସାର ତାଙ୍କ ପାଇଁ ନରକ (ସଂସାର ନିରୟେଅଙ୍ଗ ଦେଇ ଢ଼ାଳି) । ଜୀବନ ଓ ସଂସାରର ଏ ଅନୁଭବ ଯନ୍ତ୍ରଣାର ସ୍ୱର୍ଣ୍ଣସିଂହାସନଟିଏ କରି କବିଙ୍କୁ ନିରନ୍ତର ଉଦାସୀନ କରିଥିଲା । ବଞ୍ଚିବା ଥିଲା କେବଳ ଯାହା ନିରଂଶୁ ଜୀବନ ।

ନିରଂଶୁ ଜୀବନର ଏପରି ବିଷାଦ ଭିତରେ ସୁଖ ମାତ୍ର ଥିଲା ପ୍ରକୃତିର 'ଚାରୁ ଆଲେଖ୍ୟ' ଅବା 'ରୂପ ଆକର୍ଷଣ (ପ୍ରବଳ)', କବି ପୂର୍ବ ଅନୁଭବରୁ ବୁଝିଥିଲେ ସଂସାର 'ପର୍ଯ୍ୟୁଷିତ ପଦ୍ମପରି' ସ୍ୱଗୁଣରେ ଅଙ୍କୁଶ ମାରେ ଏବଂ ଭୟ ଓ ଭୀତିର କରୁଣ ମନ୍ତ୍ର ଶୁଣାଏ । ସେଥିପାଇଁ ତାହା ସଖ୍ୟ-ସୁଖର ହେତୁ ନୁହେଁ; ହୋଇପାରେ 'ମହାନ୍' । ମହାନତା ସବୁବେଳେ ସମ୍ମାନଜନକ ବ୍ୟବଧାନ ତିଆରି କରେ । ଆପଣାର ବଡ଼ପଣରେ ଡରାଏ, ଶାସନ କରେ । ତୁଚ୍ଛ ଓ ଅଳୀକ ବୋଲି ବାରମ୍ବାର ଭ୍ରୂକ୍ଷେପ କରେ । ଏଥିରେ ସୃଜନର ସାମର୍ଥ୍ୟ କେବଳ ନଷ୍ଟ ହୁଏ ନାହିଁ, ବରଂ ମନ ହୀନମଣ୍ୟତାର ରୁଗ୍‌ଣତାକୁ ଅବୋରି ବସେ ।

ବର୍କ କହିଛନ୍ତି ସୌନ୍ଦର୍ଯ୍ୟ 'ମହାନ'ଠାରୁ ଭିନ୍ନ । 'ମହାନ'ର ଚିତ୍ତ ଉପରେ ନଷ୍ଟ୍ୟାତ୍ମକ ପ୍ରଭାବ କାର୍ଯ୍ୟ କରେ । ଚିତ୍ତବୃତ୍ତି ଥକି ପଡ଼େ, ନିଜକୁ ହଜାଇ ଦିଏ । ମାତ୍ର ସୌନ୍ଦର୍ଯ୍ୟରେ ଥାଏ ଅସ୍ତିବାଚକ ପ୍ରଭାବ । ମନର କୋମଳ ବୃତ୍ତିଗୁଡ଼ିକୁ ଉଦ୍ଭାସିତ କରିବା ପରି ଉପାଦାନ । ତାର ମୌଳିକ ଲକ୍ଷ୍ୟ ମନରେ ପ୍ରେମ ଓ ଶ୍ରଦ୍ଧା ଅନୁରୂପ ଆବେଗ ସୃଷ୍ଟି କରିବା । ଯେଉଁ ଦୃଶ୍ୟ ବା ବସ୍ତୁ ଆଖିରେ ପଡ଼େ ସେଗୁଡ଼ିକର ସମ୍ବେଦନଶୀଳ ଗୁଣଥିବା ଉଚିତ । ଅର୍ଥାତ୍ ସୁନ୍ଦର ବୋଲି ଯାହାକୁ କୁହାଯାଏ ସେସବୁ ସମ୍ବେଦନଶୀଳତାରେ ସ୍ଫୁର୍ତ୍ତ ନହେଲେ ଦର୍ଶକ ମନରେ ପ୍ରେମ ଓ ଆକର୍ଷଣ ଆସିବା ଅସମ୍ଭବ । ରାଧାନାଥ ବସ୍ତୁର (ଦୃଶ୍ୟର) ଏହି ସମ୍ବେଦନଶୀଳ

ଗୁଣକୁ 'ଦ୍ୱୈତଭାବ' ଆଖ୍ୟା ଦେବା ମୂଳରେ ସୌନ୍ଦର୍ଯ୍ୟର ଏପରି ପରମ ଅସ୍ତ୍ୟାର୍ଥକ ମୂଲ୍ୟଟିକୁ ବୁଝିଛନ୍ତି । କାରଣ ବସ୍ତୁର ଆବେଗମୟୀ ଭୂମିକା ଦର୍ଶକର ପ୍ରାଣରେ ଆସକ୍ତି ବା ଅନୁରାଗ (Passion) ଆଣେ, "Great passions may give us quickened sense of life." ଆସକ୍ତି ବା ଅନୁରାଗର ଅଭାବରେ ଜୀବନର ଉପଲବ୍ଧି ଅସମ୍ପୂର୍ଣ୍ଣ ହେବ ହିଁ । ଜୀବନର ପୂର୍ଣ୍ଣାଙ୍ଗ ପରିଚୟ ସମ୍ଭବ ସୌନ୍ଦର୍ଯ୍ୟର ଅନ୍ୱେଷଣରେ, ଆରାଧନାରେ ।

ରାଧାନାଥ ଏଇଥିପାଇଁ ସତ୍ୟ ପଦଟିଏ ଗାଇଛନ୍ତି— 'ରୂପ ଆକର୍ଷଣ ପ୍ରବଳ କିବା ନରେ ଅମରେ' ପ୍ରତ୍ୟେକ ସୁପୁରୁଷ ରସିକ ଓ ରସିକ ପୁରୁଷ ମଧୁହାରୀ ପରି ପ୍ରଚ୍ଛନ୍ନ ରୂପକୁ ଆବିଷ୍କାର କରେ । ଏପରି ଆବିଷ୍କାରଜନିତ ପ୍ରେମ ବର୍କଙ୍କ ଭାଷାରେ ଆସକ୍ତି ବା ଲାଳସା ନୁହେଁ । ବସ୍ତୁର ଦେହ ମୂଲ୍ୟଠାରୁ ତାର ଅନ୍ତର୍ନିହିତ ଗୁଣ ବଳଶାଳୀ ହେଲେ ଆସକ୍ତିର ରୂପାନ୍ତର ଘଟି ଯାହା ଅବଶେଷ ରହେ ତାହା ହୁଏ ବିଶୁଦ୍ଧ 'ପ୍ରେମ' । ସେଥିରେ ସ୍ୱାର୍ଥର ଆଲୋକ ସଦା ଅନୁଜ୍ଜ୍ୱଳ । ବରଂ ଉଜ୍ଜ୍ୱଳ ହୋଇ ରହେ ସମର୍ପଣ । 'ଚିଲିକା' ଏପରି ଏକ ସମର୍ପଣ ଭାବର ଦ୍ୟୋତନାର ବର୍ଣ୍ଣନାକୁ ନେଇ ଖୁବ୍ ସମୃଦ୍ଧ । ପୂର୍ବ ସୂଚନା କ୍ରମେ ଦ୍ୱୈତଭାବର ଦ୍ୟୋତକ । ଏ ସମର୍ପଣ ଭକ୍ତର ଭଗବାନଙ୍କଠାରେ, ପତ୍ନୀର ସ୍ୱାମୀଠାରେ ଯେପରି ସାପେକ୍ଷତା ଭାବରେ ବିକଶିତ ହୋଇଥାଏ, ସେହିପରି ନିରନ୍ତର ଆତ୍ମ-ବିନିମୟମୂଳକ ଏବଂ ପ୍ରସାରଣମୂଳକ ।

ରୋମାଣ୍ଟିକ ମାତ୍ରେ ଆବେଗର ଏଇ ପ୍ରକ୍ରିୟାକୁ ମୌଳଶକ୍ତିରୂପେ ବିଚାର କରିଥାନ୍ତି । ତାଙ୍କର କଳ୍ପନାର କରଣି ଆବେଗର ସ୍ୱତସ୍ଫୂର୍ତ୍ତ ପଥରେ ଯେଉଁ ଅନୁଭୂତ ବସ୍ତୁ ବା ଦୃଶ୍ୟକୁ ଆକର୍ଷି ନେଉଥାଏ, ତାହା ସହିତ ବିଶ୍ୱସ୍ତତାର ରଜ୍ଜୁରେ ବାନ୍ଧି ହୋଇଯାଏ । ଆକର୍ଷଣର ତୀବ୍ରତା ଆବେଗର ତୀବ୍ରତା ସହିତ ସମାନ୍ତରାଳ । ଆବେଗର ଅବଶେଷରେ ବିସ୍ମୟର ଉତ୍ପାଦନ । ବିସ୍ମୟ ମନର ଏପରି ଏକ ଅବସ୍ଥା ଯେଉଁଥିରେ ମନ କିଛି ପରିମାଣରେ ସଂତ୍ରସ୍ତ ହୋଇଯାଏ ଏବଂ କିଛି ସମୟ ପାଇଁ ସ୍ଥିର ଓ ଚିତ୍ତ ଆଲୋଡ଼ନରୁ କ୍ଷାନ୍ତ ହୁଏ । ଏହା ଏକ ପ୍ରକାର ଅଭିଭୂତ ଅବସ୍ଥା । ସ୍ୱାଭାବିକ ଭାବେ ଅଭିଭୂତ ଅବସ୍ଥାରେ ଦେଖୁଥିବା ବସ୍ତୁ ବା ଦୃଶ୍ୟ ବ୍ୟତୀତ ଅନ୍ୟଆଡ଼େ ମନ ଆକୃଷ୍ଟ ହେବା ଅସମ୍ଭବ । ପୁଣି ଏହି ହେତୁ ବସ୍ତୁ ବା ଦୃଶ୍ୟ ବିଷୟରେ ମନ କୌଣସି ପ୍ରକାର ଯୁକ୍ତି ବାଢ଼ି ପାରେ ନାହିଁ । ସାଧାରଣ ଭାବେ ପ୍ରକୃତିର ଦୃଶ୍ୟ ସମ୍ବନ୍ଧରେ ଏହି ଭାବ ଜାତ ହୁଏ । ବର୍କ ଏହି ଦୃଶ୍ୟଗୁଡ଼ିକୁ ମହାନ ଓ ବିରାଟ ବୋଲି କହିଛନ୍ତି । ଅବଶ୍ୟ ମହାନର ପରବର୍ତ୍ତୀ ପର୍ଯ୍ୟାୟ ବିରାଟର ଧାରଣା । ସୌନ୍ଦର୍ଯ୍ୟ ପ୍ରକରଣରେ ମହାନର ସବୁଠାରୁ ଉନ୍ନତ ଓ ବଳିଷ୍ଠ ପ୍ରଭାବ

ହେଉଛି ବିସ୍ମୟ । ରୋମାଣ୍ଟିକ କବି ବସ୍ତୁ ଓ ଦୃଶ୍ୟରେ ବିସ୍ମୟର ଅବଲୋକନ କରନ୍ତି । ୱାଲଟର ପେଟରଙ୍କୁ ଆମେ ଏ ପ୍ରସଙ୍ଗରେ ସ୍ମରଣ କରିବା । ସେ କହୁଛନ୍ତି 'To add strengness in beauty' — ସୌନ୍ଦର୍ଯ୍ୟର ବିସ୍ମୟକାରୀ ଶକ୍ତିର ଆରୋପନ । କବି ପ୍ରାକୃତିକ ଦୃଶ୍ୟ ଓ ନାରୀର ରୂପ ଭିତରେ ସନ୍ଦର୍ଶନ କରୁଥିବା ସୌନ୍ଦର୍ଯ୍ୟକୁ ସାଧାରଣ ବୋଲି ମନେ କରେ ନାହିଁ, ତାର ଏକକତା ବା ଶ୍ରେଷ୍ଠତା ପ୍ରତିପାଦନ ପାଇଁ ସେଥିରେ ବିସ୍ମୟ ଉତ୍ପାଦନ ଗୁଣଟି ଅବିଷ୍କାର କରନ୍ତି । ପାଠକେ ଏଇଠି ପ୍ରଶ୍ନ କରିପାରନ୍ତି ଯେ, ବର୍କଙ୍କ କହିବା ଅନୁସାରେ ମହାନ ଓ ବିରାଟ ବସ୍ତୁ ହିଁ ବିସ୍ମୟ ସୃଷ୍ଟି କରନ୍ତି । ତେବେ କବି ଯେଉଁ ବସ୍ତୁ ବା ଦୃଶ୍ୟର ସୌନ୍ଦର୍ଯ୍ୟରେ ବିସ୍ମୟ ଉତ୍ପାଦକ ଗୁଣର ଆବିଷ୍କାର କରନ୍ତି, ସେ ବସ୍ତୁ ବା ଦୃଶ୍ୟ ମହାନ ବା ବିରାଟର ଅନ୍ତର୍ଗତ ହେବ କି ? ଏପରି ଧାରଣା ସ୍ୱାଭାବିକ । କିନ୍ତୁ ବର୍କଙ୍କର ବିସ୍ମୟ ୱାଲଟରଙ୍କ Strangness (ବିସ୍ମୟ) ଏକ ଶ୍ରେଣୀର ନୁହେଁ । **Strangness** ଓଡ଼ିଆରେ ବିସ୍ମୟ ଶବ୍ଦଟି ଭିତରେ ଅଧିକ ଅର୍ଥପ୍ରସାରୀ ମନେ ହୁଏ; ଏହାକୁ ପାଠକେ କୌତୁହଳ ଉଦ୍ଦୀପକ ମନେ କରନ୍ତୁ ।

ଉଷା କାବ୍ୟରେ ଉଷାର ସୌନ୍ଦର୍ଯ୍ୟ ସମ୍ପର୍କିତ ପ୍ରଦତ୍ତ ରାଧାନାଥଙ୍କ ରୂପବର୍ଣ୍ଣନା ପଦଟିକୁ ମୁଁ ଏହି ବିସ୍ମୟ ଗୁଣର ଉଦାହରଣ ରୂପେ ଗ୍ରହଣ କରୁଛି । ନାରୀ ସୁନ୍ଦର; ତାର ଅଙ୍ଗ ସୌଷ୍ଠବରେ ଅମୃତର ଲୋଭାସକ୍ତ କାନ୍ତି ଝଲି ଉଠେ । ସେ ସର୍ବଶୋଭାଧର ବସ୍ତୁଗୁଡ଼ିକର ଅଂଶବିଶେଷ ନେଇ ଯେପରି ସୁଠାମ ଓ ସୁସମନ୍ୱିତ ଗୋଟିଏ ତନୁଶ୍ରୀର ମୂର୍ତ୍ତବିଗ୍ରହ । କବିମାତ୍ରକେ ଏପରି ଦେଖନ୍ତି ଓ ରୂପର ସର୍ବଚିତ୍ତଜୟୀ ଗୁଣଟିକୁ ଭୂୟସୀ ପ୍ରଶଂସା କରନ୍ତି । ଅନେକତ୍ର ଆମର ରୀତିକବିଙ୍କ ପରି କବି ବା ପାଠକମାନେ ସେ ରୂପ ପ୍ରତି ଭକ୍ତି ଓ ସମ୍ମାନ ପ୍ରଦର୍ଶନ ମଧ୍ୟ କରନ୍ତି । କିନ୍ତୁ ରାଧାନାଥ ଏଥି ଶେଷ ପର୍ଯ୍ୟାୟକୁ ଓହ୍ଲାଇ ଆସନ୍ତି ନାହିଁ । ବର୍କ ବିସ୍ମୟକୁ ମହାନର ଶ୍ରେଷ୍ଠ ପ୍ରଭାବ ବୋଲି କହିବା ସଙ୍ଗେ ସଙ୍ଗେ ଏହାଠାରୁ ପ୍ରଶଂସା, ସମ୍ମାନ ଓ ଭକ୍ତିକୁ ନ୍ୟୂନ ବୋଲି ମନେ କରିଛନ୍ତି । ସାଧାରଣ କବି, ପାଠକଟିଏ ପରି ସୌନ୍ଦର୍ଯ୍ୟକୁ ପ୍ରସଂଶା କରେ ବା ତା ପ୍ରତି ଭକ୍ତି ଓ ସମ୍ମାନରେ ନଇଁଯାଏ । ରୀତିକବିମାନେ ନାୟିକାକୁ ଏଇ ପର୍ଯ୍ୟାୟରେ ବାନ୍ଧି ଦେଇଥିଲେ, କାରଣ ସେଇଠି ଥିଲା ଦେହର ଆକର୍ଷଣ, ଏକପତ୍ନୀବ୍ରତର ତାଡ଼ନା । ପ୍ରେମିକା ପତ୍ନୀଟିଏ ହୁଏ । ପତ୍ନୀ ପ୍ରତି ପ୍ରେମର ପରମ ନିଦର୍ଶନ ସ୍ୱରୂପ ସମ୍ମାନ ଓ ଭକ୍ତି ଅର୍ପଣ । ଗୋଟିଏ ଦୃଷ୍ଟିରୁ ପୁରୁଷର ଅହଙ୍କାରକୁ ଏହା ବହୁ ପରିମାଣରେ ଖର୍ବ କରିଛି; କିନ୍ତୁ ସୌନ୍ଦର୍ଯ୍ୟ ଓ ପ୍ରେମ ଦେହ ଲାଳସା ହେତୁ ଉତ୍ତରଣଶୀଳ ହୋଇ ପାରି ନାହିଁ । ରାଧାନାଥ ରୀତିକବିଙ୍କ ପରି ରୋମାଣ୍ଟିକ, ହେଲେ ସେ ଥିଲେ ସୌନ୍ଦର୍ଯ୍ୟ ଶାସ୍ତ୍ରରେ ଅବଗାହୀ ସ୍ରଷ୍ଟା । ଶାସ୍ତ୍ରର ଅଧିଗତ ଜ୍ଞାନ ସହ ନିଜର ଦୃଢ଼ ଅନୁଭବ ଓ କଳ୍ପନା ଏପରି ମିଶି ରହିଛି ଯେ,

ଶାସ୍ତ୍ର ଓ କବିତ୍ୱ ଜଣା ପଡ଼ନ୍ତି ନାହିଁ ଭିନ୍ନ ହୋଇ। ସୌନ୍ଦର୍ଯ୍ୟ ସହ ଶୌର୍ଯ୍ୟ ମିଶି ସୁନ୍ଦରୀ କି କଲେ ରୁଦ୍ରସୁନ୍ଦର । ସେ ଅବଧି ରମଣୀ ପ୍ରତି ନିହିତ ରୂଢ଼ବାଦୀ କଳ୍ପନା ସୁନ୍ଦର ସୀମାରେ ହିଁ ଥିଲା ସନ୍ତୁଷ୍ଟ; ମାତ୍ର ରାଧାନାଥ ସ୍ୱଭାବତଃ ଅସନ୍ତୁଷ୍ଟ ବ୍ୟକ୍ତି ଜଣେ । ଅଭାବ ବୋଧ ପ୍ରବଳ । ସାମର୍ଥ୍ୟ ଅସମ୍ଭବ ଓ ଅସମ୍ଭାଳ। ତାଙ୍କ କଳ୍ପନାର ସୀମା ଅନିର୍ଦ୍ଦିଷ୍ଟ। ଯେଉଁଠି ତାହା ପରମ୍ପରାଠାରୁ ବ୍ୟତିକ୍ରମ ସୃଷ୍ଟି କରିଛି, ଅନ୍ୟକଥାରେ ରମଣୀୟ ବସ୍ତୁର ରମଣୀୟତାର କାରଣ ଖୋଜି ପାରିଛି ସେଇଠି ସନ୍ତୋଷର ହେଲିପ୍ୟାଡ଼ରେ ଅବତୀର୍ଣ୍ଣ ହୋଇଛି । ଏଇ ଅବତରଣରେ ତାଙ୍କର କାବ୍ୟପୁରୁଷ (କ୍ଷଣେ କ୍ଷଣେ ଯନ୍ନବତାମୁପୈତି ତଦେବ ରୂପଂ ରମଣୀୟତାୟାଃ) ରମଣୀୟତାରୁ ନୂଆ ନୂଆ ଗୁଣର ଆହରଣ ସାମର୍ଥ୍ୟ ବା କଳାଟି ମଧ୍ୟ ଭୂଯାତ୍ରୀ ପରି ଆସିଛି ସଦର୍ପରେ । ପାଠକେ ତାକୁ ସ୍ୱାଗତ କରନ୍ତୁ । ଉଷା ସୁନ୍ଦର, କିନ୍ତୁ ଅବଳା ନୁହେଁ, ପୁରୁଷର ବିଷମ ପ୍ରତିଜ୍ଞା ନେଇ ସତୀର୍ଥ କବିଙ୍କ ସହ ସେ ସହଯାତ୍ରୀ ।

ପାଠକେ ଲକ୍ଷ୍ୟ କରିବେ ରମଣୀର ରୌଦ୍ରତା କାବ୍ୟଟିର ମୂଳ ବିନ୍ଦୁ, ପରିଣତି ତଥାଚ। କରୁଣ ପରିଣତିରେ ପାଠକକୁ ସମ୍ମୋହିତ କରି ରଖେ ଏହାର ଦ୍ୱିତଳ ରୂପୀ କାବ୍ୟାନୁଷଙ୍ଗ 'ଆକସ୍ମିକତା' ନାଟକୀୟ ଆବେଗର ଗଣ୍ଠିଧନ । ପାଠକେ ସ୍ମରଣ କରନ୍ତୁ; ପୂର୍ବ ପଦ ପଢ଼ିଗଲାବେଳେ ମନରେ ଯେଉଁ ଉତ୍ସାହ ଆସେ, ଠିକ୍ ତାର ପର ପଦରେ କବି ବର୍ଣ୍ଣୁଛନ୍ତି—

"ବିଷମ ପ୍ରତିଜ୍ଞା ମନେ ମନାସିଲା ସୁନ୍ଦରୀସାର
ଗତିବେଗେ ତାକୁ ଯେ ଜିଣିବ, ହେବ ପତି ସେ ତାର ।"

କାବ୍ୟଶୈଳୀର ହଠାତ୍ ପଥ ପରିବର୍ତ୍ତନ । ପାଠକ ମନରେ ହଠାତ୍ ଅନ୍ୟ ଏକ ଭାବର ସଞ୍ଚାଳନ । ସୁନ୍ଦରୀର ପୁଣି ପଣ, ଯେଉଁ ପଣ ପୁରୁଷ ଭିତରେ ବିରଳ, ସେହି ବିରଳ ଆଚରଣ ଯାହାକୁ ରୁଦ୍ର କରେ ତା ପାଖରେ କେବଳ ସୁଲଭ। ପୁଣି ଦେଖନ୍ତୁ, ଦୌଡ଼ ପ୍ରତିଯୋଗିତାର ଅବ୍ୟବହିତ ପୂର୍ବରୁ ପଣ-ସ୍ଥଳୀରେ ପହଞ୍ଚୁଛନ୍ତି, ଉଷା ଓ ଜୟନ୍ତ । ଜୟନ୍ତକୁ ସେଇ ପ୍ରଥମ ଦେଖା । ନାତିଦୀର୍ଘ ବର୍ଣ୍ଣନା—ମାତ୍ର ୨୩ଟି ପଦରେ କାବ୍ୟର ବସ୍ତୁଭାବ କେତେ ଚିତ୍ତାକର୍ଷକ ଓ ପାଠକୀୟ ତଥା କାବ୍ୟାବେଗରେ ଉତ୍କୂଳତାର ପ୍ରତିନିଧି ହୋଇପାରେ ତାହା ଦେଖନ୍ତୁ। ଉଷା ଜୟନ୍ତକୁ ଦେଖିବା ପରେ—

"ମନୁ କରିଥିଲା ନିରାଶେ ପ୍ରଣୟ ପ୍ରସଙ୍ଗ ଦୂର
ଏବେ ଅଙ୍କୁରିଲା ହୃଦୟେ ଉଦ୍ଦାମ ପ୍ରେମ ଅଙ୍କୁର
ତନୁ ପୁଲକିଲା ଅଭିନବ ପ୍ରେମ ମୋହନ ବଳେ
ସୁରଞ୍ଜିତ ହେଲା ଅମଳ କପୋଳ ଲାଜ ପାଟଳେ ।"

ପ୍ରଣୟ ବିଷୟରେ ବିମନା ବାଳାର ଆକସ୍ମିକ ପରିବର୍ତ୍ତନର ହେତୁଟି କଣ ? ରୂପ ଗୋସ୍ୱାମୀଙ୍କୁ ଆମେ ଉଦ୍ଧାର କରିବା—

''ସମ୍ୟଙ୍‌ମସୃଣିତ ସ୍ୱାଂତୋ ମମତ୍ୱାତିଶୟାଂକିତଃ
ଭାବଃ ସ ଏବ ସାଂଦ୍ରାତ୍ମା ବୁଦ୍ଧୈଃ ପ୍ରେମାନିଗଦ୍ୟତେ ।''
(ଭକ୍ତିରସାମୃତସିନ୍ଧୁ-୧।୪।୧)

ଅନ୍ତଃକରଣକୁ ଦ୍ରବୀଭୂତ କରିଦେବା ପରେ ତଥା ଅତ୍ୟଧିକ ମମତାରେ ସାନ୍ଦ୍ରଭାବକୁ ବିଦ୍ୱାନମାନେ ପ୍ରେମ କହନ୍ତି । ଉଷାର ପଥରଘନ ପ୍ରାଣ ଏଥି ପୂର୍ବେ ଥିଲା ମମତା ବିରହିତ, ଅନ୍ତଃକରଣଟି ବଡ଼ ନିଷ୍କରୁଣ, ଭାବ ନିରପେକ୍ଷ । ଏଇ ମାତ୍ର ସେ ଦେଖୁଛି ଜୟନ୍ତକୁ - କଣ ସେ ଦେଖୁଛି—

''ଏ ରୂପ ମାଧୁରୀ କାହିଁଥିଲା ପୁଣି ଭୁବନେ ଲୁଚି ?
ଥରେ ପିଇ, ଆହା ! ପାରିବ କି ତାହା ନେତ୍ର ମୁରୁଛି ?''

ରସିକତାର ରମ୍ୟବୋଧଟି ଫିଟି ଯାଉଛି, ରୁଦ୍ରସୁନ୍ଦର ରୂପ ସାଙ୍ଗକୁ ମଣିକାଞ୍ଚନ ପରି ତୁଲ୍ୟତା ଥିବା ଦରକାର । ଉଷାର ନୀରବ ନେତ୍ର ସେ ଅବଧି ଏପରି ରୂପର ପ୍ରତୀକ୍ଷାରେ ଥିଲା ନିଶ୍ଚୟ । ସରଳ ସୁଢ଼ଳ ଚାରୁ ବପୁ, ମଧୁର ଗୌର ଗଣ୍ଡ, ଚାରୁ ଚିବୁକ ଉପରେ ନବଜାତ କୃଶ ଶ୍ମଶ୍ରୁରେଖା ଯେମିତିକି ବାଳ କମଳକୁ ଶିଶୁ ଭ୍ରମରମାନେ ଘେରିଛନ୍ତି । ବହୁ ରସବତୀଙ୍କ ହୃଦୟର ଚୋର ଜୟନ୍ତ ଅନେକ ଦିନୁ ଅକସ୍ମାତ ଭାବେ ତାର ନେତ୍ରର ସନ୍ଦିଗ୍ଧର କାରଣ ହୋଇଥିଲା । ପୌରୁଷର ଏକ ଲୁକ୍‌କାୟିତ ଅବଲୀଳାରେ ସେ ଦିନ ମରଣ ମୁହଁରୁ ରକ୍ଷା ପାଇଥିବା ରମଣୀଟି ଆଜି ତାକୁ ମୂର୍ତ୍ତିମନ୍ତ ବିଗ୍ରହ ଭିତରେ ଦେଖିବା ପରେ ଯେଉଁ ଭାବସାନ୍ଦ୍ରର ନିକଟବର୍ତ୍ତୀ ହେଉଛି ତାହା ପ୍ରେମ ବ୍ୟତୀତ ଆଉ କେଉଁଥିରେ ହୃଦୟକୁ ତଲ୍ଲୀନ କରିପାରେ ? ଚାତୁର୍ଯ୍ୟରେ କୁହନ୍ତି ରାଧାନାଥ । ଚାତୁର୍ଯ୍ୟ ଅବଶ୍ୟ ପ୍ରସଙ୍ଗୋଚିତ, ବଡ଼ ରସପ୍ରଦ ଆଲେଖ୍ୟ । ସେହି ରସପ୍ରଦ ପଦଗୁଡ଼ିକ ପାଠକ ଅତିକ୍ରମ କରିପାରେ ନାହିଁ । କାରଣ ସ୍ୱଭାବସୂକ୍ଷ୍ମ ଆବେଗରେ ଚଞ୍ଚଳତାର ପାଦକୁ ବାନ୍ଧି ପକାଏ । ବର୍ଣ୍ଣନାରେ ରୀତିକବିର କାବ୍ୟଗୁଣ ଓ ଶୈଳୀ ଉଦ୍ଘାଟିତ ରହୁଛି, ହେଲେ ବି ସେଥିରେ ନବରୋମାଣ୍ଟିକ ପ୍ରବୃତ୍ତିଟି ଗୁରୁଗମ୍ଭୀର ଧ୍ୱନି କରି କବିତ୍ୱର ସ୍ୱାତନ୍ତ୍ର୍ୟ ଦେଖାଇ ଦେଉଛି । ପ୍ରେମ ସହିତ ଦୁଃଖ ଏକାବେଳକେ ନିରନ୍ତର—

''ପ୍ରେମଣା ସହୈବ ସତତଂ ଭ୍ରମତୀବ ଦୁଃଖମ୍ (ବୀଣାବାସବଦତ୍ତା)

ଏ କାରଣଟି କଣ ? ପୌରୁଷ ପ୍ରତି ଅନାସ୍ଥା ଭାବ ନୁହେଁ କି ? ଭଞ୍ଜଙ୍କ ନାୟିକା ପ୍ରେମତରଙ୍ଗରେ ତରଙ୍ଗ ତଳର ଖରସ୍ରୋତ ପ୍ରତି ଉଦ୍‌ବିଗ୍ନ ନଥିଲେ, ଯେମିତି ଉଦ୍‌ବିଗ୍ନ ଉଷା—

"ମୋ ଛାର ତରୁଣୀ ପାଇଁ ହେଲା ଏଡ଼େ ବାଇ କିପାଇଁ ?
ଏଡ଼େ ଶ୍ଲାଘ୍ୟପ୍ରାଣ ବୟଃରୂପେ ଦେବ ହେଲେ ହରାଇ
ଆହା, କାଲି ପ୍ରାଣ ବଞ୍ଚାଇଲା ବନେ ମୋର ଯେ ଜନ
ଧିକ୍ ଶତାଧିକ ମୋ ପାଇଁ ଆଜିରେ ଦେବ ଜୀବନ ।"

ବିଷମ ପ୍ରତିଜ୍ଞା ଫଳରେ ଶତ ରାଜଯୁବା ଯେଉଁଠି ନିଦାର ସାମଗ୍ରୀ ହେଲେ ସେଇଠି ଶ୍ଲାଘ୍ୟପ୍ରାଣର ଅଧିକାରୀ ହୋଇ ଦୁଃସାହସ କରିବାର ଅର୍ଥ କଣ ? କାହିଁକି ଉଚ୍ଛନ୍ନ ପ୍ରାଣ ଏତେ ସମ୍ବେଦନଶୀଳ ? ବାଣଭଟ୍ଟ ଠାଏ କହିଛନ୍ତି—

"ପ୍ରଥମ ଦର୍ଶନେ ଚୋପାୟନମିବୋପନୟତି ସଜ୍ଜନଃ ପ୍ରଣୟମ୍ ।"

ପ୍ରଥମ ଦର୍ଶନରେ ମନରେ ଯେଉଁ ଭାବଟି ଆସେ ସଜ୍ଜନ ହୋଇଥିଲେ ବ୍ୟକ୍ତି ଉପହାର ରୂପେ ପ୍ରଣୟ ସମର୍ପଣ କରନ୍ତି । ଉଷା ସଜ୍ଜନ ନିଶ୍ଚୟ । ସଜ୍ଜନର ହୃଦୟ ସକରୁଣ ମଧ । ପ୍ରଣୟ ଅର୍ପଣ ଶେଷ । କିନ୍ତୁ ଦୁଃଖ ହେଉଛି 'ପୂର୍ବ ଅର୍ଥୀଙ୍କର ବୃତ୍ତାନ୍ତ ।' ପୁରୁଷର ବୃଥା ଆସ୍ଫାଳନ । ରାଧାନାଥ ଦେଖିଥିଲେ ପୁରୁଷର ଅହଙ୍କାରରେ ସୁପ୍ତ ମହାନତା, ତାର ତଥାକଥିତ ଭ୍ରୂଭଙ୍ଗୀର କରାଳ ରୂପ, ଯାହା ସାମାଜିକ ବ୍ୟବସ୍ଥାରେ ତାର ହାତରେ ଶାସନର ଦଣ୍ଡ ଧରାଇ ଦେଇ ସ୍ୱେଚ୍ଛାଚାରକୁ ଜୀବନର ବ୍ରତ ରୂପେ ଚିହ୍ନାଇ ଦେଇଥିଲା । ଯେଉଁଠି ସ୍ୱାଧୀନତା ଥିଲା ଏକ ଦୂରନ୍ତ କଳ୍ପନା ମାତ୍ର । ନାରୀକୁ ଗୃହକୋଣର ବନ୍ଦିନୀ ପ୍ରେତାତ୍ମା ପରି ଆତ୍ମତିକ୍ରାର କରାଇବାକୁ ପଣ କରିଥିଲା । ନନ୍ଦିକେଶ୍ୱରୀ ସେଦିନ ତାର ପ୍ରତିବାଦ କରି ବାହାରି ଯାଇଥିଲା ପିତୃ ସମ୍ମାନର ପ୍ରତୀକ ଜୈତ୍ରମଣି ହାତରେ ଧରି । ଯେଉଁ ଶାସ୍ତ୍ର ପିତାକୁ ପୂର୍ଣ୍ଣ ଅଧିକାର ଦେଇଥିଲା ସୁତାକୁ ଶାସନ କରିବାରେ,ସେ ଶାସ୍ତ୍ରତ ଦିନେ ଶିଖାଇ ନଥିଲା ଅନ୍ୟର ମନକୁ ବୁଝିବା ପାଇଁ —

"ଚିହ୍ନିବାକୁ ଶିଖି ନାହିଁ ପର ମନ
ସେ କି କେବେ ପ୍ରଭୁ ପଣକୁ ଭାଜନ
ସୁତାରେ ପିତାଙ୍କ ପୂର୍ଣ୍ଣ ଅଧିକାର
ଭଣେ ଯେଉଁ ଶାସ୍ତ୍ର ତାକୁ ନମସ୍କାର ।"

ପୁରୁଷ ଶାସିତ ବ୍ୟବସ୍ଥାଟି ଥିଲା ରାଧାନାଥଙ୍କ ବ୍ୟଙ୍ଗ ଦୃଷ୍ଟିରେ ଆତ୍ମସ୍ୱାର୍ଥପଟୁ—

"ଯାହା ଇଚ୍ଛା ତାହା ପର ଭାଗ୍ୟେ ଘଟୁ.
ନିଜ ଚିତ୍ତବୃତ୍ତି ଚିହ୍ନିବାକୁ ପଟୁ ।"

ଏକଥା ଜାଣିବା ପରେ ନନ୍ଦିକେଶ୍ୱରୀ କାହିଁକି ବା ନିଜ ପ୍ରେମର ବିନିମୟରେ ପିତୃ ସମ୍ମାନକୁ ମଥାର ମଣି କରିଥାନ୍ତା ? ସେ କଣ ଜାଣିଥିଲା ବୀରର ଅନ୍ତର

ତଳେ ସେଇ ବ୍ୟବସ୍ଥାର ଏକ ଅଂଶ ପୁଣି ଅହଙ୍କାର ଓ ଦାମ୍ଭିକତାରେ ଏତେ ନିଷ୍କରୁଣ ହୋଇପାରେ । ନାରୀର ପବିତ୍ର ଆତ୍ମସମର୍ପଣ ବାହିତ ପ୍ରେମ ପ୍ରତି ବୀର୍ଯ୍ୟ ହେବ ପ୍ରତିକୂଳ । ବୀର ପୁଣି ଦଣ୍ଡ ପ୍ରତୀକରେ ଶ୍ରୀବତ୍ସଲାଞ୍ଛିତ ଉଦାରତା ହେତୁ ବିଶ୍ୱର ବିଶ୍ୱାସଭାଜନ । ସେ ପୁଣି ତିରସ୍କାର ବହ୍ନିରେ କୋମଳ ପଦ୍ମବନକୁ ପର୍ଯ୍ୟୁଷିତ କରିଦେବ ! ପ୍ରେମର ପ୍ରତିଦାନ କଣ ତିରସ୍କାର ? ସୋମଦେବ କହିରଖିଛନ୍ତି—

"ଅନୁରାଗ ପରାୟଣଃ କୁର୍ବତେ କିଂ ନ ଯୋଷିତଃ ।"

ଅନୁରାଗରେ ହୃଦୟ ଥରେ ପରାଧୀନ ହେଲେ, ନାରୀମାନେ କଣ କରି ନ ପାରନ୍ତି ? ଏତ ଅତି ସ୍ୱାଭାବିକ ପ୍ରବୃତ୍ତି ନାରୀର । ବିଦ୍ୟାଧରଙ୍କ ମର୍ମରେ କହିଲେ—

"ଅକୃତ ପ୍ରେମୈବ ବରଂ ନ ପୁନଃ ସଂଜାତ ବିଘଟିତ ପ୍ରେମା ।"

ପ୍ରେମ ନ କରିବା ଭଲ, ଥରେ ପ୍ରେମ କରି ତାର ବିଘଟନକୁ ସହିବା ଅସମ୍ଭବ । ନାରୀର ଇହ ଓ ପରକାଳର ପଥକୁ ସୁପ୍ରଶସ୍ତ ଓ ସୁଦୀର୍ଘ କରିବା ପାଇଁ ସିନା ତାର ଭଲ ଭର୍ତ୍ତାଟିଏ ଲୋଡ଼ା । ପ୍ରେମ-ଆରାଧନାରୁ ସେଇ ଭର୍ତ୍ତାଟିକୁ ବାଛିବା ତ ତାର ସ୍ୱଧର୍ମ । ତେବେ ନନ୍ଦିକାର ଭୁଲ କେଉଁଠି ?

ନାରୀର ପକ୍ଷରେ କବି ସବୁ ଯୁକ୍ତି ଢାଳି ଦେଇ ନୀରବ ନୁହନ୍ତି । କବିତ୍ୱ ବା କଳ୍ପନା ଏକଧାର ଅସ୍ତ୍ର ନୁହେଁ, ପ୍ରସଙ୍ଗରେ ଅନ୍ତତ ଦ୍ୱିଧାର । ଆବେଗ ନାରୀର ପ୍ରେମକୁ ଥରେ ଦେଶ ଓ କାଳର ଊର୍ଦ୍ଧ୍ୱରେ ଯଥୋଚିତ ଶିରୋଭୂଷା ଦେଇ ପୁଣି ତାକୁ ଦେଶ ଓ ଜାତି ଅନ୍ତର୍ଗତ ସମ୍ମାନବୋଧ ଦୃଷ୍ଟିରେ ପରୀକ୍ଷା କରିଛି । ଏଇଠି ଆସିଛି ଐତିହ୍ୟବୋଧ, ଦେଶାତ୍ମବୋଧ ଓ ସ୍ୱଦେଶର ମହାନ ପରମ୍ପରାର ବାର୍ତ୍ତା, ଯେଉଁ ବାର୍ତ୍ତା ଦୁନ୍ଦୁଭି ତୁଲ୍ୟ ମାଗେ କେବଳ ଆତ୍ମବଳି । ପ୍ରେମ ଏକ ଭିକ୍ଷା ନୁହେଁ, ମଧ୍ୟଦାବୀ କରାଯାଇପାରେ ନାହିଁ , ତାହା ଏକ କୋମଳ ବନ୍ୟାର ତରଙ୍ଗ । ପ୍ରବାହ ମାଗେ, ଯମଜ ପରି ଅଭିନ୍ନପ୍ରାଣତାରେ ହାତ ଧରାଧରି କରି ସ୍ରୋତର ଅନୁକୂଳରେ ଅନନ୍ତ ଦିଗ୍‌ବଳୟ ତଳେ ମିଶିଯିବାକୁ ଆହ୍ୱାନ ଦିଏ ! ବୁଦ୍ଧିମତୀ ରାଜବାଳା କଣ ଏତକ ପାଶୋରି ଦେଲେ ? କବି ରୋମାଣ୍ଟିକ, ପ୍ରେମ ରୋମାଣ୍ଟିକ, ନନ୍ଦିକାର ସେଇ ବୟସର ଉଚ୍ଛନ୍ନ ଭାବାବେଶ ପୁଣି 'ନାରୀ ପ୍ରତି ବୀର ଅନୁକୂଳ' ବୋଲି ଦୁର୍ବଳ ମନର ସରଳ ବିଶ୍ୱାସ ମଧ୍ୟ ରୋମାଣ୍ଟିକ ବିଚାର । କବି ରାଧାନାଥ ପାଦେ ଆଗେଇ ଯାଇଛନ୍ତି ଏ ରୋମାଣ୍ଟିକ ପ୍ରାଦୁର୍ଭାବରୁ । କଳ୍ପନା କରିଛନ୍ତି ଜାତିର ଐତିହ୍ୟର ଇନ୍ଦ୍ରଧନୁ ରମ୍ୟତାରେ ସୁଦୂର ପଥଭ୍ରଷ୍ଟ ପଥିକ ଚୋଳଗଙ୍ଗ ଚେତନା ଲଭିଛନ୍ତି, କ୍ଷଣକ ପାଇଁ ହେଲେ ବି—

"ଯାର କୀର୍ତ୍ତିରାଜି ଅମର ସାକ୍ଷିଣୀ
ନାଭିଗୟା ପଦେ ବହେ ତରଙ୍ଗିଣୀ
ଏକାମ୍ରେ ଯାହାର ଅସଂଖ୍ୟ ଦେଉଳ
ଦିଶେ ଯଶୋରାଶି ହେଲାପରି ଠୁଳ । ଇତ୍ୟାଦି...

ସେହି ବଂଶରେ ଜାତ ଏକ କନ୍ୟା ହେବ ପ୍ରେମଭିକାରୁଣୀ । ବୀରର ବଚନରେ ପୁଣି ଆତତାୟୀ ଚୋରଗଙ୍ଗର ଚିନ୍ତାରେ ଏ ବାଣୀ ! ଶତ୍ରୁର ପକ୍ଷଚ୍ଛେଦ କରିବାକୁ ବ୍ୟାକୁଳ ଓ ତତ୍‌ଜନିତ ଯୋଜନାରେ ବହୁଦିନ ବିବ୍ରତ ଚୋରଗଙ୍ଗ ଅତି ଆହ୍ଲାଦରେ ଶତ୍ରୁର ଦୁର୍ବଳତାକୁ ହାତ ମୁଠାରୁ କାଢ଼ି ଫିଙ୍ଗି ଦେଉଛନ୍ତି । ବିଚିତ୍ର, ବୀରର ଧର୍ମ, କର୍ମର ସାଧନ, ଶରୀର ପାତନ ନ ହୋଇ ଯଦି ସମ୍ଭବ ହୁଏ ତେବେ ଅସୁବିଧା କେଉଁଠି ? ରାଧାନାଥ ଯୁକ୍ତିଟି ଦେଉଛନ୍ତି ବୀରତ୍ୱ ଭିତରେ ରହିଛି ତାର ଯଶସ୍ୱୀ ଗୁଣ, ବିଶ୍ୱାସଭାଜନତା । କୃତଘ୍ନ ପରି, ଭୀରୁର ପରାଶ୍ରୟତାରେ ଗୌରବମଣ୍ଡିତ ହେବାରେ କି ସାର୍ଥକତା ? ବୀର ସହ ବିବେକବୋଧ ଅବିଚ୍ଛିନ୍ନ ଏକ ଧର୍ମ । ଏଥିପାଇଁ ତ ବିସ୍ମୟ ଲାଗେ ବୀରତ୍ୱ । ଯଥାର୍ଥରେ ବୀରତ୍ୱ ଦେଶ-କାଳ ଓ ଶତ୍ରୁ-ମିତ୍ରର ବନ୍ଧନକୁ କାଟି ବିଶ୍ୱର ବନ୍ଦନୀୟ ହୋଇଯାଏ । ବିଶ୍ୱାସଘାତକତା କେଉଁ ଏକ ଅପଦେବତା ତୁଲ୍ୟ ତାକୁ ପ୍ରତି ମୁହୂର୍ତ୍ତରେ ନିନ୍ଦିତ କରୁଥାଏ । ସ୍ୱଦେଶର ସମ୍ମାନରେ ମହତୀ କାବ୍ୟ କଳ୍ପନା ବୀରତ୍ୱର ଏଇ ବ୍ୟଞ୍ଜନାକୁ ବିଦେଶୀ ଶତ୍ରୁ ଜ୍ଞାନ କରିନାହିଁ । ରୋମାଣ୍ଟିକ ଅନୁଭବଟି କ୍ଲାସିକ କବିର ଗଭୀର ମନନ ଓ ଯୁକ୍ତିବୋଧକୁ ଆଶ୍ରା କରି ନେଇଛି ।

ଉଷାର ପୂର୍ବସୂରୀ ନନ୍ଦିକେଶ୍ୱରୀ । ନାରୀର ପ୍ରେମ ପୁରୁଷର କ୍ରୁର ପୌରୁଷର ଅସ୍ଥିର ପାଦତଳେ ନଷ୍ଟ ଲାବଣ୍ୟରେ ପରିଣତ ହୁଏ; ଏହା ତାର ଇତିହାସ । ନନ୍ଦିକାର ଥିଲା ପରମ୍ପରା ପ୍ରତି ଅନାସ୍ଥା ଓ ପ୍ରତିବାଦର ସାମର୍ଥ୍ୟ; କିନ୍ତୁ ପ୍ରେମ ପାଇଁ ଆତ୍ମସମର୍ପଣରେ ସେ ହେଲା ତିରସ୍କୃତ । ଏଇ ଅଭିଜ୍ଞତାରୁ ଉଷା ଶିକ୍ଷା କରିଥିଲା ପୌରୁଷ ସହ ପ୍ରତିଯୋଗିତା କରିବାର ମନୋବଳ । ନନ୍ଦିକାର ବିକାଶ ଉଷାରେ । ଉଷାର ଆତ୍ମପ୍ରକାଶ ରାତ୍ରିର ପ୍ରଚଣ୍ଡ ତମସା ମଧ୍ୟରୁ ନୁହେଁ, ପ୍ରତିଶ୍ରୁତିପୂର୍ଣ୍ଣ ବୀରତ୍ୱ ଭିତରୁ । ଅର୍ଥାତ୍ ବୀରାଙ୍ଗନାର ଦାରୁଣ ପଣକୁ ଅତର୍କିତେ ସ୍ତବ୍ଧ କରି ଜୟନ୍ତ ଯେଉଁଦିନ ଗୋପନରେ ପ୍ରାଣଦାନ ଦେଇଥିଲା ସେହି ପ୍ରତିଶ୍ରୁତି ଅଭୟ ହେବ ପରକାଳର ବନ୍ଧନ । ବୀରର ବୀର ପ୍ରତି ସମର୍ଥନ— "ବୀରାଙ୍ଗନା ସିନା ଗୁଣେ ବୀରମନ ପାରଇ କିଣି ।"ଏଇ କୃତଜ୍ଞତା ଥିଲା ବୀରାଙ୍ଗନାର ଯଥୋଚିତ ସମର୍ପଣ ତୁଲ୍ୟ । ସମର୍ପଣ ପରେ ଆତ୍ମା କିନ୍ତୁ ସ୍ୱକୃତ ତ୍ରୁଟିର ତାଡ଼ନାରେ ନିଜକୁ ଧିକ୍କାର କରୁଛି—

''କେହି ଯେବେ ଆହା ଫେରାଇ ଦିଅନ୍ତା ଯୁବାମଣିକି
ତା ପାଦେ ଏ ଛାର ପରାଣକୁ ହେଲେ ଦିଅନ୍ତି ବିକି ।''

ପ୍ରେମ ସହାନୁଭୂତି ଭିତରେ ଆବଦ୍ଧ ରହି ନାହିଁ, ଆସିଛି ନିଷ୍ଠା, ଏକ ବିପରୀତ ପ୍ରତିଜ୍ଞା । ପ୍ରତିଜ୍ଞାରୁ ନିଜକୁ ଧିକ୍କାର, ମନୋବିତ୍‌ଙ୍କ ଭାଷାରେ— 'Inverted oedipus complex' ଫଳରେ ମନୋଜଗତରେ ଏକ ନିରାଶ ଭାବର ସଞ୍ଚାର ଘଟେ । ପାଠକେ ଟିକେ ଅନୁଭବ କରନ୍ତୁ ରାଧାନାଥୀୟ କଳ୍ପନାର ଚାରୁତା—

''ବୃଥା ମୋ ଆଶାରେ କାଳସ୍ୱୟମ୍ବରେ ଦେବାକୁ ମଥା
ଆଣିଲା ଏହାକୁ ରୂପ-ବୈରୀ କେଉଁ ଉପଦେବତା ?
ଅବଳା ସୃଷ୍ଟିକୁ ଜିଣିବା ଆଶୟେ କରି ସଙ୍ଖାଳି
ନରଖିଲେ କିମ୍ବା ରୂପାସ୍ତ୍ର ଏ ରୂପ ଦୂରେ ସମ୍ଭାଳି ?''

ମନରେ ଏତାଦୃଶ ଦୁର୍ବଳତା ନିଶ୍ଚୟ ଆକସ୍ମିକ ଏକ ବିଭବ । ରୋମାଣ୍ଟିକ ପ୍ରାଣ ଏପରି ଆକସ୍ମିକତାର ଆବାହନ କରେ । କିନ୍ତୁ ରାଧାନାଥ ଏହାକୁ ଭିନ୍ନ ଏକ ଅର୍ଥ ଦେଇ ଅଧିକ ଯୁକ୍ତିସୁଲଭ କରିଛନ୍ତି । ରୂପର ଗ୍ରାହକ ଅସ୍ଥିର ନିରନ୍ତର । ଏ ଅସ୍ଥିରତା କାହିଁକି ?

ଜୀବନର ଅନ୍ତିମ ପରିଣତି କରୁଣ । କବିଙ୍କର ଏହା ଏକ ବ୍ୟକ୍ତିଗତ ଅନୁଭବ । ''ଜୀବନ ଯାହାକୁ ବୋଲନ୍ତି, ସେ ସିନା ମୃତ୍ୟୁକୁ ଗତି ।'' ମୃତ୍ୟୁର ବର୍ଣ୍ଣହୀନ କରାଳତା ସବୁ ସୁନ୍ଦର ବସ୍ତୁକୁ ଅଚିରେ ନିବର୍ଣ୍ଣ କରିଦିଏ । ଜୀବନର ଏ ସତ୍ୟତା କଳାର ପ୍ରଣିଧାନ ବିଷୟ । କହୁଛନ୍ତି ପେଟର— All the beauty is in the long run only fineness of truth, or what we call expression, the finer accomodation of speech to t>hat vision within (The making of literature, P-306) । କବି ଦାର୍ଶନିକ ନୁହନ୍ତି, ସେ ସତ୍ୟର ଯେପରି ଅବଧାରଣା କରନ୍ତି, ବାସ୍ତବତାର ପ୍ରତିଫଳନ ତାଙ୍କ ଅନ୍ତର୍ମନରେ ଯେପରି ଘଟେ ତାର ଏକ ବିଶ୍ୱସ୍ତ ଚିତ୍ର ଅଙ୍କନ ତାଙ୍କର ଧର୍ମ । ଅଭିବ୍ୟକ୍ତିରେ ସତ୍ୟର ଉଦ୍ଭାବନ, ଅନ୍ତର୍ଦୃଷ୍ଟିର ଗଣନା ନୁହେଁ ଯାହାକୁ ଆମେ ବାସ୍ତବ ବୋଲି ଧରିନେବା । ରୋମାଣ୍ଟିକ କବିର ଅନ୍ତର୍ଦୃଷ୍ଟି ପେଟ୍ରୋମାକ୍ସ ପରି ବିଚ୍ଛୁରଣଶୀଳ ଏବଂ ଗତିଶୀଳ । ଏଇ କୃତବିଦ୍ୟତାରେ କବି ମୁହୂର୍ତ୍ତାନ୍ତରରେ ନିଜର ପୂର୍ବ ଆବେଗକୁ ଅତିକ୍ରମ କରି ଭିନ୍ନ ଏକ ଆବେଗକୁ ଗତି କରନ୍ତି । ଏହା ହିଁ ହୁଏ ତାଙ୍କର ଆକସ୍ମିକ-ଭାବେ ପରିବର୍ତ୍ତନର କାରଣ ।

ପୂର୍ବରୁ କହିଛି ଆକସ୍ମିକତା ଉଷା କାବ୍ୟର ଦ୍ୱିତଳ ରୂପୀ କାବ୍ୟାନୁଷଙ୍ଗ । ଏହା ନାଟକୀୟ ରୀତିରେ ଚମତ୍କୃତ କରିବା ସହିତ ପ୍ରସଙ୍ଗକୁ ଭିନ୍ନ ମୋଡ଼ ଦେଇଛି । ପ୍ରତିଯୋଗିତାରେ ଉଷାର ପରାଜୟ ମଧ୍ୟ ଆକସ୍ମିକ ବ୍ୟାପାର । ଏଇଠି ରାଧାନାଥଙ୍କ

ଯୁକ୍ତିବାଦୀ ମନଟି ନିରସ ଜଣାଯାଏ । ଯେଉଁ ଢଙ୍ଗରେ ସେ ଉଷାକୁ ଗଢ଼ିଛନ୍ତି ଓ ଗୁଣରେ ତାର ବ୍ୟକ୍ତିତ୍ୱକୁ ଅପ୍ରତିହତ କରି ସଜାଇଛନ୍ତି ତାକୁ କେବଳ ଏକ ଦୈବୀ କାରଣ ବଳରେ ପରାସ୍ତ କରିହେବ, ଅନ୍ୟଥା ନୁହେଁ । ମୃତ୍ୟୁ ଯେପରି ଦୈବର ଅଧୀନ, ସେହିପରି ଜୀବନର ସବୁ କିଛି ମଧ୍ୟ ଦୈବାଧୀନ । ଅପର ପକ୍ଷରେ କବି ଭାଗ୍ୟବାଦୀ ପରି ଦୈବର କର୍ତ୍ତୃକକୁ ଗ୍ରହଣ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ପ୍ରବୃତ୍ତି ବଶତଃ ସେ ଏହାକୁ ସ୍ୱୀକାର କରି ବସିଛନ୍ତି । ତେଣୁ ଜୟନ୍ତର ବିଜୟର ଅନ୍ତରାଳ ଅଦୃଷ୍ଟର ଆଶୀର୍ବାଦର କଳ୍ପନା କରି ବସିଛନ୍ତି । ବିଷୟବସ୍ତୁର ଯୁକ୍ତିବୋଧଟି ଦୁର୍ବଳ ହୋଇଉଠିଥିଲେ ହେଁ କାବ୍ୟିକ ରସବୋଧ ତଦନୁରୂପେ ଶିଥିଳ ହୋଇନାହିଁ, ଅବଶ୍ୟ ଦୈବାଶ୍ରିତ ଘଟଣା ପରିବର୍ତ୍ତେ ଭିନ୍ନ କିଛି ହେତୁଶୀଳ କାରଣ ରସବୋଧକୁ ଯେଉଁ ଶିଖରରେ ଅବସ୍ଥାପନ କରାଇ ଥାନ୍ତା ତାହାର ଅଭାବ ରହିଗଲା । "ହାରି ଶତଗୁଣେ ତହୁଁ ହୃଷ୍ଟ ହେଲା ଉଷା ମାନସ" । ପରାଜୟ ପରିତୃପ୍ତି ଆଣେ ଯେଉଁଠି ପ୍ରେମ ଭବିଷ୍ୟତରେ ଗତିନିର୍ଦ୍ଧାରକ ହୁଏ । ପ୍ରେମ ଅସଲ ଐନ୍ଦ୍ରଜାଲିକ । ତାର ମୋହନ ସ୍ୱର ରୁକ୍ଷତାର ଦ୍ୱାରକୁ ଅବରୁଦ୍ଧ କରିରଖେ । ଉଷା ସେହି ଐନ୍ଦ୍ରଜାଲିକର ଶରଣପ୍ରାର୍ଥୀ ।

ବର୍ତ୍ତମାନ ପଂଣର ମୃତ୍ୟୁ ଘଟିଛି । ସୁନ୍ଦର ସହ ସୁନ୍ଦରର ମିଳନ ହୋଇଛି । ରୂପାସ୍ତ୍ର ରୂପ ଓ ରୂପରଙ୍କୁ ଯଥା ସୁଯୋଗ ଦେଇଛି । ମନ ମିଶିଯାଇଥିଲା ଅନେକ ପୂର୍ବରୁ, ଏବେ ଦେହ ପ୍ରତୀକ୍ଷାରେ । ହାତଟି ବଢ଼ାଇବାକୁ ହେବ; ଅଶାନ୍ତ ବକ୍ଷର ବହ୍ନି ବିରାମ ଚାହେଁ । ଅପୂର୍ଣ୍ଣତାର ଅଶନି ପୂର୍ଣ୍ଣତାର ଚନ୍ଦ୍ରିକାରେ ବିକଶିତ ହେବ । ପୂର୍ଣ୍ଣତା ସୃଷ୍ଟିକରେ, ଅପୂର୍ଣ୍ଣତା ଏକ ରୋରୁଦ୍ୟମାନ ଅବଶୋଷ । ଏ ଜନ୍ମରେ ଯଦି ଅସମ୍ଭବ ପର ଜନ୍ମରେ ତା' କି ସମ୍ଭବ ? ହିନ୍ଦୁ ଜନ୍ମାନ୍ତରବାଦର ପ୍ରତିଶ୍ରୁତି ମୂଳରେ ଇହଲୋକର କର୍ମକୁ ପ୍ରାଧାନ୍ୟ ଦିଆଯାଏ । ଯଦି ଏହା ଶାସ୍ତ୍ରସମ୍ମତ ତେବେ ଏ ଜନ୍ମରେ ପତିପତ୍ନୀ ସାତ ଜନ୍ମଧରି ସେପରି ବନ୍ଧନ କାମନା କରନ୍ତି । ରାଧାନାଥ ସଂସ୍କୃତିର ଉଚ୍ଚାଟ ଛାତ୍ର । ତାଙ୍କ କାବ୍ୟ-ଉନ୍ମୀଳିତ-ନେତ୍ର ପରି ଉଷାଜୟନ୍ତର ପୂର୍ବ ଜନ୍ମ ଏହା ସହିତ ଖଞ୍ଜି ହେଇଥିବା ଅବଲୋକନ କରିଛି ଏବଂ ଆକସ୍ମିକ ମୃତ୍ୟୁରେ ଆଉ ଏକ ଦୈବୀ ରହସ୍ୟ ଉଦ୍‌ଘାଟନ କରିଛି । ଯଦି ଜନ୍ମ ଦୈବର ଅଧୀନ, ମୃତ୍ୟୁ ମଧ୍ୟ ତାହା, ଜନ୍ମ ଓ ମୃତ୍ୟୁର ରହସ୍ୟ ଭେଦ ଅସମର୍ଥ ମଣିଷ କେବଳ ଖେଦୋକ୍ତିରେ ଧିକ୍‌କାର କରେ ଦୈବକୁ ସିନା କିନ୍ତୁ ତାର ପରମ କଲ୍ୟାଣକାରୀ ଅଭିଳାଷ ବୁଝେ ନାହିଁ ।

ଗୌରୀ, ଚନ୍ଦ୍ରଭାଗା, ନନ୍ଦିକା, ଉଷା, କୌଶଲ୍ୟା ଏମାନେ ସମସ୍ତେ ରୂପାସ୍ତ୍ରର କ୍ଷଷ ଅମୋଘ ବାଣ, କିନ୍ତୁ କେହି କେବେ ରୂପାସ୍ତ୍ରର ବିନୋଦନ ସରରେ କେଳିକ୍ଷମ ହୋଇ ପାରିନାହାନ୍ତି । ଆକସ୍ମିକ ମୃତ୍ୟୁ ଏମାନଙ୍କ ନିୟତି । କି ସୁଖ ପାଇଲେ ରାଧାନାଥ ?

କେହି ଜଣେ କହିଥିଲେ 'ଦୁଃଖକୁ ଦେବତା ମଣ' । ଜୀବନ ଦୁଃଖାଶ୍ରିତ; ଏ ସତ୍ୟକୁ ଲଙ୍ଘନ କରି ନପାରି ତାକୁ ଆଶ୍ରା କରିବା ବ୍ୟତୀତ ଗତ୍ୟନ୍ତର କାହିଁ ? ଦାର୍ଶନିକ କୁହନ୍ତି ଦୁଃଖ ସତ୍ୟ ନୁହେ, ଦୁଃଖର ପ୍ରତୀତି ସତ୍ୟ । ମଣିଷର ଏହା ଆପଣାକୃତ (ଅତ୍ତକଡ଼େ ଦୁକ୍‌ଖେ, ନୋପରକଡ଼େ-ପ୍ରାକୃତ) । ଏହା ରାଧାନାଥ ଗ୍ରହଣ କରିବାକୁ କୁଣ୍ଠିତ । ସୁଖ ଦୁଃଖ ସାଂସାରରେ ମାନସିକ ଅବସ୍ଥା ବିଶେଷ । 'ମୃତ୍ୟୁ' ଏକ ଅବସ୍ଥାର ଅବଶେଷ । ସେଥିରେ ଅଛି ଜୀବନର ପୂର୍ଣ୍ଣତାର ଇଙ୍ଗିତ, ଏଣୁ ତାହା ନାମାନ୍ତର । ଏହି ଉପନିଷଦୀୟ ସିଦ୍ଧାନ୍ତ ସାଧାରଣଭାବେ ଆମ ପାଇଁ ଏକ ଜାଗତିକ ସତ୍ୟର ବାର୍ତ୍ତା ଦେଇପାରେ, ମାତ୍ର ପାତ୍ର ବିଶେଷରେ ସତ୍ୟ ନୁହଁ, ଅର୍ଥାତ୍ ଆମର ଉଲ୍ଲିଖିତ ଚରିତ୍ରମାନେ ଅକାଳରେ ବିୟୋଗ ଦେବତାର ଚରଣାଶ୍ରିତ ହୋଇଛନ୍ତି । ସେମାନେ ନଶ୍ୱର ଦୁନିଆର କ୍ଷଣିକତ୍ୱର ଗୋଟିଏ ଗୋଟିଏ ସାର୍ଥକ ପ୍ରତିନିଧି । ସେମାନେ ନିଜର କ୍ଷଣିକତ୍ୱ ପାଇଁ ମନରେ ସୌନ୍ଦର୍ଯ୍ୟ ଓ ଶୋଭନର ଜୀବନ୍ତ ଉଦାହରଣ ହୋଇ ଉଠନ୍ତି । କୋମଳତା, ଦୁର୍ବଳତା ଓ ମାନସିକ ଭୀରୁତା ଦ୍ୱାରା ନାରୀର ସୌନ୍ଦର୍ଯ୍ୟ ଦ୍ୱିଗୁଣିତ ହୁଏ । ବର୍କ ଏ କଥା ସ୍ପଷ୍ଟ କରି ଦେଇଛନ୍ତି । ଉଷା ସୁନ୍ଦର । ତାର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଛି, ତାର ଦୁର୍ବଳତାରେ ଜୟନ୍ତ ପ୍ରତି ସମର୍ପିତ ପ୍ରାଣ କୋମଳ ବାସନାରେ । ସେତେବେଳେ ରୁଦ୍ରତା ଅପସରି ଯାଇଛି । ଜଣାଯାଉଛି ତାହା ଭୀରୁତାର ନାମାନ୍ତର ମାତ୍ର । ନାରୀର ଅନ୍ୟ ଏକ ଦୁର୍ବଳତା ବସ୍ତୁ ମୋହ ଏବଂ ଅଧିକାରପ୍ରବଣତା (Possessiveness) । ପ୍ରତିଯୋଗିତାର ସେଦିନ ପ୍ରେମ ପିଚ୍ଛିଳ ବର୍ମ୍ମରେ ସ୍ୱର୍ଣ୍ଣକମଳ ଅସମ୍ଭବ ଜାଣି ମଧ୍ୟ ଲୋଭ ପ୍ରତିହତ କରିପାରି ନାହିଁ । ବୀରଙ୍ଗନା ପକ୍ଷରେ ଅନୁଚିତ ଏ କର୍ମ ବ୍ୟକ୍ତିତ୍ୱର ଭୀରୁତା ଓ ଦୁର୍ବଳତାକୁ ଯେମିତି ପ୍ରକଟିତ କରେ, ସ୍ୱର୍ଣ୍ଣକମଳ ଭିତରେ ଦୁଃଖ କମଳଟି ଆତ୍ମଗୋପନ କରିଥିବାର ସ୍ପଷ୍ଟ ହୋଇଯାଏ । ଚତୁର ଶିଳ୍ପୀ ରାଧାନାଥ, ଦୁଃଖକୁ ସୁନ୍ଦର ଏକ ସ୍ୱର୍ଣ୍ଣକମଳର ବିସ୍ମୟ ରହସ୍ୟ ମଧ୍ୟରେ ଢାଙ୍କି ଦେଇ ନିୟତିତୁଲ୍ୟ ସ୍ମିତହାସ୍ୟରେ ଦେଖୁଛନ୍ତି ରୁଦ୍ରତାର ପରିଣତି । ଦେବପ୍ରେରିତ ରହସ୍ୟ କମଳ ଭୀରୁତା, କୋମଳତାକୁ ଅଙ୍ଗୀକାର କରି ନେଇ ବିଗ୍ରହୀ ଦୁଃଖକୁ ଆରାଧନା କରୁଛି । ଦେଖୁଛନ୍ତି ରାଧାନାଥ—କୋମଳତା ଓ ସମସ୍ତ ବସ୍ତୁର କ୍ଷଣିକତ୍ୱକୁ ନେଇ ଉଷାର ପରାଜୟଦୃପ୍ତ ତୃପ୍ତିବୋଧ-ପ୍ରେମ ବିରାଗର ରୂପାନ୍ତର । ରୁଦ୍ରତା ସୁନ୍ଦର ନୁହେଁ, କୋମଳତା ଓ କ୍ଷଣିକତ୍ୱ ହିଁ ସୁନ୍ଦର । କ୍ଷଣିକତ୍ୱର ଅନୁଭବ କରି ଦୁଃଖାଭିଭୂତ । ବିଷାଦର ବୀଜ ସମ୍ଭବତଃ ଏଇଠି ଅଙ୍କୁରିତ ହୋଇଯାଇଛି ।



# କବିବର ରାଧାନାଥଙ୍କ କାବ୍ୟସୃଷ୍ଟିରେ ସଂସ୍କୃତ ସାହିତ୍ୟର ପ୍ରଭାବ

ଡଃ ପ୍ରଫୁଲ୍ଲ କୁମାର ଦାଶ

କବିବର ରାଧାନାଥ ଆଧୁନିକ ଓଡ଼ିଆ ସାହିତ୍ୟରେ ଯୁଗପ୍ରବର୍ତ୍ତକ ରୂପେ ସୁପରିଚିତ । ସେ ଯେଉଁ ସମୟରେ ଆବିର୍ଭୂତ ହୋଇଥିଲେ ସେହି ସମୟରେ ଦେଶ ଇଂରେଜମାନଙ୍କଦ୍ୱାରା ଶାସିତ ହେଉଥିଲା ଏବଂ ସେତେବେଳେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇ ଇଂରାଜୀ ଶିକ୍ଷା ପ୍ରସାରଲାଭ କରିଥିଲା । ଫଳରେ ରାଧାନାଥ ଇଂରାଜୀ ଶିକ୍ଷା ଲାଭ ପୂର୍ବକ ବୈଦେଶିକ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ପାଶ୍ଚାତ୍ୟ କାବ୍ୟାଦର୍ଶକୁ ଅନୁସରଣ ପୂର୍ବକ କାବ୍ୟକବିତା ରଚନା ନିମିତ୍ତ ଆଗ୍ରହ ପ୍ରକାଶ କରିଥିଲେ । ଏ ପ୍ରସଙ୍ଗରେ ସ୍ମରଣୀୟ ଯେ, ପୂର୍ବବର୍ତ୍ତୀ ଭଞ୍ଜଯୁଗୀୟ କବିମାନେ ପ୍ରାଚ୍ୟ ବା ସଂସ୍କୃତ ସାହିତ୍ୟର ମହାକବିମାନଙ୍କ ପନ୍ଥା ଅନୁସରଣ ପୂର୍ବକ କାବ୍ୟ ଓ ମହାକାବ୍ୟମାନ ରଚନା କରିଥିଲେ । ମାତ୍ର କବିବର ରାଧାନାଥ ପ୍ରାଚ୍ୟ ଆଦର୍ଶ ପରିବର୍ତ୍ତେ ପାଶ୍ଚାତ୍ୟ କାବ୍ୟାଦର୍ଶ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ତଥାପି ସାହିତ୍ୟ ସର୍ଜନା କ୍ଷେତ୍ରରେ ସେ ପ୍ରାଚ୍ୟ ଆଦର୍ଶଠାରୁ ନିଜକୁ ସମ୍ପୂର୍ଣ୍ଣ ଦୂରେଇ ନେଇ ଯାଇଥିଲେ ବୋଲି କୁହାଯାଇ ନ ପାରେ । ସଂସ୍କୃତ ସାହିତ୍ୟର ମହାକବିମାନଙ୍କ ତୁଲ୍ୟ ସେ ବିଶାଳକାୟ ମହାକାବ୍ୟ ରଚନା କରିବା ପରିବର୍ତ୍ତେ ପାଶ୍ଚାତ୍ୟ ଆଦର୍ଶରେ କ୍ଷୁଦ୍ର କ୍ଷୁଦ୍ର କାବ୍ୟ, ଖଣ୍ଡକାବ୍ୟ ଓ କବିତାମାନ ରଚନା କରିଥିଲେ ମଧ୍ୟ ସଂସ୍କୃତ ସାହିତ୍ୟର ମହାକବିମାନଙ୍କ ପ୍ରଭାବରୁ ନିଜକୁ ମୁକ୍ତ କରିପାରି ନଥିଲେ ।

ଏ ପ୍ରସଙ୍ଗରେ କହିବା ବାହୁଲ୍ୟ ହେବ ଯେ, କବିବର ରାଧାନାଥ ଥିଲେ ଭାରତୀୟ । ସୁତରାଂ ଇଂରାଜୀ ଶିକ୍ଷା ଓ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ମହାଭାରତୀୟ ଭାବନା ତାହାଙ୍କ ମନରୁ ସମ୍ପୂର୍ଣ୍ଣ ରୂପେ ଅପସରି ଯାଇ ନଥିଲା । ପୁରାଣ ସ୍ରଷ୍ଟା ବେଦବ୍ୟାସଙ୍କଠାରୁ ଆରମ୍ଭ କରି କାବ୍ୟସ୍ରଷ୍ଟା କାଳିଦାସ, ଶ୍ରୀହର୍ଷ, ବାଣଭଟ୍ଟ, ମାଘ ଓ ଭାରବି ପ୍ରମୁଖଙ୍କ ପର୍ଯ୍ୟନ୍ତ ମହାନ୍ ସଂସ୍କୃତ କବିଗଣ ତାହାଙ୍କର ବନ୍ଦନୀୟ ଥିଲେ । ସେ ପାଶ୍ଚାତ୍ୟ ସାହିତ୍ୟ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ପ୍ରାଚ୍ୟ ସାହିତ୍ୟର ଉକ୍ତ ମହାନ୍ କବିଗଣଙ୍କ ରଚନାବଳୀକୁ ଗଭୀର ଭାବରେ

ଅଧ୍ୟୟନ କରିଥିବା ବିଷୟ ତାହାଙ୍କର ଜୀବନୀରୁ ଜଣାଯାଇଥାଏ । ସ୍ୱର୍ଗତ ଦୁର୍ଗାଚରଣ ରାୟଙ୍କ ଲିଖିତ 'ରାଧାନାଥଜୀବନୀ'ରେ ଏହି ବିଷୟ ସ୍ପଷ୍ଟ ଉଲ୍ଲିଖିତ ହୋଇଛି । ଉକ୍ତ ଗ୍ରନ୍ଥର ୯୮ ପୃଷ୍ଠାରେ ତତ୍କାଳୀନ ବଙ୍ଗ-ଓଡ଼ିଶାର ଶିକ୍ଷା ବିଭାଗର ଇନିସ୍ପେକ୍ଟର ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ରାଧାନାଥଙ୍କ ସମ୍ପର୍କ ବିଷୟ ଉଲ୍ଲେଖ କରାଯାଇଛି । ସେଥିରେ ପ୍ରସଙ୍ଗକ୍ରମେ ରାଧାନାଥଙ୍କର ଏକ ଉକ୍ତି ସ୍ଥାନ ପାଇଛି । ତାହା ହେଉଛି—''ଭୁବନେଶ୍ୱର ପରିତ୍ୟାଗ କରି ଆମ୍ଭେମାନେ ଶରଦେଈପୁର ଚଟିରେ ଅବସ୍ଥାନ କଲୁ । ସେଠାରେ ଅବସ୍ଥାନ ସମୟରେ ଭୁବନେଶ୍ୱରର ପ୍ରାଚୀନ ଆର୍ଯ୍ୟ କୀର୍ତ୍ତିରାଜି ପ୍ରସଙ୍ଗରେ ଅନେକ କଥୋପକଥନ ହେଲା ।'' ଏହି ପ୍ରସଙ୍ଗରୁ ସ୍ୱଭାବତଃ ସଂସ୍କୃତ ସାହିତ୍ୟର କଥା ମଧ୍ୟ ଉଠିଲା, ଓଡ଼ିଶାରେ ସଂସ୍କୃତ ଶ୍ଳୋକ ସମୂହ ଲୋକେ ସ୍ୱର ସଂଯୋଗରେ ପଢ଼ିଥାନ୍ତି । ଏହି କଥା ଶୁଣି ସେ ମୋତେ ସ୍ୱର ସଂଯୋଗରେ କୌଣସି ଗୋଟିଏ ଶ୍ଳୋକ ପଢ଼ିବାକୁ କହିଲେ । ମୁଁ 'ମେଘଦୂତ'ର ନିମ୍ନୋକ୍ତ ଶ୍ଳୋକ ମନ୍ଦାକ୍ରାନ୍ତାଛନ୍ଦରେ ଆବୃତ୍ତି କଲି—

''ତାଂ ଜାନୀଥା ପରିମିତ କଥାଂ ଜୀବିତଂ ମେ ଦ୍ୱିତୀୟଃ
ଦୂରୀଭୂତେ ମୟି ସହଚରେ ଚକ୍ରବାକିମିବୈକାମ୍
ଗାଢ଼ୋତ୍କଣ୍ଠାଂ ଗୁରୁଷୁ ଦିବସେ ଷ୍ୱେଷୁ ଗଚ୍ଛତ୍ସୁ ବାଳାଂ
ଜାତାଂ ମନ୍ୟେ ଶିଶିର ମଥିତାଂ ପଦ୍ମିନୀବାନ୍ୟରୂପାମ୍ ॥''

''ଶ୍ଳୋକ ଶୁଣି ତାହାଙ୍କର ବିଶାଳ ନେତ୍ରରୁ ଅଶ୍ରୁଧାରା ପ୍ରବାହିତ ହେଲା । ଶ୍ଳୋକଦ୍ୱାରା ଯେପରି ତାହାଙ୍କ ହୃଦୟରେ କୌଣସି ଅନିର୍ବଚନୀୟ ଅନୁସ୍ମୃତି ଉପୁଜି ଉଠିଲା । ସେ ହଠାତ୍ କହିଲେ, ''ଆହା ! କି ସାହିତ୍ୟ ! କି କୀର୍ତ୍ତି ! ଆମ୍ଭେ କଣ ହୋଇଗଲୁଣି !''

''ସଂସ୍କୃତ ସାହିତ୍ୟ ପ୍ରସଙ୍ଗରେ ଅନୁସଙ୍ଗତଃ ଉତ୍କଳ ସାହିତ୍ୟ କଥା ଉଠିଲା ।'' (ରାଧାନାଥ ଜୀବନୀ – ପୃ. ୯୮)

ମହାକବି କାଳିଦାସଙ୍କ ରଚନା ମଧ୍ୟରେ କିପରି କବିଙ୍କର ଗଭୀର ଅବଗାହ ଥିଲା, ତାହା ଏଥିରୁ ଅନୁମାନ କରାଯାଇପାରେ । ସେପରି ପାଣ୍ଡିତ୍ୟ ନଥିଲେ, 'ମେଘଦୂତ'ର ଶ୍ଳୋକ ଆବୃତ୍ତି ପୂର୍ବକ ଭୂଦେବ ମୁଖୋପାଧ୍ୟାୟଙ୍କ ତୁଲ୍ୟ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ଇଂରାଜୀ-ସାହିତ୍ୟ-ବିଶାରଦଙ୍କୁ ଅଭିଭୂତ କରିଦେବା ସହଜସାଧ୍ୟ ନୁହେ । ଏହା ସଙ୍ଗେସଙ୍ଗେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏକଦା କବିବର ରାଧାନାଥଙ୍କ ଅଧ୍ୟୟନର ପରିସର ତଥା ପାଣ୍ଡିତ୍ୟ ସଂପର୍କରେ ବାଗ୍ମିପ୍ରବର ବିଶ୍ୱନାଥ କର ଯେଉଁ ମତ ପ୍ରକାଶ କରିଥିଲେ, ସେଥିରୁ କିଛି ଅଂଶ ଏଠାରେ ଉଦ୍ଧାର କରିବା ଯଥାର୍ଥ ମନେହୁଏ । ସେ ଲେଖିଥିଲେ— ''x x x ତାଙ୍କ ଅଧ୍ୟୟନର ସୀମା

ନିରୂପଣ କରିବା ସହଜ ନୁହେଁ । ଓଡ଼ିଆ, ବଙ୍ଗଳା, ହିନ୍ଦୀ, ସଂସ୍କୃତ, ଇଂରାଜୀ ଭାଷାମାନଙ୍କର ସାନବଡ କେତେ ପୁସ୍ତକ ଅଧ୍ୟୟନ କରିଛନ୍ତି, ତାହାର ପରିମାଣ କରିବା କଠିନ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଯେଉଁ ରାଧାନାଥ ବ୍ୟାସ, ବାଲ୍ମୀକି, କାଳିଦାସ, ଶ୍ରୀହର୍ଷ, ଭାରବି, ହୋମର, ଭର୍ଜିଲ, ଦାନ୍ତେ, ଗେଟେ, ସିଲର୍, ସେକ୍ସପିଅର୍, ମିଲ୍‌ଟନ, ବାଇରନ୍, ସେଲି, ୱାଡ଼ସ୍‌ୱାର୍ଥ ପ୍ରଭୃତି ସ୍ୱଦେଶ ଓ ବିଦେଶର ମହାକବି ଓ ସାହିତ୍ୟ ରଥିମାନଙ୍କର ରଚନାବଳୀ ପାଠକରି ସେ ସମସ୍ତର ଉନ୍ନତ, ଉଦାର ଓ ମଧୁରଭାବ ଗହଣରେ ସର୍ବଦା ତତ୍‌ପର, ସେ ଯେ କେବଳ ଉତ୍କଳର ଖ୍ୟାତନାମା ପ୍ରାଚୀନ ମହାକବି ସାରଳାଦାସ, ବଳରାମଦାସ, ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ ପ୍ରଭୃତିଙ୍କ ଗ୍ରନ୍ଥମାନ ଆଗ୍ରହ ସହକାରେ ପାଠକରି ତୃପ୍ତ ହୋଇଥିଲେ, ତାହା ନୁହେ, ଆଧୁନିକ ଉତ୍କଳର ଅତି ନଗଣ୍ୟ କୌଣସି ଲେଖକଙ୍କର ଅତି ସାମାନ୍ୟ ଖଣ୍ଡିଏ ପୁସ୍ତକ ବା ଗୋଟିଏ ସାମାନ୍ୟ ରଚନା ବାହାରିବା ମାତ୍ରକେ ତାହା ପାଠ ନକରି ରହିପାରୁ ନଥିଲେ ।''

(ଉତ୍କଳ ସାହିତ୍ୟ, ଏକାଦଶଭାଗ, ଦ୍ୱାଦଶସଂଖ୍ୟା)

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, କବିବର ରାଧାନାଥ ପାଶ୍ଚାତ୍ୟ ସାହିତ୍ୟ ସହିତ ପ୍ରାଚ୍ୟ ସାହିତ୍ୟକୁ ମଧ୍ୟ ଗଭୀର ଭାବରେ ଅଧ୍ୟୟନ କରିଥିଲେ । ସୁତରାଂ ତାହାଙ୍କ ରଚନାବଳୀ ପ୍ରାଚ୍ୟ ସାହିତ୍ୟର ପ୍ରଭାବରୁ ମୁକ୍ତ ହୋଇପାରି ନାହିଁ । ଅତଏବ କବିବରଙ୍କ କବିତ୍ୱର ବିଭିନ୍ନ ବିଭାବ ସଂପର୍କରେ ଆଲୋଚନା କରିବାକୁ ଗଲାବେଳେ ତାହାଙ୍କ ରଚନାବଳୀରେ ସଂସ୍କୃତ ସାହିତ୍ୟର ପ୍ରଭାବ ବିଷୟ ଆଲୋଚନା କରିବା ଯଥାର୍ଥ ମନେହୁଏ । ନିମ୍ନରେ ଏହାର କେତେଗୋଟି ଦିଗ ଉପରେ ଆଲୋକପାତ କରାଗଲା ।

**କାବ୍ୟକବିତାର ବିଷୟବସ୍ତୁ—**

କବିବର ରାଧାନାଥ ମୁଖ୍ୟତଃ ପାଶ୍ଚାତ୍ୟ ସାହିତ୍ୟରୁ ବିଷୟବସ୍ତୁ ଆହରଣ ପୂର୍ବକ କାବ୍ୟକବିତା ରଚନା କରିଥିଲେ ବୋଲି କୁହାଯାଇ ଥାଏ । ତାହାଙ୍କର କେଦାରଗୌରୀ, ପାର୍ବତୀ, ଉଷା, ଚନ୍ଦ୍ରଭାଗା ଇତ୍ୟାଦି କାବ୍ୟ ଏହାର ଦୃଷ୍ଟାନ୍ତ । ତଥାପି ବିଷୟବିନ୍ୟାସ କ୍ଷେତ୍ରରେ ସେ ସଂପୂର୍ଣ୍ଣ ଭାବରେ ପ୍ରାଚ୍ୟ ସାହିତ୍ୟକୁ ଉପେକ୍ଷା କରିନଥିଲେ । କେତେକ ଖଣ୍ଡକାବ୍ୟ ଓ କବିତା ରଚନା କ୍ଷେତ୍ରରେ ସେ ଭାରତୀୟ ପୁରାଣଶାସ୍ତ୍ରକୁ ମୁଖ୍ୟ ଅବଲମ୍ବନ ରୂପେ ଗ୍ରହଣ କରିଛନ୍ତି । ତାହାଙ୍କର ପୌରାଣିକ ରଚନାବଳୀ ମଧ୍ୟରେ ଦଶରଥ ବିୟୋଗ, ସାବିତ୍ରୀ ଚରିତ, ବେଣୀସଂହାର, ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ, ଯୁଧିଷ୍ଠିରଙ୍କ ପ୍ରତି ବ୍ୟାସ ପ୍ରଭୃତି

ଉଲ୍ଲେଖଯୋଗ୍ୟ । ବ୍ୟାସଦେବଙ୍କ ପ୍ରଣୀତ ମହାଭାରତ ଓ ବାଲ୍ମୀକିଙ୍କ ରାମାୟଣ ଏହି ସମସ୍ତ ରଚନା ସୃଷ୍ଟି କ୍ଷେତ୍ରରେ କବିଙ୍କର ମୁଖ୍ୟ କରାବଲମ୍ବ ହୋଇଥିବା ଜଣାଯାଏ । ଏତଦ୍ ବ୍ୟତୀତ 'ମହାଯାତ୍ରା' ଓ ଅନ୍ୟାନ୍ୟ କେତେକ କାବ୍ୟରେ ବିଷୟବିନ୍ୟାସ କ୍ଷେତ୍ରରେ ସ୍ଥାନେସ୍ଥାନେ ପ୍ରାଚ୍ୟସାହିତ୍ୟର ଏହି ଦୁଇଗୋଟି ମହାଗ୍ରନ୍ଥର ପ୍ରଭାବ ଅନୁଭୂତ ହୋଇଥାଏ । ସେ ରାଜପୁତ୍ର ଓ ରାଜକନ୍ୟାଙ୍କର ପ୍ରଣୟ କାହାଣୀକୁ ଭିତ୍ତିକରି ତାହାଙ୍କର କାଳ୍ପନିକ କାବ୍ୟମାନ ରଚନା କରିଛନ୍ତି । ତାହାଙ୍କର ଉଷା, ନନ୍ଦିକେଶ୍ୱରୀ, ପାର୍ବତୀ ଓ ଯଯାତିକେଶରୀ ପ୍ରଭୃତି ଏହାର ଯଥାର୍ଥ ଦୃଷ୍ଟାନ୍ତ । ଏଗୁଡ଼ିକ ରାଜପୁତ୍ର ଓ ରାଜକନ୍ୟାଙ୍କ ପ୍ରଣୟ କାହାଣୀ ଅଥବା ରାଜପରିବାରର ଘଟଣାକୁ ନେଇ ରଚିତ ହୋଇଛି । ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ, ରାଜପୁତ୍ର ଓ ରାଜକନ୍ୟାଙ୍କ ପ୍ରଣୟ କାହଣୀ ତଥା ରାଜଅନ୍ତଃପୁର ଓ ରଜପରିବାରର ବିଭିନ୍ନ ଘଟଣାକୁ ଭିତ୍ତିକରି ସଂସ୍କୃତ ଭାଷାରେ ବହୁ କାବ୍ୟ ଓ ନାଟକ ରଚିତ ହୋଇଛି । ପୁନଶ୍ଚ ରାଧାନାଥଙ୍କ ପୂର୍ବସୂରୀ ଉପେନ୍ଦ୍ରଭଞ୍ଜ ମଧ୍ୟ ସଂସ୍କୃତ ସାହିତ୍ୟର ଏହି ଆଦର୍ଶକୁ ଅବଲମ୍ବନ ପୂର୍ବକ ତାହାଙ୍କର କାବ୍ୟ କବିତାମାନ ରଚନା କରିଛନ୍ତି । କବିବର ରାଧାନାଥ ଏହି ଆଦର୍ଶଦ୍ୱାରା ପ୍ରଭାବିତ ହୋଇଥିବା ଦେଖାଯାଏ ।

### ଚରିତ୍ର ସୃଷ୍ଟି—

ସଂସ୍କୃତ ଭାଷାରେ ରଚିତ ବିଭିନ୍ନ ପୁରାଣ, ରାମାୟଣ, ମହାଭାରତ ଏବଂ ବିଭିନ୍ନ କାବ୍ୟ ଓ ନାଟକ ପ୍ରଭୃତିରେ ଦେବଦେବୀ, ଅଭିଶାପ ଫଳରେ ମର୍ତ୍ତ୍ୟରେ ମାନବ ରୂପରେ ଜନ୍ମଲାଭ କରିଥିବା ଦେବତା ଅଥବା ଗନ୍ଧର୍ବ-ଗନ୍ଧର୍ବୀ, ରାଜପୁତ୍ର ଓ ରାଜକନ୍ୟା ମୁଖ୍ୟ ଚରିତ୍ର ରୂପେ ଚିତ୍ରିତ ହୋଇଥିବା ଦେଖାଯାଏ । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ମହାନ ସ୍ରଷ୍ଟା କବି ଉପେନ୍ଦ୍ରଭଞ୍ଜ ଏହି ଆଦର୍ଶ ଅନୁସରଣ ପୂର୍ବକ ତାହାଙ୍କର କାବ୍ୟରାଜିରେ ଚରିତ୍ର ସଂଯୋଜନା କରିଛନ୍ତି । କବିବର ରାଧାନାଥଙ୍କ କାବ୍ୟରାଜିରେ ସ୍ଥାନଲାଭ କରିଥିବା ବିଭିନ୍ନ ଚରିତ୍ର ମଧ୍ୟ ଏହି ଶ୍ରେଣୀର । ଉଷା, ନନ୍ଦିକେଶ୍ୱରୀ, ପାର୍ବତୀ, ଚନ୍ଦ୍ରଭାଗା, ମହାଯାତ୍ରା, ଯଯାତିକେଶରୀ ପ୍ରଭୃତି କାବ୍ୟରେ ବିଭିନ୍ନ ଚରିତ୍ର ମଧ୍ୟ ଏହି ଜାତୀୟ ଅଟନ୍ତି । 'ଉଷା' କାବ୍ୟର ମୁଖ୍ୟ ନାୟିକା ଉଷା ଓ ନାୟକ ଜୟନ୍ତ ଉଭୟେ ହେଉଛନ୍ତି ଅଭିଶାପ-ଗ୍ରସ୍ତ ଅପ୍‌ସରୀ ଓ ଗର୍ନ୍ଧବ । ସେହିପରି ନନ୍ଦିକେଶ୍ୱରୀ, କୌଶଲ୍ୟା, ଯଯାତି ଓ ମହାଯାତ୍ରାର ଯୁଧିଷ୍ଠିର ପ୍ରମୁଖ ହେଉଛନ୍ତି ରାଜା ଅଥବା ରାଜପରିବାରର ସନ୍ତାନ । ବାସ୍ତବ ପକ୍ଷରେ କହିବାକୁ ଗଲେ, କବିବର ରାଧାନାଥ ପାଶ୍ଚାତ୍ୟ ସାହିତ୍ୟରୁ ବିଷୟବସ୍ତୁ ଆହରଣ ପୂର୍ବକ କାବ୍ୟ କବିତା ରଚନା କରିଥିଲେ ମଧ୍ୟ ସଂସ୍କୃତ ସାହିତ୍ୟର ବିଭିନ୍ନ କାବ୍ୟରାଜିର ଚରିତ୍ରକୁ ଏଥିରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ପ୍ରଦାନ କରିଛନ୍ତି ।

## ପ୍ରକୃତି ବର୍ଣ୍ଣନାରେ ସଂସ୍କୃତ ସାହିତ୍ୟର ପ୍ରଭାବ—

କବିବର ରାଧାନାଥଙ୍କର ବିଭିନ୍ନ କାବ୍ୟରେ ପ୍ରକୃତିର ଜୀବନ୍ତ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ବନ, ପର୍ବତ, ନଦୀ, ପୁଷ୍କରିଣୀ, ହ୍ରଦ, ବୃକ୍ଷଲତା, ସମୁଦ୍ର, ପଶୁପକ୍ଷୀ, ପ୍ରଭାତ, ସଂଧ୍ୟା ଓ ବିବିଧ ଋତୁ ଇତ୍ୟାଦି ପ୍ରାକୃତିକ ଶୋଭାସମ୍ଭାରରେ ରାଧାନାଥ ସାହିତ୍ୟ ଋଦ୍ଧିମନ୍ତ ହୋଇ ଉଠିଛି । ମାତ୍ର ଉକ୍ତ ପ୍ରକୃତିଚିତ୍ର ଅଙ୍କନ କ୍ଷେତ୍ରରେ କବି ଅନେକ ସ୍ଥଳରେ ସଂସ୍କୃତ ସାହିତ୍ୟଦ୍ୱାରା ପ୍ରଭାବିତ ହୋଇଥିବା ଦେଖାଯାଏ । କାବ୍ୟ ମଧ୍ୟରେ ବିଭିନ୍ନ ପ୍ରାକୃତିକ ଶୋଭା କିପରି ବର୍ଣ୍ଣନା କରାଯିବ ଏବଂ ଏକ ନିର୍ଦ୍ଦିଷ୍ଟ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା କଲାବେଳେ କେଉଁ କେଉଁ ବିଷୟ ଉଲ୍ଲେଖ କରିବା ଆବଶ୍ୟକ, ସେ ସଂପର୍କରେ ପ୍ରାଚ୍ୟ ଆଳଙ୍କାରିକ ଗଣ ବିଭିନ୍ନ ନିୟମ ନିର୍ଦ୍ଦେଶ କରିଯାଇଛନ୍ତି । ଉଦାହରଣ ସ୍ୱରୂପ, କବିମାନେ ବନବର୍ଣ୍ଣନା କଲାବେଳେ କେଉଁ କେଉଁ ବିଷୟରେ ସଚେତନ ହେବେ, ସେ ସଂପର୍କରେ କୁହାଯାଇଛି—

"ଅରଣ୍ୟେଽହିବରାହେ ଉଯୂଥ ସିଂହାଦୟୋ ଦ୍ରୁମାଃ
କାକୋଲୁକ କପୋତାଦ୍ୟା ଭିଲ୍ଲଭଲ୍ଲୁ ଦବାଦୟଃ ।"

(ଅଳଙ୍କାର ଶେଖର — କେଶବ ମିଶ୍ର)

ଅର୍ଥାତ୍ ଅରଣ୍ୟ ବର୍ଣ୍ଣନା କଲାବେଳେ ସର୍ପ, ବରାହ, ହସ୍ତୀ,ସିଂହ, ବୃକ୍ଷ, କାକ, ଉଲ୍ଲୁକ, କପୋତ, ବନାଗ୍ନି ପ୍ରଭୃତି ବିଷୟ ଉଲ୍ଲେଖ କରାଯିବା ଆବଶ୍ୟକ । ରାଧାନାଥ ସାହିତ୍ୟ ଅନୁଶୀଳନ କଲେ ଜଣାଯାଏ ଯେ, କବି ତାହାଙ୍କର ବିଭିନ୍ନ କାବ୍ୟରେ ବନବର୍ଣ୍ଣନା କଲାବେଳେ ଏଥି ମଧ୍ୟରୁ ଅଧିକାଂଶ ବିଷୟ ଉଲ୍ଲେଖ କରିବାକୁ ଭୁଲିନାହାନ୍ତି । ବିଶେଷତଃ 'ମହାଯାତ୍ରା' ଓ 'ଉଷା' କାବ୍ୟର ଅରଣ୍ୟ ବର୍ଣ୍ଣନା ପାଠକଲେ ଏହାର ଯଥାର୍ଥତା ଅନୁଭବ କରିହେବ । ସେହିପରି ହ୍ରଦ, ପର୍ବତ ଓ ନଦୀ ଇତ୍ୟାଦି ବର୍ଣ୍ଣନା ପାଠକଲେ କବିଙ୍କ ଉପରେ ସଂସ୍କୃତ ଅଳଙ୍କାର ଶାସ୍ତ୍ରର ପ୍ରଭାବ ସହଜରେ ଅବଧାରିତ ହୋଇଥାଏ ।

## ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ନୈଷଧୀୟ ପ୍ରଭାବ—

ସଂସ୍କୃତ ସାହିତ୍ୟର ଷଟ୍‌କାବ୍ୟ ମଧ୍ୟରେ ମହାକବି ଶ୍ରୀହର୍ଷଙ୍କ 'ନୈଷଧ' କାବ୍ୟ ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ ବିବେଚିତ ହୋଇଛି । ସୌନ୍ଦର୍ଯ୍ୟ ବର୍ଣ୍ଣନା କ୍ଷେତ୍ରରେ ଚମତ୍କାର କଳ୍ପନାଚାତୁରୀର ପରିପ୍ରକାଶ ହେତୁ ଏହି କାବ୍ୟଟି ଭାରତୀୟ ପଣ୍ଡିତମଣ୍ଡଳୀରେ ବିଶେଷ ଆଦର ଲାଭ କରିଛି । ରାଧାନାଥ-ପୂର୍ବବର୍ତ୍ତୀ ଭଞ୍ଜଯୁଗୀୟ କାବ୍ୟରାଜି ଉପରେ ଏହି କାବ୍ୟଟିର ସର୍ବାଧିକ ପ୍ରଭାବ ଲକ୍ଷ୍ୟ କରାଯାଇଥାଏ । ଆଧୁନିକ ଯୁଗସ୍ରଷ୍ଟା କବିବର ରାଧାନାଥ ପାଶ୍ଚାତ୍ୟ ସାହିତ୍ୟଦ୍ୱାରା ପ୍ରଭାବିତ ହୋଇଥିଲେ ମଧ




ତାହାଙ୍କ ରଚନାବଳୀରେ କେତେକ ସ୍ଥାନରେ ନୈଷଧୀୟ ଛଟାର ମୁଦ୍ରାଙ୍କନ ଦେଖିବାକୁ ମିଳେ ।

ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ, ନୈଷଧକାର ଶ୍ରୀହର୍ଷ ଥିଲେ ଏକାଧାରରେ କବି, ବହୁଶାସ୍ତ୍ରଦର୍ଶୀ ପଣ୍ଡିତ, ତାର୍କିକ, ବୈୟାକରଣ ଓ ଦାର୍ଶନିକ । ସୁତରାଂ ସେ ନୈଷଧ କାବ୍ୟରେ ଅତି ବିଲକ୍ଷଣ ରୀତିରେ ବିଷୟ ବିନ୍ୟାସ କରିଯାଇଛନ୍ତି । ଅଧିକାଂଶ କ୍ଷେତ୍ରରେ ସେ ସାଧାରଣ କବିଙ୍କ ପରି ସରଳ ଭାବରେ ବିଷୟ ବିନ୍ୟାସ ନ କରି ବକ୍ରରୀତିରେ ଅତି ଚମତ୍କାର ଭାବରେ ତାହା ପ୍ରକାଶ କରିଛନ୍ତି । 'ନୈଷଧ' କାବ୍ୟରେ ଏହିପରି ବିଲକ୍ଷଣ ଚାତୁର୍ଯ୍ୟମଣ୍ଡିତ ବହୁ ଶ୍ଳୋକ ରହିଛି । ଆଧୁନିକଯୁଗର ବହୁଭାଷାବିଦ୍ ଓ ଶାସ୍ତ୍ରଜ୍ଞ କବି ରାଧାନାଥଙ୍କ ଅଧ୍ୟୟନର ପରିସର ମଧ୍ୟରୁ 'ନୈଷଧ' କାବ୍ୟ ଅପସରି ଯାଇ ନଥିଲା । ଅତଏବ ତାହାଙ୍କର ରଚନାବଳୀରେ ସ୍ଥାନେ ସ୍ଥାନେ ନୈଷଧୀୟ ଛଟାର ଅପୂର୍ବ ପରିପ୍ରକାଶ ଦେଖିବାକୁ ମିଳେ । ନିମ୍ନ ଦୃଷ୍ଟାନ୍ତରୁ ଏହାର ସତ୍ୟତା ଅବଧାରଣ କରିହେବ ।

'ଉଷା' କାବ୍ୟରେ ନାୟିକା ଉଷାର ବଳାଙ୍ଗୀ ନଦୀରେ ନୌଚାଳନା ସଂପର୍କରେ କବି ଲେଖିଛନ୍ତି—

''କୁସୁମିତ ସ୍ୱର୍ଣ୍ଣକାନ୍ତି ଷଣକ୍ଷେତ୍ର ପଳାନ୍ତି ଖରେ
ବାମା ବର୍ଣ୍ଣବିଭା ଚୋରି କରି ଅବା ପଳାନ୍ତି ଦୂରେ ।''

ଅର୍ଥାତ୍ ରାଜନନ୍ଦନା ଉଷା ଯେତେବେଳେ ବଳାଙ୍ଗୀ ନଦୀରେ ନୌକା ଚଳାଇ ତୀବ୍ର ଗତିରେ ଯାଉଥିଲା, ସେତେବେଳେ ତାହା ଦେଖି ମନେ ହେଉଥିଲା ଯେ, ଷଣକ୍ଷେତ୍ରଗୁଡ଼ିକ ସତେ ଯେପରି ତାହାର ଶରୀରର ବର୍ଣ୍ଣବିଭାକୁ ଚୋରିକରି ଅତି ଶୀଘ୍ର ଶୀଘ୍ର ଦୂରକୁ ପଳାୟନ କରୁଛନ୍ତି । ମାତ୍ର ଗଭୀର ଅନୁଧ୍ୟାନ କଲେ ଜଣାଯାଏ ଯେ କବି ଏଠାରେ ନୈଷଧୀୟ ଭଙ୍ଗୀରେ ଉଷାର ବାହ୍ୟ ସୌନ୍ଦର୍ଯ୍ୟ ଓ ଅନ୍ତଃ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । ବାହ୍ୟ ସୌନ୍ଦର୍ଯ୍ୟ ହେଉଛି ତାହାର ଅଙ୍ଗକାନ୍ତି ଏବଂ ସୌନ୍ଦର୍ଯ୍ୟ ହେଉଛି ନୌଚାଳନା କରିବାରେ ତାହାର ଅପୂର୍ବ ଦକ୍ଷତା । ଅର୍ଥାତ୍ ଏଥିରେ ବ୍ୟଞ୍ଜନା ମାଧ୍ୟମରେ କବି ଉଷାର ବାହ୍ୟ ଓ ଅନ୍ତଃ ସୌନ୍ଦର୍ଯ୍ୟ ବିଷୟକ ମୁଖ୍ୟତଃ ପାଞ୍ଚଗୋଟି କଥା କହିଛନ୍ତି । ତାହା ହେଉଛି—

(କ) ବଳାଙ୍ଗୀ ନଦୀର ଉଭୟପାର୍ଶ୍ୱରେ ବହୁଦୂରବ୍ୟାପୀ ଅନେକ ଷଣକ୍ଷେତ୍ର ରହିଥିଲା ।

(ଖ) ଉକ୍ତ ଷଣଗଛଗୁଡ଼ିକରେ ପ୍ରଚୁର ପରିମାଣରେ ହଳଦିଆରଙ୍ଗର ଫୁଲ ଫୁଟିଥିବାରୁ କ୍ଷେତଗୁଡ଼ିକରେ ସୁନା ବିଛେଇ ହେଲାପରି ଦେଖାଯାଉଥିଲା ।

(ଗ) ରାଜନନ୍ଦନା ଉଷାର ଅଙ୍ଗକାନ୍ତି ମଧ୍ୟ ସ୍ୱର୍ଣ୍ଣମୟ ଥିଲା ।

(ଘ) ଯେତେବେଳେ ଉଷା ବଳାଙ୍ଗୀ ନଦୀର ନୌକାଚଳାଇ ଯାଉଥିଲା, ସେତେବେଳେ ନଦୀର ଉଭୟପାର୍ଶ୍ୱସ୍ଥ କୁସୁମିତ ଷଣକ୍ଷେତ୍ରଗୁଡ଼ିକ ତାହାର ବର୍ଣ୍ଣବିଭାକୁ ଚୋରିକରି ବିପରୀତ ଦିଗକୁ ଦୌଡ଼ିଗଲା ପରି ଦେଖାଯାଉଥିଲା । ଏଠାରେ ସ୍ମରଣୀୟ ଯେ, ବସ୍ ବା ରେଲରେ ବସି ଯାତ୍ରା କଲାବେଳେ ସଡ଼କ ପାର୍ଶ୍ୱସ୍ଥ ବୃକ୍ଷ, ଗୃହ ଓ ମାଇଲ୍‌ଖୁଣ୍ଟ ଇତ୍ୟାଦି ବିପରୀତ ଦିଗକୁ ଗତିକଲାପରି ଜଣାଯାଉଥାଏ । ସେହିପରି ଭୂଷା ବଳାଙ୍ଗୀ ନଦୀରେ ଏତେ ପ୍ରଖର ଗତିରେ ନୌକା ଚଳାଉଥିଲା ଯେ, ନଦୀର ଉଭୟ ପାର୍ଶ୍ୱସ୍ଥ ଷଣକ୍ଷେତ୍ରଗୁଡ଼ିକ ବିପରୀତ ଦିଗକୁ ତୀବ୍ର ବେଗରେ ଦୌଡ଼ିଗଲାପରି ଜଣାଯାଉଥିଲା । ଅର୍ଥାତ୍ ନୌଚାଳନାରେ ଉଷାର ଅପୂର୍ବ ଦକ୍ଷତା ବିଷୟ କବି ଏଠାରେ ପ୍ରତିପାଦନ କରିଛନ୍ତି ।

(ଙ) ଉଷାର ଶରୀର ଥିଲା ସ୍ୱର୍ଣ୍ଣକାନ୍ତିମୟ ଏବଂ ଷଣଫୁଲ ମଧ ସ୍ୱର୍ଣ୍ଣକାନ୍ତିଯୁକ୍ତ । ଜଣେ ବ୍ୟକ୍ତି କୌଣସି ଦ୍ରବ୍ୟ ଚୋରିକଲେ, ଭୟରେ ଖୁବ୍ ଶୀଘ୍ର ଦୌଡ଼ି ଚାଲିଯାଏ । ସେହିପରି ଉକ୍ତ ଷଣକ୍ଷେତ୍ର ଗୁଡ଼ିକ ଉଷାର ଶରୀରର ସ୍ୱର୍ଣ୍ଣକାନ୍ତିକୁ ଚୋରିକରି ଦୌଡ଼ି ଚାଲି ଯାଉଥିଲା ପରି ବୋଧ ହେଉଥିଲା । ଅର୍ଥାତ୍ ଉଷାର ଅଙ୍ଗକାନ୍ତି ଅପେକ୍ଷା ଷଣଫୁଲର କାନ୍ତି କିପରି ନିକୃଷ୍ଟ ଥିଲା, ତାହା କବି ଏଥିରେ ସୂଚାଇଛନ୍ତି ।

କବିବର ରାଧାନାଥ ନୈଷଧୀୟ ଛଟାରେ ଏହି ପାଞ୍ଚଗୋଟି ବିଷୟ ଉକ୍ତ ଉଦ୍ଧୃତିରେ ପ୍ରକାଶ କରିଛନ୍ତି । ତାହାଙ୍କର ବିଭିନ୍ନ କାବ୍ୟରେ ଏପରି ବିଲକ୍ଷଣ ପ୍ରକାଶ ଭଙ୍ଗୀର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଶ୍ରୀହର୍ଷଙ୍କର ନୈଷଧ କାବ୍ୟରେ ଏପରି ଭାବଧାରା ସମ୍ବଳିତ ବହୁ ଶ୍ଳୋକ ରହିଛି । କବିବର ରାଧାନାଥ ସେହି ଶ୍ଳୋକରାଜି ଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ ।

**ସଂସ୍କୃତ ଅଳଙ୍କାର ଶାସ୍ତ୍ରର ପ୍ରଭାବ—**

କବିବର ରାଧାନାଥ ସଂସ୍କୃତ ଭାଷାରେ ବିଭିନ୍ନ କାବ୍ୟ ଓ ନାଟକ ସହିତ ଅଳଙ୍କାର ଗ୍ରନ୍ଥ ମଧ ଅଧ୍ୟୟନ କରିଥିବା ଜଣାଯାଏ । ତାହାଙ୍କ ପୂର୍ବବର୍ତ୍ତୀ ଭଞ୍ଜଯୁଗର କବିମାନେ କାବ୍ୟସୁନ୍ଦରୀଙ୍କୁ ବିବିଧ ଅଳଙ୍କାର ଦ୍ୱାରା ଅଭିମଣ୍ଡନ କରାଇଥିଲେ । କବିରାଧାନାଥ ଏହି ଦୃଷ୍ଟିରୁ ସ୍ୱକୀୟ ରଚନାବଳୀକୁ ଅଳଙ୍କାର ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ କରିନଥିଲେ । ପୁନଶ୍ଚ ବିଶ୍ୱନାଥ କବିରାଜ ପ୍ରଣୀତ 'ସାହିତ୍ୟ ଦର୍ପଣ' ଗ୍ରନ୍ଥ ତାହାଙ୍କର ବହୁ ପୂର୍ବରୁ ଓଡ଼ିଶାର ବିଦ୍ୱାନ୍‌ମଣ୍ଡଳୀରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଆସିଥିଲା । ଅତଏବ ତତ୍‌କାଳୀନ ଜଣେ ବହୁଭାଷାବିଦ୍ କବି ରୂପେ ସେ ଏହି

ଗ୍ରନ୍ଥଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । ଉକ୍ତ ଅଳଙ୍କାର ଗ୍ରନ୍ଥଟିର ପ୍ରଭାବରେ ସେ ସ୍ୱକୀୟ ରଚନାବଳୀରେ ବିଭିନ୍ନ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର, ରସ, ରୀତି ଓ ଗୁଣ ପ୍ରଭୃତିର ସମାବେଶ ଘଟାଇଥିବା ଦେଖାଯାଏ । କବିଙ୍କର ଚିଲିକା, ଚନ୍ଦ୍ରଭାଗା, ଉଷା, ନନ୍ଦିକେଶ୍ୱରୀ ଓ ପାର୍ବତୀ ପ୍ରଭୃତି କାବ୍ୟରେ ଅନୁପ୍ରାସ, ଯମକ, ଶ୍ଳେଷ, ଉପମା, ଉତ୍ପ୍ରେକ୍ଷା ରୂପକ, ବ୍ୟତିରେକେ, ଅନନ୍ୱୟ, ଅତିଶୟୋକ୍ତି, ବିଭାବନା, ନିଦର୍ଶନା ଓ ପର୍ଯ୍ୟାୟୋକ୍ତି ଇତ୍ୟାଦି ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ସମାବେଶ ଘଟିଛି । ବିଭିନ୍ନ ସ୍ଥାନରେ ରଚନାକୁ ଅଧିକ ଚମତ୍କାର ଓ ଆକର୍ଷଣୀୟ କରିବାକୁ ଯାଇ କବି ସ୍ଥାନେ ସ୍ଥାନେ ଏହି ସମସ୍ତ ଅଳଙ୍କାରର ସାମାବେଶ ଘଟାଇଛନ୍ତି । ଏହା ସହିତ କବି ତାହାଙ୍କର ବିଭିନ୍ନ କାବ୍ୟରେ ପ୍ରାଚ୍ୟ ରସବାଦର ଚମତ୍କାର ପ୍ରୟୋଗ କରିଛନ୍ତି । ତାହାଙ୍କ ରଚନାବଳୀରେ ବୀର, ଶୃଙ୍ଗାର, କରୁଣ ଓ ଅଦ୍ଭୁତ ଇତ୍ୟାଦି ରସ ପ୍ରସଙ୍ଗାନୁଯାୟୀ ପରିବେଷିତ ହୋଇଥିବା ଦେଖାଯାଏ । ତାହାଙ୍କ ରଚନାରେ ବୈଦର୍ଭୀ ଓ ଗୌଡ଼ୀ ରୀତି ସହିତ ଓଜଃ, ମାଧୁର୍ଯ୍ୟ ଓ ପ୍ରସାଦ ଗୁଣ-ସମ୍ୱଳିତ ପଦାବଳୀ ବ୍ୟବହୃତ ହୋଇଛି । ତାଙ୍କର ବିଭିନ୍ନ କାବ୍ୟ ଅଧ୍ୟୟନ କଲେ ଏହାର ବହୁ ଦୃଷ୍ଟାନ୍ତ ଉପଲବ୍ଧ ହୋଇପାରିବ । ସୁତରାଂ, କବି ନିଜର ରଚନାବଳୀକୁ ସଂସ୍କୃତ ଅଳଙ୍କାରଶାସ୍ତ୍ରର ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ କରିପାରିନଥିଲେ ।

**ସଂସ୍କୃତ ସାହିତ୍ୟର କବିମାନଙ୍କ ବିଭିନ୍ନ ରଚନାର ପ୍ରଭାବ—**

ପୂର୍ବରୁ କୁହାଯାଇଛି ଯେ, କବିବର ରାଧାନାଥ ପ୍ରାଚ୍ୟ ସାହିତ୍ୟର ବାଲ୍ମୀକି, ବ୍ୟାସ, କାଳିଦାସ, ମାଘ, ଶ୍ରୀହର୍ଷ ଓ ଭବଭୂତି ପ୍ରମୁଖ ମହାକବିମାନଙ୍କର ବିଶିଷ୍ଟ ରଚନାମାନ ଅଧ୍ୟୟନ କରିଥିଲେ । ତତ୍ ସଙ୍ଗେସଙ୍ଗେ ସେମାନଙ୍କର ରଚନାର ବିଭିନ୍ନ ଅଂଶକୁ ଗ୍ରହଣ ପୂର୍ବକ ନିଜସ୍ୱ ରୀତିରେ ସ୍ୱକାବ୍ୟ କବିତାରେ ପରିବେଷଣ କରିଛନ୍ତି । ନିମ୍ନରେ ଏହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଯାଉଛି ।

**କାଳିଦାସଙ୍କ ପ୍ରଭାବ—**

(କ) ଚିଲିକା ହ୍ରଦ ଭିତରେ ରହିଥିବା ପର୍ବତରାଜି ପ୍ରତି ଲକ୍ଷ୍ୟକରି କବିବର ରାଧାନାଥ ଲେଖିଛନ୍ତି—

''ପକ୍ଷଚ୍ଛେଦୀ ଶକ୍ର ଭୟେ କି ଶଇଳେ
ଲୁଚି ରହିଥିଲେ ତୋହରି ସଲିଳେ ।''

କାଳିଦାସଙ୍କ 'ରଘୁବଂଶ' ମହାକାବ୍ୟର ନିମ୍ନ ଅଂଶଦ୍ୱାରା ପ୍ରଭାବିତ ହୋଇ କବି ରାଧାନାଥ ଏହା ଲେଖିଥିବା ଜଣାଯାଏ—

"ପକ୍ଷଚ୍ଛିଦା ଗୋତ୍ରଭିଦାତ୍ତଗନ୍ଧାଃ
ଶରଣ୍ୟମେନଂ ଶତଶୋ ମହୀଧ୍ରାଃ
ନୃପାଇବୋ ପପ୍ଲବିନଃ ପରେଭ୍ୟୋ
ଧର୍ମୋତ୍ତରଂ ମଧ୍ୟମ-ମାଶ୍ରୟନ୍ତେ ।" (ରଘୁବଂଶ-୧୩/୬)

(ଖ) 'ରଘୁବଂଶ ମହାକାବ୍ୟର ତ୍ରୟୋଦଶ ସର୍ଗରେ ସମୁଦ୍ର ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି —

"ବୈଦେହି ପଶ୍ୟାମଲୟାଦ୍ ବିଭକ୍ତଂ
ମସେତୁନା ଫେନିଳମମ୍ବୁରାଶିମ୍
ଛାୟାପଥେନେବ ଶରତ୍ ପ୍ରସନ୍ନ—
ମାକାଶମାବିଷ୍କୃତ ଚାରୁତାରାମ୍ ।" (୧୩/୨)

ଏହି ଶ୍ଳୋକଟିର ପ୍ରଭାବ 'ଚିଲିକା' ର ନିମ୍ନ ଅଂଶ ଉପରେ ପଡ଼ିଥିବା ଜଣାଯାଏ—

"ସ୍ଥାନେ ସ୍ଥାନେ ନୀର ଭେଦିଛି ସୈକତ
ଶାରଦ ଆକାଶେ ଯେହ୍ନେ ଛାୟାପଥ ।
ତାରାପୁଞ୍ଜେ ଯଥା ଶୋଭେ ହରିତାଳି
ପୁଳିନ ତେସନ ଶୁଭ୍ର ଶୁକ୍ତିଶାଳୀ ।"

(ଗ) 'ଚିଲିକା'ରେ ରାଧାନାଥ ଲେଖିଛନ୍ତି—

"ଯହିଁ ଚକ୍ରବାଳେ ଅୟଶ୍ଚକ୍ର ପ୍ରଭ
ନୀଳାର୍ଣ୍ଣବ ଦେହେ ଲଗ୍ନ ନୀଳନଭ ।"

ଏହା 'ରଘୁବଂଶ' ମହାକାବ୍ୟର ତ୍ରୟୋଦଶ ସର୍ଗର ନିମ୍ନ ଶ୍ଳୋକର ଅନୁରୂପ କହିଲେ ଅତ୍ୟୁକ୍ତି ହେବ ନାହିଁ—

"ଦୂରାଦୟଶ୍ଚକ୍ରନିଭସ୍ୟ ତନ୍ୱୀ
ତମାଳତାଳି ବନରାଜିନୀଳା
ମାଭାତିବେଳା ଲବଣାମ୍ବୁରାଶେଃ
ଧାରାନିବଦ୍ଧେବ କଳଙ୍କରେଖା । (୧୩/୧୫)

(ଘ) ମହାକବି କାଳିଦାସ ତାହାଙ୍କ 'ଋତୁସଂହାର' କାବ୍ୟରେ ଶରତ୍‌ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି—

"କାଶୈର୍ମହୀ ଶିଶିରଦୀଧିତିନା ରଜନ୍ୟୋ
ହଂସୈର୍ଜଳାନି ସରିତାଂ କୁମୁଦୈଃ ସରାଂଶି

ସପ୍ତଚ୍ଛଦୈଃ କୁସୁମଭାର ନତୈର୍ବନାନାଂ
ଶୁକ୍ଳୀକୃତାନ୍ୟୁପବନାନିଚ ମାଳତୀଭିଃ ।'' (ଶ୍ଳୋକ-୮)

ଏହି ଶ୍ଳୋକର ପ୍ରଭାବରେ ରାଧାନାଥ ଲେଖିଛନ୍ତି—

''ଶଶାଙ୍କ ଧବଳା ନିତ୍ୟଜ୍ୟୋତିଷ୍ମତୀ
କାଶହାସମୟୀ ସ୍ୱଚ୍ଛ ସ୍ରୋତସ୍ୱତୀ
ମାଳତୀବିଶଦ ନିବିଡ଼ନିକୁଞ୍ଜ
କୁମୁଦ ଧବଳ ସରୋବରପୁଞ୍ଜ ।'' (ଚିଲିକା)

(ଙ) 'ରଘୁବଂଶ' କାବ୍ୟରେ ରାମଚନ୍ଦ୍ରଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପ୍ରସଙ୍ଗରେ କବି ତାହାଙ୍କ ମୁଖରେ ପ୍ରକାଶ କରାଇଛନ୍ତି—

''ତ୍ୱୟା ପୁରସ୍ତାଦୁପୟାଚିତୋୟଃ
ସୋଽୟଂ ବଟଶ୍ୟାମଃ ଇତି ପ୍ରତୀତଃ
ରାଶିର୍ମଣିନାମିବ ଗାରୁଡ଼ାନାଂ
ସପଦ୍ମରାଗଃ ଫଳିତୋ ବିଭାତି ।'' (୧୩/୫୩)

ଏହି ଶ୍ଳୋକଦ୍ୱାରା ପ୍ରଭାବିତ ହୋଇ ବଟଦ୍ରୁମର ପତ୍ରରାଜିକୁ ମରକତ ମଣି (ଗାରୁଡ଼) ଓ ଲାଲରଙ୍ଗର ବଟଫଳକୁ 'ପଦ୍ମରାଗମଣି' ରୂପେ କଳ୍ପନା ପୂର୍ବକ ରାଧାନାଥ ଲେଖିଛନ୍ତି—

''ବଟଦ୍ରୁମ ଯାର ଯୋଗ୍ୟ ପୁତ୍ରବତ
ଭୂସ୍ପର୍ଶୀ ଓହଳ ସ୍ତମ୍ଭେ ପରିଣତ ।
ମରକତ ପର୍ଣ୍ଣେ ପଦ୍ମରାଗ ଫଳେ
ଯା ବିଗ୍ରହ ଗ୍ରାମ ସୀମନ୍ତ ଉଜ୍ଜ୍ୱଳେ ।'' (ଚିଲିକା)

(ଚ) 'ଉଷା' କାବ୍ୟରେ ଉଷା-ସ୍ୱୟମ୍ବରରେ ଯୋଗଦେବା ନିମିତ୍ତ ଅଗ୍ରସର ହେଉଥିବା ଜୟନ୍ତର ମନର ଦୃଢ଼ତା ସମ୍ପର୍କରେ ରାଧାନାଥ ଲେଖିଛନ୍ତି—

''ମାତ୍ର ନିମ୍ନମୁଖ ପୟଃ ପୁଣି ଦୃଢ଼ପ୍ରତିଜ୍ଞ ମନ
ଯେତେ ବାରିଲେ ହେଁ ମାନନ୍ତି ନାହିଁ ସେ କେବେ ବାରଣ ।''

ଏହା କାଳିଦାସଙ୍କ 'କୁମାରସମ୍ଭବମ୍' କାବ୍ୟସ୍ଥ ପାର୍ବତୀଙ୍କ ତପସ୍ୟା ନିମିତ୍ତ ସ୍ଥିର ନିଶ୍ଚୟ ମନର ଅବସ୍ଥା ବର୍ଣ୍ଣନା ମୂଳକ ନିମ୍ନ ଶ୍ଳୋକର ଭାବାନୁବାଦ କହିଲେ ଅତ୍ୟୁକ୍ତି ହେବ ନାହିଁ—

''ଇତି ଧ୍ରୁବେଚ୍ଛା ମନୁଶାସତୀ ସୁତା
ଶଶାକ ମେନା ନନିୟନ୍ତୁମୁଦ୍ୟମାତ୍
କ ଈପ୍ସିତାର୍ଥଃ ସ୍ଥିର ନିଶ୍ଚୟଂ ମନଃ
ପୟଶ୍ଚ ନିମ୍ନାଭିମୁଖଂ ପ୍ରତୀପୟେତ୍ ।'' (କୁମାରସମ୍ଭବମ୍ -୫/୫)

(ଛ) 'ମହାଯାତ୍ରା' କାବ୍ୟରେ ସାତକୋଶିଆଗଣ୍ଡ ନିକଟବର୍ତ୍ତୀ ବନ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"x x x x ବନଗଜବ୍ରଜ-
କଣ୍ଡୁଳ - କପୋଳ - ପିଣ୍ଡ ଘର୍ଷଣେ କମ୍ପିତ
ଦ୍ରୁମାବଳୀ ଦେହୁ ଯହିଁ ଝରଇ ପ୍ରବାହେ
ସୁରଭି ଅରଣ୍ୟ ପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ ।"

ଏହି ବର୍ଣ୍ଣନା ପ୍ରଦାନ କରିବା ସମୟରେ କବି କାଳିଦାସଙ୍କ ରଚିତ ନିମ୍ନ ଶ୍ଳୋକ ଦ୍ୱାରା ପ୍ରଭାବିତ ହୋଇଥିବା ସ୍ପଷ୍ଟ ଜଣାଯାଏ । ଉକ୍ତ ଶ୍ଳୋକଟି ହେଉଛି—

"କପୋଳକଣ୍ଡୁଃ କରିଭିର୍ବିନେତୁଂ
ବିଘଟ୍ଟିତାନାଂ ସରଳଦ୍ରୁମାଣାମ୍
ଯତ୍ରସ୍ରୁତକ୍ଷୀରତୟା ପ୍ରସୂତଃ
ସାନୂନି ଗନ୍ଧଃ ସୁରଭିଃ କରୋତି ।" (କୁମାର ସମ୍ଭବ-୧/୯)

(ଜ) 'ଯଯାତିକେଶରୀ' କାବ୍ୟରେ କବିବର ରାଧାନାଥ ଲେଖିଛନ୍ତି—

"ଏ ବାଳାକୁ ବନବାସ ସହାଇଲେ
ବିଧି ଅଦା କି ବିଚାରେ
ଶମୀ ଛେଦିବାକୁ ଲୋଡ଼ିଲେ ସିନା ସେ
ନୀଳୋତ୍ପଳ-ଦଳ ଧାରେ ।"

ଏହା ମହାକବି କାଳିଦାସଙ୍କ 'ଅଭିଜ୍ଞାନଶାକୁନ୍ତଳମ୍',ର ନିମ୍ନ ଶ୍ଳୋକର ପ୍ରଭାବରେ ଲିଖିତ ହୋଇଥିବା ସ୍ପଷ୍ଟ ଜଣାଯାଏ—

"ଇଦଂ କିଲାବ୍ୟାଜ ମନୋହରଂ ବପୁ-
ସ୍ତପଃ କ୍ଷମଂ ସାଧୟିତୁଂ ଯଃ ଇଚ୍ଛତି
ନୂନଂ ସ ନୀଳୋତ୍ପଳ ପତ୍ର ଧାରୟା
ଶମୀଲତାଂ ଛେତ୍ତୁମୃଷିର୍ବ୍ୟବସ୍ୟତି ।"

**ଭବଭୂତିଙ୍କ ପ୍ରଭାବ :—**

ମହାକବି ଭବଭୂତିଙ୍କ 'ଉତ୍ତରରାମଚରିତ' ନାଟକ ସଂସ୍କୃତ ସାହିତ୍ୟର ଏକ ବିଶିଷ୍ଟ କୃତି ରୂପେ ବିବେଚିତ ହୋଇଥାଏ । ଭାରତବର୍ଷର ପ୍ରାୟ ପ୍ରତ୍ୟେକ ସଂସ୍କୃତ ପଣ୍ଡିତ ତଥା ସଂସ୍କୃତ ସାହିତ୍ୟାନୁରାଗୀ ବ୍ୟକ୍ତି ଏହି ନାଟକଟିକୁ ଅଧ୍ୟୟନ କରିଥାନ୍ତି । କବିବର ରାଧାନାଥଙ୍କ ରଚନାବଳୀ ପାଠକଲେ ଜଣାଯାଏ ଯେ, ସେ 'ଉତ୍ତରରାମଚରିତ' ନାଟକଟିକୁ ସମ୍ୟକ୍ ଭାବରେ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ତାହାର କେତେକ ବିଖ୍ୟାତ ଶ୍ଳୋକଦ୍ୱାରା ପ୍ରଭାବିତ ହୋଇଥିଲେ । ନିମ୍ନରେ ତାହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା—

(କ) 'ଚିଲିକା' କାବ୍ୟରେ କବି ନିଜର ଦାକ୍ଷିଣାତ୍ୟ ଭ୍ରମଣ ପ୍ରସଙ୍ଗରେ ଲେଖିଛନ୍ତି—

''ଧାରାସ୍ରାବୀ ଭୀମରାବୀ ତଡ଼ିଦ୍‌ବନ୍ତ
ପର୍ଜନ୍ୟଗର୍ଜନେ କମ୍ପିଲେ ଦିଗନ୍ତ
ଯହିଁ ମେଘାଲୋକେ ପ୍ରଫୁଲ୍ଲ ଅନ୍ତର
ମୈଥିଳୀ ପାଳିତ କେକୀ ବଂଶଧର
ନୀପେ ନୃତ୍ୟକାରୀ ନୀଳକଣ୍ଠ କେକା
ଅଦ୍ୟାପି ସୂଚଇ ରାମାଶ୍ରମ ରେଖା ।''

ଏହ ଅଂଶଟିର ଭାବଧାରା 'ଉତ୍ତରରାମଚରିତ'ର ନିମ୍ନ ଶ୍ଳୋକରୁ ଗ୍ରହଣ କରାଯାଇଥିବା ଜଣାଯାଏ—

''କରକମଳ ବିତୀର୍ଣ୍ଣୈ-ରମ୍ବୁନୀବାରଶଷ୍ପୈ-
ସ୍ତରୁଶକୁନି କୁରଙ୍ଗାନ୍ ମୈଥିଳୀ ଯାନପୁଷ୍ୟତ୍ ।'' (୩/୨୫)

(ଖ) ଦାକ୍ଷିଣାତ୍ୟ ଗୋଦାବରୀ ନଦୀ ପ୍ରସଙ୍ଗରେ ରାଧାନାଥ ଲେଖିଛନ୍ତି—

'' x x x x x
ଗଦ୍‌ଗଦ ଶବଦେ ଗୋଦାବରୀ ଯହିଁ
କୁହରେ ପଡୁଛି ଭୃଗୁ ଦେହେ ଝରି
x x x x x x ।'' (ଚିଲିକା)

ଏହି ଦୁଇଗୋଟି ପାଦରେ ରହିଥିବା ଭାବଧାରା ଭବଭୂତିଙ୍କ ରଚନାର ନିମ୍ନ ଶ୍ଳୋକଟିରୁ ଗୃହୀତ ହୋଇଥିବା ସ୍ପଷ୍ଟ ଜଣାଯାଏ—

''ଏତେ ତେ କୁହରେଷୁ ଗଦ୍‌ଗଦ୍ ନଦଦ୍
ଗୋଦାବରୀ ବାରୟୋ ।'' (ଉତ୍ତରରାମଚରିତ ୨/୩୦)

**ମହାକବି ମାଘଙ୍କ ପ୍ରଭାବ :—**

ମହାକବି ମାଘଙ୍କ 'ଶିଶୁପାଳବଧ' ସଂସ୍କୃତ ଷଟ୍‌କାବ୍ୟ ମଧ୍ୟରୁ ଅନ୍ୟତମ । ଏହା ଭାରତୀୟ ପଣ୍ଡିତମଣ୍ଡଳୀରେ ଏକ ଉଚ୍ଚାଙ୍ଗ ମହାକାବ୍ୟ ରୂପେ ବିବେଚିତ ହୋଇଥାଏ । କବିବର ରାଧାନାଥ କେତେକ ସ୍ଥଳରେ ଏହି କାବ୍ୟଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ । ନିମ୍ନରେ ଏହାର ଗୋଟିଏ ଦୃଷ୍ଟାନ୍ତ ପ୍ରଦାନ କରାଗଲା । 'ଚିଲିକା' କାବ୍ୟରେ କବି ଲେଖିଛନ୍ତି—

''ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି
ସୁନ୍ଦର ପଣର ଚିରନ୍ତନ ରୀତି ।
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।''

'ଶିଶୁପାଳବଧ'ର ନିମ୍ନ ଶ୍ଳୋକ ସହିତ ଏହି ଅଂଶକୁ ତୁଳନା ପୂର୍ବକ ରାଧାନାଥ କିପରି ଏହାଦ୍ୱାରା ପ୍ରଭାବିତ ହୋଇଛନ୍ତି, ତାହା ଅନୁମାନ କରାଯାଇପାରେ । ଯଥା—

"ଦୃଷ୍ଟୋଽପି ଶୈଳଃ ସ ମୁହୁର୍ମୁରାରେଃ
ଅପୂର୍ବବତ୍ ବିସ୍ମୟ ମାତତାନ
କ୍ଷଣେ କ୍ଷଣେ ଯନ୍ନବାତାମୁପୈତି
ତଦେବ ରୂପଂ ରମଣୀୟତାୟାଃ ।" (୪/୧୭)

**ବାଣଭଟ୍ଟଙ୍କ ପ୍ରଭାବ :—**

ବାଣଭଟ୍ଟଙ୍କ ବିଖ୍ୟାତ ଗଦ୍ୟକାବ୍ୟ 'କାଦମ୍ବରୀ' ମଧ୍ୟ କେତେକ ସ୍ଥଳରେ ରାଧାନାଥଙ୍କ ଉପରେ ପ୍ରଭାବ ପକାଇଥିବାର ଦେଖାଯାଏ । ନିମ୍ନ ଦୃଷ୍ଟାନ୍ତରୁ ଏହାର ସତ୍ୟତା ଅବଧାରଣ କରିହେବ । 'ମହାଯାତ୍ରା' କାବ୍ୟର ତୃତୀୟ ସର୍ଗରେ ବନବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"ଦୟାବତୀ ମୈଥିଳୀର ସ୍ୱହସ୍ତପାଳିତ
ଅଦ୍ୟାପି-ଛନ୍ତି ଏ ବନେ ବୃଦ୍ଧ କୃଷ୍ଣସାର
ଜରାଜୀର୍ଣ୍ଣ ଶୁଣି ଯେହୁ ଜଳଦଆଗମେ
ସୁଗମ୍ଭୀର ଘନଘୋଷ ଶୁଣନ୍ତି ବିଷାଦେ
ବ୍ରହ୍ମାଣ୍ଡବିବରବ୍ୟାପି କୋଦଣ୍ଡଙ୍କାରେ
ଲଙ୍କାପତି ଅରାତିର, ତୃଣାହାର ତେଜି
ନିର୍ନିମେଷେ ଏକଧ୍ୟାନେ ମୁଞ୍ଚନ୍ତି ଲୋତକ ।"

ଏହା ଉପରେ 'କାଦମ୍ବରୀ'ର ନିମ୍ନ ଅଂଶର ସ୍ପଷ୍ଟ ପ୍ରଭାବ ପଡ଼ିଥିବା ଜଣାଯାଏ—

"ଅଧୁନାଽପି ଯତ୍ର ଜଳଧର ସମୟେ ଗମ୍ଭୀର ମଭିନବ ଜଳଧର-
ନିବହ-ନିନାଦମାକର୍ଣ୍ୟ ଭଗବତୋ ରାମସ୍ୟ ତ୍ରିଭୁବନବିବର-ବ୍ୟାପିନ-
ଶ୍ଚାପଘୋଷସ୍ୟ ସ୍ମରନ୍ତୋ ନ ଗୃହ୍ଣନ୍ତି ଶସ୍ପକବଳ-ମଜସ୍ରମଶ୍ରୁଜଳ-
ଲୁଳିତ-ଦୀନଦୃଷ୍ଟୟୋଃ ବୀକ୍ଷ୍ୟ ଶୂନ୍ୟା ଦଶଦିଶୋ ଜରାଜର୍ଜରିତ
ବିଷାଣକୋଟୟୋ ଜାନକୀ-ସଂବର୍ଦ୍ଧିତା ଜୀର୍ଣ୍ଣମୃଗାଃ ।"

ଏହାର ବହୁଅଂଶ ସହିତ 'ମହାଯାତ୍ରା'ର ଉକ୍ତ ଉଦ୍ଧୃତିର ଅଧିକାଂଶ ଭାଗ ମିଳିଯାଉଛି ।

**ଶ୍ରୀହର୍ଷଙ୍କ ପ୍ରଭାବ :—**

ମହାକବି ଶ୍ରୀହର୍ଷଙ୍କ 'ନୈଷଧ'କାବ୍ୟ ମଧ୍ୟ କେତେକ ସ୍ଥଳରେ କବିବର

ରାଧାନାଥଙ୍କ ଉପରେ ପ୍ରଭାବ ବିସ୍ତାର କରିଥିବା ଦେଖାଯାଏ । କବି କିପରି ନୈଷଧୀୟ ବର୍ଣ୍ଣନା ଚାତୁରୀ ଓ କଳ୍ପନା ବିଳାସ ଦ୍ୱାରା ପ୍ରଭାବିତ ହୋଇଛନ୍ତି, ତାହା ପୂର୍ବରୁ ଦର୍ଶାଇ ଦିଆଯାଇଛି । 'ନୈଷଧ'ର କେତେକ ବିଖ୍ୟାତ ଶ୍ଲୋକଦ୍ୱାରା କବି କିପରି ପ୍ରଭାବିତ ହୋଇଥିଲେ ତାହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଯାଉଛି—

(କ) 'ମହାଯାତ୍ରା' କାବ୍ୟର ଚତୁର୍ଥ ସର୍ଗରେ କଳି ଅନୁଚର କ୍ରୋଧର ଆଗମନ ଦୃଶ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

''ଆକ୍ରୋଶେ ଗରଜି କ୍ରୋଧ ଆସେ କାମ ପଛେ
ରକ୍ତଚକ୍ଷୁ ସତେ କି ସେ ଦହିବ ଜଗତ ।''

ଏହି ଅଂଶଟି 'ନୈଷଧ'ର ନିମ୍ନ ଶ୍ଲୋକର ଅନୁରୂପ ମନେହୁଏ—

''ଯଉତ୍ କ୍ଷିପନ୍ତମୁତ୍କମ୍ପମୁତ୍ଥାୟୁକମଧାରୁଣମ୍
ବୁବୁଧୁର୍ବିବିଧାଃ କ୍ରୋଧମାକ୍ରୋଶାକ୍ରୋଶ ଘୋଷଣମ୍ ।''
(ନୈଷଧ ୧୭/୧୯)

(ଖ) କଳି ଅନୁଚର ହତ୍ୟାର ମର୍ତ୍ତ୍ୟ ଅବତରଣକାଳୀନ ଦୃଶ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

''ସହଚର ରୂପେ ତାର ଆସଇ ସଙ୍ଗତେ
ହତ୍ୟା କରବାଳ ହାତେ, ରକ୍ତଲିପ୍ତ ବାସେ
ତମ୍ପ୍ରାୟେ ଫଁ ଫଁ ସ୍ୱନେ ନିଃଶ୍ୱାସି ସଘନେ
ଆସୁଛନ୍ତି ପରିଜନେ, ବହଇ ଅଧରୁ
ଲହୁଧାରା, ନିଜଦନ୍ତେ, ନିଜକୁ କାମୋଡ଼ି
କାଳ ଭୁଜଙ୍ଗିନୀ ପ୍ରାୟେ ଭ୍ରୂକୁଟୀ ଲଲାଟେ ।''
(ମହାଯାତ୍ରା-ଚତୁର୍ଥ ସର୍ଗ)

ଏହା ସହିତ 'ନୈଷଧ'ର ନିମ୍ନ ଶ୍ଲୋକ ତୁଳନୀୟ—

''ଯମୁପାସତ ଦନ୍ତୌଷ୍ଠ କ୍ଷଣସୃକ୍ ଶିଷ୍ୟଚକ୍ଷୁଷଃ
ଭ୍ରୂକୁଟୀ ଫଣିନୀନାଦନିଭଃ ନିଃଶ୍ୱାସ ଫୁତ୍କୃତାଃ ।'' (୧୭/୨୦)

(ଗ) 'ମହାଯାତ୍ରା' ର ଚତୁର୍ଥ ସର୍ଗରେ 'ମୋହ'ର ସ୍ୱରୂପ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

''ଶାସ୍ତ୍ରଜ୍ଞାନ ସତ୍ତ୍ୱେ ଜଡ଼, ଅନ୍ଧ ଚକ୍ଷୁ ଥାଇ
ହେଲେ ହେଁ ଜାଗ୍ରତ ଗାଢ଼-ନିଦ୍ରା-ଅଭିଭୂତ
ଦରାଣ୍ଡି ହୁଅନ୍ତି ଆହା, ମହା ଘୋର ତମେ । ''

ଏହାର ଭାବଧାରା 'ନୈଷଧ'ର ନିମ୍ନ ଶ୍ଳୋକରୁ ଗୃହୀତ ହେଲା ପରି ମନେ ହୁଏ—

"ଜାଗ୍ରତାମପି ନିଦ୍ରା ୟଃ ପଶ୍ୟତାମପି ୟୋଽନ୍ଧତା
ଶ୍ରୁତୋସତ୍ୟପି ଜାଡ୍ୟଂ ଯଃ ପ୍ରକାଶୋଽପି ଚୟସ୍ତମଃ ।" (୧୭/୩୩)

ବ୍ୟାସଦେବଙ୍କ ପ୍ରଭାବ :—

ମହାମୁନି ବେଦବ୍ୟାସଙ୍କ ରଚିତ ମହାଭାରତ ଓ ଅନ୍ୟାନ୍ୟ ବିଭିନ୍ନ ପୁରାଣ ରାଧାନାଥଙ୍କ ଅଧ୍ୟୟନ-ପରିସରଭୁକ୍ତ ଥିଲା । ସେ ମହାଭାରତର ବିଷୟବସ୍ତୁ ସହିତ ବହୁ ଶ୍ଳୋକଦ୍ୱାରା ମଧ ପ୍ରଭାବିତ ହୋଇଥିବା ଜଣାଯାଏ । ନିମ୍ନ କେତେଗୋଟି ଦୃଷ୍ଟାନ୍ତରୁ ଏହାର ଯଥାର୍ଥତା ହୃଦୟଙ୍ଗମ କରିହେବ—

(କ) 'ମହାଯାତ୍ରା'ର ପ୍ରଥମ ସର୍ଗରେ କବି ଯୁଧିଷ୍ଠିରଙ୍କ ମୁଖରେ ପ୍ରକାଶ କରାଇଛନ୍ତି—

"ହେ ବୀର ! ଦୁସ୍ତର କୁରୁ-ସମର -ସାଗରେ
X X X X X
ଯେ ମହାପୁରୁଷ ନିଜ କୃପା-ତରଣୀରେ
ପାରିକଲେ ପାଣ୍ଡବଙ୍କୁ କର୍ଣ୍ଣଧାର ରୂପେ ।"

ଏହାର ଭାବଧାରା ଶ୍ରୀମଦ୍ ଭଗବତ୍‌ଗୀତାର 'ଗୀତାଧ୍ୟାନ' ଅଂଶରୁ ଗୃହୀତ ହୋଇଥିବା ଜଣାଯାଏ । ସେଥିରେ କୁହାଯାଇଛି—

"ସୋଽତ୍ତୀର୍ଣ୍ଣା ଖଲୁ ପାଣ୍ଡବୈଃ ରଣନଦୀ
କୈବର୍ତ୍ତକେ କେଶବେ ।"

(ଖ) 'ମହାଯାତ୍ରା'ର ଶେଷସର୍ଗରେ ଅମର୍ଷୀଙ୍କ ମୁଖରେ କବି ପ୍ରକାଶ କରାଇଛନ୍ତି—

"ବିନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର ତାଙ୍କରି ଶୋଣିତ
ବହୁଛି ତ ଆହେ ଯୋଦ୍ଧେ ତୁମ୍ଭ ଧମନୀରେ ।"

ଏହା ରଚନା କରିବା ନିମିତ୍ତ ରାଧାନାଥ ମହାଭାରତର ନିମ୍ନୋକ୍ତ ବିଖ୍ୟାତ ଶ୍ଳୋକଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ । ଉକ୍ତ ଶ୍ଳୋକଟି ହେଉଛି—

"ସୂଚ୍ୟଗ୍ରେଣ ସୁତୀକ୍ଷ୍ଣେନ ଯାବତ୍ ତିଷ୍ଠତି ମେଦିନୀ
ତାବତ୍ ଭୂମିର୍ନିଦାତବ୍ୟ ବିନା ଯୁଦ୍ଧେନ କେଶବ ।"

(ଗ) 'ମହାଯାତ୍ରା'ରେ କବି ଲେଖିଛନ୍ତି—

"ଶତଭ୍ରାତା କୁରୁ ପଞ୍ଚପାଣ୍ଡବ ସହିତେ
ଥିଲେ ହେଁ ବିବାଦେ ରତ, ଦେଶ ବୈରୀ ସହ
ଯୁଝିଥିଲୁଁ ଆମ୍ଭେ ହୋଇ ପଞ୍ଚୋତ୍ତର ଶତ ।"

ଏହି ଅଂଶ ଉପରେ ମହାଭାରତର ନିମ୍ନ ଶ୍ଳୋକ ପ୍ରଭାବ ପକାଇଥିବା ସ୍ପଷ୍ଟ ଜଣାଯାଏ । ଯଥା—

"ପରସ୍ପର ବିରୋଧେ ହି ବୟଂ ପଞ୍ଚ ଚ ତେ ଶତମ୍
ଅନ୍ୟୈଃ ସହ ବିରୋଧେତୁ ବୟଂ ପଞ୍ଚୋତ୍ତର ଶତମ୍ ।"

(ଘ) ପୃଥ୍ୱୀରାଜଙ୍କ ଦ୍ୱାରା ସଂଯୁକ୍ତା କିପରି ବଳପୂର୍ବକ ଅପହୃତା ହୋଇଥିଲେ, ସେହି ବିଷୟ 'ମହାଯାତ୍ରା'ର ଶେଷ ସର୍ଗରେ ଉଲ୍ଲିଖିତ ହୋଇଛି । ଏ ସମ୍ପର୍କୀୟ ପଙ୍କ୍ତିଚୟ ହେଉଛି—

"ଚମକେ ଜଳକା ପ୍ରାୟ ରାଜାଙ୍କ ସମ୍ମୁଖେ
ଉଲ୍କାବେଗେ ଆସି ବୀର୍ଯ୍ୟଶୁଳ୍କା ରୂପସୀ କି
ଅନୁକୂଳ ବଳାତ୍କାରେ ନେଇଯିବେ ହରି
ସଭାତଳୁ x x x x ।"

ଏ କ୍ଷେତ୍ରରେ ବ୍ୟାସ କୃତ ମୂଳ ସଂସ୍କୃତ ଭାଗବତର ନିମ୍ନ ଶ୍ଳୋକଟି କବିଙ୍କର ପ୍ରେରଣାଦାତା ମନେହୁଏ—

"ଶୋଭାବିନି ତ୍ୱମଦିତୋଦ୍‌ବହନେ ବିଦର୍ଭାନ୍
ଗୁପ୍ତ ସମେତ୍ୟ ପୃତନା ପତିଭିଃ ପରୀତଃ ।
ନିର୍ମଥ୍ୟ ଚୈଦ୍ୟମଗଧେନ୍ଦ୍ର ବଳଂ ପ୍ରସହ୍ୟ
ମାଂ ରାକ୍ଷସେନ ବିଧିନୋଦ୍‌ବହ ବୀର୍ଯ୍ୟଶୁଲ୍‌କାମ୍ ।"

କବିବର ରାଧାନାଥଙ୍କ ଉପରେ ସଂସ୍କୃତ ଭାଷାର ରଚିତ ବିଭିନ୍ନ ଗ୍ରନ୍ଥର ପ୍ରଭାବ କିପରି ପଡ଼ିଛି ତାହାର କେତୋଟି ଦୃଷ୍ଟାନ୍ତ ମାତ୍ର ଏଠାରେ ଉଲ୍ଲେଖ କରାଗଲା ।

**ସଂସ୍କୃତ ଭାଷାର ରଚନା ଓ ଅନୁବାଦ :—**

କବିବର ରାଧାନାଥ ସଂସ୍କୃତ ଭାଷାରେ ମଧ୍ୟ କେତୋଟି ରଚନା ସୃଷ୍ଟି କରିଛନ୍ତି ଏବଂ କେତେଗୋଟି ସଂସ୍କୃତ ରଚନାକୁ ମଧ୍ୟ ଅତି ଚମତ୍କାର ଭାବରେ କାବ୍ୟିକ ରୀତିରେ ଅନୁବାଦ କରିଛନ୍ତି । ତାହାଙ୍କ ଦ୍ୱାରା ରଚିତ ପାଞ୍ଚଗୋଟି ସଂସ୍କୃତ ଗୀତିକା ପ୍ରକାଶିତ ହୋଇଛି । ସେଗୁଡ଼ିକ୍ ହେଉଛି—(କ) ଭାରତ ଗୀତିକା, (ଖ) ଧବଳେଶ୍ୱର ସ୍ତୋତ୍ରମ୍ , (ଗ) କାଳିକାସ୍ତୁତି, (ଘ) ବନ୍ଦନା, (ଙ) ସତ୍ୟବାଦୀ ।

ଏହି ପାଞ୍ଚଗୋଟି ସଂସ୍କୃତ ଗୀତିକା ପାଠକଲେ ଏହି ଭାଷା ଓ ସାହିତ୍ୟରେ ତାହାଙ୍କର ଅସାଧାରଣ ପାଣ୍ଡିତ୍ୟ ସହିତ ଉଚ୍ଚକୋଟୀର ସଂସ୍କୃତ ଛନ୍ଦଜ୍ଞାନ ସମ୍ପର୍କରେ ସ୍ପଷ୍ଟ ଧାରଣା ସୃଷ୍ଟି ହୋଇଥାଏ ।

ଏହା ସଙ୍ଗେ ସଙ୍ଗେ କବି ସଂସ୍କୃତ ଭାଷାର ବିଖ୍ୟାତ 'ମେଘଦୂତ' କାବ୍ୟକୁ ସମ୍ପୂର୍ଣ୍ଣ ଭାବରେ ଏବଂ 'ହଂସଦୂତ' ର କିଛି ଅଂଶକୁ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି । ଏହି ଉଭୟ ରଚନାର ଅନୁବାଦ କ୍ଷେତ୍ରରେ କବିଙ୍କର ସଂସ୍କୃତ ସାହିତ୍ୟ ପ୍ରତି ଅନୁରକ୍ତି, ସଂସ୍କୃତ ଭାଷାଜ୍ଞାନ ଓ ପ୍ରାଚ୍ୟ ରଚନାର ଅନୁବାଦ କୌଶଳ ପ୍ରକାଶ ପାଇଛି ।

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, କବିବର ରାଧାନାଥ ଇଂରେଜ ଶାସନକାଳୀନ ଓଡ଼ିଶାରେ ଜଣେ ଆଧୁନିକ ଇଂରାଜୀ ଶିକ୍ଷାପ୍ରାପ୍ତ ସାହିତ୍ୟସ୍ରଷ୍ଟା ଥିଲେ ମଧ୍ୟ ସଂସ୍କୃତ ସାହିତ୍ୟରେ ତାହାଙ୍କର ଅସାଧାରଣ ପାଣ୍ଡିତ୍ୟ ରହିଥିଲା । ସେ ସଂସ୍କୃତ ସାହିତ୍ୟର ବିଭିନ୍ନ ମହାକବିଙ୍କ ରଚିତ ଗ୍ରନ୍ଥରାଜି ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ତନ୍ମଧ୍ୟରୁ ବହୁ ବିଶିଷ୍ଟ ଅଙ୍ଗର ଭାବଧାରା ଗ୍ରହଣ ପୂର୍ବକ ସ୍ୱକୀୟ ରଚନାବଳୀର କାବ୍ୟିକ ସୌନ୍ଦର୍ଯ୍ୟ ବୃଦ୍ଧି କରାଇଛନ୍ତି । ଅତଏବ ରାଧାନାଥ ସାହିତ୍ୟକୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ଏକ ଅପୂର୍ବ ସମନ୍ୱିତ ରୂପ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ବିଭିନ୍ନ ସଂସ୍କୃତ ମହାକବିଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ହେଁ ଏଥିରେ ତାଙ୍କର ପ୍ରତିଭା କ୍ଷୁଣ୍ଣ ହୋଇନାହିଁ । ବରଂ ଏ କ୍ଷେତ୍ରରେ ଇଂରାଜୀ ଭାଷାର ଏକ ବିଶିଷ୍ଟ ଉକ୍ତି ତାହାଙ୍କ ପ୍ରତି ସର୍ବାଦୌ ପ୍ରଯୁଜ୍ୟ ମନେହୁଏ । ସେହି ଉକ୍ତିଟି ହେଉଛି—"The greatest genius is the most indebted man." ଅର୍ଥାତ୍ ପ୍ରତିଭାଶାଳୀ ବ୍ୟକ୍ତି ହିଁ ପୂର୍ବସୂରୀମାନଙ୍କଠାରୁ ବ୍ୟାପକ ଆହରଣ କରିଥାନ୍ତି । ଅତଏବ ରାଧାନାଥଙ୍କ ତୁଲ୍ୟ ମହାନ୍ ପ୍ରତିଭାଶାଳୀ କବିଙ୍କ ପକ୍ଷରେ ହିଁ ଏପରି ଆହରଣ ସମ୍ଭବ ହୋଇଛି ।



# ଆଧୁନିକ ଓଡ଼ିଆ ଗଳ୍ପ ଓ ରାଧାନାଥ

ଡଃ ବିଜୟାନନ୍ଦ ସିଂହ

ବ୍ୟାସକବି ଫକୀରମୋହନ ସେନାପତି ଆଧୁନିକ ଓଡ଼ିଆ ଗଳ୍ପର ପ୍ରଥମ ସ୍ରଷ୍ଟା । ତାଙ୍କର ଅନବଦ୍ୟ ସୃଷ୍ଟି 'ରେବତୀ' ଆମ ଗଳ୍ପ ସାହିତ୍ୟର ପ୍ରଥମ ସୁରଭିତ ପୁଷ୍ପ । ଏହା ପ୍ରଥମେ ୧୮୯୮ ମସିହା ଅକ୍ଟୋବର ମାସରେ ଆତ୍ମପ୍ରକାଶ କରିଥିଲା । ୧୮୯୮ରୁ ୧୯୯୮ ଗୋଟିଏ ଶତାବ୍ଦୀ । ଓଡ଼ିଆ ଗଳ୍ପ ଏହି ଶତାବ୍ଦୀ ମଧ୍ୟରେ ହୋଇଛି ସମୃଦ୍ଧ । ଏହି ଶହେବର୍ଷର ସୃଷ୍ଟି ହୋଇଛି ଗଭୀର ଆତ୍ମପ୍ରତ୍ୟୟ, ବିଶ୍ୱାସ, ସଫଳତା । ଗଳ୍ପ ହୋଇଛି ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ । ପୁଣି ଭବିଷ୍ୟତକୁ 'ପ୍ରଦାନ କରିଛି ସମ୍ଭାବନାମୟ ବଳିଷ୍ଠ ପ୍ରତିଶ୍ରୁତି । ଓଡ଼ିଆ ଗଳ୍ପ ସଂପ୍ରତି ଜାତୀୟ, ଆନ୍ତର୍ଜାତିକ ସ୍ତରରେ ସ୍ୱତନ୍ତ୍ର ମର୍ଯ୍ୟାଦା, ସମ୍ମାନଲାଭ କରିଛି । ଓଡ଼ିଆ ଗଳ୍ପର ସୁଦୃଢ଼ ଭିତ୍ତି ଭୂମି ସୃଷ୍ଟି କରିଛି ଓଡ଼ିଆ ସାହିତ୍ୟରେ ନୂତନ ଗଳ୍ପ କୋଣାର୍କ । ଆମ ଗଳ୍ପ ସାହିତ୍ୟର ଅତୀତ ଗୌରବମୟ । ପରମ୍ପରା ରୁଚିପୂର୍ଣ୍ଣ । ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରେ ଓଡ଼ିଆ ସାହିତ୍ୟର ନବଜାଗରଣ ସୃଷ୍ଟି ହୋଇଥିଲା । ନ'ଅଙ୍କ ଦୁର୍ଭିକ୍ଷ, ଭାଷା ସାହିତ୍ୟରେ ବିପର୍ଯ୍ୟୟ ଜାତୀୟଜୀବନ,ଧର୍ମ ସଂସ୍କୃତିରେ ସଙ୍କଟ ପରେ ଓଡ଼ିଆ ସାହିତ୍ୟରେ ନୂତନ ଅଧ୍ୟାୟ ସୃଷ୍ଟି ହୋଇଥିଲା । ଏହି ସମୟରେ ଆମ ସାହିତ୍ୟରେ ରଚିତ ହେଲା ଗଳ୍ପ, ଉପନ୍ୟାସ, କାବ୍ୟ, କବିତା, ନାଟକ । ୧୮୭୦ ମସିହା ପରଠାରୁ ଆରମ୍ଭ ହେଲା ଓଡ଼ିଆ ସାହିତ୍ୟରେ ନୂତନ ପର୍ବ ।

ଆଧୁନିକ ଓଡ଼ିଆ ଗଳ୍ପ ସାହିତ୍ୟର ଜନ୍ମଜାତକ ୧୮୭୦ ମସିହା ପରେ ଲିଖିତ ହୋଇଥିଲା । ପାଶ୍ଚାତ୍ୟ ଶିକ୍ଷା, ଇଂରାଜୀ ଶିକ୍ଷାର ପ୍ରସାର, ପ୍ରଚାର ଫଳରେ ଓଡ଼ିଆ ସାହିତ୍ୟରେ ନୂତନ ଚିନ୍ତା ଭାବର ସୂତ୍ରପାତ ହେଲା । ବିଦେଶୀ ଗଳ୍ପର ପ୍ରଭାବ ଅନୁଭୂତ ହେଲା, ଆମ ସାହିତ୍ୟରେ । ନୀତି ଗଳ୍ପ, ମିଶନାରୀୟ ନୀତିଗଳ୍ପ ପ୍ରଭାବରେ ଓଡ଼ିଆ ସାହିତ୍ୟରେ ପରିଲକ୍ଷିତ ହେଲା । ବାସ୍ତବରେ କଥା ସାହିତ୍ୟ ମଣିଷ ମନହୃଦୟକୁ ସ୍ପର୍ଶକଲା । ମଣିଷର ହସ, ଲୁହରେ ଗଳ୍ପ ସାହିତ୍ୟ ନୂତନ ରୂପ ଲାଭ କଲା । କ୍ଷୁଦ୍ର ଗଳ୍ପ ବା ଉପନ୍ୟାସର କଳା ଶିଳ୍ପ ସେତେବେଳେ ପ୍ରାୟତଃ ନଥିଲା । ତେଣୁ ଗଳ୍ପ ବା ଉପନ୍ୟାସ ମଧ୍ୟରେ ପ୍ରଭେଦ ନ ଥିଲା । ବ୍ୟାପକ ବର୍ଣ୍ଣନା ଯୋଗୁଁ ଗଳ୍ପ ଧାରଣ କରୁଥିଲା ଉପନ୍ୟାସର ରୂପ ।

ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ସୃଷ୍ଟି ହେବା ପୂର୍ବରୁ ୧୮୭୦ ମସିହାପରେ ଓଡ଼ିଆ ସାହିତ୍ୟରେ ସୃଷ୍ଟି ହୋଇଥିଲା ଏକ ବିରାଟ ପରିବେଶ । ଯେଉଁ ଭିତ୍ତିଭୂମି ଉପରେ ସୃଷ୍ଟି ହୋଇଥିଲା 'ରେବତୀ' ଗଳ୍ପ । କବିବର ରାଧାନାଥ, ଭକ୍ତକବି ମଧୁସୂଦନ ରାଓ, ଉମେଶଚନ୍ଦ୍ର ସରକାର, ରାମଶଙ୍କର ରାୟ ପ୍ରମୁଖଙ୍କ ପ୍ରାରମ୍ଭିକ ପ୍ରସ୍ତୁତି ଭିତରେ ଓଡ଼ିଆ ଗଳ୍ପର ସ୍ୱପ୍ନ ଓ ସମ୍ଭାବନା । ମଧୁସୂଦନ ରାଓଙ୍କ 'ଚନ୍ଦ୍ର ଓ ତାରା', 'ହେମମାଳା', 'ପ୍ରଣୟର ଅଦ୍‌ଭୁତ ପରିଣାମ' ତିନୋଟି ଗଳ୍ପ ରଚନା କରି ଓଡ଼ିଆ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କଲେ । ସେତେବେଳେ ଏତଦ୍‌ବ୍ୟତୀତ ପଶୁପକ୍ଷୀ, ନୀତିକଥାକୁ ନେଇ ଗଳ୍ପ ରଚିତ ହେଲା । ଏହି ଗଳ୍ପ ସବୁ ପାଠ୍ୟ ପୁସ୍ତକରେ ସ୍ଥାନ ପାଇଲା । ମଧୁସୂଦନଙ୍କ ରଚିତ 'ଚନ୍ଦ୍ର ଓ ତାରା' ଯଦିଓ ଇଂରାଜୀ ଗଳ୍ପରୁ ଅନୂଦିତ ତଥାପି ମୌଳିକ ଚେତନାରେ ଭାସ୍ୱର । କବିବର ରାଧାନାଥ ରାୟ ଓଡ଼ିଆ ସାହିତ୍ୟରେ କାବ୍ୟ କବିତା ରଚନା କରି ନବଦିଗନ୍ତ ସୃଷ୍ଟି କରିଥିଲେ । ସେ ବାସ୍ତବରେ ଆଧୁନିକ ଯୁଗର ପ୍ରବର୍ତ୍ତକ । ରାଧାନାଥଙ୍କ ପ୍ରତିଭାରେ ବିମଣ୍ଡିତ ହେଲା କେବଳ ଓଡ଼ିଆ ସାହିତ୍ୟରେ କାବ୍ୟ କବିତା ରଚନା କରି ସେ ନୂତନ ପରୀକ୍ଷା ନିରୀକ୍ଷା କରି ଥିଲେ ତାହା ନୁହେଁ, ଓଡ଼ିଆ କଥା ସାହିତ୍ୟର ଭିତ୍ତି ଭୂମି ପ୍ରସ୍ତୁତିରେ ସେ ଐତିହାସିକ ଭୂମିକା ଗ୍ରହଣ କରିଥିଲେ । ପ୍ରକୃତରେ ରାଧାନାଥ ରାୟ ଥିଲେ ଆଧୁନିକ କବିତାର ଯଥାର୍ଥ ବାର୍ତ୍ତାବହ ।

କଥାସାହିତ୍ୟ ରଚନା କରିବାରେ ରାଧାନାଥ ରାୟ ଥିଲେ ଜଣେ ଅଗ୍ରଣୀ ପ୍ରତିଭା । ତାଙ୍କ ରଚିତ 'ଇତାଲୀୟ ଯୁବା' ଓଡ଼ିଆ କଥାସାହିତ୍ୟ ବା ଗଳ୍ପ ସାହିତ୍ୟର ବିକାଶରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଓଡ଼ିଆ ସାହିତ୍ୟରେ କାବ୍ୟ କବିତା ରଚନା କରିବା ପୂର୍ବରୁ ଗଦ୍ୟ ରଚନା ବିଶେଷ କରି ବିବେକୀ[୧] ପ୍ରବନ୍ଧ, 'ଇତାଲୀୟ ଯୁବା'[୨] ଗଳ୍ପ ରଚନା କରି ସ୍ୱକୀୟ ପ୍ରତିଭାର ପରିଚୟ ପ୍ରଦାନ କରିଥିଲେ । ରାଧାନାଥଙ୍କ 'ଇତାଲୀୟ ଯୁବା' ୧୮୭୩ ମସିହା ଜୁଲାଇ ସଂଖ୍ୟା 'ଉତ୍କଳ ଦର୍ପଣ'ରେ ପ୍ରକାଶ ପାଇଥିଲା ।[୩] ଏହି ପତ୍ରିକାରେ ମଧ୍ୟ ମଧୁସୂଦନ ରାଓଙ୍କ 'ପ୍ରଣୟର ଅଦ୍‌ଭୁତ ପରିଣାମ' ପ୍ରକାଶିତ ହୋଇ ପାଠକମାନଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା । ସେତେବେଳେ ଏହା ସବୁ ଗଳ୍ପର ମାନ୍ୟତା ପାଇ ନ ଥିଲା । ବରଂ ଉପନ୍ୟାସ ବୋଲି ବିଚାର କରାଯାଇଥିଲା—'ଉତ୍କଳ ଦୀପିକା'ରେ, ତେଣୁ ଉଲ୍ଲେଖ ଅଛି ଯେ, 'ଏ ପତ୍ରିକା (ଉତ୍କଳ ଦର୍ପଣ)ରେ ଯେ ଉପନ୍ୟାସ ଦୁଇଟି

---

୧. ରାଧାନାଥ ଗ୍ରନ୍ଥାବଳୀ- ଅଷ୍ଟାଦଶ ସଂସ୍କରଣ, ଡାଇମଣ୍ଡ ପବ୍ଲିସର, ପୃ-୩୬୫

୨. ତତ୍ରୈବ, ପୃ-୪୦୪

୩. ଉତ୍କଳ ଦର୍ପଣ, ଜୁଲାଇ, ୧୮୭୩

ସନ୍ନିବେଶିତ ହୋଇଅଛି ତାହା ଅତିଶୟ ମନୋହର, ପାଠଯୋଗ୍ୟ ଅଟଇ ।[୪] ସେତେବେଳେ ଯାହାକୁ ଗଳ୍ପ ବୋଲି କୁହାଯାଉଥିଲା, ଘଟଣାର ବ୍ୟାପକ ବର୍ଣ୍ଣନା ଦୃଷ୍ଟିରୁ ତାହାକୁ ଉପନ୍ୟାସ କୁହାଯାଉଥିଲା । କାହାଣୀକୁ ଭିତ୍ତି କରି ଗଳ୍ପ ରଚନା କରାଯାଉଥିଲା । 'ଚନ୍ଦ୍ର ଓ ତାରା', 'ପ୍ରଣୟର ଅଦ୍‌ଭୁତ ପରିଣାମ' ଏବଂ 'ଇତାଲୀୟ ଯୁବା' ପ୍ରଭୃତିକୁ ଉପନ୍ୟାସ ବୋଲି କୁହାଯାଉଥିଲା । ଉପନ୍ୟାସ ଭିତରେ ଗଳ୍ପ ପ୍ରସ୍ଫୁଟିତ ହେଉଥିଲା । ଗଳ୍ପ ପଢ଼ିବାକୁ ଯାଇ ପାଠକ ଉପନ୍ୟାସ ଦେଖୁଥିଲା । ଏହି ଦୃଷ୍ଟିରୁ 'ଇତାଲୀୟ ଯୁବା'କୁ ଉପନ୍ୟାସ ବୋଲି କୁହାଯାଉଥିଲା । ରାଧାନାଥ ଏହାକୁ ଉପନ୍ୟାସ ବୋଲି କହିଛନ୍ତି—''ଏହାକୁ (ଇତାଲୀୟ ଯୁବା)ରାଧାନାଥ ଉପନ୍ୟାସ ବୋଲି କହିଛନ୍ତି; ମାତ୍ର ଏହା ଉପନ୍ୟାସ ନୁହେଁ, ଏକ ଦୀର୍ଘଗଳ୍ପ । ଏହି ଗଳ୍ପରେ ଗଳ୍ପ ନାୟକ ପ୍ରଣୟିନୀ ଲରାକୁ ଅନେକ ଉପନ୍ୟାସ ଶୁଣାଇବା କଥା ଉଲ୍ଲେଖ ଅଛି ।[୫] ବାସ୍ତବରେ ଏହା ଉପନ୍ୟାସ ନୁହେଁ, କିମ୍ବା କ୍ଷୁଦ୍ରଗଳ୍ପ ନୁହେଁ, ଏହା ଏକ ଗଳ୍ପମାତ୍ର । କାରଣ ଏହା ରଚିତ ହେଲା ସମୟରେ କ୍ଷୁଦ୍ରଗଳ୍ପର ଶିଳ୍ପକଳା ବିକାଶ ହୋଇ ନଥିଲା । କ୍ଷୁଦ୍ରଗଳ୍ପ ବା ଉପନ୍ୟାସ ସୃଷ୍ଟି ପାଇଁ ସେ ସମୟ ଥିଲା ପ୍ରସ୍ତୁତିପର୍ବ । ଗଳ୍ପର କାହାଣୀଧର୍ମୀତା ଏଥିରେ ଦୃଷ୍ଟିଗୋଚର ହୁଏ ।' ଏଥିରେ ଉପନ୍ୟାସର ପରିବେଶ ଓ ଉପାଦାନ ଅଛି । ଉପନ୍ୟାସର ବିସ୍ତୃତି ମଧ୍ୟ ଅଛି । କଥାବସ୍ତୁରେ ଜଟିଳତା ନାହିଁ । ବହୁ ଘଟଣା ଚରିତ୍ରର ମଧ୍ୟ ସମାବେଶ ନାହିଁ । କାହାଣୀର ଗତି ସରଳରୈଖିକ । ତେଣୁ ଏହା ଉପନ୍ୟାସ ନୁହେ,କ୍ଷୁଦ୍ରଗଳ୍ପ ମଧ୍ୟ ନୁହେ, କାହାଣୀ ମାତ୍ର ।''[୬]

'ଇତାଲୀୟ ଯୁବା'ର କାହାଣୀ ଅତ୍ୟନ୍ତ ମନୋମୁଗ୍ଧକର । ଇଉରୋପ ମହାଦେଶର ଆଲପସ୍ ପର୍ବତରେ ବାସ କରୁଥିଲେ ଜନୈକ ମେଷପାଳକ । ଥରେ ଚାରିଜଣ ଅତିଥି ସେହି ମେଷପାଳକଙ୍କ ଘରକୁ ଆସିଲେ ଏବଂ ରାତ୍ରିଯାପନ କଲେ । ପ୍ରଭାତରେ ମେଷରକ୍ଷୁଆଳ ଆପଣା କୁଟୀର ମଧ୍ୟରେ ବସି ଚାରିଜଣ ଅତିଥିଙ୍କ ସହ କଥାବାର୍ତ୍ତା କରୁଥିଲେ । କଥାବାର୍ତ୍ତା ପ୍ରସଙ୍ଗରେ ଜଣେ ଅତିଥି ରାତ୍ରିରେ ଦେଖିଥିବା ଗୃହ କାନ୍ଥରେ ଝୁଲୁଥିବା ଭୟଙ୍କର ଚିତ୍ରପଟ ସମ୍ପର୍କରେ ଜାଣିବାକୁ ଚାହିଁଲେ । ଗୃହସ୍ଥ ସେମାନଙ୍କୁ ବୁଝାଇବାକୁ ଯାଇ କହିଲେ—''ବିନିସ୍ ନଗରରେ ଥିଲା ସମୟରେ ଜଣେ ଇତାଲୀୟ ଯୁବା ସହ ସମ୍ପର୍କରେ ଆସିଲେ । କ୍ରମେ ସେହି ଯୁବକ ସହ ସମ୍ପର୍କ ଘନିଷ୍ଠ ହେଲା । ସମୟକ୍ରମେ ସେହି ଯୁବକ କେଉଁ ଆଡ଼େ ଚାଲିଯାଇଛି କିନ୍ତୁ

୪. ଉତ୍କଳ ଦୀପିକା, ୧୭, ମଇ, ୧୮୭୩

୫. ରାଧାନାଥ ଗ୍ରନ୍ଥାବଳୀ, ସଂଯୋଜନା-କ୍ଷେତ୍ରବାସୀ ନାୟକ, ପୃ-୩୮୨

୬. ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ-ପ୍ରଥମଭାଗ, ଡଃ ବୈଷ୍ଣବ ଚରଣ ସାମଲ, ପୃ-୨୮୧

ସେହି ଯୁବକର ପ୍ରେମମୟ ଜୀବନର ବାର୍ତ୍ତା ତାଙ୍କ ଜୀବନର ଅମଳିନ ସ୍ମୃତି ହୋଇ ଯାଇଛି । ସେହି ଯୁବକ ଅଙ୍କନ କରିଥିଲା କାନ୍ଥରେ ଟଙ୍ଗା ହୋଇଥିବା ଚିତ୍ରଟି । ଯୁବକ ନିଜ ସମ୍ପର୍କରେ ଦେଇଥିବା ଏକ ଦୀର୍ଘ ବିବରଣୀ ମଧ୍ୟ ଗୃହସ୍ଥଙ୍କ ପାଖରେ ଅଛି ବୋଲି କହିଲେ । ଅତିଥିମାନଙ୍କ ଅନୁରୋଧରେ ଗୃହସ୍ଥ ଉପସ୍ଥାପିତ କଲେ ସେହି ବିବରଣୀକୁ—ସେ (ଯୁବକ)ନେପଲସ୍ ନଗରରେ ଏକ ଉଚ୍ଚବଂଶରେ ଜନ୍ମଗ୍ରହଣ କରିଥିଲା । କନିଷ୍ଠ ପୁତ୍ର ହୋଇଥିବାରୁ ସକଳ ସମ୍ପତ୍ତିରୁ ସେ ବଞ୍ଚିତ ହେଲା । ଜ୍ୟେଷ୍ଠ ଭ୍ରାତା ସମଗ୍ର ସମ୍ପତ୍ତିର ଉତ୍ତରାଧିକାରୀ ହେଲେ । ସବୁ ପ୍ରକାର ସୁବିଧା ସୁଯୋଗ ହରାଇ ଯୁବକଟି ମଧ୍ୟ ପିତାଙ୍କର ପ୍ରିୟ ନ ଥିଲେ । ତେଣୁ ସେ ଭିସୁଭିୟସ୍ ଆଗ୍ନେୟଗିରିର ଏକ ଗହନ ସ୍ଥାନରେ ଥିବା ଏକ ମଠକୁ ଯାଇ ସମୟ କଟାଇଲା । ମଠରେ ଥିବା ସନ୍ନ୍ୟାସୀ ଯେ ଚିତ୍ର ଅଙ୍କନର ଦକ୍ଷତା ଅର୍ଜ୍ଜନ କରିଥିଲେ । ତାଙ୍କଠାରୁ ଚିତ୍ର ଅଙ୍କନ ସେ ଶିକ୍ଷା କଲା । ଚିତ୍ର ଶିକ୍ଷାଲାଭ କରିବାର କିଛିଦିନ ପରେ ଯୁବକ ମନରେ ସନ୍ନ୍ୟାସୀ ମଠପ୍ରତି ଘୃଣାଭାବ ସୃଷ୍ଟି ହେଲା । ଜୀବନ ଓ ସଂସାର ତାକୁ ବିଷ ପରି ଲାଗିଲା । ନିଜେ ହତାଶାର ଶିକାର ହୋଇ ଅନ୍ୟତ୍ର ଯିବାକୁ ଚିନ୍ତା କଲା । ସେତେବେଳକୁ ତାକୁ ଷୋହଳବର୍ଷ ହୋଇଥିଲା । ମଠରୁ ଯାଇ ଦିନେ ସେ ଏକ ନିପଟ ମଫସଲ ଗାଁରେ ପହଞ୍ଚିଲା । ଗାଁର ପଲ୍ଲୀ ପ୍ରକୃତି, ପ୍ରାକୃତିକ ଶୋଭା, ତାକୁ ଗଭୀର ଆନନ୍ଦ ଆଣିଦେଲା । ଗାଁର କୃଷକମାନଙ୍କ ସଙ୍ଗୀତ ତାକୁ ଅମୃତ ସୁଖ ଆଣିଦେଲା । ମଠର କାର୍ଯ୍ୟଧାରା ଓ ପିତାଙ୍କ କଠୋର ବ୍ୟବହାରରେ ଯୁବକଟି ଅତିଷ୍ଠ ହୋଇପଡ଼ି ଗୋପନରେ ଜେନୋୟା ସହରକୁ ଚାଲିଗଲା । ଏହି ସହରରେ ପହଞ୍ଚି ମନୋହର ପ୍ରାସାଦମାଳା, ଉଚ୍ଚ ଦେବ ମନ୍ଦିର, ସୁରମ୍ୟ ପୁଷ୍ପ ଶୋଭିତ ଉଦ୍ୟାନମାନ ଦେଖି ଅତିଶୟ ଆନନ୍ଦିତ ହେଲା । ସେଠାରେ ଜଣେ ନାଗରିକ ଗୃହକୁ ଯାଇ ତାର ବିଶ୍ୱାସ ହେଲା ଯେ, ଜେନୋୟାବାସୀମାନେ ଅତ୍ୟନ୍ତ ସୁଖୀ । ଅଳ୍ପଦିନ ମଧ୍ୟରେ ତାର ସମଗ୍ର ଅର୍ଥ ସରିଗଲା । ଅର୍ଥ ଅଭାବରୁ ଭିକ୍ଷୁକ ପ୍ରାୟ ସେ ରାଜରାସ୍ତାରେ ବୁଲିଲା । ଏମିତି ବୁଲୁବୁଲୁ ସେ ଦିନେ ଦେଖିଲା ଯେ, ଜଣେ ପ୍ରସିଦ୍ଧ ଚିତ୍ରକର ଗୀର୍ଜ୍ଜା ପ୍ରାଚୀରରେ ଚିତ୍ର କରୁଛନ୍ତି । ଚିତ୍ରକରଙ୍କ ସହ ସେ ସମ୍ପର୍କ ସ୍ଥାପନ କଲା । ଚିତ୍ରକର ନିଜ ଗୃହରେ ରହିବା ପାଇଁ ଅନୁମତି ଦେଲା । ସେ ଚିତ୍ରକରଙ୍କ ପାଖରେ ଚିତ୍ର ଅଙ୍କନ କରିବା ପାଇଁ ସୁବିଧା ସୁଯୋଗ ପାଇଲା । ସେଠାରେ ସେ ଦେଖିଲା ଲରା ନାମ୍ନୀ ଜଣେ ଅପରୂପା ସୁନ୍ଦରୀ ଯୁବତୀକୁ । ଲରାର ରୂପ ସୌନ୍ଦର୍ଯ୍ୟ ତାକୁ ବିମୋହିତ କରିଦେଲା । ସେ ଅଙ୍କନ କଲା ଲରାଙ୍କ ସୁନ୍ଦର ଜୀବନ୍ତ ଚିତ୍ର । ଲରା ତାଙ୍କ ନିକଟରୁ ଅନୁପସ୍ଥିତ ହେଲେ ମଧ୍ୟ ଲରା ତାଙ୍କ ମନହୃଦୟକୁ ଆନ୍ଦୋଳିତ କରୁଥିଲା । ଲରା ସହିତ ତା’ ସମ୍ପର୍କ ଗଭୀରରୁ

ଗଭୀରତର ହୋଇଗଲା । ଜୀବନ ଦେଇ ଭଲ ପାଇ ବସିଲା ଲରାକୁ । ପରିଚୟ ହେଲା ଫିଲିପ୍ ସହ । ଫିଲିପ୍ ତାର ପ୍ରେମ ପଥରେ ଉଭା ହେଲା । ସେ ବିଶ୍ୱାସ କରିଥିଲା ଫିଲିପ୍‌କୁ । ଫିଲିପ୍ ସରଳ ବିଶ୍ୱାସର ସୁଯୋଗ ନେଲା । ନିଜ ପିତାଙ୍କ ପ୍ରଦତ୍ତ ଏକ ବିଜ୍ଞାପନ ପଢ଼ି ଯୁବକ ଜାଣିଲା ଯେ ତାର ଜ୍ୟେଷ୍ଠ ଭ୍ରାତାଙ୍କ ମୃତ୍ୟୁ ସମ୍ବାଦ । ଏହି ସମ୍ବାଦ ଜାଣି ସେ ଚାଲି ଆସିଲା ପିତାଙ୍କ ନିକଟକୁ । ଦୁଇବର୍ଷକାଳ ସ୍ୱଗୃହରେ ଅବସ୍ଥାନ କଲା । କିନ୍ତୁ ସେ ଲରାକୁ ଭୁଲି ପାରିଲା ନାହି । ଲରା ନିକଟକୁ ସେ ଦେଇଛି ବାରମ୍ବାର ଚିଠି । ଦୁଷ୍ଟ ଫିଲିପ୍ ସେ ଚିଠିଗୁଡ଼ିକୁ ରଖି ଦେଇ ଲରା ନାମରେ ତା' ପାଖକୁ ଚିଠି ପଠାଇଲା । ଯୁବକ ସେହି ପ୍ରେମପତ୍ର ପାଇ ଅଧୀର ହୋଇ ପଡ଼ିଲା । ଖଳନାୟକ ଫିଲିପ୍ ଲରାକୁ କହିଛି ଯେ, ତାର ପ୍ରାଣ ପ୍ରିୟ ପୁରୁଷଟି ଜାହାଜ ଦୁର୍ଘଣାରେ ମୃତ୍ୟୁବରଣ କରିଛନ୍ତି । ଲରା ଭାଙ୍ଗି ପଡ଼ିଲା । ଫିଲିପ୍ ଚଞ୍ଚକତା କରି ଲରାକୁ ବିବାହ କଲା । କିନ୍ତୁ ଲରା ହୃଦୟ ଓ ମନରେ ରହିଛି ଯୁବକର ମନ ଓ ଶରୀର । ସମୟ କ୍ରମେ ଯୁବକଟି ଲରା ନିକଟକୁ ଫେରି ଆସିଲା । ସବୁ କଥା ଶୁଣି ସେ ଦୁଃଖରେ ଭାଙ୍ଗି ପଡ଼ିଲା । ବନ୍ଧୁ ଦ୍ରୋହୀ ଫିଲିପ୍‌କୁ ସେ ହତ୍ୟା କଲା ।

କିନ୍ତୁ ସେ ମଣିଷ । ମନସ୍ତାତ୍ତ୍ୱିକ କ୍ରିୟା ପ୍ରକ୍ରିୟା ସୃଷ୍ଟି କଲା ତା ମନରେ । ଏହି ହତ୍ୟା ଘଟଣା ତା ହୃଦୟରେ ସୃଷ୍ଟି କଲା ଦାରୁଣ ବ୍ୟଥା ବେଦନା । ସେ ସବୁଠି ଦେଖିଲା ଫିଲିପ୍‌ର ଭୂତ । ସେ ଅଙ୍କନ କଲା ଫିଲିପ୍ ଭୂତର ଚିତ୍ର । ସେହି ଚିତ୍ରକୁ ଦେଖି ମଧ ତାର ଭୟ ଗଲାନାହିଁ । କିମ୍ବା ଭୂତଚିତ୍ର ମନରୁ ଲିଭିଲା ନାହିଁ । ପରିଶେଷରେ ସେ ଅଙ୍କିତ ଚତ୍ରଟିକୁ ଗୃହକର୍ତ୍ତାଙ୍କୁ ଦେଇ ବିଦାୟ ନେଲା । ଯାଇଛି ସେ ପ୍ରାୟଶ୍ଚିତ୍ତ କରିବାକୁ । କଥା ସରିଲା ସମୟକୁ ଗୃହସ୍ୱାମୀ ବାଷ୍ପରୁଦ୍ଧ କଣ୍ଠରେ କହିଲେ—''ଆଉ ସେପରି ଅକୃତ୍ରିମ ବନ୍ଧୁ ପାଇବୁ ନାହିଁ ।''

'ଇତାଲୀୟ ଯୁବା' ପାଶ୍ଚାତ୍ୟ ଗଳ୍ପ ଅନୁସରଣରେ ରଚିତ । ଇଂରାଜୀ ଗଳ୍ପ ପଢ଼ି ଏପରି ଗଳ୍ପ ରାଧାନାଥ ରାୟ ରଚନା କରିଥିଲେ ବୋଲି ସେ ବ୍ୟାସ କବି ଫକୀରମୋହନ ସେନାପତିଙ୍କୁ କହିଥିଲେ । ଫକୀରମୋହନ ଏହା ବର୍ଣ୍ଣନା କରି ଲେଖିଛନ୍ତି— ''ଦିନେ ଗଡ଼ଗଡ଼ିଆଠାରେ ରାଧାନାଥ କହିଲେ, ମୁଁ ଇତାଲୀୟ ଯୁବା ବୋଲି ଗୋଟିଏ ଗଳ୍ପ ଇଂରାଜୀରେ ପଢ଼ିଅଛି, ତାହାକୁ ଲେଖିବି ବୋଲି ମନେ କରୁଅଛି । ଏହା କହି ତାହା ସେ ପ୍ରବନ୍ଧ ଆକାରରେ ଲେଖିଥିଲେ ଏବଂ ମୋତେ ସମସ୍ତ ଶୁଣାଇଲେ । ତାହା ଉତ୍କଳ ଦର୍ପଣରେ କ୍ରମଶଃ ପ୍ରକାଶିତ ହେଲା ।''[୨]

---

୨. ରାଧାନାଥ ଜୀବନୀ—ପୃ-୪୨

'ଇଟାଲୀୟ ଯୁବା'ରେ ପ୍ରେମ, ବିରହ, ବେଦନା ଚିତ୍ର ଯେପରି ଅଛି, ସେହିପରି ଉତ୍କଣ୍ଠା, ଆବେଗର ପ୍ରବାହ ରହିଛି । ଚରିତ୍ର ଚିତ୍ରଣ, ପରିବେଶ ବର୍ଣ୍ଣନାରେ ମଧ୍ୟ ରାଧାନାଥଙ୍କ ସଫଳତା ନିହିତ । ଭାଷା, ପ୍ରକାଶ ଶୈଳୀ ମଧ ମନୋମୁଗ୍ଧକର । ପ୍ରେମର ଆରମ୍ଭ, ପରିଣତିର କାରୁଣ୍ୟ ଗଳ୍ପଟିକୁ ବେଶ୍ ହୃଦୟସ୍ପର୍ଶୀ କରିଛି । ବ୍ୟଞ୍ଜନା ପରିବର୍ତ୍ତେ ଭାବାବେଗ ଗୁରୁତ୍ୱଲାଭ କରିଛି । ଏସବୁ ସତ୍ତ୍ୱେ ଏହି ଗଳ୍ପ କ୍ଷୁଦ୍ରଗଳ୍ପ ବୋଲି ଘୋଷିତ ହୋଇ ପାରି ନାହିଁ । କିନ୍ତୁ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର 'ଇଟାଲୀୟ ଯୁବା' ଶୁଭ ଶଙ୍ଖଧ୍ୱନି । ଓଡ଼ିଆ କ୍ଷୁଦ୍ର ଗଳ୍ପର ନବୀନ ସୂର୍ଯ୍ୟୋଦୟ । ପ୍ରଫେସର ଡଃ ବୈଷ୍ଣବ ଚରଣ ସାମଲ ତେଣୁ ଲେଖିଛନ୍ତି—''ଆଦି ପର୍ବରେ ଓଡ଼ିଆ କ୍ଷୁଦ୍ରଗଳ୍ପର ଅନାଗତ ପ୍ରସ୍ତୁତି ପାଇଁ ରାଧାନାଥ ତଥା ମଧୁସୂଦନଙ୍କ ଗଳ୍ପଗୁଡ଼ିକର ଅବଦାନ ଅନସ୍ୱୀକାର୍ଯ୍ୟ । ସେମାନଙ୍କ ଗଳ୍ପ ଥିଲା ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ଉଦ୍‌ଯୋଗ ପର୍ବ । ସେଥିରେ ନଥିଲା ମଧ୍ୟାହ୍ନ ସୂର୍ଯ୍ୟର ଦୀପ୍ତି, ନଥିଲା ସମସ୍ୟା ସଙ୍କୁଳ ସାମାଜିକ ଜୀବନର ଭାବ ଓ ଭାବନା, ଥିଲା ରାଗରଞ୍ଜିତ ଉଷାର ପ୍ରଥମ ଅରୁଣିମା, ବିହଙ୍ଗ କଣ୍ଠର ପ୍ରଥମ ଉଦ୍‌ବୋଧନୀ ।''[୮] 'ଇଟାଲୀୟ ଯୁବା' ଆମ ଆଧୁନିକ ଗଳ୍ପ ସାହିତ୍ୟକୁ ଦେଇଥିଲା ନୂତନ ଦିଗ୍‌ଦର୍ଶନ । କବିବର ରାଧାନାଥ ରାୟ ଓଡ଼ିଆ ଆଧୁନିକ ଗଳ୍ପଜଗତର ପଥିକୃତ ଯଶସ୍ୱୀ ଶିଳ୍ପୀ ।



୮. ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସି-ଡଃ ବୈଷ୍ଣବ ଚରଣ ସାମଲ, ପୃ-୨୮୩

# ରାଧାନାଥ ସାହିତ୍ୟରେ ପରିବେଶ ଓ ପୁରୋଦୃଷ୍ଟି

ଡଃ ସୁଲୋଚନା ଦାସ

ଆଧୁନିକ ଓଡ଼ିଆ କବିତାର ଅଭ୍ୟୁଦୟ ପର୍ବରେ ଯେଉଁ ମାନ୍ତ୍ରିକ ପୁରୁଷଙ୍କ ଆଦ୍ୟ ଉଚ୍ଚାରିତ ଓଁକାର ଧ୍ୱନିରେ ଓଡ଼ିଆ ସାରସ୍ୱତ ସୃଷ୍ଟିର ନଭୋମଣ୍ଡଳ ମୂର୍ଚ୍ଛିତ ଓ ପରିବ୍ୟାପ୍ତ ହୋଇଥିଲା, ସେହି କବିବର, ଯୁଗସ୍ରଷ୍ଟା ରାଧାନାଥ ଥିଲେ ନୂତନତାର ଆଦ୍ୟ ଉଦ୍‌ଗାତା । ତପସ୍ୱୀ ଭଗୀରଥଙ୍କ ପରି ପ୍ରାଚ୍ୟର ମହାନ ଭାବଭୂମି ଉପରେ ପାଶ୍ଚାତ୍ୟର ନୂତନ ଚେତନାର ପ୍ରବାହକୁ ପ୍ରବାହିତ କରିବା ଦିଗରେ ସେ ଥିଲେ ସଚେତନ ଅନୁବ୍ରତୀ । ଏ ଉଭୟ ଭାବସଂବେଗର ସମନ୍ୱୟ, ବିଶ୍ୱତୋମୁଖୀ ମାନବ ସଂସ୍କୃତିର ଐକ୍ୟ ପ୍ରତିଷ୍ଠା ଦିଗରେ ପ୍ରଥମ ଓ ସଫଳ ଅଙ୍ଗୀକାର । ଭାବ ଉପାଦାନ ସହିତ ନୂତନ ଆଙ୍ଗିକର ଚାରଣ ତଥା ରୋମାଣ୍ଟିକ କାବ୍ୟମାନ ଆଧୁନିକ ଓଡ଼ିଆ କବିତାର ଭିତ୍ତିଭୂମିକୁ ସୁଦୃଢ଼ କରିପାରିଥିଲା । ରାଧାନାଥଙ୍କ କାବ୍ୟସ୍ୱରର ଏହି ରୋମାଣ୍ଟିକ ଦୃଷ୍ଟିବଳୟ କ୍ରମଶଃ ଉତ୍ତରିତ ହୋଇ ଏକ ପୂର୍ଣ୍ଣତର ବିକାଶ ଦିଗରେ ଗତିଶୀଳ ହୋଇଛି । ପ୍ରକୃତିର ଅନ୍ତଃସତ୍ତାରେ ଅଫୁରନ୍ତ ସୌନ୍ଦର୍ଯ୍ୟ ଓ ଅସୀମର ଭାବଦ୍ୟୋତନା ଯେଉଁ କବିର ସୃଜନସ୍ୱପ୍ନକୁ ଆଚ୍ଛନ୍ନ କରିରଖିଥିଲା, ସେହି କବିର କାବ୍ୟ ମାନସରେ ଉଗ୍ର ଜାତୀୟତାବାଦୀ ଚେତନାର ଆଗ୍ନେୟ ଉଚ୍ଛ୍ୱାସ ଓ ବିଷାଦବାଦୀ ମଗ୍ନଚୈତନ୍ୟ କିପରି ଏକ ବିଚିତ୍ର ବିରୋଧାଭାସ ସୃଷ୍ଟି କରିଥାଏ । ଗଭୀର ନୈରାଶ୍ୟବୋଧରେ ଜର୍ଜର କବି ହୃଦୟରେ ବାଗ୍‌ଦେବୀ ଆରାଧନାର୍ଜିତ ଆନନ୍ଦବୋଧର କଲ୍ଲୋଳ ପରସ୍ପର ବିପରୀତମୁଖୀ ଦୁଇଟି ପ୍ରବାହ । ଏଣୁ ରାଧାନାଥଙ୍କ ସୃଜନମନୀଷାର ଏହି ବୈଷମ୍ୟ ମନୋଭୂମି ଉପରେ ଗଢ଼ିଉଠିଛି ଶାଶ୍ୱତ ସୌନ୍ଦର୍ଯ୍ୟର ଉତ୍ତୁଙ୍ଗ ମୀନାର । ରାଧାନାଥ ସାହିତ୍ୟର ଅବବୋଧ ତେଣୁ ହୃଦୟବୃତ୍ତିକୁ ଅଧିକ ଆବେଗଦୀପ୍ତ କରିଥାଏ ।

ପାଶ୍ଚାତ୍ୟ ସାହିତ୍ୟର ସୃଷ୍ଟି ପ୍ରେରଣାରେ ଅନୁପ୍ରେରିତ ରାଧାନାଥ ସାହିତ୍ୟ, ଭାରତୀୟ ପରମ୍ପରାଠାରୁ ବିଚ୍ଛିନ୍ନ ଏକ ଛିନ୍ନମୂଳ ଭାବସତ୍ତା ବୋଲି ଯେଉଁମାନେ ସମାଲୋଚନା କରିଥାନ୍ତି, ସେମାନେ ଭୁଲିଯାନ୍ତି—

''ଏହି କି ସେ ପୁଣ୍ୟଭୂମି, ଯେ ଭୂମିର ସୁତ
ତୁମେ ଟିକି ଆର୍ଯ୍ୟ ନାମ ଦାୟାଦ ଜଗତେ ।'' — ମହାଯାତ୍ରା

ମହାନ ଭାରତୀ ଭାବନାର ଚୂଡ଼ାନ୍ତ ଅଭିବ୍ୟକ୍ତି ହେଉଛି ମହାଯାତ୍ରା । ଯାହା ସ୍ରଷ୍ଟାପ୍ରାଣର ମନୋଜ୍ଞ ରୂପାଲେଖ୍ୟ । ''ସର୍ବେଷାଂ ନୋ ଜନନୀ ଭାରତ, ଧରଣୀ କଳ୍ପ ଲତେୟମ୍ ।''ରେ କବିଚିତ୍ତର ଯେଉଁ ପ୍ରଗାଢ଼ ସ୍ୱଦେଶାନୁରାଗ ଅଭିବ୍ୟଞ୍ଜିତ ହୋଇଛି, ତାର ତୁଳନା ନାହିଁ । ଇନ୍ଦ୍ରଧନୁର ଶତବର୍ଣ୍ଣବିଭା ପରି ରାଧାନାଥ ସାହିତ୍ୟର ଆକାଶ ଓ ଦିଗ୍‌ବଳୟ ବହୁ ରୂପରଙ୍ଗରେ ବର୍ଣ୍ଣମୟ ଓ ଉଜ୍ଜ୍ୱଳ । ଏ କାବ୍ୟମାନସର ଚେର ମାଟିରୁ ବିଚ୍ୟୁତ ନୁହେଁ ଅଥଚ ଅନନ୍ତ ନୀଳିମା ଆକାଶ ପର୍ଯ୍ୟନ୍ତ ପରିବ୍ୟାପ୍ତ ଯାହାର ଶାଖା ପ୍ରଶାଖା ।

ସାହିତ୍ୟରେ ପରମ୍ପରା, ପରିବେଶ ଓ ପୁରୋଦୃଷ୍ଟି ସମୟର ତିନୋଟି ଭିନ୍ନ ଭିନ୍ନ ସ୍ଥିତିର ପ୍ରଖ୍ୟାପକ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ—କାଳଚେତନାର ଏକ ଅଖଣ୍ଡ ପ୍ରବାହକ୍ରମ ରୂପେ ମହାକାଳକୁ ଧାରଣ କରିଥାନ୍ତି । ଯେଉଁ ସମୟ ନିତ୍ୟ ନୂତନ ପୁଣି ଚିର ପୁରାତନ । ସାହିତ୍ୟର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ସୂଚାଇଥାଏ ପରମ୍ପରା, ପରିବେଶ ଓ ପୁରୋଦୃଷ୍ଟିର ବିଚାର । ନିର୍ଦ୍ଦିଷ୍ଟ ଏକ ସୃଷ୍ଟିର ସମୀକ୍ଷାକାଳରେ ତିନୋଟି ଦିଗ ହିଁ ତାର କାଳୋତ୍ତୀର୍ଣ୍ଣତାକୁ ପ୍ରତିଷ୍ଠା କରିଥାନ୍ତି । ଅତୀତର କେଉଁ ଭାବଭୂମି ଉପରେ ଦଣ୍ଡାୟମାନ ସେଇ କଳାସୃଷ୍ଟିଟି ? ସମକାଳୀନ ସମୟର ଜୀବନ ଜିଜ୍ଞାସା କେତେଦୂର ଉତ୍‌କୀର୍ଣ୍ଣ ? ଭବିଷ୍ୟତ ପାଇଁ ଅର୍ଥାତ୍ ଭବିଷ୍ୟତରେ ମାନବ ସଭ୍ୟତା, ସଂସ୍କୃତି ପାଇଁ କେଉଁ ଶାଶ୍ୱତ ସତ୍ୟ-ଅଙ୍ଗୀକାରକୁ ଏହି କଳାକୃତିଟି ଧାରଣ କରିଛି ? ଏହି ତିନୋଟି ଭାବଚେତନାର ସଂଯୋଗ ସେତୁ ରୂପେ ସେହି ସୃଷ୍ଟି ଆଦର୍ଶର ସଫଳତା ମୂଲ୍ୟାୟନ କରାଯାଇଥାଏ । ଏଣୁ କାଳ ହିଁ କଳାସୃଷ୍ଟି ମୂଲ୍ୟାୟନର ପ୍ରଧାନ ମାନଦଣ୍ଡ ବିବେଚିତ ହୋଇଥାଏ । ରାଧାନାଥ ସାହିତ୍ୟର ରୂପଗତବିନ୍ୟାସ କୌଶଳ ସହିତ ଭାବପ୍ରସ୍ଥର ଯଥାର୍ଥ ପର୍ଯ୍ୟାଲୋଚନା ଏଇ ପରିପ୍ରେକ୍ଷୀରେ ବିଚାର୍ଯ୍ୟ ।

ରାଧାନାଥ ସାହିତ୍ୟର ଉନ୍ମେଷକାଳ ଜାତୀୟଜୀବନର ତ୍ରିସଂଧିରେ ବିଦ୍ୟମାନ । ଶହ ଶହ ବର୍ଷର ପରାଧୀନତା ପରେ, ଜାତୀୟ ଦୁର୍ଗତିର ଘନଘୋର ଅନ୍ଧକାରର ସମାଧିତଳକୁ ସ୍ୱକୀୟ ଆତ୍ମାର ସ୍ୱରୂପ ପ୍ରକାଶ ନିମନ୍ତେ ସାମାଜିକ ତଥା ସାଂସ୍କୃତିକ ଜୀବନରେ ଯେଉଁ ଅଭୀପ୍‌ସା ବା ଆସ୍ପୃହା ଦେଖା ଦେଇଥିଲା, ତାହା ନୂତନ ଏକ ରେନେଁସାର ସୂତ୍ରପାତ କରିଥିଲା । ଏହି ରେନେଁସାର ସୂତ୍ରଧରମାନେ ଜାତୀୟ ଜାଗରଣର ପ୍ରଧାନ ଆୟୁଧ ରୂପେ ଶିକ୍ଷାକୁ ହିଁ ଗ୍ରହଣ କରିଥିଲେ । ଏହି ଶିକ୍ଷା ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟଭିତ୍ତିରେ ବଳିଷ୍ଠ ଜୀବନବୋଧର ପ୍ରଖ୍ୟାପକ ଥିଲା ।

କୁସଂସ୍କାର, ଅନ୍ଧବିଶ୍ୱାସ, ଅଶିକ୍ଷା, ଆତ୍ମଦୈନ୍ୟପୀଡ଼ିତ, ହୀନମନ୍ୟତା, ଜଡ଼ତା ପ୍ରଭୃତି ଯାବତୀୟ କଳଙ୍କରୁ ମୁକ୍ତ କରି ସମଗ୍ର ଜାତିକୁ ଆତ୍ମଉଦ୍‌ବୋଧନରେ ଉଦ୍‌ବୋଧିତ କରିବା ପାଇଁ ଏମାନେ ପ୍ରଚେଷ୍ଟା କରିଥିଲେ ।

ପରାଧୀନ ଭାରତ ପାଇଁ ଏପରି ଏକ ଜାଗରଣ ପ୍ରକ୍ରିୟା ସ୍ୱାଧୀନତା-ସୂର୍ଯ୍ୟର ଉଦୟଉତ୍ସବ ପାଇଁ ଥିଲା ଏକ ନୀରବ ପ୍ରସ୍ତୁତି ପର୍ବ, ପୂର୍ବରାଗର ସଙ୍କେତ । ଇଂରେଜ ଶିକ୍ଷାର ପ୍ରସାର ଶିକ୍ଷା ବ୍ୟବସ୍ଥାର ସଂସ୍କାର ଦିଗରେ ବଳିଷ୍ଠ ସ୍ୱାକ୍ଷର ବହନ କରିଥିଲା । ବିଶ୍ୱ ଭାବନୈତିକ ଦିଗନ୍ତରେ ନୂତନ ଚିନ୍ତା ଓ ଚେତନାର ଜ୍ୟୋତିଷ୍ମାନ ରୂପକୁ ପ୍ରତ୍ୟକ୍ଷ କରିବାର ଦୃଷ୍ଟି ସାମର୍ଥ୍ୟ ଲାଭ କଲେ ଆଧୁନିକ ଶିକ୍ଷାପ୍ରାପ୍ତ ଶିକ୍ଷିତ ଗୋଷ୍ଠୀ । ସ୍ୱାଧୀନତା ଆନ୍ଦୋଳନ ବା ମୁକ୍ତି ଆନ୍ଦୋଳନ ପାଇଁ ଉଷ୍ମ, ଅନୁକୂଳ କ୍ଷେତ୍ର ପ୍ରସ୍ତୁତିରେ ଏମାନେ ନିୟୋଜିତ ହେଲେ । ନୂତନ ଆତ୍ମଜାଗୃତି ସ୍ପନ୍ଦନରେ ବ୍ୟକ୍ତିଜୀବନ ଓ ଜାତୀୟ ଜୀବନ ଉଜ୍ଜୀବିତ ହେଲା । ସାମାଜିକ, ସାଂସ୍କୃତିକ, ରାଜନୈତିକ ପ୍ରତ୍ୟେକ ଦୃଷ୍ଟିରୁ ଏକ ସମ୍ଭାବ୍ୟ ପରିବର୍ତ୍ତନ ଦିଗରେ ଏହି ଅୟମାରମ୍ଭର-ଉପକ୍ରମଣିକା ପ୍ରାଚୀନ ମଧ୍ୟଯୁଗୀୟ ଚିନ୍ତାଗତ ସ୍ଥବିରତା ପ୍ରତି ପରାଙ୍‌ମୁଖ କରିଥିଲା ବ୍ୟକ୍ତିସତ୍ତାକୁ, ନୂତନ ଜୀବନବୋଧ ଓ ଜୀବନାଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଶିକ୍ଷିତଗୋଷ୍ଠୀ ।

ସାହିତ୍ୟ କ୍ଷେତ୍ରରେ ମଧ୍ୟ ଅନୁରୂପ ଚିନ୍ତା ସମନ୍ୱୟ ପ୍ରକ୍ରିୟା ଆରମ୍ଭ ହୋଇଥିଲା ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧଠାରୁ । ଇଂରେଜ ଭାଷା ସାହିତ୍ୟର ପ୍ରସାର ଭାରତୀୟମାନଙ୍କୁ ବିଶ୍ୱ ଦରବାର ସାହିତ୍ୟ, ସଂସ୍କୃତି ସହିତ ଅନ୍ତରଂଗତା ସୃଷ୍ଟି କରିବା ନିମନ୍ତେ ଥିଲା ଏକ ଅଲିଖିତ ପରିଚୟ ପତ୍ର । ନୂତନ ପ୍ରାଣପ୍ରବାହ, ନୂତନ ଆଶା ଅଭୀପ୍‌ସା, ନୂଆ ସାହିତ୍ୟ ସୃଷ୍ଟି ପାଇଁ ଥିଲା ଉଷାକାଳର ସଂକେତ । ଅପସୃୟମାନ ଭଂଜ ଓ ବୈଷ୍ଣବଯୁଗୀୟ କାବ୍ୟ ପରଂପରାର ନିର୍ମୋକ ଭିତରୁ ରାଧାନାଥଙ୍କ ସ୍ରଷ୍ଟାମାନସର ଅବତରଣ, ନୂତନ ସୃଷ୍ଟି ବୈଚିତ୍ର୍ୟର ସମସ୍ତ ସଂଭାବନାକୁ ବହନ କରିଥିଲା । ଏହିପରି ଏକ ସନ୍ଦିଗ୍ଧ ଭାବଭୂମି ଉପରେ ରାଧାନାଥଙ୍କ ସୃଷ୍ଟି ପ୍ରତିଭା— ଓଡ଼ିଆ ଆଧୁନିକ ସାହିତ୍ୟ ପାଇଁ ବିସ୍ମୟ ନୁହେଁ, ଅନିବାର୍ଯ୍ୟ ଭବିତବ୍ୟ । ଏହାଥିଲା ସମୟର ଏକାନ୍ତ ଆବଶ୍ୟକତା । ପାଶ୍ଚାତ୍ୟ ସୃଷ୍ଟି କୌଶଳ ବା ନୂତନ ଆଙ୍ଗିକର ପ୍ରୟୋଗ ରାଧାନାଥଙ୍କ ଦ୍ୱାରା ପରୀକ୍ଷିତ ହୋଇ ଏକ ନୂଆ ପରଂପରାର ସୂତ୍ରପାତ କରିଥିଲା । ରସସଂପଦର ଚମତ୍କାରିତା ପ୍ରତିପାଦନରେ ରାଧାନାଥଙ୍କ ଅଭିନବ ଶିଳ୍ପନୈପୁଣ୍ୟ ପରବର୍ତ୍ତୀ କାବ୍ୟକାରମାନଙ୍କୁ ବହୁଭାବରେ ଅନୁପ୍ରାଣିତ କରିଛି । ଏହି ପରମ୍ପରାର ପ୍ରାଚୀନ ମଧ୍ୟଯୁଗୀୟ ଭାବବିଳାସଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର, ସଂପୂର୍ଣ୍ଣ ନୂତନ ପ୍ରଚୋଦନା ।

ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ ତଥା ବଂଗବାସୀମାନଙ୍କର ସ୍ୱାର୍ଥନିଷ୍ଠ ଅନୁଦାର ପାକ୍ଷିକ ମନୋଭାବ ବିରୁଦ୍ଧରେ ଓଡ଼ିଶାରେ ଯେଉଁ ପ୍ରତିବାଦର ସ୍ୱର ଉତ୍ତୋଳିତ ହୋଇଥିଲା, ତାର ପରିଣାମ ସ୍ୱରୂପ ବଂଗଳାରେ ଥିବା ତତ୍କାଳୀନ ଇଂରେଜ ଶାସକଙ୍କର ଓଡ଼ିଆ ଭାଷାକୁ ସ୍ୱୀକୃତି ପ୍ରଦାନ ପ୍ରକୃତରେ ଥିଲା ଏକ ଐତିହାସିକ ସିଦ୍ଧାନ୍ତ । ଯାହା ପାଠ୍ୟପୁସ୍ତକ କ୍ରମରେ କ୍ରମଶଃ ଏକ ବୃହତ୍ତର ବିକାଶର ପଥ ଆବିଷ୍କାର କରିଥିଲା । "ତେଣୁ ଭାଷା ଆନ୍ଦୋଳନ କେବଳ ଶାସକଙ୍କ ଚୈତନ୍ୟ ଜାଗରଣର ଦ୍ୟୋତକ ନୁହେଁ, ତାହା ମଧ ତଦାନୀନ୍ତନ ମଧ୍ୟବିତ୍ତ ଶ୍ରେଣୀର ମନପରିବର୍ତ୍ତନର ପ୍ରଧାନ ହେତୁ ଓ ଓଡ଼ିଆ ସାହିତ୍ୟ ବିକାଶର ଏକ ବିଳିଷ୍ଟ ପୃଷ୍ଠଭୂମି । ଫଳତଃ ଗୋଟିଏ ଦିଗରେ ମୃତ୍ୟୁର ବିକଟ ଅଟ୍ଟହାସ୍ୟ, ଅପରଦିଗରେ ନୂତନ ଜୀବନ ସ୍ରୋତର ଅମୃତନିର୍ଝର—ଏ ଉଭୟ ମଧ୍ୟରେ ଦଣ୍ଡାୟମାନ ହୋଇଛି ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ । ସାହିତ୍ୟର ଇତିହାସ ଦୃଷ୍ଟିରୁ ଏଇ ନୂତନ ଜୀବନ ସ୍ରୋତର ଆବିର୍ଭାବହ ହେଉଛନ୍ତି ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ ରାୟ ।" (ଉଲ୍ଲେଖଯୋଗ୍ୟ ଯେ ୧୮୬୬ ର ନଅଙ୍କ ଦୁର୍ଭିକ୍ଷ ଏହି ଭାଷା ଆନ୍ଦୋଳନ ସମୟରେ ହିଁ ଓଡ଼ିଶାରେ ମୃତ୍ୟୁର ତାଣ୍ଡବଲୀଳା ସୃଷ୍ଟି କରିଥିଲା । ତାହାହିଁ ଏଠାରେ ଲେଖକ ଉଲ୍ଲେଖ କରିଛନ୍ତି ।)

(ଡକ୍ଟର ନଟବର ସାମନ୍ତରାୟ, ଓଡ଼ିଆ ସାହିତ୍ୟର ଇତିହାସ,୧୮୦୩-୧୯୨୦ ପୃ.୨୪୯)

ସୁତରାଂ ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି-ପରିକଳ୍ପନା ଏବଂବିଧ ସାମାଜିକ-ସାଂସ୍କୃତିକ ଚିନ୍ତା ସଂଘର୍ଷର ପରଂପରା ବା ଅତୀତ ଉପରେ ମୂର୍ତ୍ତିମନ୍ତ । ଓଡ଼ିଆଭାଷାର ସ୍ୱାତନ୍ତ୍ର ପ୍ରତିଷ୍ଠା ଘୋଷଣାନାମା ଆଧୁନିକତାର ପ୍ରବାହକୁ ତ୍ୱରାନ୍ୱିତ କରିଥିଲା । ରାଧାନାଥ, ଫକୀର ମୋହନ, ରାମଶଙ୍କର, ଉମେଶଚନ୍ଦ୍ର ସରକାର, ମଧୁସୂଦନ ପ୍ରମୁଖ ସ୍ରଷ୍ଟାଗଣ ଧ୍ୟାନନିଷ୍ଠ ଭାବରେ ଓଡ଼ିଆ ଭାଷାସାହିତ୍ୟର ଶ୍ରୀମନ୍ତରୂପ ପ୍ରତିଷ୍ଠା ଦିଗରେ ବ୍ରତୀ ହୋଇଥିଲେ ।

ଯୁଗପ୍ରବର୍ତ୍ତକ ରାଧାନାଥ ଯଥାର୍ଥରେ ଥିଲେ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ନୂତନ ସୂର୍ଯ୍ୟୋଦୟ । ବିଦେଶୀ ସାହିତ୍ୟର ସୃଷ୍ଟି ଆଦର୍ଶରେ ଉନ୍ମାଦିତ ତାଙ୍କ ସୃଜନ ସ୍ୱପ୍ନ, ଓଡ଼ିଆ ପ୍ରାଣରେ ନୂତନ ଜୀବନବୋଧର ଅକପଟ ପରିପ୍ରକାଶ ନିମନ୍ତେ ଅପୂର୍ବ କଳାସୌନ୍ଦର୍ଯ୍ୟରେ ବିଭୂଷିତ ହୋଇଥିଲେ । ତାଙ୍କ ସାହିତ୍ୟର ମୁଖ୍ୟ ଓ ବଳିଷ୍ଠ ସ୍ୱର ହେଉଛି ଜୀବନ ଓ ଜଗତର ନାନ୍ଦନିକ ସୌନ୍ଦର୍ଯ୍ୟ । ଏହି ସୌନ୍ଦର୍ଯ୍ୟବୋଧର ଉତ୍ସ ଓଡ଼ିଶାର ମାଟି, ପାଣି, ପବନ, ପାହାଡ଼, ପର୍ବତ, ଝରଣା, ନଦନଦୀ ପ୍ରଭୃତି ବାହ୍ୟ ରୂପସତ୍ତାରୁ ସଂଜାତ ହୋଇଥିଲେ ହେଁ, ତାର ଅନ୍ତଃସ୍ୱରୂପଟି

ଭାରତୀୟତାର କେଉଁ ନିଭୃତତମ ଅନ୍ତର୍ଦ୍ଦେଶରେ ଦୃଢ଼ଭାବରେ ସଂରୋପିତ ଭାବଚୈତନ୍ୟରୁ ଉତ୍ସରିତ । ଏଣୁ ରାଧାନାଥ ସାହିତ୍ୟର ପରିବେଶ ବା ବର୍ତ୍ତମାନ ଥିଲା ସମକାଳୀନ ସମୟର ମର୍ମରିତ ପ୍ରାଣସ୍ପନ୍ଦନ, ସମକାଳୀନ ଜୀବନଜିଜ୍ଞାସାର ଅକପଟ ପ୍ରକାଶ, କଳାତ୍ମକ ଅଭିବ୍ୟକ୍ତି । ରାଧାନାଥ କାବ୍ୟ କଳ୍ପନାରେ ଉଭୟ ରୂପଗତ ଓ ଆତ୍ମାଗତ ପରିବର୍ତ୍ତନରେ ନୂତନ ରୁଚିବୋଧର ପ୍ରକାଶ ଘଟିଛି । ଏଣୁ ପ୍ରାଚ୍ୟ-ପାଶ୍ଚାତ୍ୟ ସାଂସ୍କୃତିକ ସମନ୍ୱୟର ମନୋଜ୍ଞ ଆଲେଖ୍ୟ ହେଉଛି ରାଧାନାଥ ସାହିତ୍ୟ ।

ରାଧାନାଥ କାବ୍ୟ ପରଂପରାର ପର୍ଯ୍ୟାଲୋଚନା କାଳରେ ତାଙ୍କ ସୃଷ୍ଟି ଆଦର୍ଶର କେତୋଟି ମୁଖ୍ୟ ଦିଗ ଉଦ୍‌ଘାଟିତ ହୋଇଥାଏ । ଏ ସାହିତ୍ୟରେ ପ୍ରେମ-ସୌନ୍ଦର୍ଯ୍ୟର ଏକତ୍ର ସହାବସ୍ଥାନ ବେଶ ଉଜ୍ଜ୍ୱଳ ଓ ପ୍ରାଣବନ୍ତ । 'ପାର୍ବତୀ' କାବ୍ୟ ବ୍ୟତୀତ ଅନ୍ୟ ସବୁଥିରେ ଜୀବନର ଏହି ମହତ୍ତର ବିଭାବଟି ପ୍ରତି କବିପ୍ରାଣର ପ୍ରତୁଳ ଆବେଗ ଅନୁଭୂତ ହୋଇଥାଏ । କେଦାରଗୌରୀ, ନନ୍ଦିକେଶରୀ, ଚନ୍ଦ୍ରଭାଗା, ପାର୍ବତୀ, ଯଯାତି କେଶରୀ, ଉଷା, ଦରବାର, ମହାଯାତ୍ରା, ଚିଲିକା ପ୍ରଭୃତିର ସୃଷ୍ଟି ବୈଚିତ୍ର୍ୟରେ ପ୍ରକୃତି-ପ୍ରେମ-ସୌନ୍ଦର୍ଯ୍ୟର ଏକ ଓ ଅଭିନ୍ନ ନୟନାଭିରାମ ରୂପବିଗ୍ରହ ପ୍ରତ୍ୟକ୍ଷୀଭୂତ ହୋଇଥାଏ । ରୋମାଣ୍ଟିକ୍ ଭାବବିଳାସ ସହିତ ସୂକ୍ଷ୍ମ ମନନଶୀଳତା ଏହି ସୃଷ୍ଟିପ୍ରକ୍ରିୟାକୁ କ୍ରିୟାଶୀଳତା ପ୍ରଦାନ କରିଛି । ୧୮୬୬ ର ଦାରୁଣ ନଅଙ୍କ ଦୁର୍ଭିକ୍ଷର ବିକଟ ବୀଭତ୍ସ ମୃତ୍ୟୁର ବିଭୀଷିକାମୟ ତାଣ୍ଡବଲୀଳା ପରେ ଝଡ଼ ଶେଷର କାରୁଣ୍ୟଧୌତ ନିସ୍ତବ୍‌ଧତା ପରି ଓଡ଼ିଆ ଜନମାନସରେ ଜୀବନପ୍ରତି ଥିଲା ବିତୃଷ୍ଣିତ ବିମୁଖତା । ନିରାନନ୍ଦ ଓ ଦୁଃଖର ମହାସାଗରରେ ଜାତିର ଆତ୍ମା ଯେପରି ନିମଜ୍ଜିତ ହୋଇଯାଇଥିଲା, ସେହି ନିବିଡ଼ ଅନ୍ଧକାର ଭିତରୁ ଆଶାର, ବିଶ୍ୱାସର, ସମ୍ଭାବନାର ଉଜ୍ଜ୍ୱଳ ଦୀପ୍ତିକୁ ଅବଲୋକନ କରିବାପାଇଁ ଯେଉଁ ଦିବ୍ୟଦୃଷ୍ଟିର ଆବଶ୍ୟକତା ଥିଲା, ତାହା ହିଁ ରାଧାନାଥ ସାହିତ୍ୟର ସୃଷ୍ଟି ଅନ୍ତରାଳରେ ଅନ୍ତଃସଲିଳା ଫଲଗୁ ପରି ବିଦ୍ୟମାନ ହୋଇଛି । ଜୀବନ ପାଇଁ ଅସରନ୍ତି ଭଲପାଇବାର ସମ୍ଭାର ଧରି ସେ ଯେପରି ଆବିର୍ଭୂତ ହୋଇଥିଲେ । ତେଣୁ ତାଙ୍କ କାବ୍ୟମାନସରେ ବିଷାଦ, ଦୁଃଖ, ଯନ୍ତ୍ରଣା ଓ ନିରାନନ୍ଦର ପ୍ରାବଲ୍ୟ ଭିତରେ ବି ଶାଶ୍ୱତ ଆନନ୍ଦ ଓ ସୌନ୍ଦର୍ଯ୍ୟବୋଧର ଅଭିଷେକ, ପ୍ରାଣପ୍ରାଚୁର୍ଯ୍ୟର ଇଂଗୀତ ଯଥାର୍ଥରେ ମାର୍ମିକ ।

ରାଧାନାଥ ସାହିତ୍ୟର ଅପ୍ରତିହତ ଜୟଯାତ୍ରା କେଦାରଗୌରୀରୁ ଆରମ୍ଭ ହୋଇ ବିପୁଳ ଜୀବନବୋଧର ବାହକ ହେବା ଦିଗରେ ଆଗଭର ହୋଇଥିଲା । ବିଦେଶୀ କଥାବସ୍ତୁର ମଂଜୁଳ ସମୀକରଣ ମାଧ୍ୟମରେ ସେ ଉତ୍କୃଷ୍ଟ ଟ୍ରାଜେଡ଼ିକୁ କଳାତ୍ମକରୂପ ପ୍ରଦାନ କରିଛନ୍ତି—ଏକଥା ସତ । ମାତ୍ର ଜୀବନର ସବୁ ଆକର୍ଷଣ ହରାଇଥିବା, ଜୀବନପ୍ରତି ବିରାଗ, ପରାଙ୍‌ମୁଖ ହୋଇଥିବା ଜାତି ପ୍ରାଣରେ ନୂଆ ରସର ସଂଚାର,

ଲଳିତ ସୌନ୍ଦର୍ଯ୍ୟବୋଧର ପ୍ରଗାଢ଼ ଅନୁଭବ, ନୂତନ ଜୀବନବୋଧର ଜୀବନ୍ୟାସ ମନ୍ତ୍ରପାଠ, ରୋମାଣ୍ଟିକ୍ ବର୍ଣ୍ଣମୟ ଦୃଷ୍ଟିର ପ୍ରଲେପ ରାଧାନାଥ ସାହିତ୍ୟର ସୃଷ୍ଟି ଆଭିମୁଖ୍ୟ ।

ଏଣୁ ବାସ୍ତବରେ 'ରାଧାନାଥଙ୍କ ମାନସିକ ପରିବେଶ ତାଙ୍କ କାବ୍ୟ-ଗଠନ-ପରିପାଟୀର ପ୍ରଧାନ ପୃଷ୍ଠଭୂମି'— ଏକଥା ସ୍ୱୀକାର କରିବାରେ ଦ୍ୱିଧା ନାହିଁ । ଇଂରେଜ ଭାଷା ସାହିତ୍ୟରେ ଗଭୀର ପ୍ରବେଶ ତାଙ୍କୁ ଗ୍ରୀକ ସାହିତ୍ୟ ପ୍ରତି ମଧ ଆକୃଷ୍ଟ କରିଥିଲା । ଗ୍ରୀକ୍ ସାହିତ୍ୟ ତାଙ୍କ ସୃଷ୍ଟିଚେତନାକୁ ଜାଗ୍ରତ ଓ ଉର୍ବର କଲା । ସେଥିପାଇଁ ତାଙ୍କ ସାହିତ୍ୟରେ ଗ୍ରୀକ୍ ସାହିତ୍ୟର ସମୀକରଣ ପ୍ରୟାସ ଅତି ଚମତ୍କାର ଚାରୁକଳା ଶୋଭିତ ମନୋଜ୍ଞ ପ୍ରକାଶ ରୂପେ ପ୍ରତିପାଦିତ ହୋଇପାରିଛି । ଏହି ଆହରଣ ପ୍ରବୃତ୍ତିଟି ମୌଳିକ ସୃଜନପ୍ରତିଭାଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ । ଓଡ଼ିଆ ମାଟିକୁ ସେ ତାଙ୍କ ଚେତନାର ଭାବଭୂମି ରୂପେ ନିର୍ବାଚନ କରିଛନ୍ତି । ଓଡ଼ିଶାର କିମ୍ବଦନ୍ତୀ, ଲୋକଗାଥା, ଜନଶ୍ରୁତି, ଇତିହାସ, ଭୂଗୋଳ ତଥା ସାମଗ୍ରିକ ପ୍ରାଣପ୍ରାଚୁର୍ଯ୍ୟକୁ କଳାରୂପ ପ୍ରଦାନ କରିବା ପାଇଁ ସେ ବିଦେଶୀ କଥାବସ୍ତୁକୁ ଆହରଣ କରିଛନ୍ତି । କାହାଣୀର ଅବଲମ୍ବନଟି ମାତ୍ର ଗ୍ରୀକ୍ ସାହିତ୍ୟରୁ ସଂଗୃହୀତ । କିନ୍ତୁ ତାଙ୍କ କାବ୍ୟମାନସର ପ୍ରାଣରସ ହେଉଛି ଓଡ଼ିଶାର ଜୀବନବୋଧ । ତାଙ୍କର ସମସ୍ତ କାବ୍ୟର ବିଷୟବସ୍ତୁ ଯାହା ହେଉନା କାହିଁକି ଓଡ଼ିଶାର ପ୍ରସିଦ୍ଧ ସ୍ଥାନଗୁଡ଼ିକ ସେମାନଙ୍କ ଅତୀତର ମହିମାମୟ ରୂପଗୌରବ ସହିତ ସଶରୀରେ ଉଭା ହୋଇଛନ୍ତି ତାଙ୍କ ସୃଜନ ସ୍ୱପ୍ନରେ । ମହାଯାତ୍ରାରେ ପଞ୍ଚପାଣ୍ଡବ ତୀର୍ଥାଟନ କ୍ରମରେ ଓଡ଼ିଶାରେ ପହଞ୍ଚିବା ପରେ, ଓଡ଼ିଶାର ଅନିନ୍ଦ୍ୟ ରୂପମାଧୁର୍ଯ୍ୟକୁ ତୋଳିଧରିବାର ଅଭୀପ୍‌ସାଟି ସ୍ୱଦେଶାନୁରାଗ ଓ କବିତ୍ୱକୁ ଏକାତ୍ମ କରିଥାନ୍ତି । ଯେଉଁ କବିର ପ୍ରଚଣ୍ଡ ଜାତୀୟ ପ୍ରୀତି, ଐତିହ୍ୟବୋଧ ଓ ମାଟି ପ୍ରତି ପ୍ରଗାଢ଼ ଅନୁରାଗ ରହିଛି ସେ କବି କେବେହେଲେ ତାର କାବ୍ୟକଳ୍ପନାରେ ଅବିଶ୍ୱସନୀୟତା ପ୍ରକଟ କରି ପାରିବ ନାହିଁ । ଏଣୁ କାବ୍ୟମାନସର ମୂଳ ବୀଜଟି ଏଇ ମାଟିରେ ହିଁ ରୋପିତ ।

ଅମିତ ପ୍ରତିଭାଧର ରାଧାନାଥଙ୍କ ସୃଷ୍ଟିପ୍ରକ୍ରିୟାରେ ସ୍ୱଦେଶାନୁରାଗ, ପ୍ରକୃତିପ୍ରୀତି, ରୋମାଣ୍ଟିକ୍ ପ୍ରବଣତା, ସୌନ୍ଦର୍ଯ୍ୟବୋଧ, ବିଷାଦବାଦ ତଥା ଜୀବନପ୍ରତି ରହସ୍ୟାଚ୍ଛନ୍ନ ଦାର୍ଶନିକ ଦୃଷ୍ଟିଭଂଗୀର ମଂଜୁଳ ପ୍ରକାଶ ଘଟିଛି । ବ୍ୟକ୍ତିବିଶ୍ୱ ଓ ବହିର୍ବିଶ୍ୱ ପାଇଁ ସୂକ୍ଷ୍ମ ମନ୍ମୟଧର୍ମୀ ପ୍ରକୃତିର ନାନ୍ଦନିକ ଅଭିବ୍ୟକ୍ତି ତଥା ସଂଯୋଗ କବିଙ୍କ କଳାବିଳାସର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥାଏ । ଏହି କ୍ରମୋତ୍ତରଣ ପ୍ରକ୍ରିୟାଟି ସ୍ଥୂଳ ପରିଦୃଶ୍ୟମାନ ଜାଗତିକ ଅନୁଭବରୁ ଆରମ୍ଭ ହୋଇ ଆତ୍ମିକ ଉପଲବ୍ଧିରେ ପରିପୂର୍ତ୍ତି ଲାଭକରେ । ଅସୀମର ଦ୍ୟୋତନା ଏହି କାବ୍ୟଜିଜ୍ଞାସାର ଅନ୍ତର୍ଲିପି ।

ରାଧାନାଥ ସାହିତ୍ୟରେ ପ୍ରକୃତିର ନୈସର୍ଗିକ ସୁଷମା, ଜାଗ୍ରତ ଚିନ୍ମୟସତ୍ତାରୂପେ ସଗୁଣ ଓ ସାକାର । ପ୍ରାଚୀନ ମଧ୍ୟଯୁଗୀୟ ସାହିତ୍ୟରେ ପ୍ରକୃତିର ଚିତ୍ରମୟ ରୂପ ହିଁ ପାଠକୀୟ ସୌନ୍ଦର୍ଯ୍ୟବୋଧକୁ ତୃପ୍ତ କରୁଥିଲା । ରାଧାନାଥ ସର୍ବପ୍ରଥମେ ଓଡ଼ିଆ କାବ୍ୟ ପରଂପରାରେ ପ୍ରକୃତିର ପ୍ରାଣମୟୀ ସ୍ୱରୂପକୁ ଶବ୍ଦାୟିତ କଲେ । ମନୁଷ୍ୟ ପରି ପ୍ରକୃତିରେ ତ୍ରିଗୁଣାତ୍ମିକା-ଶକ୍ତିର ପ୍ରକାଶ ବୈଚିତ୍ର୍ୟକୁ ଉଦ୍‌ଘାଟନ କଲେ । ସତ୍ତ୍ୱ, ରଜ, ତମୋ ଗୁଣ ବିଶିଷ୍ଟ ପ୍ରକୃତି ମନୁଷ୍ୟ ପରି ଯାବତୀୟ କ୍ରିୟା ଓ ଘଟଣା ପ୍ରତି ପ୍ରତିକ୍ରିୟାଶୀଳ ହୋଇଉଠିଲା । ଚିଲିକା କାବ୍ୟରେ ଏହି ରୋମାଣ୍ଟିକ ଭାବବିଳାସ କବିଙ୍କର ସ୍ୱପ୍ନମୟ ଦୃଷ୍ଟିର ଦିଗ୍‌ବଳୟକୁ ଅଧିକ ସଂପ୍ରସାରିତ କରିପାରିଛି । ଚିଲିକାର ମନୋରମ ଦୃଶ୍ୟାବଳୀ କବିଙ୍କର ମଗ୍ନ ଚୈତନ୍ୟକୁ ଜାଗ୍ରତ କରିଛି । ଚିଲିକାକୁ କବି କାବ୍ୟନାୟିକା ରୂପେ ପରିକଳ୍ପନା କରିଛନ୍ତି । ଚିଲିକାର ଏହି ଐଶ୍ୱର୍ଯ୍ୟମୟୀ ରୂପଲାବଣ୍ୟ ଆନନ୍ଦାନୁଭୂତିର ବିଶିଷ୍ଟ ସଂପଦ । ଏହି ବର୍ଣ୍ଣନା ବିଳାସରେ କବିପ୍ରାଣର ତନ୍ମୟତା ପାଠକକୁ ବିଭୋର କରିଥାଏ । ପ୍ରକୃତିର ଏହି ଜାଗ୍ରତ ସତ୍ତା ତଥା ଆତ୍ମବୋଧର ଆବେଦନ ପାଠକର ରାସାନୁଭୂତିକୁ ଗଭୀର ଭାବରେ ଆଲୋଡ଼ିତ କରିଥାଏ । ରୂପଦେଇ ରୂପାତୀତର ଦର୍ଶନ କବିଙ୍କ କଳ୍ପନା ଶକ୍ତିର ସର୍ବୋଚ୍ଚ ଆରୋହଣ ବୋଲି ସ୍ୱୀକାର କରିବାକୁ ହେବ ।

ଚିଲିକାରେ ତ୍ରିଗୁଣାତ୍ମିକ ପ୍ରକୃତି ସତ୍ତ୍ୱଗୁଣ, ରଜଗୁଣ, ତମୋଗୁଣର ଆଧାର ରୂପରେ କିପରି ଆତ୍ମପ୍ରକାଶ କରିଛି ତାର ଉଦାହରଣ ଏଠାରେ ଦିଆଯାଇପାରେ ।

ସତ୍ତ୍ୱଗୁଣ— "ସ୍ୱଭାବେ ଭାବୁକ ମାନସ ଉଲ୍ଲାସୀ
ଦିଗନ୍ତ ବିସ୍ତାରୀ ତୋର ବାରିରାଶି
ପ୍ରସନ୍ନ ବଦନା, ଉଜ୍ଜ୍ୱଳ ବରଣା
ମୁଖଶ୍ରୀ ଦେଖନ୍ତି ଯହିଁ ଦିଗାଙ୍ଗନା" — ଚିଲିକା

ନିର୍ମଳ, ସ୍ୱଚ୍ଛ ତଥା ଆନନ୍ଦ ସୁଖ ପ୍ରଦାୟିନୀ ଚିଲିକାର ଏହି ରୂପଶୋଭା ସାତ୍ତ୍ୱିକଗୁଣକୁ ଧାରଣ କରିଥାଏ । ସେହିପରି —

ରଜଗୁଣ— ବନ୍ଦାପନା ଅନ୍ତେ ବାଦିତ୍ର ଶବଦ
ଉଠିଲା 'କମ୍ପାଇ' ମହୀ ବିଷ୍ଣୁପଦ
ତୀରେ ଗିରିଗୁହା ଯୋଗ ଦେଲେ ତହିଁ
ସମୀର ନେଲା ତା ଦିଗେ ଦିଗେ ବାହି । —ଚିଲିକା

ରଜୋଗୁଣ ବିଶିଷ୍ଟ ପ୍ରକୃତିର ଏହି ସୌନ୍ଦର୍ଯ୍ୟ ରାଗାତ୍ମିକା । ତୃଷ୍ଣା ଓ ଆସକ୍ତି ସୃଷ୍ଟିକାରିଣୀ ଅନନ୍ତଶକ୍ତି ରୂପେ ଚେତନଶୀଳ । ସେହିପରି—



ତମୋଗୁଣ—

ତମୋ ଗୁଣେ ଭଜି ଆୟୁଧ ପିଶାଚୀ
ମନୁଷ୍ୟଙ୍କୁ ଯେହ୍ନୁ ମଣୁଥିଲା ମାଛି
ଉଲ୍କାଳ ପତନ କରି ଭସ୍ମୀଭୂତ
ନର ରକ୍ତେ ଧରା କରି ପରିପ୍ଲୁତ ।            —ଚିଲିକା

ଚିଲିକାର ପ୍ରକୃତି ତମୋଗୁଣର ପ୍ରକାଶ ରୂପେ ଏଠାରେ ଉଗ୍ର ଓ ମୋହାଚ୍ଛନ୍ନ ।

ଏଠାରେ ରାଧାନାଥଙ୍କ ଇନ୍ଦ୍ରିୟାନୁଭୂତି, ସୂକ୍ଷ୍ମ ଭାବାନୁଭୂତିର ସର୍ବଶେଷ ସ୍ତରକୁ ଉନ୍ନୀତ ହୋଇପାରିଛି । ସଂଗୀତ ମନୀଷା, ଚିତ୍ର ସୃଜନ, ମନୀଷା ସୃଜନ ଏହି ତ୍ରିବିଧ ପ୍ରତ୍ୟକ୍ଷ ରୂପସୃଷ୍ଟି ସାଙ୍କେତିକ ଭାବରେ Art of Space, time and wordsକୁ ଇଂଗିତ କରିଥାନ୍ତି। "ଭବିତବ୍ୟ ଯାହା ଅବଶ୍ୟ ଘଟିବ, କିଏ ତା କରିବ ଆନ"—ଏଠାରେ କବିଙ୍କର ଭାଷା ମନୀଷା ସୃଜନ ଭାଷା । ଏସବୁ ବର୍ଣ୍ଣନାରେ କାବ୍ୟମନୀଷାର ତିନୋଟି ଦିଗ ଉଦ୍‌ଘାଟିତ ହୋଇଥାଏ । ସୌନ୍ଦର୍ଯ୍ୟତତ୍ତ୍ୱ, ବୁଦ୍ଧିତତ୍ତ୍ୱ ଓ ଭାବତତ୍ତ୍ୱର ଏକତ୍ର ସହାବସ୍ଥାନ ସ୍ରଷ୍ଟାଙ୍କର ଉପଲବ୍‌ଧିର ନିବିଡ଼ ରସଘନ ଜୀବନାନୁଭୂତିକୁ ପ୍ରକଟ କରିଥାନ୍ତି । ଏହି ଅଭିବ୍ୟକ୍ତିର ସଂହତି କେବଳ ଶବ୍ଦରୂପେ ନୁହେଁ, ଭାବଗତ ଐକ୍ୟରୂପେ ରାଧାନାଥଙ୍କ ସୃଷ୍ଟିଚେତନାରେ ଉତ୍‌କୀର୍ଣ୍ଣ । କହିବାର ତାତ୍ପର୍ଯ୍ୟ ହେଉଛି ରାଧାନାଥଙ୍କ ପ୍ରକୃତି ଏହି ତିନି ମନୀଷାର ସମନ୍ୱୟ । ରୋମାଣ୍ଟିକ ଭାବବିଳାସୀ କବିବର ରାଧାନାଥ ପ୍ରଜ୍ଞା ଓ ଭାବ ଉଭୟର ଆଧାରରେ ପ୍ରକୃତିର ଅନିନ୍ଦିତ ରୂପ ସୌନ୍ଦର୍ଯ୍ୟକୁ ଧାରଣ କରିଛନ୍ତି । କବିଙ୍କ ପ୍ରକୃତିଚତ୍ରଣର ଅନନ୍ୟତା ପ୍ରତିପାଦନ କରିବାକୁ ଯାଇ ସମାଲୋଚକ ଜଗଦାନନ୍ଦ ମହାନ୍ତି କହନ୍ତି—"ପ୍ରକୃତି ସ୍ୱୟଂ କବିଙ୍କ କଣ୍ଠରେ ବସି ଆତ୍ମପ୍ରକାଶ କଲେ । ସୌନ୍ଦର୍ଯ୍ୟ ସରସ୍ୱତୀରେ, ସରସ୍ୱତୀ ସୌନ୍ଦର୍ଯ୍ୟରେ ବିଭୂଷିତ ହେଲେ ।"            (ରାଧାନାଥଙ୍କ ଜୀବନୀ)

ପ୍ରକୃତିର ବର୍ଣ୍ଣମୟ ରୂପଚିତ୍ର ପ୍ରଦାନ କଲାବେଳେ କବି କେତୋଟି ବିଶିଷ୍ଟ ରଂଗ ପ୍ରତି ନିଜର ଆକର୍ଷଣ ପ୍ରକାଶ କରିଛନ୍ତି । "ନୀଳ ରଂଗଟି କବିଙ୍କର ଅତିପ୍ରିୟ ହେତୁ ପର୍ବତ, ଆକାଶ, କେଶ ଓ ଜଳ ଆଦିର ରଂଗ ସହିତ ତୁଳିତ ହୋଇଛି ।"

(କଳ୍ପନାର ଅଭିଷେକ ପୃ. ୬୮)

"ସାରଙ୍ଗ ଗଡ଼ରୁ ଆଠଗଡ଼ଯାଏ
ଶୋଭେ ଶୈଳନୀଳ ପ୍ରାଚୀର ପରାୟେ
ଠାବେ ଠାବେ ତୁଙ୍ଗ ନୀଳ ଶୃଙ୍ଗଶାଳା
ଶୋଭେ ଯେହ୍ନେ ଇନ୍ଦ୍ରନୀଳ ଚନ୍ଦ୍ରଶାଳା"  — ନନ୍ଦିକେଶ୍ୱରୀ

ସେହିପରି ପ୍ରକୃତି ବର୍ଣ୍ଣନା ଅବସରରେ କବି ଅତୀତର ଗୌରବମୟ ଐତିହ୍ୟ, ପରଂପରାର ସ୍ମୃତିଚାରଣ କରିଛନ୍ତି । ଯେହେତୁ ପ୍ରକୃତି ମଣିଷପରି ଚେତନଶୀଳ, ସେହି ହେତୁରୁ କବି ତାକୁ ସଂବେଦନଶୀଳ ଓ ସ୍ପର୍ଶସଜଳ କରି ଗଢ଼ିତୋଳିଛନ୍ତି । ଜୀବନ୍ତ ନାରୀ ରୂପରେ ତାର ସମସ୍ତ ଗୁଣାବଳୀକୁ ଧାରଣ କରିଛି ପ୍ରକୃତି । କେତେବେଳେ ଏ ରୂପ ଶାନ୍ତ କମନୀୟ ତ କେତେବେଳେ ତାହା ଉଗ୍ର, ରୁଦ୍ରାଣୀ ରୂପରେ ପ୍ରତିଭାତ । ଅଭିନବ କଳ୍ପନାବିଳାସର ଚମତ୍କାରିତା ଏଠାରେ ପ୍ରତିପାଦିତ ହୋଇପାରିଛି ।

''ଇତିହାସ ରଂଗସ୍ଥଳୀ ତୁ ଚିଲିକା
ତୋର ତୀରେ ପରା ଶ୍ରମତୀ ମାଣିକା
ହସ୍ତେ ଭୁଞ୍ଜିଥିଲେ ସାଦରେ ଲବଣୀ
ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି'' —ଚିଲିକା

ଏପରି ପରିବେଶ ପରିପାଟୀର ଅନ୍ତରାଳରେ କବି ପ୍ରାଣର ନିବିଡ଼ ଆତ୍ମୀୟତା ଓ ସ୍ୱଦେଶାନୁରାଗ ପ୍ରକଟିତ ହୋଇଛି । ମହାଯାତ୍ରା ଓ ଚିଲିକା ତାଙ୍କ ଉଜ୍ଜ୍ୱଳ ଦେଶପ୍ରେମ ଓ ପ୍ରକୃତିପ୍ରୀତିର ଚୂଡ଼ାନ୍ତ ଗାଥା । ''ଜନ୍ମଭୂମି 'ଛବିଳ ଉତ୍କଳ'ର ବର୍ଣ୍ଣନାକୁ କାବ୍ୟରେ ପ୍ରଧାନ ସ୍ଥାନ ଦେବା କବିଙ୍କର ଚିରନ୍ତନ ବାଞ୍ଛା । ଚକ୍ରତୀର୍ଥରେ ଅନଳଙ୍କର ଆବିର୍ଭାବ ଏବଂ ଦେବମୁଖରେ ମାତୃଭୂମିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଇବା ଦ୍ୱାରା ଏହି ଉଦ୍ଦେଶ୍ୟ ସାଧିତ ହୋଇଛି ।'' (ରାଧାନାଥଙ୍କ ଜୀବନୀ-ଶ୍ରୀ ଜଗଦାନନ୍ଦ ମହାନ୍ତି)

କବି ରାଧାନାଥ ରୋମାଣ୍ଟିକ ଭାବଶୈଳୀର ଆଦ୍ୟପ୍ରବର୍ତ୍ତକ । ତାଙ୍କ କାବ୍ୟସମୂହରେ ପ୍ରେମ ଓ ସୌନ୍ଦର୍ଯ୍ୟ ଏକୀଭୂତ ହୋଇଛନ୍ତି ସତ, ମାତ୍ର ତାଙ୍କ କାବ୍ୟକବିତାରେ ଯେଉଁ ପ୍ରଣୟର ବର୍ଣ୍ଣନା ରହିଛି ତାହା ଏକ ସ୍ୱତନ୍ତ୍ର ପର୍ଯ୍ୟାୟର । ଚନ୍ଦ୍ରଭାଗା କାବ୍ୟରେ ପ୍ରେମ ପ୍ରତି ନାୟିକାପ୍ରାଣର ବିରାଗ, ପ୍ରାଚ୍ୟ ପରଂପରାର ବ୍ୟତିକ୍ରମ ରୂପେ ପ୍ରତିପାଦିତ ହୋଇଥାଏ । ପୁନଶ୍ଚ ପାର୍ବତୀ କାବ୍ୟରେ ଅତି ଅମାର୍ଜିତ, ଅରୁଚିକର, ଇନ୍ଦ୍ରିୟଲବ୍ଧ, ପ୍ରବୃତ୍ତି ତାଡ଼ିତ ପ୍ରଣୟ କାହାଣୀଟି ପରିବେଷିତ । ଏଥିପାଇଁ ରାଧାନାଥଙ୍କୁ କମ ସମାଲୋଚନା ସହ୍ୟ କରିବାକୁ ପଡ଼ିନାହିଁ । ଏହା ପାଶ୍ଚାତ୍ୟ ସୃଷ୍ଟି ପରିକଳ୍ପନାରୁ ଆହୃତ ହୋଇଥିଲେ ହେଁ ଏପରି ଏକ ବିଷୟ ନିର୍ବାଚନ କବିଙ୍କ ପାଇଁ ପ୍ରମାଦପୂର୍ଣ୍ଣ ବିବେଚିତ ହୋଇଛି । ନନ୍ଦିକେଶ୍ୱରୀ କାବ୍ୟରେ ମଧ୍ୟ ଅନୁରୂପ ଭାବରେ ପ୍ରଣୟର ବିୟୋଗାନ୍ତକ ଦୃଶ୍ୟପଟ ପାଠକକୁ ପ୍ରତିକ୍ରିୟାଶୀଳ କରିଥାଏ । ''ଘରଛାଡ଼ି କାହିଁ ଯାଆନ୍ତା ବୀରବାଳା ନନ୍ଦିକା'' । (ନୀଳକଣ୍ଠ ଦାସ) ତଥାପି ଏହିସବୁ ସଂପୂର୍ଣ୍ଣ ପାଶ୍ଚାତ୍ୟଧର୍ମୀ ପ୍ରଣୟଚେତନା ଭିତରେ

ବି ଅନୁପମ ପ୍ରେମ ସୌନ୍ଦର୍ଯ୍ୟର ସୁକୁମାର ସତ୍ତାଟି ଜୀବନ୍ୟାସ ପାଇଛି । ଏହି ପ୍ରେମ ବିରହମିଳନ, ଅଶ୍ରୁ ଉଚ୍ଛ୍ୱାସ, ଆତ୍ମଦାନ, ଆତ୍ମନୈବେଦ୍ୟରେ ଏକାନ୍ତ ମାନବୀୟ ହୋଇଉଠିଛି ।

ଉଷା, କେଦାରଗୌରୀ, ଯଯାତିକେଶରୀ, ନନ୍ଦିକେଶ୍ୱରୀରେ ସ୍ୱକୀୟା-ପ୍ରଣୟମୁଗ୍ଧ ବିମଳିନ ହୃଦୟରେ ପ୍ରଗାଢ଼ ପ୍ରେମାନୁଭବ ପ୍ରମୂର୍ତ୍ତ । ଏହା ଯୌବନର ତରଳ ଇନ୍ଦ୍ରିୟତାର ମିଳନାକାଙ୍‌କ୍ଷାରୁ ସଂଜାତ ହୋଇ କ୍ରମଶଃ କବି କଳ୍ପନାରେ ରୂପୋତ୍ତର ହୋଇଉଠିଛି । କେଦାରଗୌରୀରେ ନାୟକ ନାୟିକାଙ୍କ ଆତ୍ମତ୍ୟାଗର ପରିକଳ୍ପନା ଭାରି ହୃଦୟସ୍ପର୍ଶୀ ଓ କରୁଣ ହୋଇଛି । ସେହିପରି ନନ୍ଦିକାର ପିତୃଗୃହ ପରିତ୍ୟାଗ, ଆତ୍ମ ନିବେଦନର ଅପରିଣାମଦର୍ଶିତା ଯୋଗୁ ପ୍ରତ୍ୟାଖ୍ୟାତ ହେବାର ଦାରୁଣ ଅପମାନ ଓ ଏହାର ପରିଣାମ ସ୍ୱରୂପ ଆତ୍ମହତ୍ୟା —ଏହି ତିନୋଟି ପର୍ଯ୍ୟାୟରେ ପ୍ରେମର ବ୍ୟର୍ଥତା ସୂଚିତ ହୋଇଥାଏ । ନନ୍ଦିକାର ବେଦନାର୍ତ୍ତ ହୃଦୟରେ ଆକୃତି ଓ ଆକୁଳତା ଶ୍ରାବଣର ବନ୍ୟା ପରି ଉଦ୍‌ବେଳ ଓ ଉତ୍‌ଥଳ । ଅପରପକ୍ଷରେ ପ୍ରେମରେ ଆତ୍ମଦାନ ସଂଯୋଜନାରେ ଅନ୍ତର୍ଲୀନ ପ୍ରଣୟମୁଗ୍‌ଧ ସ୍ୱରଟି ବେଶ ଆବେଗପ୍ରବଣ ଭାବରେ ପାଠକୀୟ ଅନୁକଂପାକୁ ଜାଗ୍ରତ କରିଥାଏ । ପ୍ରଣୟର ଏ ରୂପଟି ବାସ୍ତବରେ ଉଜ୍ଜ୍ୱଳ ଓ ମହିମାମୟ ।

ମହାବଳୀ ପ୍ରେମ ଅଟେ ମହୀର
ପ୍ରେମସିନା କରେ ଅବଳାକୁ ବୀର
ପ୍ରେମ ଦିଏ ବୁଦ୍ଧି ଉଦ୍‌ଯୋଗ ସାହସ
ପ୍ରେମ କରିପାରେ ଅବଶକୁ ବଶ —ନନ୍ଦିକେଶ୍ୱରୀ

ମଧ୍ୟଯୁଗୀୟ ପ୍ରଣୟବର୍ଣ୍ଣନାରେ ଏପରି ବିରୋଧାଭାସର ଚିତ୍ର ବିରଳ । ମାତ୍ର ରାଧାନାଥ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ପରଂପରାର ମୂକ ଭାବ ଆବେଦନ ପ୍ରତି ଦୃଷ୍ଟି ଫେରାଇବାକୁ ଚେଷ୍ଟା କରିଛନ୍ତି । ଏଣୁ ପ୍ରେମର ଚରମ ପରିଣତି ଏହିପରି ଦ୍ୱୈତସ୍ୱରରେ ଶବଳିତ । ପ୍ରେମ ପାଇଁ ସାହସିକତାକୁ ସେ ସହଯୋଗୀ ଭାବ ରୂପେ ଗ୍ରହଣ କରିଛନ୍ତି । ଜୀବନର ସକଳ ଘାତପ୍ରତିଘାତର ମେରୁପର୍ବତକୁ ଡେଇଁ ପ୍ରଣୟୀର ପ୍ରେମଭାଜନ ହେବା ପାଇଁ ଏ ତପସ୍ୟା, ଆତ୍ମାର ସୌନ୍ଦର୍ଯ୍ୟକୁ ବହୁ ରୂପରାଗରେ ପ୍ରତିଷ୍ଠିତ କରିଥାଏ । ରୂପଜ ପ୍ରେମ ଅନ୍ତର୍ହିତ ହୋଇ ପ୍ରେମର ସିଂହାସନ ଆତ୍ମାରେ ହିଁ ନିରୂପିତ ସ୍ଥାନ ବାଛି ନେଇଛି । ପ୍ରଣୟର ସରସ ପୀୟୂଷ ପାନ କରିବାକୁ ଯେପରି ଆତ୍ମା ସାରସ ସତତ ବ୍ୟାକୁଳ ହୋଇଉଠିଛି । ଏଠାରେ ରୂପପ୍ରାଣ କବି ବ୍ୟଥାଜର୍ଜର, ନନ୍ଦିକେଶ୍ୱରୀର ସମସ୍ତ ଅପରିଣାମଦର୍ଶିତାକୁ କ୍ଷମା କରି ଦେଇଥିବା ପରି ମନେହୁଏ ।

"ଜୟଠାରୁ ଆଜି ପରାଜୟ ତାର ପ୍ରିୟ ଅଧିକ
ଘଟାଇ ନ ପାରେ କିସ ପୁଣି ପ୍ରେମ ଐନ୍ଦ୍ରଜାଲିକ ।" —(ଉଷା)

ରାଧାନାଥଙ୍କ ସୃଷ୍ଟି ପରିକଳ୍ପନାରେ ପ୍ରଣୟର ବ୍ୟର୍ଥତା, ମୃତ୍ୟୁକୁ ଉତ୍ତୀର୍ଣ୍ଣ ହେବା ଇଂଗିତରେ ଉଚ୍ଚତର ପ୍ରେମଚେତନାର ସନ୍ଦେଶ ନେଇଥାଏ । ପ୍ରେମର ଦେହାତୀତ ଅବସ୍ଥା ସାଧନାର ଚରମ ସିଦ୍ଧି ରୂପେ ପ୍ରତିପନ୍ନ ହୋଇଛି । "ରୋମାଣ୍ଟିକ୍ କବି — ରାଧାନାଥ ପ୍ରେମରେ ସର୍ବଦା ଦେହକୁ ସ୍ୱୀକାର କରୁଥିଲେ ହେଁ ଆବେଗ ଓ ମନନ ସହ ସଂପର୍କିତ ଏକ ଉଚ୍ଚତର କଳାତ୍ମକ ପ୍ରେମଚେତନାରେ ବିଶ୍ୱାସୀ ଥିଲେ । X X X ରାଧାନାଥଙ୍କ କାବ୍ୟରେ ପ୍ରେମ କିନ୍ତୁ ସର୍ବଦା ସୌନ୍ଦର୍ଯ୍ୟ ସହିତ ଜଡ଼ିତ । ତାଙ୍କ କାବ୍ୟରେ ସୌନ୍ଦର୍ଯ୍ୟ ବ୍ୟତୀତ ପ୍ରେମର ସ୍ଥିତି ହିଁ ନାହିଁ । ପ୍ରକୃତିର ଇନ୍ଦ୍ରିୟଗ୍ରାହ୍ୟ ଉପାସନାରେ ରାଧାନାଥ କବି କୀଟ୍‌ସଙ୍କର ସମଧର୍ମୀ ଅଟନ୍ତି । ଅଧିକାଂଶ କ୍ଷେତ୍ରରେ ସୌନ୍ଦର୍ଯ୍ୟକୁ ହୃଦୟର ଭୂଷଣ ସ୍ୱରୂପ, ସତ୍ୟସ୍ୱରୂପ କବି ଚିତ୍ରିତ କରିଛନ୍ତି । କି ପ୍ରକୃତି, କି ନାରୀ ଓ ପୁରୁଷ—ସକଳ ମଧ୍ୟରେ ସୌନ୍ଦର୍ଯ୍ୟର ସନ୍ଧାନ କରିବାରେ ରୂପପିପାସୁ କବିଙ୍କର ସନ୍ଧାନୀ ଦୃଷ୍ଟି ଧୁରନ୍ଧର । ତାଙ୍କ ଦୃଷ୍ଟିରେ "ରୂପ ଆକର୍ଷଣ ପ୍ରବଳ ନରେ କିବା ଅମରେ ।" ତାଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟି କିନ୍ତୁ ସର୍ବଦା ସୂକ୍ଷ୍ମସୌନ୍ଦର୍ଯ୍ୟରେ ବିହ୍ୱଳ ହୋଇଛି । (କଳ୍ପନାର ଅଭିଷେକ ପୃ. ୮୭)

କବି ରାଧାନାଥ ସୌନ୍ଦର୍ଯ୍ୟର ଉପାସକ ଭାବରେ ଶାଶ୍ୱତ ଆନନ୍ଦ ସହିତ ସୌନ୍ଦର୍ଯ୍ୟର ନିବିଡ଼ତ୍ୱ ସଂଧାନ କରିଛନ୍ତି ସର୍ବତ୍ର । ତାଙ୍କ ରୋମାଣ୍ଟିକ୍ ଭାବବଳୟରେ ପ୍ରେମ ସୌନ୍ଦର୍ଯ୍ୟର ଲୀଳାମୟ ସତ୍ତା ବିମୋହନ ରୂପ ପରିଗ୍ରହ ଲାଭ କରିଛି ।

ସେ ଅମଳକାନ୍ତି ପାପୀ-ପାପ-ମନୁ
ପାପ ଦେଉଥିଲା ତଡ଼ି ।

X X X

X X X

ଜ୍ଞାନୀଏ କହନ୍ତି ସୌନ୍ଦର୍ଯ୍ୟ ସୃଜନ
ହୋଇନାହିଁ ପାପ ପାଇଁ —ପାର୍ବତୀ ।

ପ୍ରେମାନୁରକ୍ତ କାବ୍ୟମାନସରେ ପ୍ରାଣମୟ ଉଚ୍ଛ୍ୱାସ, ଭାବାବେଗ ଓ ଅତୀତ ପ୍ରତି ସଶ୍ରଦ୍ଧ ଦୃଷ୍ଟି— ପରବର୍ତ୍ତୀ ଆଧୁନିକ କାବ୍ୟ କବିତାରେ ବହୁଭାବରେ ପରୀକ୍ଷିତ ହୋଇଛି । ପ୍ରକୃତି ଓ ତାର ନୈସର୍ଗିକ ସୌନ୍ଦର୍ଯ୍ୟ ପ୍ରଣୟକବିତାଗୁଡ଼ିକର ମୂଳସୃଷ୍ଟି ପ୍ରେରଣା ଓ ଭାବଉତ୍ସ ଭାବେ ପ୍ରତ୍ୟକ୍ଷୀଭୂତ ହୋଇଥାନ୍ତି ।

ରାଧାନାଥ ସାହିତ୍ୟର ଅନ୍ୟତମ ବଳିଷ୍ଠ ସ୍ୱର ହେଉଛି ଜାତୀୟପ୍ରୀତି । ରାଧାନାଥଙ୍କ ସମୟର ଓଡ଼ିଶା ଛିନ୍ନମସ୍ତା, ଶ୍ରୀହୀନା, ଇଂରେଜ ଶାସନର ଏକ

କଳଙ୍କମୟ ପରିଣତି । ଭାଗ୍ୟ ବିପର୍ଯ୍ୟୟର ଏକ ବିଡ଼ମ୍ବିତ ଶତାବ୍ଦୀ । ଗୋଟିଏ ଦିଗରେ ଭୌଗୋଳିକ ସ୍ଥିତି ବିପନ୍ନ, ଅନ୍ୟଦିଗରେ ଭାଷା ବିପନ୍ନ । ତା'ସାଙ୍ଗକୁ ନଅଙ୍କ ଦୁର୍ଭିକ୍ଷର ସର୍ବଗ୍ରାସୀ କରାଳ କ୍ଷୁଧା । ଏପରି ଏକ ସମୟରେ ପରାଧୀନ, ଖଣ୍ଡବିଖଣ୍ଡିତ ଓଡ଼ିଶାରେ ଜାତୀୟତାର ଉଦାତ୍ତ ମନ୍ତ୍ରପାଠ କରିବା—ବାସ୍ତବିକ କବିଙ୍କର ଅତୁଳନୀୟ ଦେଶପ୍ରେମ, ଅପୂର୍ବ ସାହସିକତା ତଥା ସ୍ପର୍ଦ୍ଧାର ପରିଚୟ ପ୍ରଦାନ କରିଥାଏ । କେବଳ ସେତିକି ନୁହେଁ, ମହାଯାତ୍ରା ଓ ଦରବାର ରଚନା କରି ସେ ସ୍ପଷ୍ଟ କରିଦେଇଛନ୍ତି ଯେ ଦେଶର ମହାନ କଲ୍ୟାଣ ସାଧନ ନିମନ୍ତେ ସେ ଆତ୍ମୋତ୍ସର୍ଗ କରିବାକୁ କୁଣ୍ଠିତ ନୁହନ୍ତି । ରାଧାନାଥ ମହାଯାତ୍ରା ରଚନା କଲାବେଳକୁ ଜାତୀୟ ମୁକ୍ତି ଆନ୍ଦୋଳନ କଥା ଚିନ୍ତାନାୟକମାନଙ୍କ ପରିକଳ୍ପନାର ପରିସରକୁ ମଧ୍ୟ ଆସିନଥିଲା । ରାଧାନାଥ ନିଜର କବିତ୍ୱ ଦର୍ପଣରେ ଶ୍ରୀହୀନା ଉତ୍କଳମାତା ଓ ବନ୍ଦିନୀ ଭାରତମାତାଙ୍କ କାରୁଣ୍ୟଜର୍ଜର ଦୟନୀୟ ରୂପକୁ ଅବଲୋକନ କରି ମ୍ରିୟମାଣ ହୋଇଛନ୍ତି । ଦେଶକାଳର ରୂପଛବି ତେଣୁ ତାଙ୍କ କବିତ୍ୱରେ ପ୍ରତିବିମ୍ବିତ ।

"ଗୋଟିଏ ଜାତିର ସାଂସ୍କୃତିକ ତଥା ରାଜନୈତିକ କ୍ରିୟାକଳାପ, ଆକାଙ୍କ୍ଷା ଓ ଅଭିରୁଚିର ଚଳନ୍ତ ପ୍ରକାଶ ହିଁ ଜାତୀୟତା ।" ସୁତରାଂ ଓଡ଼ିଶାମାଟି ପ୍ରତି ତାଙ୍କ ପ୍ରାଣର ଗଭୀର ଅନୁରକ୍ତି ପୁନଶ୍ଚ ଓଡ଼ିଆ ଭାଷାପ୍ରତି ଆନୁଗତ୍ୟ—ଏ ଉଭୟ ତାଙ୍କୁ ମହାଭାରତୀୟ ମହାପ୍ରବାହ ଦିଗରେ ବାହିତ କରିନେଇଛି । କବି ଚେତନାରେ ଏ ଜାତୀୟତାର ଆକାଙ୍କ୍ଷା ଓ ଆଦର୍ଶ ଜାତୀୟ ଜୀବନରେ ନୂତନ ପ୍ରାଣଶକ୍ତିର ସଂଚାର କରିବା, ନୂତନ ଜୀବନବୋଧରେ ଉଜ୍ଜୀବିତ କରିବା, ନୂତନ ଜୀବନାଦର୍ଶରେ ଅନୁପ୍ରାଣିତ କରିବା ଓ ପରାଧୀନତାର କଂସବନ୍ଦୀଶାଳାରୁ ମୁକ୍ତହୋଇ ସ୍ୱାଧୀନ ଭାବରେ ଆତ୍ମପ୍ରକାଶ କରିବା । ନିଜ ଭୂମିଖଣ୍ଡ ପ୍ରତି ଏ ଅନୁରାଗ, ତାଙ୍କୁ ଅତୀତର ଗୌରବ ଭାବନାରେ ଅନୁଭାବିତ କରାଇଛି । ଏ ଭୂଇଁକୁ ସେ ମହାନତୀର୍ଥ ବୋଲି ବିଚାର କରିଛନ୍ତି । ଏ ମାଟିର ଅତୀତ ଗୌରବ, ଅଫୁରନ୍ତ ପ୍ରାଣସୌନ୍ଦର୍ଯ୍ୟ ତାଙ୍କ ସୃଜନ ସ୍ୱପ୍ନରେ ବରଣୀୟ, ପବିତ୍ର ଓ ସ୍ମରଣୀୟ ବିବେଚିତ ହୋଇଛି ।

"ଜାତି, ଧର୍ମ, ଗୋଷ୍ଠୀ ଓ ସଂପ୍ରଦାୟ ନିର୍ବିଶେଷରେ ଏକ ଅଖଣ୍ଡ ଭାରତ ଜାତୀୟତାର ବିକାଶ ଲାଗି ଯେଉଁ ବାତାବରଣ ବିଂଶଶତକରେ ସୃଷ୍ଟି ହୋଇଥିଲା, ଊନବିଂଶ ଶତକରେ ତାର ସ୍ୱରୂପ ପ୍ରକାଶ ପାଇନଥିଲା । ଇଂରେଜ ସାମ୍ରାଜ୍ୟବାଦର ଅସଲ ରୂପ ଏତେବେଳେ ଜଣାଯାଇ ନଥିଲା । ଭାରତବର୍ଷର ସମସ୍ତ ଗୌରବ ମୁସଲମାନ ଆକ୍ରମଣ ଓ ବିଜୟ ଫଳରେ ଲୋପ ପାଇଥିଲା ବୋଲି ଧାରଣା କରାଯାଉଥିଲା । ଭାରତର ଗୌରବ ରକ୍ଷା ପାଇଁ ସମଗ୍ର ହିନ୍ଦୁ ଜାତୀୟ ଶକ୍ତିର ପ୍ରତୀକ ରୂପେ ଶିବାଜୀ ମୋଗଲ ଶକ୍ତି ବିରୋଧରେ ଲଢ଼ିଥିଲେ ବୋଲି ମନେ କରାଯାଉଥିଲା । ଏହି ହିନ୍ଦୁଭାବ ପ୍ରେରିତ ଜାତୀୟତାବାଦୀଙ୍କ ମତରେ ଭାରତ ଥିଲା

ହିନ୍ଦୁର ଦେଶ । ଶିଳ୍ପ, ଭାସ୍କର୍ଯ୍ୟ, ଦର୍ଶନ ଓ ଜ୍ଞାନ ବିଜ୍ଞାନର ଚରମ ଉନ୍ନତି ସ୍ୱାଧୀନ ହିନ୍ଦୁ ଭାରତରେ ସମ୍ଭବ ହୋଇଥିଲା । 'ଶିବାଜୀଙ୍କ ଉତ୍ସାହବାଣୀ' କବିତାରେ ରାଧାନାଥ ସ୍ପଷ୍ଟ ଭାବରେ କହିଛନ୍ତି— (ଆଧୁନିକ ଓଡ଼ିଆ କାବ୍ୟଧାରା ପୃ. ୯୧, ଡଃ. ନରେନ୍ଦ୍ରନାଥ ମିଶ୍ର)

"ଏ ଦେଶ କୀରତି ଏ ଦେଶ ଗୌରବ ଏ ଦେଶ ବିଭବ ଏ ରବିତଳେ
ଆଉ କାହିଁ ନାହିଁ ସମସ୍ତ ନିଷ୍ପ୍ରଭ ହେଲାଟି ମନୁଷ୍ୟ କରମ ଫଳେ ।"

ରାଧାନାଥଙ୍କ କବିତ୍ୱ ଜାତୀୟ ଦୁର୍ଗତି ଓ ତହିଁରୁ ଆତ୍ମୋତ୍‌ଥାନ ନିମନ୍ତେ ପ୍ରୟାସ—ଏ ଉଭୟ ଜାତୀୟ ଅଭୀପ୍‌ସା ଚିତ୍ରଣରେ ଶତକଣ୍ଠ ହୋଇଉଠିଛି । ଜାତୀୟପ୍ରୀତିପନ୍ନ କବିଙ୍କ ଚେତନାରେ ଅତୀତର ଗୌରବମୟ ଐତିହ୍ୟର ସ୍ମୃତିଚାରଣ ବେଶ୍ ଭାବପୂର୍ଣ୍ଣ ହୋଇଉଠିଛି । ଦୁଃସ୍ଥ ବର୍ତ୍ତମାନ ପ୍ରତି କ୍ଷେଦୋକ୍ତି ସହିତ ପୁନରୁତ୍‌ଥାନ ପାଇଁ ବ୍ୟାକୁଳତା ପ୍ରକାଶ ପାଇଛି । ରାଧାନାଥଙ୍କ ସ୍ୱଦେଶାନୁରାଗ ଉଭୟ ଉତ୍କଳୀୟ ଓ ଭାରତୀୟ ପରିପ୍ରେକ୍ଷୀରେ ବିଚାର୍ଯ୍ୟ । ଆତ୍ମଦୈନ୍ୟ ପୀଡ଼ିତ, ଜରାଜର୍ଜର, ପରାଧୀନତାର କଳଙ୍କଲିପ୍ତ ଜାତୀୟଜୀବନରୁ ଘାଣୁତ୍ୱର ଅପସାରଣ ନିମନ୍ତେ ସେ ଶିବାଜୀଙ୍କ ଉତ୍ସାହବାଣୀ ମାଧ୍ୟମରେ ଉଦ୍‌ବୋଧନ ଦେଇଛନ୍ତି । ଏ ବାଣୀ ଶିବାଜୀଙ୍କ କଣ୍ଠରେ ଉଚ୍ଚାରିତ କବିଙ୍କର ସ୍ୱକୀୟ ଉଦ୍‌ବୋଧନ ।

"ଏଭାରତଭୂମି ଆମ୍ଭର ଜନନୀ
ପୁଣ୍ୟଭୂମି ନାହିଁ ସରି ଏହାର
ଅମୂଲ୍ୟ ଦୁର୍ଲ୍ଲଭ ରତନର ଖଣି
ସବୁ ଦେଶ ମଧ୍ୟେ ଏ ଦେଶ ସାର ।

x x x x x x

ଶୁଣିଅଛ ଯୋଧେ ! ଦୁର୍ଗାବତୀ କଥା
ଶୁଣି ତ ଅଛ ତା ଧୀର ସାହସ
ନାରୀ ହୋଇ ରଣେ ଦେଲା ନିଜ ମଥା
ଜୀବନ୍ତେ ନୋହିଲା ଯବନ ବଶ ।

x x x x x x

ଯାବତ ଦେହରେ ବହେ ପ୍ରାଣବାୟୁ
ଶୂରେ ! ନ ବିମୁଖ ହୁଅ ସମରେ
ମାର ଅବା ମର ଏଥୁଁ ଅନ୍ୟ ଆଉ
ନ ଘଟୁ ଯେମନ୍ତେ ତୁମ୍ଭ ଭାଗ୍ୟରେ ।"

—ଶିବାଜୀଙ୍କ ଉତ୍ସାହବାଣୀ

ତୀବ୍ର ଜାତୀୟତାବୋଧ ମହାଯାତ୍ରା, ଦରବାର ଓ ଚିଲିକାର ମର୍ମବାଣୀ । କବି ଆଗମନ ପରେ ମହାନ ଭାରତୀୟ ଜୀବନଧାରାରେ ଯେଉଁ ଅଧୋଗତିର ଅୟମାରମ୍ଭ ହୋଇଥିଲା, ତାର ଚୂଡ଼ାନ୍ତ ପରିଣତି ହେଉଛି ଭାରତର ଭାଗ୍ୟାକାଶରୁ ସ୍ୱାଧୀନତା ସୂର୍ଯ୍ୟ ଅସ୍ତମିତ ହେବା । ଭାଗ୍ୟବିପର୍ଯ୍ୟୟରେ ଘନଘୋର ଅଂଧକାର ଭିତରେ ଜାତିର ଆତ୍ମା ସନ୍ତୁଳିତ ହେଉଥିବା ବେଳେ ଜାତିର ମର୍ମବେଦନାକୁ କବିଙ୍କ ଦରଦୀ ହୃଦୟ ବ୍ୟଥାର ଆରତିରେ ଆଲୋକିତ କରିବାକୁ ଚେଷ୍ଟା କରିଛି । ମହାଯାତ୍ରା ଏକୋଇଶଟି ସର୍ଗ ପର୍ଯ୍ୟନ୍ତ ଲେଖାଯାଇ ସାରିଥିଲେ ହେଁ ସାତଟି ସର୍ଗ ବ୍ୟତୀତ ଅନ୍ୟସବୁ ସର୍ଗକୁ କବି ପୋଡ଼ିଦେଇଥିବା କଥା ସର୍ବଜନବିଦିତ । ଯଦି ଚଉଦଟ ସର୍ଗ ପ୍ରକାଶ ପାଇଥାନ୍ତା, ତେବେ କବିଙ୍କ ଦୃଢ଼ ଜାତୀୟତାବୋଧର ବହୁ ଅନୁଦ୍ଘାଟିତ ଦିଗନ୍ତ ଭାସ୍ୱରିତ ହୋଇଥାନ୍ତା । ସ୍ୱାଧୀନତା ଆନ୍ଦୋଳନର ବହୁ ପୂର୍ବରୁ ରାଧାନାଥଙ୍କ ଏ ଜାତୀୟ ଭାବାପନ୍ନ କାବ୍ୟପରିକଳ୍ପନା ବାସ୍ତବିକ ବନ୍ଦନୀୟ । ପୁଣି ବ୍ରିଟିଶ ସରକାରଙ୍କ ଅଧୀନରେ ବୃତ୍ତିଜୀବୀ ରାଧାନାଥଙ୍କ ଏପରି ଉଗ୍ର ଜାତୀୟତାବାଦ ସ୍ୱର ଅନ୍ୟତ୍ର ବିରଳ । ଏପରି ଏକ ଅଚିନ୍ତନୀୟ କବିତ୍ୱପ୍ରକାଶ ଅପୂର୍ବ ସାହସିକତା ଓ ପ୍ରଗାଢ଼ ଦେଶପ୍ରେମ ପ୍ରକଟ କରିଥାନ୍ତି ।

ଦରବାର କାବ୍ୟରେ ସମକାଳୀନ ଜନଜୀବନରେ ବ୍ରିଟିଶ ସରକାରଙ୍କର ଅନୁଗ୍ରହ ଲାଭ କରିବା ପାଇଁ ଯେଉଁ ଆଗ୍ରହ ଓ ବ୍ୟାକୁଳତା ଦେଖାଦେଇଥିଲା, ତାର ଏକ ମାର୍ମିକ ଚିତ୍ର ପ୍ରଦାନ କରିବା ସଂଗେ ସଂଗେ ଏଇ ନବ୍ୟସଭ୍ୟମାନଙ୍କୁ କବି କଠୋର ସମାଲୋଚନା କରିଛନ୍ତି । ତାଙ୍କ ବ୍ୟଙ୍ଗ ବିଦ୍ରୂପର ସ୍ୱର ଏଠାରେ ଅତ୍ୟନ୍ତ ଶାଣିତ ଓ ତୀକ୍ଷ୍ଣ । ଏକପକ୍ଷରେ ଅତୀତର ଗାରିମାମୟ ଐଶ୍ୱର୍ଯ୍ୟର ବର୍ଣ୍ଣନା ସହିତ ସମସାମୟିକ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଜୀବନରେ ଯେଉଁ ଅବକ୍ଷୟ ଦେଖାଦେଇଥିଲା, ତାର ଘୋର ସମାଲୋଚନା କରିଛନ୍ତି କବି । ମନେହୁଏ, ମୃତ ଅତୀତର ନିର୍ମୋକରୁ ସେହି ଦିବଂଗତ ଆତ୍ମାମାନେ ଆତ୍ମପ୍ରକାଶ କରି ଦୁଃସ୍ଥ, ରୁଗ୍‌ଣ, ବିଷଣ୍ଣ ବର୍ତ୍ତମାନ ସମ୍ପର୍କରେ ସୂଚେଇ ଦେଉଛନ୍ତି ସେମାନଙ୍କ ଉତ୍ତର ପୁରୁଷମାନଙ୍କୁ ।

ପୂର୍ବ ନରପତି – ପ୍ରେତଆତ୍ମାମାନ
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ
ଦେଖନ୍ତି ସଖେଦେ ତାଙ୍କର ଦୁର୍ଜ୍ଜୟ
ଉତ୍କଳର ଏଇ ଦଶା ବିପର୍ଯ୍ୟୟ
ଏହି ଶିଳାବନ୍ଧ ଯାଙ୍କର କୀରତି
ପୁଣ୍ୟଶ୍ଳୋକେ ମରକତ ମହୀପତି

ଦେଖୁ ନାହାନ୍ତିକି ମନେ ବହି ଲାଜ
କିଥିଲା ଏ ରାଜ୍ୟ କି ହୋଇଛି ଆଜ । —ଦରବାର

''ନିଜର ଐତିହାସିକ କାବ୍ୟଗୁଡ଼ିକରେ ରାଧାନାଥ ପ୍ରାଚୀନ ଉତ୍କଳକୁ କେବଳ ମହମାନ୍ୱିତ କରିବାକୁ ନୁହେଁ, କବି ଦୃଷ୍ଟିରେ ଜୀବନ୍ୟାସ ଦେବାକୁ ଚେଷ୍ଟା କରିଛନ୍ତି । ଅତୀତର ପଟ୍ଟଭୂମିରେ କାବ୍ୟର ନାୟକ ନାୟିକା, କଳ୍ପନାର ପ୍ରେମିକ ପ୍ରେମିକା, ଇତିହାସର ଶୂର, ବୀର, ସେନା ଓ ସେନାପତିମାନଙ୍କୁ ସଶରୀରେ ବିଚରଣ କରେଇଛନ୍ତି । ଭୁବନେଶ୍ୱରର ଐତିହାସିକ ପୀଠ, କୋଣାର୍କ, ପୁରୀ ଓ ଯାଜପୁରର କ୍ଷେତ୍ର ମହିମା ତାଙ୍କ ବର୍ଣ୍ଣନାରେ ଜୀବନ୍ତ ହୋଇଉଠିଛି । ଉଷା ଓ ନନ୍ଦିକେଶ୍ୱରୀ ଭଳି କାବ୍ୟ ପାଠ କଲେ ମନେହୁଏ କବି ସମଗ୍ର ଉତ୍କଳକୁ ଅସଂଖ୍ୟ ନଗର, କ୍ଷାତ୍ରଧର୍ମରେ ପ୍ରମତ୍ତ ରାଜା, ଯୋଦ୍ଧା ଓ ଧର୍ମବୀରଙ୍କ ରଙ୍ଗସ୍ଥଳୀ ରୂପେ କଳ୍ପନା କରିଛନ୍ତି ।'' (ଆଧୁନିକ ଓଡ଼ିଆ କାବ୍ୟଧାରା ପୃ. ୯୩)

ତାଙ୍କର ପ୍ରାୟ ସମସ୍ତ କାବ୍ୟରେ ଓଡ଼ିଶାର ଓ ଭାରତର ଅଧଃପତନ ନିମନ୍ତେ ଖେଦ ପ୍ରକାଶ ପାଇଛି । କବି ପ୍ରାଣରେ ଏ କ୍ଷୋଭ ସମସ୍ତ କାବ୍ୟରେ ଅଳ୍ପବହୁତେ ନିରୂପିତ ସ୍ଥାନ ବାଛି ନେଇଛନ୍ତି । ମହାଯାତ୍ରାରେ, ଚିଲିକାରେ, ମହେନ୍ଦ୍ରଗିରିରେ, ନନ୍ଦିକେଶ୍ୱରୀରେ ସେ ଉତ୍କଳର ଶ୍ରୀମନ୍ତ ରୂପକୁ ଐତିହାସିକ ପ୍ରସିଦ୍ଧି ଦେବାକୁ ଚେଷ୍ଟା କରିଛନ୍ତି ।

ରାଧାନାଥଙ୍କ କାବ୍ୟଚେତନାରେ ରୋମାଣ୍ଟିକ ବିଷାଦବାଦ ଏକ ପ୍ରମୁଖ ସ୍ଥାନ ଅଧିକାର କରିଥାଏ । ରାଧାନାଥ ସୃଷ୍ଟିର ସର୍ବତ୍ର ସୌନ୍ଦର୍ଯ୍ୟର ଲୀଳାସ୍ଥଳୀ ରୂପେ ପ୍ରକୃତିର ଅନିନ୍ଦ୍ୟ ନୈସର୍ଗିକ ସତ୍ତାକୁ ଉପଲବ୍ଧି କରିଥିଲେ ହେଁ, ବ୍ୟକ୍ତିକ ଜୀବନଦୃଷ୍ଟି ଥିଲା ବିଷାଦପୂର୍ଣ୍ଣ । କ୍ଷୀଣ ଶରୀରର ଓ ଜାଗତିକ ଦୁଃଖାନୁଭୂତିରୁ ସଂଭୂତ ଅବସାଦ ତାଙ୍କ କର୍ମପ୍ରବାହର ଅନ୍ତରାଳରେ ଚିର ବିଦ୍ୟମାନ ଥିଲା ଏବଂ ପରୋକ୍ଷ ଭାବରେ ଏହା ତାଙ୍କ ସୃଷ୍ଟିଚେତନାକୁ ମଧ ପ୍ରଭାବିତ କରିଛି । ଦ୍ୱିତୀୟରେ ପ୍ରକୃତିର ନିତ୍ୟ ଲୀଳାମୟୀ ରୂପଠାରୁ ବିଚ୍ଛିନ୍ନ ହେବାଜନିତ ଦୁଃଖ ମଧ ତାଙ୍କୁ ଗଭୀର ଭାବରେ ଆଲୋଡ଼ିତ କରିଛି । ଏତଦ୍‌ବ୍ୟତୀତ ଜାତୀୟଜୀବନରେ ଦେଖା ଦେଇଥିବା ନାନା ଦୁର୍ଗତି ତାଙ୍କ ମାନବାଦୀ ଚେତନାକୁ ରୁଗ୍‌ଣ ଓ ବିଷଣ୍ଣ କରିପକାଇଛି । ସୌନ୍ଦର୍ଯ୍ୟ ଓ ଆନନ୍ଦର ପାରସ୍ପରିକ ନିବିଡ଼ ଅବିଚ୍ଛନ୍ନତା ସତ୍ତ୍ୱେ, ରାଧାନାଥ କାବ୍ୟମାନସ ଜୀବନ ସଂଗୀତର ବିଷାଦମୟ କରୁଣରାଗିଣୀର ମୂର୍ଚ୍ଛନା ତୋଳୁଥିଲା । ମନେହୁଏ ଏ ବିଷାଦର ଉତ୍ସ, ଆଧ୍ୟାତ୍ମିକ ଅପୂର୍ଣ୍ଣତାଜନିତ ଅବସାଦରୁ ସୃଷ୍ଟ । ଜଗତର ମାୟାମୟ ରୂପସତ୍ତାକୁ ପ୍ରତ୍ୟହ ପ୍ରତ୍ୟକ୍ଷ କରୁଥିଲେ, କି ତହିଁରେ

ଜୀବନମୃତ୍ୟୁର ରହସ୍ୟମୟ ଅନ୍ତର୍ଲୀନ ଅବସ୍ଥିତିକୁ କୌଣସି ସମୟରେ ବିସ୍ମରି ଯାଇ ନାହାନ୍ତି । ଜୀବନପ୍ରତି ଏହି ଦାର୍ଶନିକ ଦୃଷ୍ଟି ଭଙ୍ଗିଟି ବୋଧହୁଏ ତାଙ୍କୁ ବିଷାଦବାଦୀ କରିଛି । ମହାଭାରତ ଯୁଦ୍ଧରେ ଦୁଇସେନାନୀ ମଧ୍ୟଭାଗରେ ଦଣ୍ଡାୟମାନ ଅମିତ ଶୌର୍ଯ୍ୟଶାଳୀ ଅର୍ଜ୍ଜୁନ ଯେପରି ଜୀବନର ନଶ୍ୱରତାକୁ ଉପଲବ୍‌ଧି କରି ଘୋର ବିଷାଦରେ ମୁହ୍ୟମାନ ହୋଇଯାଇଥିଲେ; ଠିକ୍ ସେହିପରି ବାଗଦେବୀ ସରସ୍ୱତୀଙ୍କୁ ନିତ୍ୟ ଆରାଧନା କରୁଥିବା, ସତ୍ୟ ଓ ସୌନ୍ଦର୍ଯ୍ୟକୁ ନିରନ୍ତର ଉପାସନା କରୁଥିବା କବି ଚେତନାର ଅନ୍ତରାଳରେ ବିଷାଦର ମୂର୍ଚ୍ଛିତ ଭାବସ୍ରୋତଟି ନୀରବରେ ପ୍ରବାହିତ ହେଉଥିଲା ।

ଛାର ଭାଗ୍ୟ ମୋର  ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ
ଚିର ହାହାମୟ ଏଛାର ଜୀବନ
ଜୀବନ ନୁହଇ ଜୀବନ୍ତ ମରଣ
ପ୍ରତିଦିନ ଦୁଃଖ ପ୍ରହାରେ ଜର୍ଜର
ପଟ୍ଟଶିଷ୍ୟ ମୁହିଁ ଦୁଃଖ ଗୁରୁଙ୍କର
ଦୁଃଖଦତ୍ତ ଜ୍ଞାନ ଚକ୍ଷୁରେ ଜଗତ
ଦେଖିବାରେ ମୁହିଁ ଅଭ୍ୟସ୍ତ ସତତ ।          —ଚିଲିକା

'ଚିଲିକା' ରେ କବିଙ୍କ ପ୍ରକୃତିପ୍ରୀତି ମୂର୍ତ୍ତିମନ୍ତ ରୂପବିଗ୍ରହ ଧାରଣ କରିଥିବା ସତ୍ତ୍ୱେ, ଦୁଃଖବାଦୀ ରାଧାନାଥଙ୍କୁ ତଥାପି ନିରାନନ୍ଦ ବେଳେବେଳେ ଗ୍ରାସ କରିବସିଛି । ସେ 'ମଧୁମୟ ସୃଷ୍ଟି, ସୁଧାମୟ ସୃଷ୍ଟି, ଏ ସୃଷ୍ଟି ଅମୃତମୟହେ (ମଧୁସୂଦନଙ୍କ) କିମ୍ବା 'ମଧୁବାତାଋତାୟତେ, ମଧୁ କ୍ଷରନ୍ତି ସନ୍ଧବଃ' — ଏରୂପ ଜଗତ ସର୍ବତ୍ର ମଧୁମୟ, ଅମୃତମୟ, ବୋଲି—'ମଧୁରଝରଣ କରିବ ହରଣ ତୋ ପାପ ମରଣ ଭୟରେ ଜୀବନ' (ଗଂଗାଧର)—ଅଭୟ ପ୍ରଦାନ କରିପାରି ନାହାନ୍ତି । ବରଂ ଦୁଃଖଜର୍ଜର ଆତ୍ମା ତାଙ୍କର ସାଂସାରିକ ଦୁଃଖରେ ଟଳମଟଳ ଅବସ୍ଥା ବୋଲି ସେ ଉଲ୍ଲେଖ କରିଛନ୍ତି । ପୁନଶ୍ଚ ସମାଜବ୍ୟବସ୍ଥାରେ ଶୋଷଣ, ଅନ୍ୟାୟ, ଅତ୍ୟାଚାର ପ୍ରଭୃତି ତାଙ୍କ ସମ୍ବେଦନଶୀଳ ହୃଦୟକୁ ଗଭୀର ଭାବରେ ଆହତ କରିଛି ।

ପାଶୋରି ନାହିଁ ମୁଁ ସ୍ୱପ୍ନେ କଦାଚିତେ
ସର୍ବେଅଛୁ ଏକ ଦଦରା ବୋଇତେ
ଆଗେ ପଛେ ତୋଳି ଭୀମ ଉର୍ମିମାନ
ଭବ ଜଳଧିରେ ଗର୍ଜଇ ତୋଫାନ ।          —ଦରବାର

ପୁନଶ୍ଚ — ଗୁଣ ବୃକ୍ଷ ଚୂଳେ କେଜାଣି କିମ୍ପାଇଁ
ଭାଗ୍ୟଭାଇ, ମୋତେ ଦେଇଛି ବସାଇ
ସବୁଠାରୁ ମୁହିଁ କଳୁଛି ଅଧିକ
ସବୁଠାରୁ ଯେଣୁ ହଲୁଛି ଅଧିକ ।

''ଏହି ବିଷାଦବାଦ ବରଂ ଜୀବନପ୍ରତି ଶ୍ରଦ୍ଧା, ମମତା ଓ କଲ୍ୟାଣକାମନାରୁ ଉଦ୍ଭୂତ । ପୁଣି ଦଦରା ବୋଇତର ମାସ୍ତୁଲ ଉପରେ ବସିଛନ୍ତି କବି । କାହିଁକି କେଜାଣି ଭାଗ୍ୟହିଁ ତାଙ୍କୁ ସେଠାରେ ବସାଇଛି । ସେଠାରୁ ଅପସୃତ ହେବାର ଉପାୟ ନାହିଁ । ତୋଫାନରେ ଅତିମାତ୍ରାରେ ଦୁର୍ଦ୍ଦଶାଗ୍ରସ୍ତ ହେବାକୁ ପଡୁଛି ।''

(କଳ୍ପନାର ଅଭିଷେକ ପୃ-୯୪)

କବିଙ୍କ ଦୁଃଖାନୁଭୂତିର ଅନ୍ୟତମ କାରଣ ପ୍ରକୃତି ଉସଙ୍ଗବିଚ୍ଛେଦ ଚିଲିକାକୁ ନିତିକାବ୍ୟ ମାନସୀରୂପେ କଳ୍ପନା କରିଛନ୍ତି କବି । ଚିଲିକା ରୂପସୌନ୍ଦର୍ଯ୍ୟର ଅମୃତ ପାନକରିବା ସବୁଦିନ ପାଇଁ ସମ୍ଭବ ହୋଇପାରିନାହିଁ । ସଂସାରର ତାଡ଼ନାରେ ତାଙ୍କୁ ଫେରି ଯିବାକୁ ପଡ଼ିଛି । ତାହା ତାଙ୍କୁ ଦୁଃଖାଭିଭୂତ କରିଛି ।

କରିଥିଲି ଆଶା କରିବି ଯାପନ
ତୋ ପଣ୍ଟିମତୀରେ ପଶ୍ଚିମ ଜୀବନ
ଛାର ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଭିନ୍ନ ଉପାଦାନେ । —ଚିଲିକା

କହିବା ବାହୁଲ୍ୟ, କବିଙ୍କର ଏ ଦୁଃଖବାଦୀ ଚେତନାଟି ରୋମାଣ୍ଟିକ ଚିନ୍ତାମାନସର ପ୍ରତୀକ । ପାଶ୍ଚାତ୍ୟ ସୃଷ୍ଟି ଆଦର୍ଶରେ ଅନୁପ୍ରାଣିତ କବିଙ୍କର କାବ୍ୟଅନୁଚିନ୍ତନରେ ତେଣୁ ବିଷାଦବାଦର ପ୍ରମୁଖ ଭୂମିକା ରହିଛି ।

କବି ରାଧାନାଥଙ୍କ ଦାର୍ଶନିକ ଦୃଷ୍ଟି ଶାଣିତ ଓ ମନନଶୀଳ । ପାର୍ବତୀ କାବ୍ୟରେ କଂଚୁକୀର ଭାବନା ବେଶ ତାତ୍ପର୍ଯ୍ୟପୂର୍ଣ୍ଣ । ଗଂଗେଶ୍ୱରଙ୍କ ଦୁଷ୍କୃତି କଥା ଚିନ୍ତାକରି ମ୍ରିୟମାଣ କଂଚୁକୀ ଏଠାରେ କବି ରାଧାନାଥଙ୍କ ପ୍ରତୀକାତ୍ମକ ଆବିର୍ଭାବ କହିଲେ ଅତ୍ୟୁକ୍ତି ହେବନାହିଁ । ରାତ୍ରିର ଗାଢ଼ ଅନ୍ଧକାର ଅଜ୍ଞାନ ଅନ୍ଧକାରର ପ୍ରତୀକ ଭାବରେ ବ୍ୟବହୃତ । କଂଚୁକୀ ଏଠାରେ ଜାଗ୍ରତ ବିବେକର ସ୍ୱରୂପ । ଯିଏ ପ୍ରଜ୍ଞାଲୋକର ଅନିର୍ବାଣ ଜ୍ୟୋତିଶିଖାକୁ ଧାରଣ କରିଛି । ମାନବ ଜୀବନର ଅଳୀକତା, ନଶ୍ୱରତା, କ୍ଷଣଭଙ୍ଗୁରତାର ଚିତ୍ର ଏଠାରେ ଉତ୍କୀର୍ଣ୍ଣ ।

''କେହି ରହିନାହିଁ ରହିବେ ନାହିଁଟି ଭବରଂଗ ଭୂମିତଳେ
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।''—ପାର୍ବତୀ

ଏଠାରେ କବିଙ୍କର ଧ୍ୟାନଗମ୍ଭୀର ଋଷିର ସ୍ୱରଟି ମନ୍ଦ୍ରନିନାଦରେ ଧ୍ୱନିତ ହେଉଛି । ପାର୍ଥିବ ସୁଖଭୋଗରେ ମଗ୍ନ ବ୍ୟକ୍ତିସତ୍ତା ଜୀବନର ନଶ୍ୱରତା କଥା ବିସ୍ମରି ଯାଇଥାଏ । ମନୁଷ୍ୟ ଭାବେ ସେ ଅନନ୍ତକାଳ ପାଇଁ ଏ ସୁଖ ସୌଭାଗ୍ୟର ଅଧିକାରୀ । ମନୁଷ୍ୟର ସବୁ ଦମ୍ଭ; ଅହଂକାର, ଅଭିମାନ, କ୍ଷମତା ପ୍ରତିପତ୍ତିର ମୋହ ମହାମରଣ ନିକଟରେ କେତେ ତୁଚ୍ଛ, କେତେ ହେୟ ସେ କଥା ବୁଝି ମଧ୍ୟ ସେ ବୁଝେ ନାହିଁ । ମହାଭାରତରେ ଯୁଧିଷ୍ଠିରଙ୍କୁ ଧର୍ମବକର ଶାଶ୍ୱତ ପ୍ରଶ୍ନ 'କିମାଶ୍ଚର୍ଯ୍ୟମ୍' କରି ଜୀବନ ପାଇଁ ଏହା ଏକ ଚିରନ୍ତନ ଅନ୍ୱେଷଣ । ଜୀବନ ପାଇଁ ଏହି ଦୀପ୍ତିମନ୍ତ ସତ୍ୟର ଉପସ୍ଥାପନର କୌଶଳଟି ପାର୍ବତୀ କାବ୍ୟକୁ ଅନନ୍ୟ ସୁଷମାରେ ବିମଣ୍ଡିତ କରିଛି । ବଞ୍ଚିବାର ଦୁରନ୍ତ ଅଭିଳାଷ ଭିତରେ ମୃତ୍ୟୁର ଅପରାଜେୟ-ଆତ୍ମାର ଆବିଷ୍କାର ହିଁ ଜୀବନ ସତ୍ୟକୁ ନିଛକ ଓ ନିରୋଳା ଭାବରେ ପ୍ରତିପାଦନ କରିଥାଏ । କଳାସୃଷ୍ଟିର ଏହି ମନୋଜ୍ଞ ଓ ବରଣୀୟ ଶିଳ୍ପ ମାଧୁର୍ଯ୍ୟ କବିଙ୍କୁ କାଳଜୟୀ ସ୍ରଷ୍ଟାର ଗୌରବରେ ଭୂଷିତ କରିଛି ।

''ପାର୍ବତୀ ରାଧାନାଥଙ୍କର ଏକମାତ୍ର କାବ୍ୟ, ଯେଉଁଥିରେ ଅଛି ଗଭୀର ମାନବିକ ସ୍ପର୍ଶ, ଶାଣିତ ସତ୍ୟୋପଲବ୍ଧି, ଲଳିତ ସୌନ୍ଦର୍ଯ୍ୟ ଦୃଷ୍ଟି ।'' (ଆଧୁନିକ ଓଡ଼ିଆ କାବ୍ୟଧାରା ପୃ.୧୭୦)

କବି ରାଧାନାଥ ବିଷୟ ନିର୍ବାଚନରେ ଯେଉଁ ସମୀକରଣ ପ୍ରୟାସ ପୋଷଣ କରିଛନ୍ତି ତାହା ଆଧୁନିକ କାବ୍ୟ ପରଂପରାରେ ଏକ ନୂତନ ସରଣୀ ଉନ୍ମୋଚନ କରିଛି । ରାଧାନାଥଙ୍କୁ ଗ୍ରୀକ୍ କବି ଓଭିଡ଼ଙ୍କର ଓଡ଼ିଶୀ ସଂସ୍କରଣ ବୋଲି କେତେକ ସମାଲୋଚକ ମତବ୍ୟକ୍ତ କରିଥାନ୍ତି । ଗ୍ରୀକ୍ ସାହିତ୍ୟର ବହୁ ଲୋକପ୍ରିୟ କାହାଣୀମାନଙ୍କୁ ଆଣି ଏ ମାଟିରେ ସଫଳ ଭାବରେ ସମୀକରଣ କରିବା ଦିଗରେ ସେ ଅପୂର୍ବ ସିଦ୍ଧି ହାସଲ କରିପାରିଛନ୍ତି । ଓଡ଼ିଶାର ମାଟି, ପାଣି ପବନ, ପରିବେଶ, ଲୋକଚରିତ୍ର, ଲୋକଗଳ୍ପ, କିମ୍ବଦନ୍ତୀ, ଇତିହାସ ଓ ଭୌଗୋଳିକ ଅବସ୍ଥିତିକୁ ଚମତ୍କାର ଭାବରେ ଏହି କାହାଣୀମାନଙ୍କର ମନୋଭୂମି ରୂପେ ନିର୍ବାଚନ କରି ରସସିକ୍ତ କରିପାରିଛନ୍ତି । ଏ ସମୀକରଣ ପ୍ରବୃତ୍ତି ଏପରି ସଫଳ ଓ ବିଶ୍ୱାସଯୋଗ୍ୟ ହୋଇପାରିଛି ଯେ, ରାଧାନାଥଙ୍କ ପରଠାରୁ ଅଦ୍ୟାବଧି ଲୋକ ବିଶ୍ୱାସରେ ଏସବୁ ଐତିହାସିକ ସତ୍ୟରୂପେ ବିବେଚିତ ହୋଇଆସିଛି । ସେହି ସବୁ କାହାଣୀ ମାନଙ୍କର ଐତିହାସିକ ସତ୍ୟାସତ୍ୟ ନିରୂପଣ କରିବାକୁ କେହି ଆଉ ଚେଷ୍ଟା କରିନାହାନ୍ତି ।

ଏ ସଂପର୍କରେ ଡକ୍ଟର ନଟବର ସାମନ୍ତରାୟଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ''ଓଡ଼ିଶା ସାରା ଦୃଷ୍ଟି ନିକ୍ଷେପ ପରେ ଏପରି ଅନୁରୂପ ସ୍ଥାନରେ ନିର୍ବାଚନ, ତାରି ଭିତରେ ସମସ୍ତ ବିଶ୍ୱାସ୍ୟ ବାୟୁମଣ୍ଡଳର ସମାବେଶ, ପରିଶେଷରେ ସେ ସମୟ

ଓଡ଼ିଶାର ଭୌଗୋଳିକ ଚିତ୍ର ସଂପାଦନ ସହିତ ଭାଷାର ମନୋହର ଛଟା ଓ ବର୍ଣ୍ଣନାର ମଧୁର ପରିପାଟୀ, କବିତାର ଲଳିତ ସୌନ୍ଦର୍ଯ୍ୟ ଓ ଅନବଦ୍ୟ ପ୍ରକୃତିର ମନୋଜ୍ଞ ଚିତ୍ରଣ— ଏ ସମସ୍ତଙ୍କ ମାଧ୍ୟମରେ ଉପରୋକ୍ତ ତିନୋଟି ବିଷୟର ଅପୂର୍ବ ସମନ୍ୱୟ ଆଣି ସେ ଗଢ଼ିଦେଇଛନ୍ତି ନିଜର ଚିରନ୍ତନ କାବ୍ୟସୌଧ, ଯାହା ପରିଶେଷରେ ବିଦେଶର ହୋଇ ବିଦେଶୀ ନୁହେଁ, ଯାହା ଏ ଦେଶର ହୋଇ, ହୋଇ ପାରିଛି ସଂପୂର୍ଣ୍ଣ ସ୍ୱଦେଶୀ ।"

—ଓଡ଼ିଶା ସାହିତ୍ୟର ଇତିହାସ ପୃ. ୨୭୪, ଡକ୍ଟର ନଟବର ସାମନ୍ତରାୟ

କେଦାରଗୌରୀ କାବ୍ୟ ଓଭିଡ଼ଙ୍କର ପିରାମସ୍-ଥିସ୍‌ବି ଗଳ୍ପର, ଚନ୍ଦ୍ରଭାଗା କାବ୍ୟ ଆପୋଲୋ-ଡ଼ାଫନୀ କାହାଣୀର, ନନ୍ଦିକେଶ୍ୱରୀରେ ବାଇରନ୍‌ଙ୍କ 'ସିଜ୍ ଅଫ୍ କୋରିନ୍ଥ' ଓ ଇଉଲିୟମ ମରିସ୍‌ଙ୍କ 'ଆଟଲାଣ୍ଟାରେସର' କିଛି ଅଂଶ ଓ ଓଭିଡ଼ିଙ୍କ 'ସିଲା-ନିନ୍‌ସ'ର ଅବଲମ୍ୱନରେ, ଉଷା କାବ୍ୟରେ ଆଟଲାଣ୍ଟାରେସର କେତେକ ଉପାଦାନକୁ, ପାର୍ବତୀ କାବ୍ୟରେ ସଂପୂର୍ଣ୍ଣ ଭାବରେ ପାଶ୍ଚାତ୍ୟ କାହାଣୀ 'ଆଗାମେନନ୍'ର ଅନୁସରଣ ମହାଯାତ୍ରାରେ ମହାଭାରତର କଥାବସ୍ତୁ ସହିତ ଦାନ୍ତେଙ୍କ ଏନିଡ଼ ବିଷୟବସ୍ତୁର ସମନ୍ୱୟ ବେଶ କଳାତ୍ମକ ରୀତିରେ ସାଧିତ ହୋଇଛି । ଏ ଦେଶମାଟିରେ ବିଦେଶୀ କଥାବସ୍ତୁର ସଂପୂର୍ଣ୍ଣ କିମ୍ବା ଆଂଶିକ ଆରୋପ ମନୋଜ୍ଞ ଶୈଳୀରେ ରାଧାନାଥଙ୍କ ସୃଷ୍ଟି ଆଦର୍ଶ ରୂପେ ପ୍ରତିପାଦିତ ହୋଇପାରିଛି । ପାଶ୍ଚାତ୍ୟ ସାହିତ୍ୟର ଅନ୍ତର୍ନିହିତ ପ୍ରେରଣା ରାଧାନାଥ କାବ୍ୟମନନର ଅନ୍ତରାଳରେ ବିଦ୍ୟମାନ । ଏକ ସମନ୍ୱୟଧର୍ମୀ ସାହିତ୍ୟ ଭାବରେ ରାଧାନାଥ ସାହିତ୍ୟ ଚରମ ସଫଳତା ହାସଲ କରିପାରିଛି । ଶବ୍ଦସଂଯୋଜନା, ଶୈଳୀ, ବିଷୟ ନିର୍ବାଚନ, ଉପମା, ଛନ୍ଦ ସଂଯୋଜନା ପ୍ରଭୃତି ଆଧୁନିକ କଳାରୀତିର ଅନୁପମ ଆଙ୍ଗିକ ପ୍ରୟୋଗ ଦ୍ୱାରା ଏହି ସୃଷ୍ଟି ଅନନ୍ୟ ଓ ଅସାଧାରଣ ହୋଇପାରିଛି ।

ଓଡ଼ିଆ ଆଧୁନିକ କାବ୍ୟ ପରଂପରାର ପ୍ରବର୍ତ୍ତକ ରାଧାନାଥ ଯଥାର୍ଥରେ ଥିଲେ ନୂତନତାର ମାନ୍ତ୍ରିକ ପୁରୁଷ । ଅଫୁରନ୍ତ ରସବୋଧ, ନାନ୍ଦନିକ ସୌନ୍ଦର୍ଯ୍ୟ ପିପାସା, ନୂତନ ଶିଳ୍ପରୀତି, କଳା କୁଶଳତା, ଆହରଣ ପ୍ରବୃତ୍ତିରେ ନୂତନ ସୃଷ୍ଟି ଅଭୀପ୍‌ସା, ଅଭିନବ ଶବ୍ଦ ସଂଯୋଜନା, ପ୍ରବାହଧର୍ମୀ ତଥା ଲାଳିତ୍ୟପୂର୍ଣ୍ଣ କାବ୍ୟଛଟା, ଜୀବନ ପ୍ରତି ଏକ ପ୍ରେମ ମୁଗ୍ଧ ଦୃଷ୍ଟିଭଂଗୀ, ପୁନଶ୍ଚ ବ୍ୟକ୍ତିଗତ ଜୀବନରେ ଜାଗତିକ ବିଷାଦବାଦ, ପ୍ରକୃତିର ପ୍ରାଣମୟ ଐଶ୍ୱର୍ଯ୍ୟ, ଶିଳ୍ପରୀତିରେ ସ୍ୱାଧୀନ ମନୋବୃତ୍ତି ପ୍ରଭୃତି ରାଧାନାଥ କାବ୍ୟମାନସକୁ କାଳଜୟୀ ସୃଷ୍ଟି ଗୌରବରେ ବିଭୂଷିତ କରିଛି । ରାଧାନାଥଙ୍କ ସୃଷ୍ଟି-ସୌନ୍ଦର୍ଯ୍ୟର ପଟାନ୍ତର ନାହିଁ । ତାହା ନିଜସ୍ୱ ମହିମାରେ ଗରିମାମୟ, ମହିମାମଣ୍ଡିତ ।

●

# ବିତର୍କିତ ଜୀବନଧାରା ଓ ଭୂଲୁଣ୍ଠିତା ଶ୍ୱେତପଦ୍ମା

ଡଃ ଇନ୍ଦୁ ମିଶ୍ର

ଜୀବନର ଧାରା ବଡ଼ ବିଚିତ୍ର । ଏଇ ବିଚିତ୍ର ଜୀବନର ବୈଚିତ୍ର୍ୟକୁ ରୂପାୟିତ କରିବା ଥିଲା କବିବର ରାଧାନାଥଙ୍କର ଲକ୍ଷ୍ୟ । ରୀତିଯୁଗର କାବ୍ୟଧାରା ଭଳି ଏକ ଗଡ୍ଡ଼ାଳିକା ପ୍ରବାହରେ ତାଙ୍କ ସୃଷ୍ଟି ଚେତନା ଗତିଶୀଳ ହୋଇ ନଥିଲା । ଦୁଃଖପୂର୍ଣ୍ଣ ଜୀବନ ଭିତରେ କୌଶଲ୍ୟା, ପାର୍ବତୀ, ନନ୍ଦିକା ଓ ଚନ୍ଦ୍ରଭାଗା ଆଦି ନାୟିକାମାନେ ସତେ ଯେପରି ଭୂଲୁଣ୍ଠିତା ଏକ ଏକ ଶ୍ୱେତପଦ୍ମା ଭଳି ପ୍ରତୀତ ହୋଇଥିଲେ । ପ୍ରତ୍ୟେକ କାବ୍ୟରେ ଥିଲା ବିତର୍କ ଓ ବେଦନାବୋଧ । ପାଶ୍ଚାତ୍ୟ ପ୍ରଭାବ ସତ୍ତ୍ୱେ ଏହି ବିତର୍କିତ ବେଦନାବୋଧ ହିଁ କାବ୍ୟମୋଦୀ ପାଠକମାନଙ୍କୁ ଚମତ୍କୃତ କରିଥିଲା ।

ରାଧାନାଥଙ୍କ କାବ୍ୟର ଜୀବନଧାରା ସାଧାରଣ ଜୀବନଧାରା ନୁହେଁ । ଦୁଃଖ, ବେଦନା ଭିତରେ ଯେଭଳି ଫୁଟି ଉଠୁଥିଲା ଏହାର ଐଶ୍ୱର୍ଯ୍ୟ ଓ ଅନ୍ତଃସୌନ୍ଦର୍ଯ୍ୟ । ଆରୋପଣ ଓ ସମୀକରଣର ଚାତୁର୍ଯ୍ୟ ଭିତରେ ଆହରଣ ଯେଭଳି ଲାଭ କରିଥିଲା ଅପୂର୍ବ ଐଶ୍ୱର୍ଯ୍ୟ ଓ ନବୀନ ଭାବ-ଲାବଣ୍ୟ । ସ୍ମୃତିର ବେଦନାକ୍ତ ଯନ୍ତ୍ରଣା ଭିତରେ ରୂପାୟିତ ହୋଇଥିଲା ସାଂପ୍ରତିକ ସମୟର ସ୍ୱାକ୍ଷର । ଜୀବନଦେବତା ଅନେକତ୍ର ହୁଏତ ପରାଜୟ ଲଭିଥିଲେ, ମାତ୍ର ଅବରୁଦ୍ଧ ହୋଇ ନଥିଲା ନିରନ୍ତର ଜୀବନ-ପ୍ରବାହ । ବେଦନାବିଜଡ଼ିତ ଦୁଃଖବୋଧରେ ଅଧୀର, ଅସ୍ଥିର ହୋଇ ମଧ୍ୟ କାଳାତୀତ ଚେତନାରେ ଅଭିଷିକ୍ତ ହୋଇଥିଲା ସମୟ । ରାଧାନାଥୀ କାବ୍ୟ ଚେତନାର ଭୂଲୁଣ୍ଠିତା ସେଇ ଶ୍ୱେତପଦ୍ମା ଓ ବିତର୍କିତ ଜୀବନବୋଧର ସିଂହାବଲୋକନ ଉଦ୍ଦେଶ୍ୟରେ ନିବନ୍ଧଟି ନିବେଦିତ ।

ପ୍ରାଚ୍ୟ ଅଳଙ୍କାର ଶାସ୍ତ୍ରରେ ସକଳ ଦୁଃଖବୋଧ ସତ୍ତ୍ୱେ ମୃତ୍ୟୁ ଥିଲା କାବ୍ୟ ପରମ୍ପରାରେ ନିଷିଦ୍ଧ । କାବ୍ୟର ପରିଣତି ମିଳନାନ୍ତ ହେବା ଥିଲା ବିଧେୟ । ଏହି କାରଣରୁ ଭବଭୂତିଙ୍କ 'ଉତ୍ତର ରାମଚରିତ'ରେ ସୀତାଙ୍କ ପାତାଳ ପ୍ରବେଶ ପରେ ପୁନଶ୍ଚ ତାଙ୍କୁ ବିଷ୍ଣୁରୂପୀ ଭଗବାନଙ୍କ ସହ ଲକ୍ଷ୍ମୀ ରୂପରେ ପ୍ରଦର୍ଶିତ କରାଯାଇଥିଲା । କିନ୍ତୁ ଭବଭୂତି ଜାଣିଥିଲେ—"କରୁଣାଦବପି ରସେ ଜାୟତେ ତତ୍ ପରଂସୁଖମ୍ ।" କରୁଣ ରସରୁ ହିଁ ଜାତ ହୁଏ ଅପାର ଆନନ୍ଦ । ଆରିଷ୍ଟୋଟଲଙ୍କ ଟ୍ରାଜେଡ଼ିର 'କଥାରସିସ୍' ଏହି ଅପୂର୍ବ ଆନନ୍ଦବୋଧକୁ ଅଭିବ୍ୟକ୍ତ କରେ । ଏହା ହିଁ ଥିଲା




ରାଧାନାଥୀ କାବ୍ୟର ଅନ୍ତଃସୌନ୍ଦର୍ଯ୍ୟ । ନାୟକମାନଙ୍କ ତୁଳନାରେ ନାୟିକାମାନେ ହିଁ ରାଧାନାଥଙ୍କ କାବ୍ୟରେ ଅଧିକ ଦୁଃଖ ଓ ବେଦନାରେ ବିପର୍ଯ୍ୟସ୍ତ ହୋଇଛନ୍ତି । କେଦାର ଓ ଜୟନ୍ତଙ୍କୁ ବାଦ୍ ଦେଲେ ଅନ୍ୟତ୍ର ସନ୍ତୁଳିତ ହୋଇଛନ୍ତି କେବଳ କାବ୍ୟର ନାୟିକାଚୟ । ସେହିଭଳି କେତେଜଣ ନାୟିକା ହେଉଛନ୍ତି କୌଶଲ୍ୟା, ନନ୍ଦିକା, ପାର୍ବତୀ ଓ ଚନ୍ଦ୍ରଭାଗା । ବେଦନାର ସତେ ଅବା ଶେଷ ନାହିଁ, ଅନ୍ତନାହିଁ ସ୍ମୃତି ଆଉ ସ୍ୱପ୍ନର । ଦୁଃଖର ଅନ୍ତହୀନ ଆବେଗରେ ଚେତନା ଅବା ଝରି ଝରି ପଡ଼ିଛି । ସେଦିନ ସୁମନ୍ୟୁ ଋଷି-କନ୍ୟା ଚନ୍ଦ୍ରଭାଗା ବେଦନାକ୍ତ ହୋଇଥିବେ ସୂର୍ଯ୍ୟଙ୍କ ଆକର୍ଷଣରେ । ପ୍ରଥମ ଦର୍ଶନରେ ହିଁ କନ୍ଦର୍ପଙ୍କର ଅନୁରାଗ ଶରବିଦ୍ଧ ଆଦିତ୍ୟ ଆକର୍ଷିତ ହୋଇଥିବେ ଚନ୍ଦ୍ରଭାଗାଙ୍କ ପ୍ରତି । ମାତ୍ର ବିତର୍କର ଯେ ଅନ୍ତ ନାହିଁ ରାଧାନାଥୀ କାବ୍ୟ ପରମ୍ପରାରେ । ଶ୍ରୀ ମନ୍ଦିରର ସିଂହ ଦ୍ୱାରରେ ପୁଷ୍ୟାଭିଷେକ କାଳରେ କାମଦେବ ଓ ବିକର୍ତ୍ତନଙ୍କ ମଧ୍ୟରେ ହୋଇଥିବା କଳହର ପ୍ରତିଶୋଧ ଏବେ ନେଉଛନ୍ତି ଅତନୁ । ଏଣୁ ସୂର୍ଯ୍ୟ ଅନୁରାଗ ଶରବିଦ୍ଧ ହୋଇଥିବାବେଳେ ବିରାଗ ଶରରେ ବିଦ୍ଧ ହୋଇଛନ୍ତି ଚନ୍ଦ୍ରଭାଗା । ଆଦିତ୍ୟଙ୍କ ଆକର୍ଷଣରୁ ପଳାୟନ କରିବା ବ୍ୟତୀତ ତାଙ୍କର ଅନ୍ୟ ଉପାୟ ନାହିଁ । ମୂଳକଥା ନକଟି ଗୃହୀତ ହୋଇଛି ରୋମୀୟ କବି ଓଭିଡ୍‌ଙ୍କ "ଆପୋଲୋ ଆଣ୍ଡ ଡ଼ାଫ୍‌ନେ" କାବ୍ୟରୁ । ପେନିୟମ୍ ନଦୀ-କନ୍ୟା ଡ଼ାଫ୍‌ନେ ହିଁ ହୋଇଛନ୍ତି ରାଧାନାଥଙ୍କ ଚନ୍ଦ୍ରଭାଗା । ମୂଳ କାବ୍ୟରେ ଡ଼ାଫ୍‌ନେ ଲରେଲ ତରୁରେ ପରିଣତ ହୋଇଥିବାବେଳେ ରାଧାନାଥଙ୍କ କାବ୍ୟରେ ସଲୀଳ-ସମାଧି ନେଇଛନ୍ତି ଚନ୍ଦ୍ରଭାଗା । ସୁମନ୍ୟୁଙ୍କ ଅଭିଶାପରେ ସୂର୍ଯ୍ୟ-ମନ୍ଦିର କୋଣାର୍କ ଧ୍ୱସ୍ତବିଧ୍ୱସ୍ତ ହୋଇଛି ବୋଲି କବି ଉଲ୍ଲେଖ କରିଛନ୍ତି । କୋଣାର୍କ ମନ୍ଦିରର ବିଭଙ୍ଗର ଇତିହାସ ଯାହା ହେଉ ନା କାହିଁକି ରାଧାନାଥ ସେଥିପାଇଁ ସ୍ୱତନ୍ତ୍ର ଇତିହାସ ଏକ ସୃଷ୍ଟି କରିବା ପାଇଁ ପ୍ରୟାସ କରିଛନ୍ତି । ବରଂ ଭଗ୍ନ କୋଣାର୍କରେ ହିଁ ସେ ଆରୋପ କରିଛନ୍ତି ରୋମୀୟ କାବ୍ୟକଳା । ସମୀକରଣର ଚମତ୍କାରିତା ଆହରଣକୁ ଦେଇଛି ଅଶେଷ ବାସ୍ତବତା । ଆହା ! ଘଟି ନଥାନ୍ତା କି ଏଭଳି ଏକ ଦୁର୍ଘଟଣା । ଭାଙ୍ଗି ନ ଥାନ୍ତା କି କୋଣାର୍କ । ତା' ସହିତ ବଞ୍ଚି ରହିଥାନ୍ତେ ସୁନ୍ଦରୀ, ନିରପରାଧିନୀ, ଶ୍ୱେତପଦ୍ମା ଚନ୍ଦ୍ରଭାଗା । ଲମ୍ପଟ କାମୁକ ପୁରୁଷ ଭଳି ଚନ୍ଦ୍ରଭାଗାଙ୍କର ପଶ୍ଚାତ୍‌ଧାବନ କରିନଥାନ୍ତେ କି ବିପ୍ରଯୁବାବେଶୀ ଦେବ ବିକର୍ତ୍ତନ । ବିତର୍କ ସୃଷ୍ଟି ହୋଇ ନଥାନ୍ତା କି ଶ୍ରୀମନ୍ଦିରର ସିଂହଦ୍ୱାରରେ କନ୍ଦର୍ପ ଓ ସୂର୍ଯ୍ୟଙ୍କ ମଧ୍ୟରେ । ମାତ୍ର ବତର୍କ ତ ତ୍ୟାଗ କରେ ନାହିଁ ଜୀବନକୁ । ଆପଣା ଛାଏଁ ଆପେ ବହି ଯାଏ ଜୀବନ-ନଦୀ ନିଜସ୍ୱ ଧାରାରେ । ଲରେଲ୍ ତରୁରେ ପରିଣତ ହେବାକୁ ପଡ଼େ

ଡାଫ୍‌ନେମାନଙ୍କୁ । ଜଳସମାଧି ଲଭିବାକୁ ପଡ଼େ ମଧ ଚନ୍ଦ୍ରଭାଗାମାନଙ୍କୁ । ଦେବତାମାନଙ୍କୁ ବିଦ୍ଧ ହେବାକୁ ପଡ଼େ କାମନାର ଶରରେ । ବିତର୍କ ହେତୁ ହିଁ ବୈଚିତ୍ର୍ୟବିମଣ୍ଡିତ ଲାଗେ ଜୀବନ । ଅନ୍ୟଥା ରୀତିଯୁଗର କାବ୍ୟଧାରା ଭଳି ଗଡ୍‌ଡ଼ାଳିକା ପ୍ରବାହରେ ତ ଗତି କରିଥା'ନ୍ତା ରାଧାନାଥୀ କାବ୍ୟଧାରା । ବିତର୍କରେ ହିଁ ବ୍ୟତିକ୍ରମ ଦେଖିଛନ୍ତି ରାଧାନାଥ । ଜୀବନ ପିପାସା ସେଠାରେ ଯେପରି ବିପୁଳ, ମୃତ୍ୟୁର ପଦପାତ ସେହିଭଳି ମୁଖର । ମଧ୍ୟଯୁଗୀୟ ସାହିତ୍ୟ ପରମ୍ପରାରେ କାବ୍ୟ ଥିଲା ନାୟିକାପ୍ରଧାନ । ଲୋକନାଥ ବିଦ୍ୟାଧର ସେଥିପାଇଁ ଉଲ୍ଲେଖ କରିଥିଲେ— "କାବ୍ୟରେ ନାୟିକା ସିନା ପ୍ରଧାନ/ତାହାକୁ ଘେନି ସବୁ ରସମାନ/ଏ ଘେନି ଆଗ ତା'ର ବର୍ଣ୍ଣନା/ଏହେଲା କବି ପ୍ରସିଦ୍ଧି ସିନା ।"(ଲୋକନାଥ ବିଦ୍ୟାଧର-ପଦ୍ମାବତୀ ଅଭିଳାଷ) ରାଧାନାଥ କବି ପ୍ରସିଦ୍ଧିକୁ ପୂର୍ଣ୍ଣତଃ ଅସ୍ୱୀକାର କରିନାହାନ୍ତି । ମାତ୍ର ବିପୁଳ ଜୀବନ ପିପାସା ଓ ରସତୃଷ୍ଣା ସତ୍ତ୍ୱେ ମୃତ୍ୟୁ ସତେ ଅବା ହାତ ଠାରି ଆବାହନ କରିଛି ରାଧାନାଥଙ୍କ ଚରିତ୍ରବର୍ଗଙ୍କୁ । ମଧ୍ୟଯୁଗରେ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ରସିକ ହାରାବଳୀଙ୍କ ଜୀବନଧାରାରେ ବିତର୍କର ଆଭାସ ସ୍ୱଳ୍ପ । ମାତ୍ର ପାର୍ବତୀ, କୌଶଲ୍ୟା, ଉଷା, ନନ୍ଦିକା ଓ ଚନ୍ଦ୍ରଭାଗାଙ୍କ ଜୀବନରେ ରହିଛି ବିପୁଳ ବିତର୍କ । ମୃତ୍ୟୁ ସ୍ପର୍ଶ କରିଛି ଜୀବନକୁ । ବାସ୍ତବତା ଯଦି ଚ ଅନୁଭୂତି ଓ ଉପଲବ୍ଧିର ଅଧାରରେ ଉଜ୍ଜ୍ୱଳ ରହିଛି, ମଳିନ ହୋଇଯାଇଛି ଜୀବନର ସମୁଜ୍ଜ୍ୱଳ ଆଭା । ପ୍ରେମ ଓ ସୌନ୍ଦର୍ଯ୍ୟ ପରିବେଶ ଓ ଜୀବନର ନିର୍ଯ୍ୟାସ ଘେନି ପ୍ରକଟିତ ହୋଇଛନ୍ତି ବିତର୍କର ବେଦୀରେ । ଏହି ବିତର୍କିତ ଜୀବନଧାରା ହିଁ ଉଦ୍‌ଘାଟନ କରିଛି ଜୀବନର ବହୁ ପାର୍ଶ୍ୱିକ ଦିଗନ୍ତ । ମହାଯାତ୍ରାରେ ଭାବି ଭାରତର ଦୃଶ୍ୟ ଛଳରେ ସେଥିପାଇଁ ସେ ପ୍ରଦର୍ଶିତ କରିଥିଲେ ଜୀବନର ଅବକ୍ଷୟ—

"ସେହି ଦେଶ ସେହି ଗିରି/ସେହି ନଦନଦୀ/ନଗର ନଗରୀ ତୀର୍ଥ ଆଶ୍ରମାଦି କରି/ସର୍ବେ ଥିବେ ପୂର୍ବପରି/ମାନବେ କେବଳ/ନାମକୁ ମାନବ ରହି ପଶୁଠାରୁ ହୀନ/ ହୋଇଯିବେ ଯୁଗଧର୍ମେ ଭାରତ ମଣ୍ଡଳେ ।"
(ମହାଯାତ୍ରା-୪ର୍ଥ ସର୍ଗ)

ମାନବିକତାର ଅବକ୍ଷୟ ଅନୁଭୂତ ହୋଇଥିଲା କବି ଚେତନାରେ । ନିଜେ ସେହି ଅବକ୍ଷୟର ଅଂଶଭାକ୍ ବୋଲି ଅବଶ୍ୟ ସେ ସ୍ୱୀକାର କରିଥିଲେ—

"ମଣ ନାହିଁ ମୁହିଁ ନେଇଛି ଏସନ
ଜ୍ଞାନଦର୍ପେ ଜ୍ଞାନଦାତାର ଆସନ
ଥୋଇ ଏ ମୁକୁର ତୁମ୍ଭ ଆଗେ ଭାଇ

ନିଜ ମୁଖ ମୁଁ କି ନିଜେ ଦେଖୁ ନାହିଁ ?
ପାଶୋରି ନାହିଁ ମୁଁ ହେଉଅଛି ବ୍ୟସ୍ତେ
ଏକା ଅନ୍ଧକୂପ ଦରାଣ୍ଡି ସମସ୍ତେ ।''

(ଦରବାର- ରା.ଗ୍ର. , ପୃ-୭୮୪)

ଅବକ୍ଷୟର ଅନ୍ଧକୂପରେ ଘାଣ୍ଟି ହେବାର ମର୍ମଦାହୀ ବେଦନାକୁ ବ୍ୟକ୍ତ କରିଛନ୍ତି କବି ତାଙ୍କର 'ପାର୍ବତୀ' କାବ୍ୟରେ । କେତେକ ଗବେଷକଙ୍କ ମତରେ 'ପାର୍ବତୀ' କାବ୍ୟର ମୂଳ ଉତ୍ସ ହେଉଛି ମାଦଳା ପାଞ୍ଜି । ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି—

''ଏ ଗଙ୍ଗେଶ୍ୱର ଦେବ ଗୋଦାବରୀଠାରୁ ଗଙ୍ଗା ପର୍ଯ୍ୟନ୍ତ ଏକଛତ୍ର କଲେ । ଏ ରାଜା ବ୍ରାହ୍ମଣମାନଙ୍କୁ ପଚାରିଲେ ଯଉ ଫଳ ଉପୁଜାଇ ସେ ଫଳ ଖାଇ କି ନଖାଇ । ତହିଁକି ବ୍ରାହ୍ମଣେ ବୋଇଲେ,ଯେ ଫଳ ଉପୁଜଇ ସେ ଫଳ ଖାଇ । ସେଠାରୁ ରାଜା ଝିଅଙ୍କ ସଙ୍ଗେ ଅଙ୍ଗ ସଙ୍ଗ ହେଲେ । ଝିଅ ଗର୍ଭବାସ ହେଲେ ।''

(ମାଦଳା ପାଞ୍ଜି-ସମ୍ପାଦନା ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରାଚୀ, ପୃ-୨୩)

'ପାର୍ବତୀ' କାବ୍ୟର ମୂଳ ପ୍ରେରଣା କିନ୍ତୁ କେବଳ ମାଦଳାପାଞ୍ଜି ନୁହେଁ । ଏହାର ପୃଷ୍ଠପଟ୍ଟରେ ରହିଛି ଆସ୍କାଇଲସ୍‌ଙ୍କ 'ଆଗାମେମନନ୍' ଓ ସେକସ୍ପିୟର୍‌ଙ୍କ 'ହାମ୍‌ଲେଟ୍' ନାଟକ । ତେବେ ବିତର୍କର ପୃଷ୍ଠପଟ୍ଟରେ ହିଁ ଗଢ଼ିଉଠିଛି ରାଧାନାଥଙ୍କ ପାର୍ବତୀ, ଚନ୍ଦ୍ରଭାଗା, ନନ୍ଦକେଶ୍ୱରୀ, କେଦାରଗୌରୀ, ଉଷା ସହ । ପାର୍ବତୀ କାବ୍ୟ ମଧ୍ୟ ସମାଲୋଚନାର ଶରବ୍ୟ ହୋଇଛି । ପଣ୍ଡିତ ନୀଳକଣ୍ଠ ମନ୍ତବ୍ୟ ଦେଇଛନ୍ତି— ''କଉଶଲ୍ୟାଗଙ୍ଗ ଧଉଳି/ଏବେ ନୟନେ ନାଚେ/କବିଙ୍କୁ ସୁମରି ବିରାଗେ/ମୁଖ ଫେରାଅ ପଛେ ।''

ମାତ୍ର କେବଳ ଏହି କାରଣ ପାଇଁ ରାଧାନାଥଙ୍କ ଠାରୁ ବିରାଗରେ ମୁହଁ ଫେରାଇବା ଉଚିତ୍ ମନେ ହୁଏ ନାହିଁ । ଫେରାଇ ନାହାନ୍ତି ମଧ୍ୟ କାବ୍ୟ ସମାଲୋଚକ, ଗବେଷକ ତଥା ପାଠକଗଣ । ପୂଜ୍ୟ ପୂଜାର ଭୂମିରେ ଚିର-ଆରାଧ ରହିଛନ୍ତି କବିବର ରାଧାନାଥ ।

ଏଇ ତ ସେଦିନ କୌଶଲ୍ୟା ପିତାଙ୍କଠାରୁ ବିଚ୍ଛିନ୍ନ ନ ହେବା ମାନସରେ ଯାତ୍ରା କରିଥିଲେ ଯୁଦ୍ଧ କ୍ଷେତ୍ରକୁ । ମାତ୍ର ଏକି ଅସତର୍କ ମୁହୂର୍ତ୍ତରେ କନ୍ୟାର ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହୋଇପଡ଼ିଲେ ଲମ୍ପଟ ଗଙ୍ଗେଶ୍ୱରଦେବ । ଧର୍ଷିତା ହେଲେ କୌଶଲ୍ୟା । ଆପଣା ପାପକୁ ଗୋପନ ରଖିବାକୁ ଯାଇ ସେ ଦୋଷୀ ସାବ୍ୟସ୍ତ କଲେ କୌଶଲ୍ୟାଙ୍କୁ । ସେ ଦିନ ବିପୁଳ ଜନତା ଆଗରେ ଅବନତ ମସ୍ତକରେ ଦଣ୍ଡ ଗ୍ରହଣ କରିଥିବେ କୌଶଲ୍ୟା । ପିତାଙ୍କ ପାପ ସ୍ୱୀକାର କରିବା ଅଥବା ପ୍ରକାଶ କରିବା

ଲାଗି ଧୃତିର ଅଭାବ ଘଟିଥିବ । ହୃଦୟରେ ସୃଷ୍ଟି ହୋଇଥିବ ହୁଏତ ଗଭୀର ଆଲୋଡ଼ନ । ମାତ୍ର ପ୍ରତିବାଦ କରିବା ପାଇଁ ଜୀବିତାବସ୍ଥାରେ ସାହସ କରି ପାରି ନଥିବେ କୌଶଲ୍ୟା । ନତମୁଖରେ ଛିଦ୍ରଯୁକ୍ତ କଳସୀଟିଏ ଧରି ତାଙ୍କୁ ଯିବାକୁ ପଡ଼ିଥିବ ଅସହାୟ ଭାବରେ । ବିନ୍ଦୁ ବିନ୍ଦୁ ଜଳ ଝରି ଝରି କଳସୀ ଯେଉଁଠି ଶୂନ୍ୟ ସଲୀଳ ହୋଇଥିବ ସେଠି ଖନନ କରାଯାଇଥିବ ଏକ ବାମ୍ଫି । ସେହି ବାମ୍ଫିକୁ ନିକ୍ଷିପ୍ତ ହୋଇଥିବେ କୌଶଲ୍ୟା । ହୃଦୟହୀନ ପାଶବିକତାର ଏହା ହିଁ କ୍ରୂର ନମୁନା । ବିଶ୍ୱାସହୀନ ପିତୃତ୍ୱର ଘୃଣ୍ୟ ଦୃଷ୍ଟାନ୍ତ ରୂପରେ ମାନବିକତାର ଇତିହାସରେ ସେଥିପାଇଁ କଳଙ୍କିତ ହୋଇଛନ୍ତି ଗଙ୍ଗେଶ୍ୱରଦେବ । କ୍ଷୁଧାର ଜ୍ୱାଳାରେ ଶିଶୁପୁତ୍ରର ମାଂସ ଭକ୍ଷଣ କରିବାକୁ ପଡ଼ିଛି କୌଶଲ୍ୟାଙ୍କୁ । ଶେଷରେ ଜୀବନ ହାର ମାନିଛି ମୃତ୍ୟୁ ନିକଟରେ । ବାମ୍ଫି ଭିତରେ ମୃତ୍ୟୁ ବରଣ କରିଛନ୍ତି କୌଶଲ୍ୟା । ଆଗାମେନନ୍‌ର 'ଇଫିଜିନିଆ'ଙ୍କୁ ପିତା ରାଷ୍ଟ୍ରର କଲ୍ୟାଣ ପାଇଁ ବଳିଦାନ ଦେଇଥିବାବେଳେ 'ପାର୍ବତୀ' କାବ୍ୟରେ ପିତା ହିଁ ହୋଇଛନ୍ତି କନ୍ୟାର ଭୋକ୍ତା ଓ ହନ୍ତା । ରାଧାନାଥଙ୍କର ଚରିତ୍ରଚିତ୍ରଣଗତ ସ୍ୱାତନ୍ତ୍ର୍ୟ ପାର୍ବତୀ ଚରିତ୍ରରେ ମଧ୍ୟ ପରିଦୃଷ୍ଟ ହୁଏ । ଜନତା କ୍ଲାଇଟ୍‌ମେନ୍‌ଷ୍ଟ୍ରାଙ୍କ ପରି ପାର୍ବତୀଙ୍କୁ ନିନ୍ଦା କରି ନାହିଁ । ବରଂ ପତିହତ୍ୟା ପରେ ଆତ୍ମହତ୍ୟା ହିନ୍ଦୁଧର୍ମଧାରଣାର ଅନୁକୂଳ ହୋଇଛି । ପତିଙ୍କୁ ଦୁଷ୍କର୍ମ ପାଇଁ ଦଣ୍ଡ ଦେବା ପୂର୍ବରୁ ପାର୍ବତୀ ବହୁ ଦ୍ୱନ୍ଦ୍ୱ ଓ ସଂଘର୍ଷର ସମ୍ମୁଖୀନ ହୋଇଥିବେ । ପ୍ରିୟତମା କନ୍ୟାର ମୃତ୍ୟୋତ୍ତର ଅଭିବ୍ୟକ୍ତି ବିପୁଳ ଶୋକରେ ଉଦ୍‌ବେଳିତ କରିଥିବ ଜନନୀର ହୃଦୟକୁ । କିୟତ୍‌କାଳ ପାଇଁ ସଂଗ୍ରାମୀ ବୀରାଙ୍ଗନା ଭୂମିକାରେ ଅଭିନୟ କରିବାକୁ ପ୍ରବର୍ତ୍ତାଇଥିବ ତା'ଙ୍କୁ ମହାକାଳ । ବିତର୍କ ଉପସ୍ଥିତ ହୋଇଥିବ । ମାତ୍ର ଜିଜୀବିଷାର ମୋହରେ ଅଧୀରା ହୋଇ ନଥିବେ ମହାରାଣୀ, ମହାସତୀ ପାର୍ବତୀ । କାମୁକ, ଲମ୍ପଟ ଗଙ୍ଗେଶ୍ୱର ଦେବଙ୍କ ନିଧନ ପରେ ଟଳି ପଡ଼ିଥିବେ ପାର୍ବତୀ ଭୂଲୁଣ୍ଠିତା ଶ୍ୱେତପଦ୍ମା ପରି । ପତିଙ୍କର ମୃତ୍ୟୁ ପରେ ଜୀବନ ପ୍ରତି ସତେ ଆଉ କି ମୋହ ଥିଲା ଯେ ପାର୍ବତୀଙ୍କର ? ଇହ ଜଗତରେ ଆଉ କାମ୍ୟ କ'ଣ ଥିଲା ? କନ୍ୟା ତ ବହୁ ପୂର୍ବରୁ ଇହଧାମ ତ୍ୟାଗ କରିଥିଲେ । ପୁତ୍ର ଏକଜାତଙ୍କର ସଂସାର ଅବସ୍ଥାପନ ପରେ ସନ୍ନ୍ୟାସରେ ନୁହେଁ, ମୃତ୍ୟୁରେ ହିଁ ହୋଇଥିଲା ତାଙ୍କ କର୍ମମୟ ଜୀବନର ଅବସାନ । ମୃତ୍ୟୁରେ ସେ ଲଭିବେ ଜୀବନର ସାର୍ଥକତା । କାରଣ ହତ୍ୟା ବା ନରସଂହାର ତାଙ୍କର ବୃତ୍ତି ନୁହେଁ, ପ୍ରବୃତ୍ତି ନୁହେଁ, ସେ କେବଳ କନ୍ୟାଘାତୀ ଗଙ୍ଗେଶ୍ୱର ଦେବଙ୍କ ଉପରେ ପ୍ରତିଶୋଧ ନେବାପାଇଁ କାମନା କରିଥିଲେ । ପ୍ରତିଶୋଧ ନେଲେ ମଧ୍ୟ । ପରିଶେଷରେ ସ୍ୱେଚ୍ଛାକୃତ ମୃତ୍ୟୁ ପାର୍ବତୀଙ୍କୁ ଭୂଲୁଣ୍ଠିତା କରିଛି ସତ, ମାତ୍ର ଶ୍ୱେତପଦ୍ମା ପରି ତାଙ୍କର ସୌନ୍ଦର୍ଯ୍ୟ କାଳଜୟୀ ଅକ୍ଷରରେ

ଲିପିବଦ୍ଧ ରହିଛି । ତାହାର ମୃତ୍ୟୁ ନାହିଁ । ରାଧାନାଥଙ୍କ କାବ୍ୟର ବିତର୍କ ତେଣୁ ଇନ୍ଦ୍ରଧନୁ ଓ ବିଜୁଳିର ବିତର୍କ ନୁହେଁ, ବରଂ ସାମଗ୍ରିକ ଜୀବନଧାରାର ବିତର୍କ । ବେଦନା ଭିତରେ ଯେଉଁଠାରେ ବିମଳିନ ରୁହେ ସମୟର ଅମୀୟ ଦ୍ୟୁତି । ସୂର୍ଯ୍ୟଦୀପ୍ତ ଜୀବନର ଅବକ୍ଷୟରେ ସେଠାରେ ଶ୍ୱେତପଦ୍ମାର ବିଲୟନ । ସୂର୍ଯ୍ୟ ବିନା ବୃନ୍ତଚ୍ୟୁତି ତା'ର ଅନିବାର୍ଯ୍ୟ । ସୌନ୍ଦର୍ଯ୍ୟ ଭିତରେ ବିତର୍କିତ ବେଦନା ରାଧାନାଥୀ କାବ୍ୟର ପ୍ରାଣକେନ୍ଦ୍ର । ତାଙ୍କର ପ୍ରତ୍ୟେକ କାବ୍ୟ-ନାୟିକା ଅତୁଳନୀୟା ସୁନ୍ଦରୀ । ଅଥଚ ପ୍ରତ୍ୟେକଙ୍କ ଜୀବନ ଅମାପ ଦୁଃଖ-ବେଦନାରେ କବଳିତା । ମର୍ତ୍ତ୍ୟର ଶ୍ୱେତପଦ୍ମା ସତେ ଅବା ମଳିନ, ଶୀର୍ଣ୍ଣ ରୂପଶ୍ରୀଧାରଣ କରିଛି ଜୀବନର ବ୍ୟଥାସିକ୍ତ ମୁହୂର୍ତ୍ତରେ । ବ୍ୟଥାର ଅନ୍ତ ନାହିଁ । ବ୍ୟଥା ଓ ବିତର୍କ ବ୍ୟତିରେକେ ସାହିତ୍ୟ ସାର୍ଥକତା ଲଭିବା କାହିଁ ସମ୍ଭବ ହୁଏ କି ? ଆଧୁନିକ ଓଡ଼ିଆ ସାହିତ୍ୟର ଆଦ୍ୟପାଦ ବିତର୍କରୁ ହିଁ ଜନ୍ମ ନେଇଥିଲା । ବିତର୍କର ଜନ୍ମଦାତା ଥିଲେ ରାଧାନାଥ । ତାଙ୍କର ସମସାମୟିକ ଫକୀର ମୋହନ, ମଧୁସୂଦନ ଅଥବା ଗଙ୍ଗାଧରଙ୍କ ରଚନାରେ ଏଭଳି ବିତର୍କ ପ୍ରାୟ ପରିଦୃଷ୍ଟ ହୁଏ ନାହିଁ । ରାଧାନାଥ ଏହି କାରଣରୁ ଭାରତୀୟ ସଂସ୍କୃତିରୁ ବିଚ୍ୟୁତ ହୋଇଛନ୍ତି ବୋଲି ତାଙ୍କର ପ୍ରତିକୂଳ ଗବେଷକମାନଙ୍କର ମତ । ମାତ୍ର ମାନବିକତାର ଦିଗ୍‌ବଳୟରେ ରାଧାନାଥଙ୍କର କାବ୍ୟ-ଦିଗନ୍ତ ସଦା ସଂପ୍ରସାରିତ ରହିଛି । ଏକଦା ସୋଭିଏତ୍ ସାହିତ୍ୟିକ ତୁର୍ଗେନିଭ ଉଲ୍ଲେଖ କରିଥିଲେ—"Realism in itself is fatal", ଅର୍ଥାତ୍ "ବାସ୍ତବତାର ନଗ୍ନ ରୂପ ଅତି ଭୟଙ୍କର ।" ମାତ୍ର ସତ୍ୟ ରାତିର ଅନ୍ଧାର ଅଥବା ଦିନର ଆଲୁଅ ଭଳି ଏକାନ୍ତ ଅନିବାର୍ଯ୍ୟ । ଜୀବନରେ ଘଟିଥିବା ଘଟଣା ରାଜିକୁ ପ୍ରଦର୍ଶିତ କରିବା ହିଁ ଯଥାର୍ଥ ଶିଳ୍ପୀର ଧର୍ମ । ରାଧାନାଥ ଶିଳ୍ପୀ-ଧର୍ମ ପାଳନ କରିଛନ୍ତି । ରୋମାଣ୍ଟିକ୍ ସୌନ୍ଦର୍ଯ୍ୟପିପାସୁ ରାଧାନାଥଙ୍କ କାବ୍ୟଧାରାରେ ବାସ୍ତବବାଦର ଏହା ହିଁ ରୂପବୈଚିତ୍ର୍ୟ । ବାସ୍ତବତାର ଆକଳନରେ ବିତର୍କକୁ ନିଜ କାବ୍ୟଧାରାରେ ରାଧାନାଥ ପ୍ରମୁଖ ଭୂମିକା ପ୍ରଦାନ କରିଛନ୍ତି । ନିୟତିର ବୈଚିତ୍ର୍ୟ ଓ ସାର୍ବଭୌମତ୍ୱକୁ ସ୍ୱୀକୃତି ଦେଇଛନ୍ତି ଶିଳ୍ପୀ । 'ମହାଯାତ୍ରା'ରେ ଅମର୍ଷିଙ୍କ ବକ୍ତବ୍ୟରେ ସେ ଯଭଳି ସତ୍ୟ, ଧର୍ମ ଓ ଜାତୀୟ ଆଦର୍ଶର ଧ୍ୱଜା ଧାରଣ କରିଛନ୍ତି (ଫଳୁ ଯା ଫଳିବ କର୍ମ/ରହ ଧର୍ମ ଧରି/ମନ୍ତ୍ରର ସାଧନ ଅବା ଶରୀର ପାତନ/ଆର୍ଯ୍ୟର ଯା ସାରଧର୍ମ/ପାଳ ଆର୍ଯ୍ୟ ବୀରେ) 'ପାର୍ବତୀ' କାବ୍ୟରେ କଞ୍ଚୁକୀଙ୍କ ଭାବନା ମଧ୍ୟରେ ସେ ବ୍ୟକ୍ତ କରିଛନ୍ତି ନିୟତିର ଅଘଟନ ଘଟନ ପଟିୟସୀ ଶକ୍ତି—

"କେହି ରହି ନାହିଁ ରହିବେ ନାହିଁଟି/ଭବରଙ୍ଗ ଭୂମିତଳେ/ସର୍ବେ ନିଜ ନିଜ ଅଭିନୟ ସାରି/ବାହୁଡ଼ିବେ କାଳବଳେ ।" ଅଥବା

"ଇଚ୍ଛନ୍ତି ଦାମ୍ଭିକେ ଧରିବାକୁ ହସ୍ତେ ସମସ୍ତଙ୍କ ଭାଗ୍ୟଡ଼ୋରି
ନିଜ ଭାଗ୍ୟଡ଼ୋରି କାଳ ହସ୍ତେ ବନ୍ଧା ପକାନ୍ତି ହେଲେ ପାଶୋରି ।"

(ପାର୍ବତୀ-ରାଧାନାଥ ଗ୍ରନ୍ଥାବଳୀ)

ଭବରଙ୍ଗ ଭୂମି ରାଧାନାଥଙ୍କ ଚରିତ୍ରଗୁଚ୍ଛ ପାଇଁ ଏକ ଅଭିନୟ ସ୍ଥଳୀ । ଅବଶ୍ୟ ରାଧାନାଥଙ୍କ ଚରିତ୍ରଗୁଚ୍ଛ ପାଇଁ ଏହା ଯେଉଁଭଳି ସତ୍ୟ, ସାମଗ୍ରିକ, ମାନବିକ ସତ୍ତା କ୍ଷେତ୍ରରେ ସେହିଳଭି ବାସ୍ତବ । ଅଭିନୟ କରୁଥିବା ଅଭିନେତା ନାୟକଟିର ଅମିତ ପରାକ୍ରମ ଓ ଦାମ୍ଭିକତା ଦର୍ଶନ କରି ମହାକାଳ ସ୍ମିତହାସ୍ୟ ପ୍ରଦାନ କରେ ମାତ୍ର । ମହାକାଳ ନିକଟରେ ଜୀବୀର ଜିଜୀବିଷା ଅତ୍ୟନ୍ତ ନଗଣ୍ୟ । ତଥାପି ସେ ଦମ୍ଭ ଧରେ । ଆନ ଭାଗ୍ୟଡ଼ୋରି ହସ୍ତରେ ଧାରଣ କରିବାର ଅହମିକା ପ୍ରକାଶ କରେ । ଅଥଚ ଅହଙ୍କାରୀ ସେହି ବ୍ୟକ୍ତିସତ୍ତାର ଭାଗ୍ୟଡ଼ୋରି ନିୟତି ହସ୍ତରେ ହିଁ ଅନୁବନ୍ଧିତ ରହିଥାଏ । ଏହା ହିଁ ଘଟିଥିଲା ଗଙ୍ଗେଶ୍ୱର ଦେବଙ୍କ ଜୀବନରେ । କନ୍ୟାର ନିୟତିକୁ ବିପର୍ଯ୍ୟସ୍ତ କରାଇବା ଭିତରେ ହିଁ ସେ ଆବାହନ କରି ଆଣିଥିଲେ ନିଜ ଜୀବନର ସର୍ବନିମ୍ନ ବିଳୟନ । ଶ୍ୱେତପଦ୍ମା କୌଶଲ୍ୟା ଭୂଲୁଣ୍ଠିତା ହେଲେ ସତ, ମାତ୍ର ଅହଙ୍କାରୀ, ବିପଥଗାମୀ ଗଙ୍ଗେଶ୍ୱରଙ୍କୁ ଉପଯୁକ୍ତ ଶାସ୍ତି ବିଧାନ କଲେ ଶିଳ୍ପୀ ରାଧାନାଥ । ଏହା ହିଁ ଭାରତୀୟ ସଂସ୍କୃତିର ମୂଳ ମନ୍ତ୍ର । ସାମଗ୍ରିକ ମାନବିକତାର ସ୍ତବଗାନ । ରାଧାନାଥ ଜଣେ ଜୀବନବାଦୀ ଶିଳ୍ପୀ । ଜୀବନର ଧର୍ମକୁ ସେ ରୂପାୟିତ କରିଛନ୍ତି । ବାସ୍ତବତା ସ୍ୱୀକାର ଲଭିଛି । ମୃତ୍ୟୁ ଲଭିଛି ଅହଙ୍କାର, ଅନୁଚିତ ଆଶା ଓ ବିପଥଗମନର ଲାଳସା । ଜୀବନ ଦେବତା ଅନେକତ୍ର ପରାଜୟ ଲଭିବା ପରି ପ୍ରତୀତ ଘଟିଛି । ମାତ୍ର ମୂଲ୍ୟବୋଧର ସର୍ବତ୍ର ଜୟଗାନ ଘଟିଛି । ନାରୀ ଓ ପୁରୁଷ ନିର୍ବିଶେଷରେ ଶିଳ୍ପୀ ମାନବିକତାବୋଧକୁ ହିଁ ଅଗ୍ରସ୍ଥାନ ପ୍ରଦାନ କରିଛନ୍ତି । ମାନବିକତାବୋଧ ହୋଇଛି ଜୀବନର ମୂଳମନ୍ତ୍ର । ତାଙ୍କ ଶିଳ୍ପ ଧର୍ମ ପ୍ରଦାର୍ଶନର ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛନ୍ତି ନନ୍ଦିକା । ପାଣ୍ଡୁଲିପିରେ ନନ୍ଦିକାଙ୍କ ଚରିତ୍ର ଉପରେ ଆଧାରିତ କବିତାଟିର କିୟଦଂଶ ଥିଲା ଏହିପରି—

"ରାତିର ରହସ୍ୟ ଯଥା
ଛାୟାଘେରା ତନ୍ଦ୍ରାତୁର ମନେ
ନିଜକୁ ଗୋପନ ରଖେ
ଅଧେ ନିଦ ଅଧା ଜାଗରଣେ
ତୁମେ ସେହିପରି ନିଜକୁ ଗୋପନ ରଖି
ଦ୍ୱିପାନ୍ୱିତା କରିଛ ସୁନ୍ଦରୀ ।"

(ପାଣ୍ଡୁଲିପି-ଅସମାପିକା-ସଚ୍ଚିଦାନନ୍ଦ ରାଉତରାୟ)

ଦ୍ୱୀପାନ୍ୱିତା ଏହି ଭୂଲୁଣ୍ଠିତା ଶ୍ୱେତପଦ୍ମା ହେଉଛନ୍ତି ରାଜଜେମା ନନ୍ଦିକା । କେଶରୀ ରାଜବଂଶର ଉତ୍ତରାଧିକାରିଣୀ, ରାଜପ୍ରାସାଦର ଆଲୋକର ଶିଖା ନନ୍ଦିକା । ଚନ୍ଦ୍ରଭାଗା ଓ କୌଶଲ୍ୟାଙ୍କ ପରି ତାଙ୍କ ଶରୀରରେ ମଧ୍ୟ ଅପରୂପ ଲାବଣ୍ୟ । ଛଳ ଛଳ ରୂପକାନ୍ତି । କାବ୍ୟର ମୂଳ କଥାନକ ଆଦୃତ ହୋଇଛି ଓଭିଡ୍‌ଙ୍କ ମେଟାମରଫସିସ୍ କାବ୍ୟମାଳାର ଅଷ୍ଟମ ଗ୍ରନ୍ଥ 'The king Ninos and Scylla' ଏବଂ ବାଇରନ୍‌ଙ୍କ 'Scige of coninth' କାବ୍ୟରୁ । ରାଜା ସୁବର୍ଣ୍ଣ କେଶରୀ ହୋଇଛନ୍ତି ନିନସଙ୍କ ପ୍ରତିରୂପ ଏବଂ ଶିଲା ହୋଇଛନ୍ତି ନନ୍ଦିକା । ଶିଲା ନିଜ ପିତାଙ୍କ purple hair ସମ୍ପର୍କରେ ଅବଗତ ଥିବା ଭଳି ନନ୍ଦିକାଙ୍କ ନିକଟରେ ଅଜ୍ଞାତ ରହି ନାହିଁ ଚୈତ୍ରମଣି ପ୍ରସଙ୍ଗ । ଶିଲା ରାଜା ମିନସଙ୍କ ସୁନ୍ଦର ଓ ଲଳିତ ରୂପ ମାଧୂର୍ଯ୍ୟରେ ମୁଗ୍ଧା ହୋଇଯିବା ପରି ନନ୍ଦିକା ମଧ୍ୟ ଆକୃଷ୍ଟ ହୋଇଛନ୍ତି ଚୋରଗଙ୍ଗଙ୍କ ଶୌର୍ଯ୍ୟ, ସୌନ୍ଦର୍ଯ୍ୟ ଓ ବୀରତ୍ୱ ବୋଧରେ । ଏ ହୁଏତ ଇତିହାସ ନୁହେଁ । ମାତ୍ର ପ୍ରକଳ୍ପ ଇତିହାସ (Pseudo History)ର ଛାୟାରେ ଗଢ଼ିଉଠିଥିବା ଏ ନାୟିକାଟି ଏକ ଭୂଲୁଣ୍ଠିତା ଶ୍ୱେତପଦ୍ମା । ଅତ୍ୟନ୍ତ ଦୁଃଖଦାୟକ ଭାବେ କୀଟଦଂଷ୍ଟ ହୋଇଯିବାର ମର୍ମଦାହୀ ଯନ୍ତ୍ରଣାରେ ନନ୍ଦିକା ପ୍ରତୀକଟିଏ ପାଲଟି ଯାଆନ୍ତି ଚିରନ୍ତନ ପ୍ରେମ ଓ ବିରହବୋଧରେ ।

କେଉଁ ଅଶୁଭ ମୁହୂର୍ତ୍ତରେ ଦେଖାହେଲା ଚୋରଗଙ୍ଗଙ୍କ ସହ ? କେଉଁ ଚନ୍ଦ୍ରଚକିତ ରଜନୀରେ ଚନ୍ଦ୍ରଶାଳାପୁରରେ ନନ୍ଦିକାଙ୍କର ପଦଚାରଣାବେଳେ ଦୃଷ୍ଟି ସମ୍ମୁଖରେ ଉଭା ହେଲେ ସେ ବୀର ଯୁବା । ନନ୍ଦିକା ହୋଇଗଲେ ତାଙ୍କ ପାଇଁ ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ । ରାଜକନ୍ୟା ମୁହୂର୍ତ୍ତକ ମଧ୍ୟରେ ସମର୍ପଣ କରିଦେଲେ ତାଙ୍କ ହୃଦୟ । ଜୀବନର ବହୁ ଘଟଣା ଓ କାହାଣୀ ବେଳେ ବେଳେ ଉପନ୍ୟାସଠାରୁ ଅଧିକ ରୋମାଞ୍ଚକର ମନେ ହୁଏ ନାହିଁ କି ? ରାଧାନାଥଙ୍କ ଭୂଲୁଣ୍ଠିତା ଶ୍ୱେତପଦ୍ମାମାନଙ୍କ ଜୀବନ ଓ ଉପନ୍ୟାସଠାରୁ ଅଧିକ ରୋମାଞ୍ଚକର ଓ ବେଦନାବିଦଗ୍ଧ । ରାଧାନାଥ ଥିଲେ ଦୁଃଖ ଗୁରୁଙ୍କର ପଟ୍ଟଶିଷ୍ୟ । ଏହି କାରଣରୁ ତାଙ୍କ କାବ୍ୟରେ ଟ୍ରାଜେଡ଼ିର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ । 'ନନ୍ଦିକେଶ୍ୱରୀ', 'ଚନ୍ଦ୍ରଭାଗା', 'କେଦାରଗୌରୀ' ତଥା 'ପାର୍ବତୀ' ଭଳି ଏକ ଟ୍ରାଜିକ୍ କାବ୍ୟ । ଟ୍ରାଜେଡ଼ିର କାଥାସିସ୍‌କୁ ଏଠାରେ ଚମତ୍କାର ଭାବେ କାବ୍ୟରୂପ ପ୍ରଦାନ କରାଯାଇଛି । ନନ୍ଦିକା ଏକ ଟ୍ରାଜିକ୍ ଚିରିତ୍ର । ଏହା ସ୍ୱୟଂ ହିଁ ରହସ୍ୟମୟ—ଗଭୀର ନିଶାର୍ଦ୍ଧରେ ଛିପି ଛିପି ଜହ୍ନ ଆଲୁଅରେ ଦିଶୁଥିବା ଚିତ୍ର ପ୍ରତିମା ଭଳି ଅବା ଗୋଧୂଳିର ନମ୍ର ଛାୟା ଭଳି ତାଙ୍କର ଅସ୍ତିତ୍ୱ । ଭାଗ୍ୟ ନାରଖାର କରିଦେଇଛି ଏ ସୁନ୍ଦରୀ ଶ୍ୱେତପଦ୍ମାର ଜୀବନକୁ । ବିବର୍ଣ୍ଣ ହୋଇ ଯାଇଛି ଅସ୍ତିତ୍ୱ । ସବୁ କିଛି ସମ୍ଭବ

କୁଆଡ଼େ ପ୍ରେମ ଓ ସଂଗ୍ରାମରେ । ଜୈତ୍ରମଣିର ପ୍ରଭାବରେ ହୁଏତ ଆଗାମୀ ଉଷାରେ ପରାଜିତ ହୋଇଯିବେ ପ୍ରଣୟୀ ଚୋରଗଙ୍ଗ । ପ୍ରାଣପକ୍ଷୀ ବ୍ୟଥିତ, ବିବଶ ହୋଇଯିବାର ଯନ୍ତ୍ରଣାକୁ ଅଙ୍ଗେ ଲିଭାଇଛନ୍ତି ସେ । ଅନ୍ୟ ପକ୍ଷେ ନନ୍ଦିକାଙ୍କୁ ଗଙ୍ଗରାଜଙ୍କ ହସ୍ତରେ ସମର୍ପଣ କରିବାର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଛନ୍ତି ସୁବର୍ଣ୍ଣକେଶରୀ । ଗଡ଼ଚଣ୍ଡୀଙ୍କ କୃପାରୁ ଯୁଦ୍ଧ ଜୟ କରିବାର ଅମୋଘ ଅସ୍ତ୍ର ହାସଲ କରିନେଇଛନ୍ତି କେଶରୀରାଜା । ହୃଦୟରେ ଜାଗିଛି ଦ୍ୱନ୍ଦ୍ୱ ଓ ସଂଘର୍ଷ । ଜଣକର ସ୍ନେହଛାୟାରେ ଲାଳିତ ଶୈଶବ । ଅନ୍ୟ ପକ୍ଷରେ ଅନ୍ୟ ଜଣକର ସ୍ୱପ୍ନରେ ବିଭୋର ଭବିଷ୍ୟତ । ପିତା ପ୍ରଗାଢ଼ ନିଦ୍ରାରେ ଶାୟିତ ଥିବା ଅବସ୍ଥାରେ ପୁତ୍ରୀଙ୍କ ଦ୍ୱାରା ଅଭିନୀତ ହୋଇଯାଇଛି ମଣିହରଣର ନାଟକ । ଏ ଅଂଶଟି ଶ୍ୱେତପଦ୍ମା ନନ୍ଦିକାଙ୍କ ବିତର୍କିତ ଜୀବନର ଦୁଃଖର ଶୀର୍ଷାରୋହଣ ନୁହେଁ ବରଂ ଉପ୍ତ ବୀଜଟିଏ ମାତ୍ର । ମଣିହରଣବେଳେ ହୁଏତ କିୟତକାଳ ପାଇଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଥିବେ ନନ୍ଦିକା । ଦର୍ପଣ ପରି ମସୃଣ କପୋଳରୁ ଝରି ଆସିଥିବ ଅଜସ୍ର ସ୍ୱେଦବିନ୍ଦୁ । ଶିଥିଳ ହୋଇପଡ଼ିଥିବ ଲବଣୀ ପିତୁଳାର ଅଙ୍ଗଲତା । ନିଦ୍ରିତ ପିତାଙ୍କ ଉପରେ ନିବଦ୍ଧ ହୋଇଯାଇଥିବ ପଲକବିହୀନ ଦୃଷ୍ଟି । ମାତ୍ର କ୍ଷଣକର ପାଇଁ ସେ ଦ୍ୱନ୍ଦ୍ୱକୁ ଅତିକ୍ରମ କରି କ୍ଷିପ୍ର ଗତିରେ ମଣିଟିକୁ ନେଇ କକ୍ଷରୁ ନିଷ୍କ୍ରାନ୍ତ ହୋଇଥିବେ ନନ୍ଦିକା । ସେ ବୋଧେ ପୂର୍ଣ୍ଣିମା ତିଥିର ଜହ୍ନ । ନିର୍ଜନ ପରିପାର୍ଶ୍ୱ । ରାଜନବରର ଚନ୍ଦ୍ରଶାଳାପୁର ଅଥବା ପୁଷ୍ପବାଟିକାରେ କ୍ରୀଡ଼ାରତ ନାୟିକାଟିର ଅଦ୍ଭୁତ ଦୁଃସାହସ ସ୍ତବ୍ଧଚକିତ କରିଥିବ ପାରମ୍ପରିକ ପାଠକମାନସକୁ । ସମାଲୋଚନାର କଷଟି ପଥରରେ ନିନ୍ଦିତ ହୋଇଥିବେ କବି । ଅନୂଢ଼ା କନ୍ୟାଟିର ଏକାକୀ ଅଭିସାର ଯେ ପରମ୍ପରାକୁ ଅତିକ୍ରମ କରିଛି । ନିଶାର୍ଦ୍ଧର ସାନ୍ଦ୍ରତମ ମୁହୂର୍ତ୍ତରେ ଏଭଳି ଅଭିସାରିକା ସାଜିଥିଲେ ଶ୍ରୀରାଧା । ପ୍ରଣୟୀଙ୍କ ଆକର୍ଷଣରେ କୁଳମାନ ତୁଚ୍ଛ ମନେ ହୋଇଥିଲା । ଏଭଳି ପ୍ରେମ-ପାଗଳିନୀ ଥିଲେ ମଧ୍ୟ ରୁକ୍ମିଣୀ । ଶ୍ରୀକୃଷ୍ଣଙ୍କ ପାଇଁ ପିତୃ ପରମ୍ପରାକୁ ପ୍ରତ୍ୟାଖ୍ୟାନ କରି ସ୍ୱଇଚ୍ଛାରେ ଯିଏ ପତିଗୃହକୁ ଯାତ୍ରା କରିଥିଲେ । ମାତ୍ର ରୁକ୍ମିଣୀ କି ଶ୍ରୀରାଧା––କେଭେ ଭୂଲୁଣ୍ଠିତା ଶ୍ୱେତପଦ୍ମା ନୁହନ୍ତି । ପ୍ରେମିକ ଅଥବା ପତିଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବାର ଦୁର୍ନିବାର ଯନ୍ତ୍ରଣାରେ ଘାରି ହୋଇ ନାହାନ୍ତି କେହି । ବିରହ ଅଛି, ବିତର୍କ ଅଛି, ମାତ୍ର ପ୍ରାରମ୍ଭରୁ ଭୂଲୁଣ୍ଠିତା କେହି ହୋଇ ନାହାନ୍ତି––ନା ରାଧା ନା ରୁକ୍ମିଣୀ ।

ନନ୍ଦିକା ଏକ ପୌରାଣିକ ଚରିତ୍ର ନୁହେଁ । ଇତିହାସର ଛାୟାରେ ଗଢ଼ା ଏ ବର-ନାରୀଟିର ଦୁଃଖଦ ଜୀବନ ପ୍ରେମାସ୍ପଦର ପ୍ରତ୍ୟାଖ୍ୟାନରେ ତିଳ ତିଳ ହୋଇ ଜର୍ଜ୍ଜରିତ ହୋଇଛି । ଚୋଡ଼ଗଙ୍ଗ ତ ଅନ୍ତର୍ଯ୍ୟାମୀ, ଦିବ୍ୟ ଅଲୌକିକ ପୁରୁଷ ନୁହନ୍ତି




ଯେ ନନ୍ଦିକାଙ୍କ ହୃଦୟବ୍ୟଥା ବିଗଳିତ କରିବ ତାଙ୍କର ମର୍ମସ୍ଥଳୀ । ଯୁଦ୍ଧ କ୍ଷେତ୍ରର ବାସ୍ତବ ସଂଘାତ ଭିତରେ ଲଘୁ କଳ୍ପନାର ସ୍ଥାନ କାହିଁ ? ଚୋଡ଼ଗଙ୍ଗ ତେଣୁ ଆଗାମୀ ପ୍ରଭାତର ଯୁଦ୍ଧ ଯୋଜନାରେ ବ୍ୟସ୍ତ ବିବ୍ରତ ହୋଇ ପଦଚାରଣା କରିବା ବେଳେ କମ୍ପିତ ପଦପାତରେ ନନ୍ଦିକା ପଶି ଆସୁଥିବେ ଶିବିରର ଦ୍ୱାର ଦେଶକୁ । ଶୀତଳ ପବନରେ ହିଲ୍ଲୋଳିତ ହେଉଥିବ ଗଛଲତାର ପତ୍ରରାଜି । ଚକ୍ରବାକ ଦମ୍ପତିଙ୍କ ବିରହ ବେଦନାରେ ଦଗ୍ଧ ହେଉଥିବ ବନଭୂମି । ନିଶାଚର ପକ୍ଷୀମାନଙ୍କର ବିକଟ ଧ୍ୱନି ଶୁଭୁଥିବ । ଏଇ ଧ୍ୱନି ପ୍ରତି ଉଦାସୀନ ରହିଥିବେ ରାଜନନ୍ଦିନୀ । ଏଇ ହୁଏତ ସାକ୍ଷାତ ହୋଇଯିବ ପ୍ରଣୟୀଙ୍କ ସହ । ଚକ୍ଷୁର ପଲକପାତରେ ହିଁ ହୃଦୟ ବିନିମୟ କାର୍ଯ୍ୟଟି ସମ୍ପନ୍ନ ହୋଇଯିବ । ଗଙ୍ଗଶିଉଳି ଫୁଲଟିଏ ଭୂଇଁରେ ଲୋଟିପଡ଼ିବାଭଳି ସେ ନିଜକୁ ସମର୍ପଣ କରିଦେବେ ପ୍ରିୟତମଙ୍କ ଚରଣ ତଳେ ? ମାତ୍ର ପ୍ରତ୍ୟାଖ୍ୟାନର ଯନ୍ତ୍ରଣା ହିଁ ଥିଲା ନନ୍ଦିକାଙ୍କ ଲଲାଟ ଲିଖନ । ନନ୍ଦିକାଙ୍କ ପ୍ରସାରିତ ଅଞ୍ଜଳିକୁ ଫେରାଇ ଦେଇଛନ୍ତି ଚୋଡ଼ଗଙ୍ଗ ନିର୍ବିବାଦରେ । ରିକ୍ତ ହସ୍ତରେ, ଶୂନ୍ୟ ହୃଦୟରେ ଫେରି ଆସୁଥିଲେ ସେ ପିତାଙ୍କ ପ୍ରାସାଦକୁ—ଯେଉଁ ପ୍ରାସାଦରେ କନ୍ୟାର ପୂର୍ବ ମର୍ଯ୍ୟାଦା ସେ ହୁଏତ ଆଉ ଫେରି ପାଇବେ ନାହିଁ । ସ୍ୱପ୍ନର ଉତ୍ତାଳ ସ୍ରୋତକୁ ଅସ୍ୱୀକାର କରିଛି ଜୀବନର ରୂଢ଼ ବାସ୍ତବତା । ଚିର ନିବେଦିତା ପ୍ରେମିକାର ପ୍ରଣୟ ପ୍ରଦୀପ ନିର୍ବାପିତ ହୋଇ ଯାଇଛି ମରଣର କୃଷ୍ଣଛାୟାରେ । ବ୍ୟର୍ଥ ହୋଇଯାଇଛି ଜୀବନର ସକଳ ଆୟୋଜନ । ଦେବତାର ସିଂହଦ୍ୱାର ନିକଟରୁ ଫେରି ଆସିଛି ଦୂତ । ଯେଉଁ ସନ୍ଦେଶ ପାଇଁ ପ୍ରତୀକ୍ଷା ଥିଲା ନନ୍ଦିକାଙ୍କର ତାହା ବଜ୍ରାହତ ହୋଇଛି । ଯା'ପରେ ଋତୁଚକ୍ରର ଆବର୍ତ୍ତନରେ ବସନ୍ତର ଯେଉଁ ମଳୟାନୀଳ ପ୍ରବାହିତ ହେବ ତାହା ତ ଘେନି ଆସିବ ବିଷାଦର ଅଜସ୍ର ଦୀର୍ଘଶ୍ୱାସ । ଦକ୍ଷିଣାର ପ୍ରବାହ ଉପହାସ କରିବ ପ୍ରେମିକାର ପ୍ରାଣପୁର ।

ଏମିତି ବହୁ ଜୀବନ ଥାଏ ବ୍ୟର୍ଥତା ହୋଇଯାଏ ଯାହାର ପାଦଟୀକା । ଚନ୍ଦ୍ରଭାଗା,କୌଶଲ୍ୟା, ପାର୍ବତୀଙ୍କ ପରି ବ୍ୟର୍ଥ ମଧ୍ୟ ହୋଇଯାଇଛି ନନ୍ଦିକାଙ୍କର ଜୀବନ । ସ୍ୱପ୍ନ ପରିଣତ ହୋଇଛି ପରାଜୟରେ, ଶବ୍ଦର ଶକ୍ତି ନଥାଏ ଯେଉଁ ବେଦନାର ପ୍ରକାଶ ପାଇଁ ସେଇ ଅପ୍ରକାଶ୍ୟ ଦୁଃଖ,ବେଦନା,ଜ୍ୱାଳା ଓ ଯନ୍ତ୍ରଣାରେ ଚନ୍ଦ୍ରଭାଗା,କୌଶଲ୍ୟା ଓ ପାର୍ବତୀଙ୍କ ପରି ଅଧୀର ହେଉଥିଲେ ନନ୍ଦିକା । ଜୀବନ ପାଇଁ ମୋହ ନଥିଲା । ରାଜ ପ୍ରାସାଦରେ ଭୂମିଲଗ୍ନା ହେବାର ଅବ୍ୟବହିତ ପୂର୍ବରୁ ହିଁ ପରାଜୟର ଅଗ୍ନିଦାହରେ ପ୍ରଜ୍ଜ୍ୱଳିତା ନନ୍ଦିକା ଜୈତ୍ରମଣିକୁ ଚୁମ୍ବନ କରିଥିଲେ । ଶିବିକା ମଧ୍ୟରେ ଏକାକିନୀ ରାଜକନ୍ୟା ଏକ ଅନାଘ୍ରାତା ଶ୍ୱେତପଦ୍ମା ଭଳି ଚରମ ନିଃସଙ୍ଗତା, ଗ୍ଲାନିବୋଧ ଓ ସ୍ମୃତିର ମର୍ମଦାହୀ ବେଦନା ଭିତରେ ଆତ୍ମାହୁତି ଦେଲେ ।

ପାର୍ବତୀ, କୌଶଲ୍ୟା, ଚନ୍ଦ୍ରଭାଗା, ଗୌରୀ, ଉଷାଙ୍କ ଭଳି ନନ୍ଦିକା ଏକ ଅସମାପିକା ଜୀବନଗାଥା । ବିଶେଷତଃ ନନ୍ଦିକା—ଚରମ ପରାଜୟ ଓ ଅପମାନର ଅଶ୍ଳୀଳ ଇତିହାସ ପରେ ପ୍ରଣୟୀଙ୍କୁ ଉଦାର ହୃଦୟରେ କ୍ଷମା ଦେବାର ଏକ ସ୍ନେହସଜଳ ଆଲେଖ୍ୟ । ପ୍ରତ୍ୟାଖ୍ୟାନ ଓ ପରାଜୟ, ଏ ପ୍ରେମର ପୂଜାରିଣୀଙ୍କୁ କ୍ଷତବିକ୍ଷତ କରିଛି ସତ, ମାତ୍ର ପ୍ରତିଶୋଧର ବହ୍ନିରେ ପ୍ରଜ୍ୱଳିତ କରି ନାହିଁ । ଶେଷ ପର୍ଯ୍ୟନ୍ତ କ୍ଷମା କରିଛନ୍ତି ନନ୍ଦିକା, ଚୋରଗଙ୍ଗଙ୍କୁ । ଏହି ମର୍ମରେ ଲିଖିତ ହୋଇଛି ରାଜାଙ୍କ ନିକଟକୁ ତାଙ୍କର ଶେଷଲିପି । ଜୀବନର ଦାରୁଣ ବାସ୍ତବତା ନିକଟରେ ପରାଜିତ ହୋଇ ମଧ୍ୟ ରାଧାନାଥଙ୍କ ଶ୍ୱେତପଦ୍ମା ନାୟିକାଗଣ ପ୍ରେମ ଓ ସଂଗ୍ରାମର ପରିଧିରେ ହୋଇଛନ୍ତି ଚିର ବିଜୟିନୀ ।

ଜୀବନର ବହୁ ଆଶା ହୁଏତ ଅପୂର୍ଣ୍ଣ ରହେ । ଆଶାର ଅମାପ ଶ୍ୱେତପଦ୍ମ ପୁଷ୍ପିତ ହେବାର ପୂର୍ବ ରାଗରେ ହିଁ ବିତର୍କିତ ଜୀବନ-ପରିଧିରେ ବୃନ୍ତଚ୍ୟୁତ ହୋଇଯାନ୍ତି । ଇତିହାସର ବୁକୁରେ ଏ ଚରିତ୍ରଗୁଡ଼ିକର ସ୍ଥିତି ସନ୍ଦିଗ୍ଧ ହେଲେ ମଧ୍ୟ ବାସ୍ତବ ଜୀବନାଦର୍ଶ ଦୃଷ୍ଟିରୁ ଏହି ଚରିତ୍ରଗୁଡ଼ିକର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପୁରୁଷର ଇଚ୍ଛା, ଆବେଗ ଓ ନିର୍ଦ୍ଦେଶ ନିକଟରେ ନାରୀର ଆବେଦନ କିଭଳି ଅର୍ଥହୀନ—ତାହା ହିଁ ରାଧାନାଥଙ୍କର ବିତର୍କିତ କାବ୍ୟ-ଚେତନାରେ ପ୍ରତିବିମ୍ବିତ । ବେଦନା, ବିତର୍କ ଓ ଆତ୍ମଦ୍ୱନ୍ଦ୍ୱରେ ଅଭିଷିକ୍ତ ତା'ର ଅନ୍ତଃରୂପ । ଚିରନ୍ତନ କାଳ ଉପରେ ବିଶ୍ୱାସ ରଖିଥିବା କାବ୍ୟମୋଦୀମାନଙ୍କ ହୃଦୟବେଦୀରେ ଚିରଞ୍ଜୀବୀ ରହିଥିବ ରାଧାନାଥୀ କାବ୍ୟଧାରା । ଶ୍ୱେତପଦ୍ମା ତାଙ୍କର ନାରୀସତ୍ତା ଏକ ମୃତ୍ୟୁହୀନ ଐଶ୍ୱର୍ଯ୍ୟ ନେଇ ଅବତରଣ କରୁଥିବ ବହୁ କଳାକାରଙ୍କ ସୃଷ୍ଟିଲୋକରେ । ଏହା ହିଁ ରାଧାନାଥଙ୍କ ଶିଳ୍ପୀସତ୍ତାର ଅମର ଐତିହ୍ୟ ଓ ଶାଶ୍ୱତ ଅଭିବ୍ୟକ୍ତି ।



# ଯୁଗସ୍ରଷ୍ଟା ରାଧାନାଥ

ଡଃ ଚିତ୍ତରଞ୍ଜନ ମହାନ୍ତି

ଯେଦିନ ବାଲେଶ୍ୱର କଚେରୀଠାରେ ଚହଳ ପଡ଼ିଛି । ଏଣ୍ଟ୍ରାନ୍ସ ପରୀକ୍ଷାରେ ସୁନ୍ଦରାବାବୁଙ୍କ ଧଡ଼ିଆ ପୁଅଟା ପାଶ୍ କରିଛି । ଏଥିରୁ ଜଣାଗଲା ଏଣ୍ଟ୍ରାନ୍ସ ପରୀକ୍ଷାଟା ପାଶ୍ କରିବା ଗୋଟା କିଛି ବଡ଼ କଥା ନୁହେଁ । "ଶୂରଭୂମି" ସୋରୋରେ କେଦାରପୁର ଗାଁର ସୁନ୍ଦର ନାରାୟଣ ରାୟଙ୍କ ପୁଅ ରାଧାନାଥ । ମାତା ତାରିଣୀ ଦେବୀ ରାଧାନାଥଙ୍କ ବାଲ୍ୟକାଳରୁ ଇହଧାମ ତ୍ୟାଗ କରିଥିଲେ । ପିଲାଦିନୁ ରୁଗ୍ଣ ସ୍ୱାସ୍ଥ୍ୟ ସତ୍ତ୍ୱେ ଛାତ୍ର ହିସାବରେ ମେଧାବୀ ଥିଲେ । ଜ୍ୟାମିତିର କଠିନ ପ୍ରଶ୍ନର ଉତ୍ତର ପାଇଁ ଜିଲ୍ଲା ମାଜିଷ୍ଟ୍ରେଟ୍ ତାଙ୍କୁ ଟ ୨୦/- ପୁରସ୍କାର ଦେଇଥିଲେ । ବହୁ ବାଧାବିଘ୍ନ ମଧ୍ୟରେ କଲିକତା ଯାଇ ପାଠପଢ଼ି ଫେରିଲେ ଓ ବାଲେଶ୍ୱର ଜିଲ୍ଲା ସ୍କୁଲରେ ତୃତୀୟ ଶିକ୍ଷକ ହେଲେ । ୧୮୭୦ ଖ୍ରୀଷ୍ଟାବ୍ଦରେ ରେମୁଣାର ଚନ୍ଦ୍ରମୋହନ ଆଦିତ୍ୟଙ୍କ କନ୍ୟା ପରଶମଣିଙ୍କ ପାଣିଗ୍ରହଣ କଲେ । ଶୂଳରୋଗ (Colic)ର ଉପଶମ ପାଇଁ ଅହିଫେନ (ଅଫିମ) ଓ ନସ୍ୟ (ନାସ) ବ୍ୟବହାର କରୁଥିଲେ । ପୁରୀ ଜିଲ୍ଲା ସ୍କୁଲକୁ ବଦଳି ହେଲେ । ସେଠାରେ ମଧୁସୂଦନ ରାଓ ଥିଲେ ତାଙ୍କର ପ୍ରିୟ ଛାତ୍ର ।

ଶିକ୍ଷକ ପଦରୁ ଡେପୁଟି ଇନସ୍‌ପେକ୍ଟର ଓ ପରେ ଜଏଣ୍ଟ ଇନସ୍‌ପେକ୍ଟର ହେଲେ । ସେହି ସମୟରେ ସ୍କୁଲ ବିଭାଗର ଇନସ୍‌ପେକ୍ଟର ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ପରିଚୟ ଘଟେ । ସେତେବେଳକୁ ରାଧାନାଥଙ୍କର ବଙ୍ଗଳାରେ କବିତାବଳୀ ୧ମ ଓ ୨ୟ ଭାଗ ପ୍ରକାଶ ପାଇଥାଏ । ସେହି ପୁସ୍ତକରେ ମୁଗ୍ଧ ହୋଇ ଭୂଦେବ ଲେଖିଥିଲେ—

॥ ୧ ॥

"ରାଧାନାଥ ଓଡ଼ିଶାର ଗୌରବ କେତନ
ଉଦାର ବିନୀତ ଧୀର ସୁବୋଧ ସୁଜନ
ନାନା ଭାଷା ବିଭୂଷିତ
ନାନା ଶାସ୍ତ୍ର, ସୁପଣ୍ଡିତ
କବିତା କାନନେ ପିକବର ପ୍ରିୟବର
ସ୍ୱର୍ଗୀୟ ସ୍ୱଭାବେ ପୂତ ତୁମରି ଅନ୍ତର ।

॥ ୨ ॥

ସେହି ଦିନ ରାଧାନାଥ, ଅଛି ତୁମ ମନେ,
ଯେଉଁ ଦିନ ପ୍ରିୟବର, ମୋର ସନ୍ନିଧାନେ
ବସିଣ ଅଗାଧ ସୁଖେ
ହରଷିତ ସ୍ମିତମୁଖେ
ଉପେନ୍ଦ୍ର ଭଞ୍ଜଙ୍କ ସେହି କବିତା ସୁନ୍ଦର
ଶୁଣାଇ ମୋହିଣଥିଲ ମୋହର ଅନ୍ତର ।

॥ ୩ ॥

କୋମଳ ମଧୁର ଅର୍ଦ୍ଧ ଅସ୍ଫୁଟ ସୁସ୍ୱରେ;
ଯଉଁ ଗାଥା ଗାଇଥିଲ ଶୁଣି ତା ଅନ୍ତରେ
ଯେ ଭାବ ଜନ୍ମିଲା , ଆହା
ଆଜି ବି ଭୁଲିନି ତାହା,
ଆଜି ଯେହ୍ନେ ରହି ରହି ପଡ଼ଇ ତ ମନେ
ବସିଛ କି ସେହି ଭାବେ ମୋର ସନ୍ନିଧାନେ ।

॥ ୪ ॥

କବିତା ପୀୟୂଷଧାରା ଢାଳିଥିଲ କାନେ,
ସତେ ବା ସ୍ୱର୍ଗୀୟ ପିକ କୁହରେ ନନ୍ଦନେ ।
ତୁମଠି ଉପେନ୍ଦ୍ର ସରି
ଆବିର୍ଭୂତ ହେଲା ପରି
ସେହି ସେ ସରଳଭାବ ପୂର୍ଣ୍ଣିତ ସୁନ୍ଦର
କବିତାର କଥା ଜାଗେ ମନେ ନିରନ୍ତର ।

॥ ୫ ॥

ରାଧାନାଥ, ଓଡ଼ିଶାକୁ କରିଣ ଉଜ୍ଜ୍ୱଳ,
ଦୀର୍ଘଜୀବୀ ହୋଇ ସାଧ ସ୍ୱଦେଶ ମଙ୍ଗଳ
ହେ ସୁଜନ, ପୃଥିବୀରେ
ଥାଅ ସୁଖେ ସ୍ୱଚ୍ଛନ୍ଦରେ
ସଂସାରର ବାଧା ବିଘ୍ନ ଅତିକ୍ରମ କର
ବଡ଼ ହୁଅ ପ୍ରିୟବର, ଆଶୀର୍ବାଦ ମୋର ।

୧୮୭୯ ଜୁନ୍ ମାସ ୪ ତାରିଖରେ ଏଜୁକେଶନ ଗେଜେଟ୍‌ରେ ପ୍ରକାଶିତ ତାତ୍‌କାଳିକ ସ୍କୁଲ ଇନସ୍‌ପେକ୍ଟର ଭୂଦେବ ମୁଖୋପାଧ୍ୟାୟଙ୍କର କବି ରାଧାନାଥଙ୍କ

ପ୍ରତି ପ୍ରଶଂସାପୂର୍ଣ୍ଣ ଆଶୀର୍ବାଦ ସୂଚକ ସେହି ବଙ୍ଗଳା କବିତାର ଏହା ହେଉଛି ଓଡ଼ିଆ ଅନୁବାଦ । ଏହି କବିତାଟି ଅଳ୍ପ ଦିନ ପରେ ବାଲେଶ୍ୱର ସମ୍ବାଦ ବାହିକାରେ ମଧ୍ୟ ପ୍ରକାଶ ପାଇଥିଲା ।

୧୮୬୮ ରେ ପ୍ରକାଶିତ କବିତାବଳୀ ୧ମ ଭାଗ ଓ ୧୮୭୦ରେ ଏହାର ଦ୍ୱିତୀୟ ଭାଗ ପ୍ରକାଶ ପରେ ଓଡ଼ିଶାର ଜଏଣ୍ଟ ଇନସ୍‌ପେକ୍ଟର ରାଧାନାଥ ବଙ୍ଗଳାର ସ୍ୱଲିଖିତ 'ଲେଖାବଳୀ' କାବ୍ୟଟିକୁ ପଢ଼ାଇବା ଅବକାଶରେ ରଚନାର ଉତ୍କର୍ଷରେ ଅଭିଭୂତ ହୋଇ ଭୂଦେବବାବୁ ତାଙ୍କୁ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିବା ପାଇଁ ପରାମର୍ଶ ଦେଇଥିଲେ । ଭୂଦେବବାବୁଙ୍କ ଉତ୍ସାହ ଓ ପ୍ରେରଣା ହିଁ ରାଧାନାଥଙ୍କୁ ଓଡ଼ିଆରେ କାବ୍ୟ କବିତା ସୃଷ୍ଟି ପାଇଁ ଅନୁପ୍ରାଣିତ କରିଥିଲା ଓ ଯୁଗସ୍ରଷ୍ଟାର ଗୌରବରେ ବିମଣ୍ଡିତ କଲା ।

୧୮୭୩ ରେ 'ଉତ୍କଳ ଦର୍ପଣ'ରେ ରାଧାନାଥଙ୍କର 'ମେଘଦୂତ', 'ଇତାଲୀୟ ଯୁବା' ଓ 'ବିବେକୀ' ଏବଂ ୧୮୭୬ରେ 'କବିତାବଳୀ'ରେ 'ପବନ' ଓ 'ବେଣୀ ସଂହାର' ପ୍ରକାଶ ପାଇଥିଲା । ବାମଣ୍ଡା ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଅଧିନାୟକତ୍ୱରେ ପ୍ରକାଶିତ ଓ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦିତ 'ଉତ୍କଳ ହିତୈଷିଣୀ' ସାପ୍ତାହିକ ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶ ପାଇଥିଲା 'ଯଯାତିକେଶରୀ' ଓ 'ପାର୍ବତୀ' । ବୈକୁଣ୍ଠନାଥ ଦେଙ୍କ ପ୍ରକାଶିତ କବିତାବଳୀରେ 'ବେଣୀ ସଂହାର', 'ଶିବାଜୀଙ୍କ ଉତ୍ସାହବାଣୀ', 'ଭାରତେଶ୍ୱରୀ ଭିକ୍ଟୋରିଆ' କବିତା ସ୍ଥାନ ପାଇଥିଲା । ୧୮୮୫ ଖ୍ରୀଷ୍ଟାବ୍ଦରେ 'କେଦାରଗୌରୀ' ଏକ ପଇସା ମୂଲ୍ୟରେ 'ଦେ' ପ୍ରେସ୍‌ରୁ ପ୍ରକାଶ ଲାଭକଲା । ୧୮୮୬ରେ 'ଚନ୍ଦ୍ରଭାଗା', ୧୮୮୭ରେ 'ନନ୍ଦିକେଶ୍ୱରୀ', 'ଉଷା', ୧୮୯୧ରେ 'ପାର୍ବତୀ', ୧୮୯୨ରେ 'ଉତ୍କଳପ୍ରଭା' ପତ୍ରିକାରେ 'ଚିଲିକା' ପ୍ରକାଶ ପାଇଥିଲା ।

୧୮୯୨ରେ ରାଧାନାଥ ସ୍କୁଲ ଇନସ୍‌ପେକ୍ଟର ହେଲେ । ମୟୂରଭଞ୍ଜର ଗୁଣଗ୍ରାହୀ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ବାରିପଦାରୁ ପ୍ରକାଶିତ ସାହିତ୍ୟ ପତ୍ର 'ଉତ୍କଳପ୍ରଭା'ରେ ପ୍ରକାଶିତ 'ଚିଲିକା' ଓ 'ମହାଯାତ୍ରା' ପାଇଁ ରାଧାନାଥଙ୍କୁ ଦୁଇଶତ ଟଙ୍କା ପୁରସ୍କାର ଦେଇ ଉତ୍ସାହିତ କରିଥିଲେ । ୧୮୯୪ରେ 'ଦରବାର', ୧୮୯୮ରେ 'ଯଯାତିକେଶରୀ', ୧୯୦୦ରେ 'ଦଶରଥଙ୍କ ମୃଗୟା' ୧୯୦୮ରେ 'ଭାରତ ଗୀତିକା' ପ୍ରକାଶ ପାଇଥିଲା ।

ଏତଦ୍‌ବ୍ୟତୀତ 'ଉର୍ବଶୀ' (୧୮୯୫ ମାର୍ଚ୍ଚ), 'ତିନିବନ୍ଧୁ' (୧୮୯୮ ଏପ୍ରିଲ୍), 'ଦଶରଥ ବିୟୋଗ' (୧୯୦୧ ଫେବୃୟାରୀ), 'ବାଣହରଣ' (୧୯୦୪ ମେ), 'ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ' (୧୯୦୪ ଜୁନ୍), 'ସାବିତ୍ରୀଚରିତ' (୧୯୦୬ ନଭେମ୍ବର) ଆଦି ପ୍ରକାଶିତ ହୋଇଥିଲା ।

ରାଧାନାଥଙ୍କ ସମୟରେ ଓଡ଼ିଶା କେବଳ କଟକ, ପୁରୀ ଓ ବାଲେଶ୍ୱର ଜିଲା ମଧ୍ୟରେ ସୀମିତ ଥିବାରୁ ଇନସପେକ୍ଟର ଭୂଦେବବାବୁଙ୍କ ସହିତ ରାଧାନାଥ ୧୮୭୯ ମାର୍ଚ୍ଚ ମାସରେ ଓଡ଼ିଶାର ସ୍କୁଲ ପରିଦର୍ଶନ କରିବା ପାଇଁ କଟକରୁ ବାହାରି ବାଲିଅନ୍ତା ଚଟି, ଭୁବନେଶ୍ୱର, ଶରଦେଈପୁର ଚଟି, ପୁରୀ, କଟକ, ବାଲେଶ୍ୱର ଦର୍ପଣୀ ରାଜ୍ୟ ଭ୍ରମଣ କରି ହୁଗୁଳୀ ଫେରିଥିଲେ । ଦ୍ୱିତୀୟଥର ଗସ୍ତବେଳେ କୋଣାର୍କ ଯାଇଥିଲେ । ରାଧାନାଥଙ୍କ ରଚନାର ପ୍ରଶଂସା କରି ଭୂଦେବବାବୁ ରାଧାନାଥଙ୍କୁ ପୁରୁଣା ବିଷୟରେ ଶକ୍ତ ଶ୍ରମ ନ କରି ପୁରୁଣା ବିଷୟ ବସ୍ତୁକୁ ଉପଜୀବ୍ୟ କରି ତା ଉପରେ ନୂତନ ଗଠନର ପ୍ରୟାସ କରିବାକୁ ଉପଦେଶ ଦେଇଥିଲେ । ସେତେବେଳେ କିମ୍ବଦନ୍ତୀ ଭାବରେ ପ୍ରଚଳିତ ଥିବା ଦର୍ପଣୀ ରାଜକନ୍ୟାଙ୍କର ଉତ୍କଳ ଯୁବରାଜଙ୍କୁ ପ୍ରେମଭିକ୍ଷା ଓ ପ୍ରତ୍ୟାଖ୍ୟାତା ହେବାରୁ ମୃତ୍ୟୁ ଆଖ୍ୟାନକୁ 'ନନ୍ଦିକେଶ୍ୱରୀ' ମଧ୍ୟରେ ପୁନରୁଜ୍ଜୀବିତ କଲେ ।

ଋଗ୍‌ବେଦରେ ୧ମ ଅଷ୍ଟକ ଷଷ୍ଠ ଅଧ୍ୟାୟ ୨୦,୨୧ ଓ ୨୨ ମନ୍ତ୍ର ତ୍ରୟରେ ଉଷାଙ୍କର ସ୍ତୁତି କଥିତ । ଋଗ୍‌ବେଦରେ ଏହି ସ୍ଥଳରେ ନରମେଧ ଯଜ୍ଞର ସୂଚନା ରହିଛି । ଯୂପରେ ଆବଦ୍ଧ ଥିବା ଅଜୀଗର୍ତ୍ତ ନନ୍ଦନ ଶୁନଃଶେପଃ ଆପଣାର ବନ୍ଧନରୁ ମୁକ୍ତି ପାଇଁ ପ୍ରଜାପତି, ଅଗ୍ନି, ସବିତା, ବରୁଣ, ଅଗ୍ନି, ବିଶ୍ୱଦେବ, ଇନ୍ଦ୍ର, ଅଶ୍ୱିନୀକୁମାର ଦ୍ୱୟ ଓ ଉଷାଦେବୀଙ୍କୁ ସ୍ତୁତି କରିବାରୁ ପାଶମୁକ୍ତ ହୋଇଥିଲେ । ଉଷାଦେବୀଙ୍କୁ ପ୍ରାର୍ଥନା କଲେ, "ହେ ଉଷାକାଳାଭିମାନିନୀ ଦେବତା ! ତୁମ୍ଭେ ସଗୁଣରହିତ ସ୍ତୁତିପ୍ରିୟ । ତୁମେ ଆକାଶ ଦୁହିତା । ଅନ୍ଧକାର ଦୂରକରି ପ୍ରାଣୀମାନଙ୍କ ଦ୍ୱାରା ଦୃଷ୍ଟ ହୁଅ । ତୁମ୍ଭେ ନିତ୍ୟଯୌବନଯୁକ୍ତା ଶ୍ୱେତବସନା । ସମସ୍ତ ପୃଥିବୀ ଧନର ଈଶ୍ୱରୀ । ସୂର୍ଯ୍ୟଙ୍କର ଉଦୟ ପୂର୍ବରେ ପୂର୍ବ ଦିଗରେ ପ୍ରକାଶମାନା । ସୂର୍ଯ୍ୟ ଉଦ୍ଧତ ହୋଇ ଉଷାଙ୍କ ପଶ୍ଚାତ୍ ଅନୁଗମନ କରିଥାନ୍ତି ।

ଲାବଣ୍ୟମୟୀ ହାବଭାବଯୁକ୍ତ କାନ୍ତାର ପଶ୍ଚାଭାଗରେ କାନ୍ତ ବ୍ୟଗ୍ର ହୋଇ ଧାବନ କରିବା ଏବଂ କାନ୍ତାର ଲୀଳାଯୁକ୍ତ ପଶ୍ଚାତ୍ ଦୃଷ୍ଟିପାତରେ କାନ୍ତାର ମନୋହରଣ କରି ଅଗ୍ରଦ୍ଧାବନ ଆଦି ଋଗ୍‌ବେଦରେ ବର୍ଣ୍ଣିତ । କବିବର ରାଧାନାଥ 'ଚନ୍ଦ୍ରଭାଗା' କାବ୍ୟରେ ଛଦ୍ମବେଶୀ ସୂର୍ଯ୍ୟଦେବଙ୍କ ଚନ୍ଦ୍ରଭାଗାର ପଶ୍ଚାଦ୍ଧାବନ ବର୍ଣ୍ଣନା ଉଷାଙ୍କ ପଶ୍ଚାତ୍‌ରେ ସୂର୍ଯ୍ୟଙ୍କ ଧାବନର ଅନୁରୂପ । ଭୂଦେବ ବାବୁଙ୍କ ପରାମର୍ଶ ରାଧାନାଥଙ୍କ ଅବଚେତନ ମାନସରେ ବିସ୍ତାର କରିଥିବାର ପ୍ରତିକ୍ରିୟା ରାଧାନାଥଙ୍କ ଲିଖିତ ପ୍ରଥମ ପାଞ୍ଚଟି କାବ୍ୟ—କେଦାରଗୌରୀ (୧୮୮୫), ଚନ୍ଦ୍ରଭାଗା (୧୮୮୬), ନନ୍ଦିକେଶ୍ୱରୀ (୧୮୮୭), ଉଷା (୧୮୮୮) ଓ ପାର୍ବତୀ (୧୮୯୧) ଯଥାକ୍ରମେ ଭୁବନେଶ୍ୱର, କୋଣାର୍କ, କଟକ, ବାଲେଶ୍ୱର ଓ ପୁରୀର ପୃଷ୍ଠଭୂମି ଉପରେ ଲିଖିତ ହୋଇଅଛି ।

ଭୂଦେବବାବୁଙ୍କ ନୂଆ ଗଢ଼ିବା ପରାମର୍ଶର ଉତ୍ତରରେ ରାଧାନାଥ କହିଥିଲେ ନୂଆ ଘଟଣା କଳ୍ପନାରୁ ଉଦ୍ଭାବନ କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ ।'' କିନ୍ତୁ ଉପରୋକ୍ତ କାବ୍ୟମାନଙ୍କର ଉପାଦାନ ବିଦେଶୀ ସାହିତ୍ୟରୁ ଆହରଣ କରି ତହିଁରେ କଳ୍ପନାର ପୁଟ ଦେଇ ସ୍ଥାନୀୟ ପାଣିପାଗର ଭିତ୍ତିରେ ଏପରି ପରିବେଶ ସୃଷ୍ଟି କରିଛନ୍ତି ଯେ ମନେହୁଏ ସତେ ଯେପରି ଏ ଘଟଣାଗୁଡ଼ିକ ଉପର୍ଯ୍ୟୁକ୍ତ ପୃଷ୍ଠଭୂମିମାନଙ୍କରେଘଟି ଯାଇଥିଲା ।

ଓଭିଡ୍‌ଙ୍କ 'ମେଟାମରଫୋସିସ୍', ସେକ୍ସପିୟରଙ୍କ 'ମିଡ୍‌ସମର ନାଇଟ୍‌ସ୍ ଡ୍ରିମ୍'ର ୫ମ ଅଙ୍କ ଓ ୧ମ ଦୃଶ୍ୟରେ ବର୍ଣ୍ଣିତ 'ପିରାମିଡ୍ ଆଣ୍ଡ ଥିସ୍‌ବେ' ଏବଂ 'ଟୁଏଲ୍‌ଫଥ୍ ନାଇଟ୍'ର ମଣ୍ଟେଗୁ ଓ କାପୁରେଟ୍‌ଙ୍କ ପରିବାର ଆଦିରୁ ସଂଗୃହୀତ ଉପାଦାନରେ ଗଢ଼ା 'କେଦାରଗୌରୀ' ପାଠକଙ୍କ ମନରେ ଏପରି ରେଖାପାତ କରିଛି ଯେ, ତାହା ଏକ ବାସ୍ତବ କାହାଣୀ ବୋଲି ତତ୍କାଳୀନ ଭୁବନେଶ୍ୱରର ପଣ୍ଡାମାନେ ଭକ୍ତଙ୍କ ଆଗରେ କହି ବସୁଥିଲେ । ମାତ୍ର ଆଜିର ଭୁବନେଶ୍ୱରର ପରିବର୍ତ୍ତିତ ପରିସ୍ଥିତି ଆଉ ଏବେ ଏକାମ୍ର କାନନର କାନନତ୍ୱକୁ ବିଶ୍ୱାସଯୋଗ୍ୟ କରୁନାହିଁ ।

ଓଭିଡ୍‌ଙ୍କ ଆପୋଲୋ ଓ ଡାଫ୍‌ନିର ଉପାଦାନରେ ଗଢ଼ା ହୋଇଛି 'ଚନ୍ଦ୍ରଭାଗା', ସେହିପରି ବାଇରନ୍‌ଙ୍କ 'ସିଜ୍ ଅଫ୍ କରିନ୍ଥ'ରୁ କଥାବସ୍ତୁ ଆହରଣ କରି ନନ୍ଦିକେଶ୍ୱରୀ, ଉଇଲିୟମ୍ ମରିସ୍‌ଙ୍କ 'ଆଟଲାଣ୍ଟା ରେସ୍'ରୁ 'ଉଷା' ଓ ଏସ୍‌କ୍ୟୁଲସଙ୍କ ଆଗାମେନନ୍‌ର ଅବଲମ୍ବନରେ ପିତା ଓ ପୁତ୍ରୀଙ୍କ ପ୍ରେମ ସମ୍ବଳିତ 'ପାର୍ବତୀ' କାବ୍ୟ ରଚନା କରିଛନ୍ତି । ପ୍ରତ୍ୟେକଟି କାବ୍ୟରେ କାବ୍ୟିକ ଚାତୁର୍ଯ୍ୟ, ବର୍ଣ୍ଣନା ନୈପୁଣ୍ୟ ଓ ନୈସର୍ଗିକ ପ୍ରକୃତି ତଥା ଚରିତ୍ରର ସ୍ୱାଭାବିକ ଚିତ୍ରଣ ଦ୍ୱାରା ପାଠକ ମନକୁ ଏକ ସ୍ୱଭାବ ସୁଲଭ ପରିବେଶ ମଧ୍ୟକୁ ଆକୃଷ୍ଟ କରିପାରିଛନ୍ତି । ଏ ସବୁ ବୈଦେଶିକ ଉପାଦାନ ହେଲେ ହେଁ ଚନ୍ଦ୍ରଭାଗାର ସୂର୍ଯ୍ୟ ଓ ମଦନଙ୍କ କଳହ, ଓଡ଼ିଶାର ପ୍ରସିଦ୍ଧ ଦେବଦେବୀଙ୍କ ବର୍ଣ୍ଣନା, ନନ୍ଦିକେଶ୍ୱରୀରେ ଓଡ଼ିଶାର ବିଭିନ୍ନ ସ୍ଥାନ, ଦୁର୍ଗ ଓ ବୀରତ୍ୱ ପ୍ରଖ୍ୟାପକ ମଞ୍ଜୁଳ ବର୍ଣ୍ଣନା, ଚୁଡ଼ଙ୍ଗଦହ, ସୁବର୍ଣ୍ଣପୁର ଆଦି ସ୍ଥାନମାନଙ୍କର ସୁସଂହତ ସମାବେଶ ଦ୍ୱାରା କାଳ୍ପନିକ ବିଷୟବସ୍ତୁକୁ ବାସ୍ତବତାର ରଙ୍ଗରେ ରଞ୍ଜିତ କରିଛନ୍ତି । ଉଷା କାବ୍ୟରେ ଶୋଣିତପୁର (ସୁନହଟ) ମାଣିକ୍ୟ-ଖମ୍ଭ ପ୍ରଥମାପଦା (ପଡୁଅଁପଦା), ବୁଢ଼ାବଳଙ୍ଗ, ଶୋଣ, ଗଙ୍ଗାହାର ଆଦି ନଦୀ ଓ କାନନକୁ ମିଶ୍ରିତ କରି ସତେ ଯେପରି ଏକ ନିଛକ ମୌଳିକ କାବ୍ୟ ସୌଧ ନିର୍ମାଣ କରିପାରିଛନ୍ତି ।

'ପାର୍ବତୀ କାବ୍ୟରେ ଓଡ଼ିଶାର ବନଗିରି କାନନ ପ୍ରାନ୍ତରକୁ ରୂପାୟିତ କରିଛନ୍ତି । ଗଙ୍ଗେଶ୍ୱର ବା ଚୋଡ଼ଗଙ୍ଗ ଦେବ ଓଡ଼ିଶାକୁ ଜୟକରିବା ପରେ ପୁରୀଠାରେ ମନ୍ଦିର

ପ୍ରତିଷ୍ଠା କରିଥିଲେ । ଐତିହାସିକ ଦୃଷ୍ଟିକୋଣରୁ ଦେଖିଲେ ଜଣାଯାଏ ଚୋଡ଼ଗଙ୍ଗ ସମୟରେ ଏଠାରେ ଜଗନ୍ନାଥ ମନ୍ଦିର ସମ୍ପୂର୍ଣ୍ଣ ହୋଇ ନ ଥିଲା କିମ୍ବା ପୁରୀରେ ରାଜଧାନୀ ପ୍ରତିଷ୍ଠିତ ନଥିଲା । ମାତ୍ର କବିବର ରାଧାନାଥ ଏଗୁଡ଼ିକୁ ଏପରି ଭାବରେ ବର୍ଣ୍ଣନା କରିଛନ୍ତି ଯେ ମନେହୁଏ ତାହା ଯେପରି ତାହାଙ୍କ କଳ୍ପନା ସୃଷ୍ଟ ଏକ ସ୍ୱତନ୍ତ୍ର, ଇତିହାସ ।

ସ୍ୱର୍ଗତ ଜଗବନ୍ଧୁ ସିଂହ ପ୍ରାଚୀନ ଉତ୍କଳ (୧ମ ସଂସ୍କରଣ) ରେ ଯେଉଁ ମାଦଳା ପାଞ୍ଜିର ଉଦ୍ଧାର କରିଛନ୍ତି, ତହିଁରେ (ପୃ.୩୨୬) ଭାନୁ ନରସିଂହ (କବି) କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଳାଇବା ଉଲ୍ଲେଖ ରହିଛି । ତେଣୁ ଗଙ୍ଗେଶ୍ୱରଙ୍କ କନ୍ୟା କୌଶଲ୍ୟାର ପାପର ପ୍ରାୟଶ୍ଚିତ୍ତ ପାଇଁ କୌଶଲ୍ୟାଗଙ୍ଗ ସରୋବର ଖନନ କଥା ଯେ ଅମୂଳକ ତାହା ପ୍ରମାଣିତ ହୋଇଥାଏ ।

ଦାଶଗୋବା ତାମ୍ରଶାସନରେ ଚୋଡ଼ଗଙ୍ଗଙ୍କ ଦ୍ୱାରା ବିଦ୍ୟମାନ ଶ୍ରୀଜଗନ୍ନାଥ ମନ୍ଦିରର ଶୁଭାରମ୍ଭ ହୋଇଥିବା ବୋଧହୁଏ । ତେଣୁ ନୀଳାଚଳର ଶ୍ରୀମନ୍ଦିରରୁ ସୁଦର୍ଶନଙ୍କ ପ୍ରେରଣାରେ ରାଣୀ ପାର୍ବତୀ କନ୍ୟା କୌଶଲ୍ୟା ଓ ବଧୂ ହେମପୁର ଜେମା ଅନ୍ନପୂର୍ଣ୍ଣାଙ୍କ ପ୍ରତି କାମାସକ୍ତ ସ୍ୱାମୀ ଗଙ୍ଗେଶ୍ୱରଙ୍କୁ କଟାରୀରେ ନିଧନ କରିବା ସେହିପରି କପୋଳକଳ୍ପିତ ।

କାବ୍ୟଗୁଡ଼ିକର ଉପସ୍ଥାପନାରେ କବିଙ୍କର ବିଭିନ୍ନ ରସର ଅବତାରଣା, ଚରିତ ଚିତ୍ରଣ, ବିଭିନ୍ନ ପରିସ୍ଥିତି ଭିତ୍ତିରେ ବିଭିନ୍ନ ଭାବରେ ପ୍ରଖ୍ୟାପକ, ଯତିପାତ ଉପରେ ପ୍ରାଧାନ୍ୟ ସ୍ଥାପନ, ଛନ୍ଦର ପ୍ରବହମାନ ଗତି, ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ, ଉପଧା ମିଳନ, କବିତାର ଭାଷା ପରିପାଟୀ, ସନେଟ୍, ମହାକାବ୍ୟର ସୃଷ୍ଟି ଆଦର୍ଶ, ଆଧୁନିକ କବିତାର ଭିତ୍ତି ସ୍ଥାପନ କରି ରାଧାନାଥ ବହୁଗୁଣୀ, ମାନୀ, ରସପିପାସୁ ଓ ବିଦଗ୍ଧ ପାଠକଙ୍କ ଚିତ୍ତ ଜୟ କରିଥିଲେ ।

ଏଣୁ ୧୮୯୩ ଅଗଷ୍ଟ ତା ୧୬ ରିଖରେ ନୀତି ଓ ରୁଚିର ଦ୍ୱାହି ଦେଇ ପ୍ରକାଶିତ 'ଇନ୍ଦ୍ରଧନୁ' ସାହିତ୍ୟ ପତ୍ରରେ ରାଧାନାଥଙ୍କୁ ସମାଲୋଚନା କରାଯିବାରୁ ସେହିବର୍ଷ ସେପ୍ଟେମ୍ବର ମାସରେ ବାମଣ୍ଡାରୁ 'ବିଜୁଳି' ନାମକ ପତ୍ରିକା ପ୍ରକାଶିତ ହୋଇ ରାଧାନାଥଙ୍କ ସପକ୍ଷରେ ଲେଖାମାନ ପ୍ରକାଶିତ ହେବାକୁ ଲାଗିଲା । ଇନ୍ଦ୍ରଧନୁରେ ଉପେନ୍ଦ୍ର ଭଞ୍ଜଙ୍କ ସପକ୍ଷରେ ଓ ବିଜୁଳିରେ ରାଧାନାଥଙ୍କ ସପକ୍ଷରେ ଉକ୍ତି ଓ ଯୁକ୍ତିମାନ ପ୍ରକାଶିତ ହୋଇ ଏକ ବିବଦମାନ ପରିସ୍ଥିତି ସୃଷ୍ଟିହେଲା । ଏହି ବିବାଦର ସମାଧାନ ନିମନ୍ତେ ରାଧାନାଥ ସ୍ୱଭାବ ସୁଲଭ ବିନୀତ ଢଙ୍ଗରେ ପତ୍ର ଲେଖିଲେ, ''ଭଞ୍ଜ କବିଙ୍କୁ ମୁଁ ମୋହର ଏକତର ଶିକ୍ଷାଗୁରୁ ଜ୍ଞାନକରି ଆବାଲ୍ୟ

ଭକ୍ତି କରି ଆସୁଛି । X X ମୋହଠାରୁ ଭଞ୍ଜଙ୍କର ଅଧିକ ଅନୁକାରୀ ପଦ୍ୟ ଲେଖକ ଓଡ଼ିଶାରେ ବୋଧହୁଏ ଅଳ୍ପ ବାହାରିବେ ।''

୧୮୯୨ 'ଉତ୍କଳ ପ୍ରଭାରେ, ପ୍ରକାଶ ପାଇଥିବା 'ଚିଲିକା'ରେ ଉଲ୍ଲେଖ କରିଥିଲେ,

ଭାଗ୍ୟବାନ ବେନି ବାଣୀଙ୍କ କୁମର—
କବି ବଳଦେବ, ଭଞ୍ଜ ବୀରବର
କାହିଁ ସେହି, କାହିଁ ମୁହିଁ ଅକିଞ୍ଚନ ?
ଦେଖୁଥିଲି ସିନା ଜାଗ୍ରତ ସ୍ୱପନ ।'

ତା, ଛଡ଼ା ଭୂଦେବବାବୁଙ୍କ ଲିଖିତ କବିତାରୁ ଜଣାଯାଏ ରାଧାନାଥ ଭୂଦେବ ବାବୁଙ୍କୁ ଉପେନ୍ଦ୍ରଙ୍କ କବିତା ଶୁଣାଇ ତାଙ୍କୁ ମୁଗ୍ଧ କରିଥିଲେ । ଏଣୁ ସ୍ପଷ୍ଟ ହୁଏ ଯେ ରାଧାନାଥ କେବେହେଲେ ଉପେନ୍ଦ୍ର ଭଞ୍ଜଙ୍କୁ ନ୍ୟୂନ ଜ୍ଞାନ କରି ନାହାନ୍ତି ବା ଅବମାନନା କରିନାହାନ୍ତି ।

ଉତ୍କଳର ଅନ୍ୟତମ ପ୍ରସିଦ୍ଧ କବି ଡକ୍ଟର ମାୟାଧର ମାନସିଂହ କବିବର ରାଧାନାଥଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି,

''ଉତ୍କଳର ନଦୀ, ବଣେ, ହ୍ରଦେ, ଗିରିମାଳେ,
ଯେ ରୂପ ନ ଫୁଟି କାହା ଲେଖନୀର ଗାରେ
ଥିଲା ରହି ଯୁଗ ଯୁଗ ମୌନ ଅଭିମାନେ
ପୂଜା ସେ ପାଇଲା ରାଧାନାଥ ତବ ଗାନେ । (ମାଟିବାଣୀ)

ଚିଲିକାରେ ପ୍ରକୃତିର ତ୍ରିଗୁଣାତ୍ମିକା ରୂପର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କାଳଜୟୀ ଶିରେ ଦେବୀ ହୈମବତୀ ଉତ୍କଳର- ଧ୍ୱଂସକାରୀ ଦୈତ୍ୟ ରକ୍ତବାହୁ ପ୍ରତି ସୁବର୍ଣ୍ଣ ତ୍ରିଶୂଳ ଫିଙ୍ଗିବା, ନୀଳାମ୍ବୁ ସମ୍ରାଟ ତାର ତରୀ ଗ୍ରାସିବାକୁ ଦୌଡ଼ି ଆସିବା ଦୈତ୍ୟ-ଆଖଣ୍ଡଳ ନିଜ ଭୁଜବଳକୁ ବିଫଳ ମଣିଲା । ତାର କୃପାଣ ଶକ୍ତିଠାରୁ ଶକ୍ତିର ଅଧିକ ବଳ ଜାଣି ସେ ଧର୍ମଦ୍ରୋହୀ ତ୍ରାହି ତ୍ରାହି ଡକାପାରି ଅବଶେଷରେ ନିଃଶେଷିତ ହୋଇଗଲା । ଚଉଦ ଭୁବନକୁ ଯେ ଦିନେ କ୍ଷୁଦ୍ର ମଣୁଥିଲା, ଶେଷକୁ ସେ ସାତଚାଖଣ୍ଡର ପାତ୍ର ହେଲା ସିନା ! ଉତ୍କଳର ରକ୍ଷାକାରଣେ ଦୈବୀ ଶକ୍ତି ଯେ ସଦା ସହାୟକ ରାଧାନାଥଙ୍କର ମାନସରେ ଏ ଭାବ ସର୍ବଦା ଆଶାର ସଞ୍ଚାର କରିଛି ।

ପ୍ରକୃତିର ଗନ୍ତାଘର, ଶୋକପାଶୋରା ଅପ୍ସରାଭୁବନ, ଚାରୁଚିତ୍ରମୟୀ ସର୍ବଶୋଭା-ସୀମନ୍ତର ଟୀକା ଚିଲିକା ଯେ ପ୍ରକୃତିର ଚାରୁ-ଆଲେଖ୍ୟ-ଶାଳିକା ଏହା ଏଥିପୂର୍ବରୁ କୌଣସି କବିଙ୍କ ଲେଖନୀରେ ରୂପ ପାଇ ନ ଥିଲା ।

ଚିଲିକାର ତୀର ବନ୍ଧୁର ଲଳିତ । ବାଣୀ ଆବିର୍ଭାବ-ଯୋଗ୍ୟସ୍ଥଳ । ତାହାରି ତୀରରେ କେତେ କେତେ ବୁଧ କବି ଜ୍ଞାନୀ ଆଶ୍ରାନେବେ ଏବଂ ଚିଲିକା ତାଙ୍କର ବିହାର-ତଡ଼ାଗ ହୋଇ ଅଖିଳ-ଜନ-ଅନୁରାଗ ଲାଭ କରିବ ବୋଲି କବିବରଙ୍କର ଆନ୍ତରିକ କାମନା ଓ ଭବିଷ୍ୟବାଣୀ କେତେକାଂଶରେ ସଫଳ ହୋଇଛି । ଏହାର ଉନ୍ନୟନ କରାଗଲେ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଆଗତ ଭ୍ରମଣକାରୀଙ୍କ ଦ୍ଵାରା କୋଳାହଳମୁଖରିତ ହେବା ସଙ୍ଗେ ସଙ୍ଗେ ଅର୍ଥନୈତିକ ମାନଦଣ୍ଡର ବୃଦ୍ଧି ସାଧନ କରିବ । ବିଗତ ଏକ ଶତାବ୍ଦୀ ପୂର୍ବରୁ କବି ଯାହା ଚିନ୍ତା କରିଥିଲେ ତଦ୍ଦ୍ୱାରା ଏ ଦେଶ ପ୍ରତି ତାଙ୍କର ଅସୀମ ପ୍ରେମର ପରିଚୟ ମିଳିଥାଏ ।

କବିବର ରାଧାନାଥଙ୍କ ବୈଶିଷ୍ଟ୍ୟ ତାହାଙ୍କ ରଚିତ ବ୍ୟଙ୍ଗାତ୍ମକ କାବ୍ୟ 'ଦରବାର'ରେ ସ୍ପଷ୍ଟ । ୧୮୯୪ ରେ ପ୍ରକାଶିତ ଏହି କାବ୍ୟର ନାୟକ "ଉତ୍କଳ ଶେଖର ଚନ୍ଦ୍ରଶେଖର" । ଖଣ୍ଡପଡ଼ାର ପ୍ରସିଦ୍ଧ ଜ୍ୟୋତିଷୀ ଚନ୍ଦ୍ରଶେଖର ସିଂହସାମନ୍ତ (ପଠାଣି ସାଆନ୍ତ) ଙ୍କୁ ବ୍ରିଟିଶ ସରକାରଙ୍କ ପକ୍ଷରୁ 'ମହାମହୋପାଧ୍ୟାୟ ଉପାଧି ଦିଆଯିବାପାଇଁ ଅନୁଷ୍ଠିତ ବିଶେଷ ଦରବାର ଉତ୍ସବରେ ଯୋଗଦେବାକୁ ଯାଇ ସେହି ଦରବାରରେ ପ୍ରତ୍ୟକ୍ଷ କରିଥିବା 'ଅକିଞ୍ଚନ' (ରାଧାନାଥ)ଙ୍କ ଅନୁଭୂତି ଏଥିରେ ରୂପାୟିତ ।

ତାଙ୍କର ପୃଷ୍ଠପୋଷକ ରାଜା ମହାରାଜାଙ୍କୁ ମଧ୍ୟ ଚେତାବନୀ ଦେବାରେ ସେ ହେଳା କରିନାହାନ୍ତି ।

ଆହେ ମାନଶୌଣ୍ଡ ଭୂପାଳମଣ୍ଡଳି
ଦେଇଛ କି କୁଳଧର୍ମେ ଜଳାଞ୍ଜଳି ?
ବୃଥା କିପାଁ ହେଉଅଛ ହୀନମାନ ?
ସିଂହାସନ କର ସ୍ୱର୍ଗର ସୋପାନ
ଜନ୍ମଫଳେ ଲଭିଅଛ ଅପ୍ରମିତ—
ଶକ୍ତି ସାଧିବାକୁ ସଂସାରର ହିତ ।
ଜନ୍ମଫଳେ ଲଭି ସମ୍ପଦ ଅମାପ
ଭୋଗିନାହିଁ କେବେ ଅମାପର ତାପ
ଜମା ଅନୁରୂପେ ବ୍ୟୟଲାଗି ଦାୟୀ
ହେବ, ଏହା ଦିନେ ମନ କଲ ନାହିଁ ।
ବୁଡ଼ିଣ ରହିଲ ଆମୋଦେ ଆବାଲ୍ୟ ।
ବିଦ୍ୟାକୁ ମଣିଲ ଶିବ-ନିରମାଲ୍ୟ ।
ଆସନର ବଡ଼ପଣ ନିଜଠାରେ
ଆରୋପି ପାତିଛ ସ୍ୱିନା ଅହଙ୍କାରେ ।"

ଅଢ଼େଇଦିନିଆ ଯଶ ଲାଗି ବାଇ ହୋଇ ବୃଥା କାର୍ଯ୍ୟରେ ମାତିବା ଲୋକଙ୍କୁ କବିଙ୍କର ଚେତାବନୀ । ବିଚକ୍ଷଣ ଚିତ୍ରଗୁପ୍ତର ପାଞ୍ଜିଆ ପଣିଆ, "ଥାଉ ଆନ କଥା ଚିନ୍ତୁ ଆଉ ଯାହା, ତା' ପାଞ୍ଜିରେ ଲେଖା ହୋଇଯାଏ ତାହା । ନରର ସମଗ୍ର ଜୀବନର ଚିତ୍ର, ପଲକେ ଦେଖାଏ ସେ ପାଞ୍ଜି ବିଚିତ୍ର ।" କାଳ ବଡ଼ କ୍ରୂର । ଅବିଶ୍ୱାସୀ ମଧ୍ୟ । କେତେବେଳେ ଯେ ଆଚମ୍ବିତେ ଆସି ହାବୋଡ଼ିଯିବ, ତା'କିଏ ଜାଣେ ? ଅଖଣ୍ଡ ଦଣ୍ଡାୟମାନ କାଳସିନ୍ଧୁ ମଧ୍ୟରେ ମନୁଷ୍ୟର ଜୀବନ କାଳ ଏକ ବିନ୍ଦୁ ମାତ୍ର । ଦୁନିଆର କଳିଗୋଳ ତୋଫାନ ମଧ୍ୟରେ ନ ରହି ଉର୍ଦ୍ଧ୍ୱରେ ରହିଲେ ଶାନ୍ତି-ସୁଧା ପାନ କରିପାରିବ । ଏ ସମସ୍ତ ଅବଗତ କରାଇବା ଯୋଗୁଁ କବିଙ୍କୁ କେହି ଯେପରି ଜ୍ଞାନ ଦର୍ପେ ଜ୍ଞାନଦାତାର ଆସନ ଦେଇଛନ୍ତି ବୋଲି ନ ଭାବନ୍ତି । ସେଥିପାଇଁ ସେ ସ୍ପଷ୍ଟ କରି କହନ୍ତି ।

"ଥୋଇ ଏ ମୁକୁର ତୁମ ଆଗେ ଭାଇ
ନିଜ ମୁଖ ମୁଁ କି ନିଜେ ଦେଖୁ ନାହିଁ ।
x x x x x
ଯାବତ ଦେହରେ ବହେ ପ୍ରାଣବାୟୁ
କେହି ନାହିଁ ଏଥି ହେବ ଯେ ଭାଜନ
ଫେଡ଼ିବାକୁ ଏ ସମସ୍ୟା ସନାତନ ।
ଜାଣେ ମୁହିଁ ଏହି ସାଂଯାତ୍ରିକ ଦଳେ
ହୀନଠାରୁ ହୀନ ମୁହିଁ ଜ୍ଞାନବଳେ ।
ପ୍ରଭେଦ ମଧ୍ୟରେ ଏତିକି କେବଳ
ଯହିଁ ତୋଫାନର ସବୁଠାରୁ ବଳ
ଗୁଣ-ବୃକ୍ଷ-ଚୂଳେ, କେଜାଣି କିପାଇଁ
ଭାଗ୍ୟ ଭାଇ ମୋତେ ଦେଇଛି ବସାଇ ।
ହେଉଅଛି ନାହା କେତେ ଟଳମଳ
ତୋଫାନ କିପରି ହେଉଛି ପ୍ରବଳ,
ସବୁଠାରୁ ମୁହିଁ କଳୁଛି ଅଧିକ,
ସବୁଠାରୁ ଯେଣୁ ହଲୁଛି ଅଧିକ ,
ତେଣୁ ଆର୍ତ୍ତେ ସିନା ପକାଉଛି ହୁରି
ନୋହେ ଏହା ଜ୍ଞାନ ଗୁମାନ-ଚାତୁରୀ ।

ସମଦୁଃଖୀ ହୋଇ ସଭିଏଁ ଏକା ନାଆରେ ବସି ଦୁଃଖ ଭୋଗୁଥିବାରୁ ଏହା ଦୁଃଖ-ଆର୍ତ୍ତନାଦ ସିନା, ମାତ୍ର ଅଜ୍ଞମାନଙ୍କୁ ପ୍ରାଜ୍ଞର ଉପଦେଶ ବୋଲି ମଣନାହିଁ ।

ଏହି ଦରବାରର ଆସନ କଜିଆ ଦେଖି ସେ ପୁରରେ ପ୍ରେତପତିର ଦରବାର କଥା ଚେତାଇ ଦେଇଛନ୍ତି ।

"ନଥିବେ ଓକିଲ, ଲଢ଼ିଯେ ମାମଲା,
ଯୁକ୍ତିବଳେ କରିଦେବେ ଧଳାକଳା ।"

ବିଜୁଳି ପ୍ରାୟ ଯା ବିଭାର ବିକାଶ, ସେ ସମ୍ପଦରେ ବିଶ୍ୱାସ କର ନାହିଁ । ଦରବାରର ଆସନ ଫର୍ଦ୍ଦକୁ ଚିତ୍ରଗୁପ୍ତ ପାଞ୍ଜି ରଦ୍ଦ କରିଦେବ । ସେ ଦରବାରରେ ଉଚ୍ଚ ପଦପଦବୀ କିମ୍ବା ଉଚ୍ଚବେତନ ବା ଭୂସଂପତ୍ତି, ବିଦ୍ୟା, ବୁଦ୍ଧିର ବିଚକ୍ଷଣତା କିଛି ସାହାଯ୍ୟ କରିବ ନାହିଁ । କେବଳ ଧର୍ମର ମହତ୍ ପଣରେ ସେଠାରେ ତିଷ୍ଠି ପାରିବ ।

ଏ ରାଜ୍ୟର ପ୍ରକୃତିକୁ ରୂପାୟିତ କରିବାରେ ରାଧାନାଥଙ୍କ ଚିଲିକା ଯେପରି ଅଗ୍ରଣୀ ଭୂମିକା ଗ୍ରହଣ କରିଛି, ଏ ଦେଶର ପୁରାଣ, ଇତିହାସ ସହିତ ତୀର୍ଥମାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ସୃଷ୍ଟି କରିଛନ୍ତି ମହାକାବ୍ୟ ମହାଯାତ୍ରା । ସାରଳା ଦାସଙ୍କ ମହାଭାରତ ଭିତ୍ତିରେ କଥାବସ୍ତୁ ଉପସ୍ଥାପନା କଲେହେଁ ସାହିତ୍ୟରେ ବୈଦେଶିକ ଶିଳ୍ପରୀତି ମଧ୍ୟ ବିନିଯୋଗ କରିଛନ୍ତି । ମହାଯାତ୍ରାର ଆରମ୍ଭରେ 'ପଙ୍କଜବାସିନୀ ଦେବି, ଉତ୍କଳଭାରତୀ' ଙ୍କୁ ସମ୍ବୋଧନ କରିବା ରୀତିଟି ରାଧାନାଥ ଗ୍ରୀକ୍ ଦେବୀ 'ମିଉଜ୍' ଙ୍କ ଅନୁସରଣରେ କରିଥିବା ସମ୍ଭବ । ମହାଭାରତର 'ସ୍ୱର୍ଗାରୋହଣ' ପର୍ବର କଥାବସ୍ତୁ ମହାଯାତ୍ରାରେ ଅନୁସରଣ କରିଥିଲେ ହେଁ ଉତ୍କଳକୁ ସେମାନଙ୍କର ଆଗମନ ଯୋଗୁଁ ଭାରତର ବିଭିନ୍ନ ପୌରାଣିକ ଓ ଐତିହାସିକ ଗାଥାର ବର୍ଣ୍ଣନା କରିବା ସହିତ ଓଡ଼ିଶାର ବିଭିନ୍ନ ସ୍ଥଳର ବର୍ଣ୍ଣନା କରିବା ପାଇଁ ସୁଯୋଗ ସୃଷ୍ଟିକରି ସଫଳଭାବେ ଚିତ୍ରଣ କରିଛନ୍ତି ।

ରାଧାନାଥଙ୍କର ଓଡ଼ିଆ ସାହିତ୍ୟରେ ଲେଖନୀ ଚାଳନା ପୂର୍ବରୁ ତାଙ୍କର ପୂର୍ବଜ ଓ ସମସାମୟିକ ଲେଖକ ରୂପେ ଆବିର୍ଭୂତ ହୋଇଥିଲେ ଆଦିନେତା ବିଚିତ୍ରାନନ୍ଦ ଦାସ (୧୮୨୭), ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ (୧୮୩୩) 'ବାହିକା' ର ସଂପାଦକ, କପିଳେଶ୍ୱର ବିଦ୍ୟାଭୂଷଣ (୧୮୩୪) ପାଠ୍ୟପୁସ୍ତକ ପ୍ରଣେତା, ଚନ୍ଦ୍ରଶେଖର ସିଂହ ସାମନ୍ତ (୧୮୩୫), ପ୍ରସିଦ୍ଧ ଜ୍ୟୋତିର୍ବିଦ୍, ଉତ୍କଳ ଦୀପିକାର ସମ୍ପାଦକ କର୍ମବୀର ଗୌରୀଶଙ୍କର ରାୟ (୧୮୩୮), ଅନୁବାଦକ ବିଚ୍ଛନ୍ଦ ପଟ୍ଟନାୟକ (୧୮୩୯), ବ୍ୟାସକବି ଫକୀରମୋହନ ସେନାପତି (୧୮୪୩), ନନ୍ଦକିଶୋର ଦାସ (୧୮୪୬), ଓଡ଼ିଶାର ପ୍ରଥମ ଜଏଣ୍ଟ୍ ଇନ୍ସପେକ୍ଟର, ଉତ୍କଳ ଗୌରବ କୁଳବୃଦ୍ଧ ମିଷ୍ଟର ମଧୁସୂଦନ ଦାସ (୧୮୪୮), କବିବର ରାଧାନାଥ (୧୮୪୮), ଗୋବିନ୍ଦ ରଥ (୧୮୪୮) ବାମଣ୍ଡା ରାଜା ବାସୁଦେବ ସୁଢ଼ଳ ଦେବ (୧୮୫୦), ପ୍ୟାରୀମୋହନ ଆଚାର୍ଯ୍ୟ (୧୮୫୧) ଓ ଭକ୍ତକବି ମଧୁସୂଦନ (୧୮୫୩) ।

ଓଡ଼ିଶାର ଏହି ଶିକ୍ଷିତ ସମ୍ପ୍ରଦାୟ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଯଥେଷ୍ଟ ଉଦ୍ୟମ କରଥିଲେ । ସେମାନଙ୍କର ଉଦ୍ୟମ ଯୋଗୁଁ ଓଡ଼ିଶାର ଭାଷା, ସାହିତ୍ୟର ଉନ୍ନତି ହେବା ସଙ୍ଗେ ସଙ୍ଗେ ନୂତନ ଓଡ଼ିଶା ପ୍ରଦେଶ ଗଠନର ପଥ ସୁଗମ ହୋଇଥିଲା ଓ ପରିଶେଷରେ ୧୯୩୬ ରେ ଆନ୍ଦୋଳନର ପରିସମାପ୍ତି ଘଟି ଏକ ସ୍ୱତନ୍ତ୍ର ପ୍ରଦେଶର ରୂପାୟନ ହେଲା ।

ଭାଷା ଓ ସାହିତ୍ୟର ଉନ୍ନତି ଘଟାଇବା କ୍ଷେତ୍ରରେ କବିବର ରାଧାନାଥଙ୍କ ଭୂମିକା ଥିଲା ଗୁରୁତ୍ୱପର୍ଣ୍ଣ । ସେ ଯୁଗରେ ସାହିତ୍ୟାକାଶରେ କାବ୍ୟତାରା ସଦୃଶ ଉଦିତ ହୋଇ ରାଧାନାଥ ଓଡ଼ିଆ ସାହିତ୍ୟକୁ ବହୁମତେ ପରିପୁଷ୍ଟ କରିଛନ୍ତି । ସାହିତ୍ୟରେ ପୁରାତନକୁ ପରିହାର କରି ରୁଚିରେ ପରିବର୍ତ୍ତନ ଆଣିବା ସଙ୍ଗେ ସଙ୍ଗେ ନୂତନତାର ଆବାହକ ରୂପେ ଉଭାହୋଇଥିଲେ ସେ । ସାହିତ୍ୟରେ ନୂତନ ଯୁଗର ସ୍ରଷ୍ଟା ଭାବରେ, ଭାଷା, ଭାବ, ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ ନୂତନତ୍ୱର ପ୍ରବେଶ କରାଇ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ସେ ଥିଲେ ପଥିକୃତ ।

ରାଧାନାଥଙ୍କ ରଚିତ କାବ୍ୟମାନଙ୍କରେ 'ମିଳନାନ୍ତ' ସ୍ଥଳରେ 'ବିୟୋଗାନ୍ତ'ର ପ୍ରଥମ ପ୍ରୟୋଗ ତାଙ୍କର ବୈଶିଷ୍ଟ୍ୟର ପରିଚାୟକ । କେଦାରଗୌରୀ, ଚନ୍ଦ୍ରଭାଗା, ଉଷା, ଜୟନ୍ତ, ନନ୍ଦିକା, କୌଶଲ୍ୟା ଓ ପାର୍ବତୀ ଆଦି ସମସ୍ତେ ମୃତ୍ୟୁର ଶୀତଳ ସ୍ପର୍ଶ ଲାଭ କରିବା କବିବରଙ୍କ କାବ୍ୟ ଚାତୁରୀର ପରିପ୍ରକାଶ ।

ସ୍ୱଦେଶ ଓ ସ୍ୱଜାତି ପ୍ରୀତି ପରି ଜାତୀୟତାବୋଧର ନିଦର୍ଶନ ରାଧାନାଥଙ୍କ ସାହିତ୍ୟରେ ବହୁ ପରିମାଣରେ ଦେଖାଦେଲା । 'ଚିଲିକା'ରେ

'ଦେବୀ ବୀଣାପାଣି କେଉଁ  ପାପ ଫଳେ
କରୁଣା ତୋହର ଊଣା ଏ ଉତ୍କଳେ ?
ସ୍ୱଭାବେ ଉତ୍କଳ ଶୋଭାର ନିଧାନ
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ—
ବିନୁ ସିନା ମାତା ହୋଇଛି ବିବଶା
ଲଭିଛି ଅରଣ୍ୟ-ପ୍ରସୂନର ଦଶା,
କ୍ଷୁଦ୍ର ଶିପ୍ରା ସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ ।
ସ୍ୱରୂପା ଅଂଶୁପା ଲୋକେ ଅଗୋଚର
ପୂଜାସ୍ପଦ ହେଲା ଗୋଷ୍ପଦ-ପୁଷ୍କର !

ଦେବୀ ବୀଣାପାଣିଙ୍କର କୃପା ବିହୁନେ ଉତ୍କଳମାତାର ନାମରେ ଖ୍ୟାତି ଗ୍ରନ୍ଥରେ ଗାର ପଡ଼ି ନାହିଁ । ଶତାଧିକ ବର୍ଷ ପୂର୍ବର ରାଧାନାଥଙ୍କ ଏ ଖେଦୋକ୍ତି ଅଦ୍ୟାବଧି

ଅପରିବର୍ତ୍ତିତ ରହିଛି । ସମଗ୍ର ବିଶ୍ୱରେ ଉତ୍କଳର ସ୍ଥାନ ଯେପରି ରହିବା କଥା ସେପରି ଘଟିନାହିଁ ।

ମହାଯାତ୍ରାରେ ଅମର୍ଷିଙ୍କ ମୁଖରେ ସେନାମାନଙ୍କର ପାଇଁ ଯେଉଁ ବୀରୋଚିତ ବାଣୀ ଶୁଣାଇଛନ୍ତି ତାର ଅନ୍ତରାଳରେ ଅଛନ୍ତି କୁଶଳୀ ଶିଳ୍ପୀ ରାଧାନାଥ । ବ୍ରିଟିଶ ସରକାର ଅଧୀନରେ କର୍ମଚାରୀ ଥିବାରୁ ପ୍ରତ୍ୟକ୍ଷଭାବରେ ସରକାର ବିରୋଧୀ ଧ୍ୱନି ଦେଇ ନ ପାରିଲେ ହେଁ ସୈନ୍ୟମାନଙ୍କୁ ଉତ୍ସାହିତ କରିବା ବ୍ୟାଜରେ କହିଛନ୍ତି—

"ହା ଦୈବ ! ଜମ୍ବୁକ ପଶି ହର୍ଯ୍ୟକ୍ଷ ଗୁହାରେ
ଗୋଇଠା ପ୍ରହାରି, ନେବ ତା ମୁଖୁଁ ଓଟାରି
ଗ୍ରାସ ତାର, ହର୍ଯ୍ୟକ୍ଷତା ସହିବ ମଉନେ !

x x x x

ଯାବତ ଦେହରେ ବହେ ପ୍ରାଣବାୟୁ
ବାହୁଡ଼ ସ୍ୱଗୃହେ ବେଗେ କଳଙ୍କିତ ମୁଖେ,
ଲାଙ୍ଗୁଳ ସଙ୍କୋଚି ଶ୍ୱାନ ପଳାଏ ଯେସନେ,
ଅଇଁଠା-ଗୋଇଠା-ଭୋଗୀ ସେହିଶ୍ୱାନ ପରି
ପ୍ରସାଦାର୍ଥୀ ହୁଅ ଯାଇ ଯବନ ଦୁଆରେ ।"

ଏହି ରଚନା ପ୍ରକାଶ ପାଇଛି ୨୦-୧-୧୮୯୬ ରେ । ସେତେବେଳକୁ ସ୍ୱାଧୀନତା ସଂଗ୍ରାମର ଅୟମାରମ୍ଭ ହୋଇସାରିଲାଣି । ଭାରତୀୟ ଜାତୀୟ କଂଗ୍ରେସର ବିଭିନ୍ନ ଅଧିବେଶନମାନଙ୍କରେ ଭାରତର ସ୍ୱାଧୀନତା ପାଇଁ ପ୍ରସ୍ତାବମାନ ଗୃହୀତ ହୋଇଥାଏ । ମହାରାଷ୍ଟ୍ରରେ ବାଳ ଗଙ୍ଗାଧର ତିଳକଙ୍କ ଉଗ୍ରଜାତୀୟତାବାଦର ପ୍ରଚାର ପରଂପରାର ପ୍ରତିଷ୍ଠା ପାଇଁ ଗଣପତିଙ୍କ ପୂଜା ଓ ଶିବାଜୀ ମହାରାଜଙ୍କ ନାମ ସ୍ମରଣ କରାଇ ଜାତୀୟତାବାଦର ପରିପ୍ରସାର ଘଟୁଥାଏ । ତେଣୁ ରାଧାନାଥ 'ଯବନ' ବା ବିଦେଶୀଙ୍କ କଥା କେବଳ କହି ନୀରବ ରହିନାହାନ୍ତି ବରଂ 'ଶିବାଜୀଙ୍କ ଉତ୍ସାହବାଣୀ' ରେ ପ୍ରତ୍ୟକ୍ଷଭାବରେ ଶିବାଜୀଙ୍କ ମୁଖରେ ଉଦ୍‌ବୋଧନ ଦ୍ୱାରା "ଉଠ ଉଠ ଆହେ ସମଯୋଧଗଣ କରେ କରବାଳ ପଶ ସମରେ" ଲେଖି ଏ ଜାତିକୁ ଦେଶପ୍ରେମର ଆହ୍ୱାନ ଦେଇଛନ୍ତି । ଏଥିପାଇଁ ତାଙ୍କୁ ଇଂରେଜ ସରକାରର କୋପଦୃଷ୍ଟିରେ ପଡ଼ିବାକୁ ହୋଇଛି ।

ପ୍ରକୃତି ସହିତ ଏତାଦୃଶ ନିବିଡ଼ ସଂପର୍କ ସ୍ଥାପନ ଏବଂ ଚିଲିକା ପରି ଏକ ହ୍ରଦକୁ ନାୟିକା କରି ତାକୁ ଉତ୍କଳ କମଳାଙ୍କର ବିଳାସ ଦୀର୍ଘିକା ରୂପେ କଳ୍ପନାକରିବା ମୂଳରେ କବିଙ୍କ ମନରେ ଯେଉଁ ଜାତୀୟତାବୋଧ ଦେଖାଦେଇଥିଲା, ତାହା ଅଭୂତପୂର୍ବ । ପ୍ରକୃତିପ୍ରତି ଏପରି ନୂତନ ଦୃଷ୍ଟିଭଙ୍ଗୀ କେବଳ ରାଧାନାଥଙ୍କ ଠାରୁ ଆରମ୍ଭ ହୋଇଥିଲା ।

ପଦର ଶେଷଅକ୍ଷର ଦୁଇଟିରେ ପ୍ରଥମ ଓ ଦ୍ୱିତୀୟ ଧାଡ଼ିରେ ଏକ ପ୍ରକାର ବର୍ଣ୍ଣ ପ୍ରୟୋଗ ବା ଉପଧା ମିଳନ ରାଧାନାଥଙ୍କଠାରୁ ହିଁ ସୃଷ୍ଟି ହୋଇଥିଲା । ଚିଲିକା, ଦରବାର, ପାର୍ବତୀ ଆଦି ବିଭିନ୍ନ ରଚନାରେ ସେ ଏପରି ପ୍ରୟୋଗ କରିଛନ୍ତି ।

ଏତେ ଛବି ଯେଣୁ ଏକାଧାରେ ଠୁଳ,
ଛବିଳ ଉତ୍କଳେ ତୋ ଛବି ଅତୁଳ ।

'ଠୁଳ' ସହିତ 'ତୁଳ' ପଦବିନ୍ୟାସ ଏହି ଉପଧାମିଳନର ଦୃଷ୍ଟାନ୍ତ ।

'ମହାଯାତ୍ରା' ମହାକାବ୍ୟରେ ସେ ପ୍ରଥମ କରି ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କରିଛନ୍ତି ।

"କି ସାହସେ କଲ ତୁମ୍ଭେ ଅପବିତ୍ର ଆସି
ଏ ତୀର୍ଥ, ଆର୍ଯ୍ୟର ଏହି ଧର୍ମଯୁଦ୍ଧ ସ୍ଥଳୀ ?"

ଐତିହାସିକ ଓ କିମ୍ବଦନ୍ତୀମୂଳକ ପ୍ରାଚୀନ କଥାବସ୍ତୁକୁ କାବ୍ୟ ମାଧ୍ୟମରେ ପରିବେଷଣ କରିବାରେ ରାଧାନାଥଙ୍କ ପଟୁତା ଅବର୍ଣ୍ଣନୀୟ । କଟକଠାରେ ନନ୍ଦିକେଶ୍ୱରୀ ପଠା, ବାଲେଶ୍ୱରର ଉଷାମେଢ଼ ଆଦି ମୂଳରେ ଥିବା କିମ୍ବଦନ୍ତୀଗୁଡ଼ିକୁ ଏପରି ବର୍ଣ୍ଣନା କରିଛନ୍ତି, ସେଗୁଡ଼ିକ ସତ୍ୟ ପରି ପ୍ରତିଭାତ ହୋଇଥାଏ ।

ଓଡ଼ିଆରେ ବ୍ୟଙ୍ଗ କବିତା ରଚନାରେ ରାଧାନାଥଙ୍କ 'ଦରବାର' ଅତୁଳନୀୟ । ଅନୁବାଦ କ୍ଷେତ୍ରରେ ମଧ୍ୟ 'ମେଘଦୂତର' ସ୍ଥାନ ସ୍ୱତନ୍ତ୍ର । କାବ୍ୟ ରଚନା ଶୈଳୀରେ ନବୀନତ୍ୱ, କାବ୍ୟରେ ଜୀବନଚିତ୍ର, ଚରିତ୍ର ଚିତ୍ରଣରେ ଅଭିନବତ୍ୱ ପ୍ରଦର୍ଶିତ କରି ରାଧାନାଥ ଏକ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ ହେବା ସଙ୍ଗେ ସଙ୍ଗେ ଏକ ନୂତନ ଯୁଗର ସ୍ରଷ୍ଟାର ଗୌରବ ଲାଭ କରିଛନ୍ତି ।

ରାଜେନ୍ଦ୍ରଲାଲ ମିତ୍ରଙ୍କଠାରୁ ଆରମ୍ଭକରି କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଯାଏ ବଙ୍ଗୀୟମାନେ ଯେଉଁ ଓଡ଼ିଆ ଭାଷା ବିଲୋପନିମନ୍ତେ ଚକ୍ରାନ୍ତ ଚଳାଇଥିଲେ, କବିବର ରାଧାନାଥଙ୍କ ରଚନାବଳୀର ପ୍ରକାଶନ ପରେ ସେ ସବୁ ଷଡ଼ଯନ୍ତ୍ରରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ରାଧାନାଥ, ମଧୁସୂଦନ ଓ ଫକୀର ମୋହନ ଓଡ଼ିଆରେ ପାଠ୍ୟ ପୁସ୍ତକ ରଚନା କରିବାରୁ ସେ ଅଭାବ ଦୂର ହୋଇପାରିଲା ।

ରାଧାନାଥଙ୍କ ସୃଷ୍ଟି ସମ୍ଭାରରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାବଧାରାର ମଧୁର ସମନ୍ୱୟ ଘଟିବାରୁ ଓଡ଼ିଆ ପାଠକ ସମକ୍ଷରେ ଜ୍ଞାନଭଣ୍ଡାରର ଦ୍ୱାର ଉନ୍ମୁକ୍ତ ହେଲା ଓ ଭାବ ରାଜ୍ୟର ଦିଗବଳୟ ବିସ୍ତାରିତ ହେଲା । ରାଧାନାଥଙ୍କ 'ଚିଲିକା' ଦ୍ୱାରା ପ୍ରଭାବିତ ହୋଇ ଚିନ୍ତାମଣି ମହାନ୍ତି ରଚନା କଲେ 'ସିଂହରାଜ', ଗଙ୍ଗାଧର ମେହେର ଲେଖିଲେ 'ଉତ୍କଳଲକ୍ଷ୍ମୀ', ସେହିପରି 'ମହାଯାତ୍ରା'ର ପ୍ରଭାବ ଚନ୍ତାମଣିଙ୍କ

'ବିକ୍ରମାଦିତ୍ୟ' କାବ୍ୟରେ ପ୍ରତିଫଳିତ । ଉତ୍କଳର ବହୁ କବି ରାଧାନାଥଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ମଧୁସୂଦନ ତ ଥିଲେ ଛାତ୍ର । ପୁଣି ବନ୍ଧୁ ଓ ସାୟାହ୍ନର ସଙ୍ଗୀ । ଫକୀରମୋହନ ସାହିତ୍ୟ ଓ ଦେଶ ଉଭୟ କାବ୍ୟରେ ସହାୟତା କରୁଥିଲେ । ଏହି ତ୍ରୟୀଙ୍କ ସମ୍ମିଳିତ ଉଦ୍ୟମରେ ନ୍ୟସ୍ତସ୍ୱାର୍ଥ ଓ ହୀନମ୍ମନ୍ୟ ବଙ୍ଗାଳୀଙ୍କ ଉପଦ୍ରବରୁ ଓଡ଼ିଆ ଭାଷା ରକ୍ଷା ପାଇଲା । ପାଠ୍ୟପୁସ୍ତକର ଅଭାବ ପୂରଣ ପାଇଁ ଫକୀର ମୋହନ ଇତିହାସ ଓ ଗଣିତ ଲେଖିଲାବେଳେ ରାଧାନାଥ ଓ ମଧୁସୂଦନ ସୃଷ୍ଟି କରି ଚାଲିଲେ ସାହିତ୍ୟ ।

ରାଧାନାଥଙ୍କ ଗଦ୍ୟ ରଚନା ମଧ୍ୟରେ 'ବିବେକୀ' ରେ ଚିନ୍ତାପ୍ରସୂ ବିଳିଷ୍ଟ ଦୃଷ୍ଟାନ୍ତ ରହିଛି ସତ୍ୟ, ମାତ୍ର ପଦ୍ୟ ତୁଳନାରେ ତାଙ୍କର ଗଦ୍ୟ ରଚନା ଜନପ୍ରିୟତା ଅର୍ଜନ କରିନାହିଁ । ଫକୀର ମୋହନଙ୍କ ଗଳ୍ପ ଉପନ୍ୟାସ ଓ ମଧୁସୂଦନଙ୍କ ପ୍ରବନ୍ଧଗୁଡ଼ିକ ଗଦ୍ୟ ସୃଷ୍ଟି କ୍ଷେତ୍ରରେ ମର୍ମସ୍ପର୍ଶୀ । ଏହି ତିନିସ୍ରଷ୍ଟାଙ୍କର ସୁମହତ ଦାନରେ ଆଧୁନିକ ଓଡ଼ିଆ ସାହିତ୍ୟ ଋଦ୍ଧିମନ୍ତ ହେଲେ ହେଁ ଯୁଗସ୍ରଷ୍ଟା ଭାବରେ ରାଧାନାଥ ହିଁ ଥିଲେ କେନ୍ଦ୍ରବିନ୍ଦୁ ।



# ରାଧାନାଥଙ୍କ କାବ୍ୟରେ ଇତିହାସ ସଚେତନତା

ଡଃ ହରିହର କାନୁନ୍‌ଗୋ

କବିବର ରାଧାନାଥ (ଖ୍ରୀ: ଅ: ୧୮୪୮-୧୯୪୮) ଆଧୁନିକ ଯୁଗପ୍ରବର୍ତ୍ତକ ରୂପେ ଓଡ଼ିଆ ସାହିତ୍ୟର ଇତିହାସରେ ସ୍ୱୀକୃତ । ପ୍ରାଚୀନ ପ୍ରବାହଧାରାରୁ ସଂପୂର୍ଣ୍ଣ ଅଲଗା ନ ହୋଇ ସେ ନୂତନ ଯୁଗର ମୂଳଦୁଆ ପକାଇଛନ୍ତି । ସେ ନିଜର ସ୍ୱତନ୍ତ୍ର ସତ୍ତାରେ ଚିରଭାସ୍ୱର । ଦେଶପ୍ରେମ ଭଳି ଜାତୀୟତାଭାବ ତାହାଙ୍କ କାବ୍ୟସୃଷ୍ଟିର ମୌଳିକ ଉପାଦାନ । ସେ ପ୍ରାଚୀନ ପାରମ୍ପରିକ ଚେତନାକୁ ଦୃଷ୍ଟି ନ ଦେଇ ଆଧୁନିକତା କ୍ଷେତ୍ରରେ ଇତିହାସ ଆଡ଼କୁ ଧ୍ୟାନ ଦେଇଛନ୍ତି । ଏହି ଇତିହାସ ଦୃଷ୍ଟି କବିଙ୍କ ଦେଶପ୍ରେମ ଓ ଅତୀତ ଉପାସନାର ପ୍ରତୀକ । ଆପଣାର କଳ୍ପନା ଚକ୍ଷୁରେ ସେ ଗୌରବମୟ ଅତୀତରୁ କାବ୍ୟିକ ଉପାଦାନ ଖୋଜିଛନ୍ତି । ପୃଥିବୀର ବିଭିନ୍ନ ଦେଶର ଗୌରବମୟ ଇତିହାସରୁ ନିର୍ଯ୍ୟାସ ଗ୍ରହଣ କରି ସ୍ୱଦେଶୀୟ ଇତିହାସକୁ ପୁଷ୍ଟ କରିଛନ୍ତି । ଆମ ସ୍ୱଦେଶୀ ଇତିହାସ କିମ୍ବଦନ୍ତୀକୁ ମୂଳଦୁଆ କରି ତା' ଉପରେ ଗଢ଼ିଛନ୍ତି ଅସଂଖ୍ୟ କାବ୍ୟ କବିତା । କାଳର ସତ୍ୟ, ଘଟଣାର ମହନୀୟତା ଓ ସମକାଳୀନ ସାଂସ୍କୃତିକ ପରିବେଶକୁ ନେଇ ସେ କାବ୍ୟ ସୃଷ୍ଟି କରିଛନ୍ତି । ସେ ଅନୁଭବ କରିଛନ୍ତି ସାହିତ୍ୟରେ ଇତିହାସ ହେଉଛି ତାର ଭିତ୍ତିଭୂମି । ଏହା ମାନବ ପ୍ରାଣରେ ନବଉନ୍ମାଦନା ସୃଷ୍ଟିକରେ ଓ ଭବିଷ୍ୟତ ପୁନର୍ଗଠନର ସ୍ୱପ୍ନ ଜାଗ୍ରତ କରେ । କାବ୍ୟରେ ଇତିହାସର ଭାବସତ୍ତାକୁ ଆରୋପ କରି ସେ ଓଡ଼ିଆ ଜାତିର ସ୍ୱାଭିମାନର ପରିଚୟ ଦେଇଛନ୍ତି । ସେହି କାବ୍ୟଗୁଡ଼ିକ ହେଉଛି ନନ୍ଦିକେଶ୍ୱରୀ (୧୮୮୭), ପାର୍ବତୀ (୧୮୯୧), ଯଯାତିକେଶରୀ (୧୮୯୪), କେଦାର ଗୌରୀ (୧୮୮୫), ଚନ୍ଦ୍ରଭାଗା (୧୮୮୬), ଚିଲିକା (୧୮୯୧) ।

କେଦାର ଗୌରୀରେ ଲଲାଟେନ୍ଦୁ କେଶରୀଙ୍କ କାଳ, ଚନ୍ଦ୍ରଭାଗାରେ କୋଣାର୍କ ମନ୍ଦିର ନିର୍ମାଣ ପରବର୍ତ୍ତୀକାଳର ସୂଚନା ଦିଆଯାଇଛି । ମାତ୍ର ନିର୍ଦ୍ଦିଷ୍ଟ ଇତିହାସର ପରିସର ବାହାରେ ଏହିସବୁ କାବ୍ୟର କାହାଣୀ ଗତି କରୁଥିବାରୁ ଇତିହାସର ସଚେତନତା ସେଠାରେ ବିଶେଷ ପରିଲକ୍ଷିତ ହୁଏ ନାହିଁ । ନନ୍ଦିକେଶ୍ୱରୀ କାବ୍ୟରେ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ହେଉଛନ୍ତି ନାୟକ । ଗଙ୍ଗବଂଶ ପ୍ରତିଷ୍ଠା ଏହାର ବିଷୟବସ୍ତୁ । ପାର୍ବତୀ କାବ୍ୟରେ ଗଙ୍ଗେଶ୍ୱର ଦେବଙ୍କ ରାଜତ୍ୱକାଳରେ ରତ୍ନପୁର ଦୁର୍ଗ ଅବରୋଧ କାହାଣୀ ପ୍ରାଧାନ୍ୟ ଲାଭ କରିଛି । ଯଯାତିକେଶରୀ କାବ୍ୟରେ

କେଶରୀବଂଶ ପ୍ରତିଷ୍ଠା ହେଉଛି ମୁଖ୍ୟ । ତେଣୁ ଓଡ଼ିଶାର ଇତିହାସ ପ୍ରତି କବିଙ୍କ ସଚେତନତା ଉପରୋକ୍ତ କାବ୍ୟ ଆଲୋଚନାରୁ ପ୍ରତୀୟମାନ ହୁଏ ।

## ଇତିହାସର ମୂକସାକ୍ଷୀ ନା ଜନଶ୍ରୁତି ନନ୍ଦିକେଶ୍ୱରୀ :

କବିବର ରାଧାନାଥଙ୍କ ନନ୍ଦିକେଶ୍ୱରୀ (୧୮୮୭) କାବ୍ୟ ରଚିତ ହେବା ପୂର୍ବରୁ ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଓଡ଼ିଶା ଇତିହାସ (୧୮୭୯) ପ୍ରକାଶିତ ହୋଇ ସାରିଥିଲା । ଏହି ଇତିହାସ ଗ୍ରନ୍ଥରେ ମାଦଳା ପାଞ୍ଜି, ବଂଶାବଳୀ ଓ ରାଜଚରିତ ଆଦି ଐତିହାସିକ ଉପାଦାନ ବ୍ୟବହୃତ ହୋଇଛି । ଇତିହାସ ଗ୍ରନ୍ଥର ବିବରଣୀ ରାଧାନାଥଙ୍କ ନନ୍ଦିକେଶ୍ୱରୀ କାବ୍ୟର ଭିତ୍ତି ଯୋଗାଇଥିବା ସମ୍ଭବପର । ଚୋଡ଼ଗଙ୍ଗଦେବଙ୍କ ଓଡ଼ିଶା ଅଧିକାର ପ୍ରସଂଗରେ ପ୍ୟାରୀମୋହନ ଆଚାର୍ଯ୍ୟ ଉଲ୍ଲେଖ କରିଛନ୍ତି, ‘‘ସୁବର୍ଣ୍ଣ କେଶରୀ କେଶରୀବଂଶର ଶେଷ ରାଜା ଥିଲେ । ତାଙ୍କର ସନ୍ତାନ ସନ୍ତତି ନଥିଲା । ଦକ୍ଷିଣ ଦେଶରୁ ଚୋଡ଼ଗଙ୍ଗ ନାମକ ଜଣେ ନୃପତି ଓଡ଼ିଶା ଆକ୍ରମଣ କରି ଖ୍ରୀ:ଅ: ୧୧୩୨ରେ ତାଙ୍କୁ ପରାସ୍ତ କରିଥିଲେ ଓ ସେହି ପରାଭବ ସଙ୍ଗେ ଓଡ଼ିଶାରୁ କେଶରୀ ବଂଶୀୟ ରାଜପଣ ଲୋପପ୍ରାପ୍ତ ହେଲା । X X X ଏହି ଜ୍ୟେଷ୍ଠ ରାଜପୁତ୍ର କ୍ରମଶଃ ଉତ୍ତର ଦିଗକୁ ରାଜ୍ୟବିସ୍ତାର କରିଥିଲେ । ଅବଶେଷରେ ଯୁଦ୍ଧାଦି ଦ୍ୱାରା କେଶରୀବଂଶୀୟ ଶେଷ ନିଃସନ୍ତାନ ରାଜା ସୁବର୍ଣ୍ଣକେଶରୀଙ୍କୁ ସିଂହାସନଚ୍ୟୁତ କରି ଆପେ ଓଡ଼ିଶା ସିଂହାସନରେ ଅଧିରୂଢ଼ ହେଲେ ।’’ ଡଃ ମହତାବଙ୍କ ‘ଓଡ଼ିଶା ଇତିହାସ’ରେ ଉଲ୍ଲେଖ ଅଛି, ‘‘ସୁବର୍ଣ୍ଣକେଶରୀ କେଶରୀବଂଶର ଶେଷରାଜା । ଏ ରାଜା ଅପୁତ୍ରକ ଥିଲେ ଓ ଏହାଙ୍କର ନନ୍ଦିକା ବୋଲି ଏକ କନ୍ୟା ଥିଲେ । ନନ୍ଦିକାଙ୍କ ପ୍ରଣୟାର୍ଥୀ ହୋଇ ଚୋଡ଼ଗଙ୍ଗ ଦେବ ସୁବର୍ଣ୍ଣକେଶରୀଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବାରୁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ଶେଷରେ ଚୋଡ଼ଗଙ୍ଗ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଉତ୍କଳ ଅଧିକାର କଲେ ।’’ ଡଃ ମହତାବ ଅନ୍ୟତ୍ର ଉଲ୍ଲେଖ କରିଛନ୍ତି, ‘‘ଆଉ ଏକ ପ୍ରବାଦ ଅଛି ଯେ ସୁବର୍ଣ୍ଣକେଶରୀ ନିଜ ମନ୍ତ୍ରୀ ବାସୁଦେବଙ୍କ ବିଶ୍ୱାସଘାତକତା ଓ ସ୍ୱକନ୍ୟା ନନ୍ଦିକାଙ୍କ ଚୋଡ଼ଗଙ୍ଗଙ୍କ ପ୍ରତି ଆକର୍ଷଣ ଜାଣିପାରି ଶେଷରେ ରାଜ୍ୟ ଶତ୍ରୁ ହସ୍ତରେ ଅର୍ପଣ କରି ସନ୍ନ୍ୟାସୀ ହୋଇ ଶେଷ ଜୀବନ ମହାନଦୀ ତୀରରେ ଅତିବାହିତ କଲେ ।’’ ସେ ଯେଉଁଠି ଯାଇ ଶେଷ ଜୀବନ କଟାଇଥିଲେ ତାହା କଟକ ଜିଲ୍ଲାର ବାଙ୍କି ନିକଟବର୍ତ୍ତୀ ଅଂଶୁପା ହ୍ରଦର ଅଦୂରବର୍ତ୍ତୀ ସୁବର୍ଣ୍ଣପୁର ଗ୍ରାମ । କବିଙ୍କ ଭାଷାରେ –

‘‘ଅଦ୍ୟାପି ସେ ସ୍ଥାନ ଏ ଘଟନାଫଳେ
ବୋଲାଏ ‘ସୁବର୍ଣ୍ଣପୁର’ ସେ ଅଞ୍ଚଳେ

ସମଗ୍ର ଉତ୍କଳୁ ଆସି ନୃପମାନେ
ଚୋରଙ୍କୁ ପୂଜିଲେ ଭକ୍ତି ଉପାଦାନେ ।''

(ନନ୍ଦିକେଶ୍ୱରୀ, ରାଧାନାଥ ଗ୍ରନ୍ଥାବଳୀ, ଦ୍ୱିତୀୟ ସଂସ୍କରଣ, ୧୯୧୩, ପୃ. ୭୭)

କଟକ ନଗରର ଉତ୍ତର ଦିଗରେ ମହାନଦୀ ମଧ୍ୟରେ ଅବସ୍ଥିତ ପଠା ନନ୍ଦିକାଙ୍କ ନାମାନୁସାରେ 'ନନ୍ଦିକେଶ୍ୱରୀ ପଠା' ହୋଇଛି । ଯେପରି –

''ବିଜନପଠାକୁ ନେଇ ଜଳଯାନେ
ଅନ୍ତ୍ୟେଷ୍ଟି ସାଧିଲେ ବିହିତ ବିଧାନେ
ସମାଧି ରଚିଲେ ଶିଳ୍ପୀକୁଳ ଆସି
ଅବଶେଷ ଏବେ ଯାର ଶିଳାରାଶି
ଚଣ୍ଡୀଗୃହ ତହିଁ ହେବାରୁ ଗଠିତ
ବେନିନାମେ ପଠା ଅଦ୍ୟାପି କଥିତ
ସୁବର୍ଣ୍ଣକେଶରୀ ବିଷାଦେ ଉଦାସୀ
ମହାନଦୀ ତୀରେ ହେଲେ ବନବାସୀ ।''

(ନନ୍ଦିକେଶ୍ୱରୀ,ରା.ଗ୍ର., ପୃ.-୭୭)

ରାଧାନାଥ 'ନନ୍ଦିକେଶ୍ୱରୀ' କାବ୍ୟ ଲେଖିବା ପୂର୍ବରୁ ପ୍ୟାରୀମୋହନଙ୍କ 'ଓଡ଼ିଶା-ଇତିହାସ' ଅଧ୍ୟୟନ କରିଥିବେ । ନନ୍ଦିକେଶ୍ୱରୀଙ୍କ ଅସ୍ତିତ୍ୱ ନଥିବା ଓ ସୁବର୍ଣ୍ଣକେଶରୀଙ୍କ ନିଃସନ୍ତାନତ୍ୱର ସତ୍ୟତା ସଂପର୍କରେ ସେ ଅବଗତ ଥିବେ । କିନ୍ତୁ ରାଧାନାଥଙ୍କର ଏହି କାବ୍ୟଟି ଏକ କାଳ୍ପନିକ ସୃଷ୍ଟି । ଇତିହାସ ଓ କିମ୍ବଦନ୍ତୀ ଭିତରେ କବିକଳ୍ପନାର ଏକ ସୁନ୍ଦର ସମନ୍ୱୟ ଘଟିଛି । ନନ୍ଦିକେଶ୍ୱରୀ ପଠା ବହୁ ପ୍ରାଚୀନ । କବି ରାଧାନାଥ ବର୍ଣ୍ଣିତ ନନ୍ଦିକାଙ୍କ ସମ୍ପର୍କରୁ ଯେ ଏଭଳି ନାମର ସୃଷ୍ଟି ତାହାର କୌଣସି ଐତିହାସିକ ଭିତ୍ତି ନାହିଁ । ଶିବଙ୍କ ଅନୁଚର ନନ୍ଦୀ ନାମରେ ଈଶ୍ୱର ଲିଙ୍ଗରୂପେ ପୂଜା ପାଉଥିବାରୁ ଏହାକୁ ନନ୍ଦିକେଶ୍ୱରୀ ପଠା କୁହାଯିବା ସମ୍ଭବପର । ନନ୍ଦିକେଶ୍ୱରୀ କାବ୍ୟ ଲେଖାଯିବା ସମୟର ଏଇ ପଠା ସମ୍ପର୍କରେ ରାଧାନାଥଙ୍କ ଜୀବନୀ ଗ୍ରନ୍ଥରେ ଉଲ୍ଲେଖ ଅଛି । ସେତେବେଳେ ମହାନଦୀ ମଧ୍ୟସ୍ଥିତ ନନ୍ଦିକେଶ୍ୱରୀ ପଠାରେ ଥିବା ନନ୍ଦିକାର ମୁଗୁନିପଥର ନିର୍ମିତ ସମାଧି କଟକର ଗୋଟିଏ ସୁଦୃଶ୍ୟ ବସ୍ତୁରୂପେ ପରିଗଣିତ ହେଉଥିଲା । ସୁବର୍ଣ୍ଣକେଶରୀଙ୍କ କନ୍ୟା ନନ୍ଦିକାର ସମାଧି ହୋଇଥିଲେ ଐତିହାସିକ ହଣ୍ଟର କିମ୍ବା ପ୍ୟାରୀମୋହନ ଆଚାର୍ଯ୍ୟଙ୍କ 'ଓଡ଼ିଶା ଇତିହାସ'ରେ ସ୍ଥାନ ପାଇଥାନ୍ତା । ବୋଧହୁଏ ଅନ୍ୟ କେହି ରାଜା ବା ଜମିଦାରଙ୍କର କନ୍ୟା ବା ପତ୍ନୀ ନନ୍ଦିକାର ଏ ସମାଧି ହୋଇଥାଇପାରେ ।

ଡଃ ମହତାବ ତାହାଙ୍କ 'ଓଡ଼ିଶା ଇତିହାସ'ରେ ତାମ୍ରଶାସନକୁ ଭିତ୍ତିକରି ଚୋଡ଼ଗଙ୍ଗ ଦେବଙ୍କ ରାଜ୍ୟଜୟ ସମ୍ପର୍କରେ ଆଲୋଚନା କଲାବେଳେ ନନ୍ଦିକାର ଅସ୍ତିତ୍ୱ ସମ୍ପର୍କରେ ଐତିହାସିକ ପ୍ରମାଣ କିଛି ଦେଇନାହାନ୍ତି । ବରଂ କବି ସୁବର୍ଣ୍ଣକେଶରୀଙ୍କ ସମ୍ପର୍କରେ ଦୁଇଟି ଜନଶ୍ରୁତିର ସୂଚନା ଦେଇଛନ୍ତି । 'ଗଙ୍ଗବଂଶାବଳୀ' ଅନୁସାରେ ମନ୍ତ୍ରୀ ବାସୁଦେବ ଅପମାନିତ ଓ ନିର୍ବାସିତ ହେବାରୁ ପ୍ରତିଶୋଧ ପାଇଁ ଆକ୍ରମଣ କରିବାକୁ ଦକ୍ଷିଣ ଦେଶର କର୍ଣ୍ଣାଟ ରାଜା ଚୋଡଗଙ୍ଗଙ୍କୁ ଉତ୍ତେଜିତ କରିଛି । 'ରାଜ ଚରିତ୍ର' ଗ୍ରନ୍ଥାନୁସାରେ ସୁବର୍ଣ୍ଣକେଶରୀ ନିଃସନ୍ତାନ ଥିବାରୁ ମନ୍ତ୍ରୀ ବାସୁଦେବ ଦକ୍ଷିଣରୁ ଜଣେ ରାଜାଙ୍କୁ ନିମନ୍ତ୍ରଣ କରି ସିଂହାସନରେ ବସାଇଛନ୍ତି । ଏଠି କିନ୍ତୁ ନନ୍ଦିକା ସଂପର୍କରେ ସେ ସଂପୂର୍ଣ୍ଣ ନୀରବ । ସୁବର୍ଣ୍ଣପୁର ଓ ନନ୍ଦିକେଶ୍ୱରୀ ପଠା ସମ୍ପର୍କରେ ଐତିହାସିକ ଗବେଷଣା ପାଇଁ ଏହି କାବ୍ୟଟିରେ ପ୍ରଚଳିତ ଜନଶ୍ରୁତିର ଅବତାରଣା କରାଯାଇଛି । ଜନଶ୍ରୁତି ଉପରେ ଗଢ଼ି ଉଠିଥିଲେ ମଧ୍ୟ ଇତିହାସର ସତ୍ୟତା ଯେ ଏଥିରେ ନାହିଁ ତାକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରାଯାଇପାରିବ ନାହିଁ । ମାଦଳା ପାଞ୍ଜି ଏବଂ ଓଡ଼ିଶା ଇତିହାସ ବର୍ଣ୍ଣିତ ସୁବର୍ଣ୍ଣକେଶରୀଙ୍କ ରାଜ୍ୟଚ୍ୟୁତିରେ ଶୈବ ଓ ଶାକ୍ତ ଧର୍ମର ହ୍ରାସ ଏବଂ ଚୋଡ଼ଗଙ୍ଗଙ୍କ ବିଜୟରେ ବୈଷ୍ଣବଧର୍ମର ଅଭ୍ୟୁଦୟର ସୁଯୋଗନେଇ ଗଡ଼ଚଣ୍ଡିକା ଓ ଗଙ୍ଗାଦେବୀଙ୍କ ଅବତାରଣା କରାଯାଇଛି । ଏଥିରୁ ସୂଚୀତ ହୁଏ ଯେ କେଶରୀବଂଶୀୟ ରାଜତ୍ୱ ଉପରେ ଦକ୍ଷିଣ ଭାରତରୁ କୌଣସି ଜଣେ ରାଜା ଉତ୍କଳ ସିଂହାସନ ଅଧିକାର କରିଥିଲେ । କେଶରୀବଂଶ ବିଲୋପସାଧନ ଲାଗି ମନ୍ତ୍ରୀ ବାସୁଦେବଙ୍କର ଭୂମିକା ମାଦଳାପାଞ୍ଜିରେ ସୁସ୍ପଷ୍ଟ । "ଏମନ୍ତ ଶୁଣି ସେ ବ୍ରାହ୍ମଣ ବାସୁଦେବ ରଥ ଭୁବନେଶ୍ୱରଙ୍କୁ ସେବା କଲେ । ଭୁବନେଶ୍ୱର ଦେବ ପ୍ରସନ୍ନ ହୋଇଲେ । ଏ ବାସୁଦେବ ରଥେ ଜଣାଇଲେ କେସରୀ ରାଜତ୍ୱ ନ କରିବେ । ଏଥକୁ ଭୁବନେଶ୍ୱର ଦେବ ଆଜ୍ଞା ହୋଇଲା ତୁ ଦକ୍ଷିଣ ଯାଇ ଗୋକର୍ଣ୍ଣେସରଙ୍କ ବୀର୍ଯରୁ ଯେ ରାଣ୍ଡିପୁଅ ଚୋରଗଙ୍ଗ ଅଛି ତାକୁ ଆମ୍ଭ ଆଗ୍ୟାରେ ଆଣି ଓଡ଼ିସାରେ ରାଜତ୍ୱ କରାଇବୁ । ଗୋକର୍ଣ୍ଣେସରଙ୍କ ବୀର୍ଯ ଗଙ୍ଗାଦେବୀ ଗର୍ଭୁ ସମ୍ଭୂତ । ଗଙ୍ଗବଂଶରୁ ଜାତ ଆଦିପାଟ ଚୁଡ଼ଗଙ୍ଗଦେବ । X X X X X କେଶରୀ ବଂଶ ରାଜା ସିଦ୍ଧକନ୍ପ କେଶରୀ ରାଜାଙ୍କୁ ଉଚ୍ଛନ୍ନ କରାଇ ରାଜା କଲା ।" (ମାଦଳା ପାଞ୍ଜି, ରାଜଭୋଗ ଇତିହାସ, ୧୯୬୯, ପୃ. ୨୧,୨୨) ଏଥିରୁ ଜଣାଯାଏ ଯେ ବର୍ତ୍ତମାନ ଗଜପତି ଜିଲ୍ଲାର ପାରଳାଖେମୁଣ୍ଡି ନିକଟବର୍ତ୍ତୀ ଗଙ୍ଗୱାଡ଼ି (ଗଙ୍ଗବାଡ଼ି) ଠାରେ ରାଜତ୍ୱ କରୁଥିବା ଚୋଡ଼ଗଙ୍ଗ ଉତ୍କଳର ଗଙ୍ଗବଂଶର ପ୍ରତିଷ୍ଠାତା । କବି ରାଧାନାଥ ଏହି ଗଙ୍ଗବଂଶ ପ୍ରତି ସମ୍ମାନ ଜଣାଇ ବାମଣ୍ଡାଧିପତି ଗଙ୍ଗବଂଶାବତଂସ ବାସୁଦେବ ସୁଢ଼ଳଦେବଙ୍କୁ କାବ୍ୟଟି

ଉତ୍ସର୍ଗ କରି ୧୮୮୭ ସେପ୍ଟେମ୍ବର ୪ ତାରିଖରେ ଲେଖିଥିଲେ, ''ଏହି କ୍ଷୁଦ୍ର ପୁସ୍ତକର ନାୟକ ଆପଣଙ୍କର ପୂର୍ବପୁରୁଷ ଅଟନ୍ତି ଓ ବର୍ତ୍ତମାନକାଳରେ ଆପଣ ସେହି ଉଜ୍ଜ୍ୱଳ ବଂଶର ଗୌରବ କେବେ ଭୂମି ଉତ୍କଳ ଭୂମିକୁ ଅଳଂକୃତ କରିଛନ୍ତି । କବିଙ୍କ ଭାଷାରେ —

''ରଚିବେ ଯା ତୀରେ ରୁଚିର ନବର
ଦୂର ଭବିଷ୍ୟତେ ତୋର ବଂଶଧର ।''(ନନ୍ଦିକେଶ୍ୱରୀ,ରା.ଗ୍ର., ପୃ.-୬୬)

ଏଥିରୁ ଜଣାଯାଏ ଯେ ସୁଦ୍ଧଳଦେବଙ୍କ ପୂର୍ବପୁରୁଷ ଚୋଡ଼ଗଙ୍ଗଦେବ ଓ ନନ୍ଦିକେଶ୍ୱରୀ କାବ୍ୟର ନାୟକ ଚୋଡ଼ଗଙ୍ଗଦେବ ଏକ ଓ ଅଭିନ୍ନ ନୁହନ୍ତି । କାରଣ ପ୍ରଥମ ଚୋଡ଼ଗଙ୍ଗ ଏକ ଐତିହାସିକ ବ୍ୟକ୍ତି । କିନ୍ତୁ ଦ୍ୱିତୀୟଟି ହେଉଛି ଏକ ଐତିହାସିକ ନାମ ମାତ୍ର । ସୁବର୍ଣ୍ଣକେଶରୀଙ୍କ ସହିତ ମନ୍ତ୍ରୀ ବାସୁଦେବଙ୍କ ମନୋମାଳିନ୍ୟ, ବାସୁଦେବଙ୍କ ସହଯୋଗରେ ଚୋଡ଼ଗଙ୍ଗଙ୍କର ଓଡ଼ିଶା ଆକ୍ରମଣ ଓ ରାଜ୍ୟ ଅଧିକାର ଷ୍ଟର୍ଲିଙ୍ଗଙ୍କ ଓଡ଼ିଶା ଇତିହାସର ଏତିକି ଉପାଦାନ ଥିଲା ରାଧାନାଥଙ୍କ କାବ୍ୟର ଅବଲମ୍ବନ । ଯଯାତିକେଶରୀ, ଲଲାଟେନ୍ଦୁ କେଶରୀ ଓ ମରକତକେଶରୀ ଯେଉଁ ତିନି ଐତିହାସିକ ବ୍ୟକ୍ତିଙ୍କ ନାମ ଏହି ନନ୍ଦିକେଶ୍ୱରୀ କାବ୍ୟରେ ଚୋଡ଼ଗଙ୍ଗଙ୍କ ମୁଖରେ ଉଚ୍ଚାରିତ, ସେସବୁ ମଧ୍ୟ ଷ୍ଟର୍ଲିଙ୍ଗଙ୍କ ଓଡ଼ିଶା ଇତିହାସରେ ବର୍ଣ୍ଣିତ ହୋଇଛି । ଏହି ପବିତ୍ର ପ୍ରାଚୀନବଂଶ ମାତୃପାଦପଦ୍ମ ଗଙ୍ଗାଦେବୀଙ୍କଠାରୁ ଚୋଡ଼ଗଙ୍ଗଙ୍କର ଉଦ୍‌ଭବ ହୋଇଛି । ଏହି କିମ୍ବଦନ୍ତୀଟି ଉତ୍କଳ ଇତିହାସରେ ସେତେବେଳେ ପ୍ରସିଦ୍ଧିଲାଭ କରିଛି । କବିଙ୍କ ଭାଷାରେ —

''ମାତୃ ପାଦପଦ୍ମ ଉଦ୍ଦେଶେ ଜୁହାରି
ଅସିପତ୍ରେ ମୁହିଁ ହେଲି ନଦୀ ପାରି
ଏହି ଯେ ଦିଶଇ ନୀଳଗିରି ରେଖା
ଏହି ମୁଖେ ବନେ ବନେ ଗଲି ଏକା ।''(ନନ୍ଦିକେଶ୍ୱରୀ,ରା.ଗ୍ର.,ପୃ.-୬୨)

କବି ରାଧାନାଥ ନନ୍ଦିକାଙ୍କ ମୁଖରେ ଗଙ୍ଗାପୁତ୍ର ଚୋଡ଼ଗଙ୍ଗ ଦେବଙ୍କର ମହିମା ଓ ଦେବବ୍ରତ ଭୀଷ୍ମଙ୍କର ଶରଶଯ୍ୟା ସମ୍ପର୍କରେ ଉଲ୍ଲେଖ କରିବାକୁ ଯାଇ ଗାଇଛନ୍ତି —

''ଶୁଣିଛି ତୋରର ଜନନୀ ଜାହ୍ନବୀ
ହୃଦକି ତାଙ୍କର ବଳିଗଲା ପବି ?
କୁମରକୁ ପେଷି ଏ ଘୋର ସମରେ
ଧୈର୍ଯ୍ୟଧରି ରହିଛନ୍ତି ଦେଶାନ୍ତରେ

ଦେବବ୍ରତଙ୍କୁ ଯେ ଦେବୀ ପୂର୍ବଯୁଗେ
ରଣେ ଶୁଆଇଲେ ସୁତୀକ୍ଷ୍ଣ ଆଶୁଗେ ।''
(ନନ୍ଦିକେଶ୍ୱରୀ,ରା.ଗ୍ର. ପୃ.୭୦)

ଏଥିରୁ ଚୋଡ଼ଗଙ୍ଗଦେବଙ୍କର କୌଳିକ ମହତ୍ତ୍ୱର ପରିଚୟ ମିଳିବା ସଙ୍ଗେ ସଙ୍ଗେ କବି ନିଜେ ଚୋଡ଼ଗଙ୍ଗଙ୍କୁ ନିଷ୍କଳଙ୍କ ଚରିତ୍ର ରୂପେ ଚିତ୍ରଣ କରିଛନ୍ତି । କେଶରୀବଂଶୀୟ ଶେଷରାଜା ସୁବର୍ଣ୍ଣକେଶରୀଙ୍କ କନ୍ୟା ନନ୍ଦିକା ଉପଚାରିକା ଭାବରେ ଚୋରଗଙ୍ଗଙ୍କ ସମ୍ମୁଖରେ ଉପସ୍ଥିତ ହେବାବେଳେ ତାକୁ ଧିକ୍କାର କରି ଚୋଡ଼ଗଙ୍ଗ କହିଛନ୍ତି —

''ଯଯାତିଲଲାଟ ମରକତ ରୂପ
ଅଟନ୍ତି ଯେ କୁଳ-କେତନ ସ୍ୱରୂପ
ସେହି କୁଳେ ଜାତ ତୁହିକି ଦୁଃଶୀଳା
କେ କହିବ ମୋତେ କେମନ୍ତେ ମିଶିଲା
ପବିତ୍ର କେଶରୀ ବଂଶେ ଜାତ ହୋଇ
ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ
ତିନି ମହାପାପ ଏକ କରଣିରେ
ଅଦ୍ଭୂତ ସାଧନା ତୋର ଧରଣୀରେ ।''(ନନ୍ଦିକେଶ୍ୱରୀ, ରା.ଗ୍ର.-ପୃ. ୭୫)

ବୈତରଣୀ ନଦୀ ତୀରସ୍ଥିତ ନାଭିଗୟା ଯାଜପୁର ଯଯାତିକେଶରୀଙ୍କ କୀର୍ତ୍ତି । ଇଲାଟେନ୍ଦୁକେଶରୀଙ୍କ ପ୍ରଧାନ କୀର୍ତ୍ତି ଭୁବନେଶ୍ୱର ଓ ମରକତକେଶରୀଙ୍କ କୀର୍ତ୍ତି କଟକର କାଠଯୋଡ଼ି ବନ୍ଧ ଓଡ଼ିଶା ଇତିହାସରେ ଗୋଟିଏ ଗୋଟିଏ ଅକ୍ଷୟ କୀର୍ତ୍ତି । ଏହି ଐତିହାସିକ କୀର୍ତ୍ତିଗୁଡ଼ିକୁ ରାଧାନାଥ ତାହାଙ୍କ ପାର୍ବତୀ ଓ ଯଯାତିକେଶରୀ କାବ୍ୟରେ ଉଲ୍ଲେଖ କରିବାକୁ ଭୁଲି ନାହାନ୍ତି । ଇତିହାସ ଦୃଷ୍ଟିରୁ ଚୋଡ଼ଗଙ୍ଗଦେବଙ୍କର ରାଜ୍ୟଜୟ ପିପାସା, କିମ୍ବଦନ୍ତୀ ଅନୁସାରେ ମନ୍ତ୍ରୀ ବାସୁଦେବଙ୍କର ଷଡ଼ଯନ୍ତ୍ର କେଶରୀ ବଂଶ ପତନର କାରଣ ହୋଇଛି । ମାତ୍ର କବି କଳ୍ପନାରେ ଗୋଟିଏ ନାରୀ ପ୍ରେମକୁ କେନ୍ଦ୍ରକରି ଇତିହାସର ପଟ୍ଟପରିବର୍ତ୍ତନ ଘଟିଛି ।

ନନ୍ଦିକେଶ୍ୱରୀ କାବ୍ୟ ବର୍ଣ୍ଣିତ ସ୍ଥାନଗୁଡ଼ିକ ଭୌଗୋଳିକ ଓ କିମ୍ବଦନ୍ତୀମୂଳକ ବର୍ଣ୍ଣନାରେ ମହିମାନ୍ୱିତ । ଐତିହାସିକ ସତ୍ୟର ଆଭାସ ଏଥିରୁ ଉପଲବ୍‌ଧ୍ୟ । କଟକ ନଗରର ଉତ୍ତରଦିଗକୁ ମହାନଦୀ ପର୍ଯ୍ୟନ୍ତ ଥିଲା ଚୋଡ଼ଗଙ୍ଗଙ୍କ ଶିବିର । ଏହାର ପଶ୍ଚିମରେ ଥିଲା ବିଡ଼ାନାସୀଗଡ଼ । ଏହି ବିଡ଼ାନାସୀଠାରେ ମହାନଦୀର ବେଣୀମୁକ୍ତ ହୋଇ ମହାନଦୀ ଓ କାଠଯୋଡ଼ି ଆଖ୍ୟାରେ ପ୍ରବାହିତ ହେଉଅଛି । ଯେପରି —

"ସୌଧ କିରୀଟିନୀ, ଶୂରଙ୍କ ଜନନୀ
ମହାନଦୀ ମୁକ୍ତ-ବେଣୀ ମଥାମଣି
କାଳସ୍ରୋତେ ଲୀନ ଏବେ ବିଡ଼ାନାସୀ
ନାମ ସେହି ସ୍ରୋତେ ଆସିଅଛି ଭାସି ।"
(ନନ୍ଦିକେଶ୍ୱରୀ,ରା.ଗ୍ର. ପୃ ୭୭)

ନଗରୀ ଗ୍ରାମରୁ ପ୍ରାପ୍ତ ତମ୍ବାପଟ୍ଟାରୁ ଜଣାଯାଏ ଯେ ଗଙ୍ଗବଂଶୀୟ ଅନଙ୍ଗଭୀମ ଦେବ ମହାନଦୀକୂଳରେ ଅଭିନବ ବାରାଣସୀ କଟକ ପ୍ରତିଷ୍ଠା କରିଥିଲେ । ସେ ଖ୍ରୀ:ଅ: ୧୨୩୦ରୁ ୧୨୩୮ ପର୍ଯ୍ୟନ୍ତ ରାଜତ୍ୱ କଲେ । କବିଙ୍କ ବର୍ଣ୍ଣିତ ବିଡାନାସୀ ବାରାଣସୀ ଶବ୍ଦର ଅପଭ୍ରଂଶ । ବିଡ଼ାନାସୀର ଅର୍ଥ ନଦୀର ନାସି ଯେଉଁଠାରେ ବିଡ଼ା ବା ବିଭକ୍ତ ହୋଇଛି । ମହାନଦୀର ଚହଟାଘାଟଠାରୁ ଦକ୍ଷିଣ କୂଳରେ ଏବଂ କାଠଯୋଡ଼ିର ବାମକୂଳରେ ପଥରବନ୍ଧ ଗଢ଼ିଉଠିଥିଲା । ରାଧାନାଥଙ୍କ 'ବିଡ଼ାନାସୀଗଡ଼' ଆଧୁନିକ ବିଡ଼ାନାସୀ ଗ୍ରାମକୁ ଚିହ୍ନିତ କରୁଛି ।

ମାଦଳାପାଞ୍ଜି ବର୍ଣ୍ଣିତ କେଶରୀବଂଶର ଶେଷରାଜା ସୁବର୍ଣ୍ଣକେଶରୀଙ୍କ ସହିତ ଗଙ୍ଗବଂଶର ପ୍ରଥମ ରାଜା ଚୋଡ଼ଗଙ୍ଗ ଦେବଙ୍କ ଯୁଦ୍ଧ ବର୍ଣ୍ଣନା ଏହି କାବ୍ୟରେ ବେଶ ଜୀବନ୍ତ ହୋଇଛି । କବି ଗଙ୍ଗାଦେବୀଙ୍କ ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ ଚୋଡ଼ଗଙ୍ଗଙ୍କୁ ସଚେତନ କରି ଦେଇଛନ୍ତି–

"ଏ ରଣେ ଜିଣିଲେ ହେବୁ ତୁହି ଧନ୍ୟ,
ଏହି ଦେବୀ ହେବେ ସଦା ସୁପ୍ରସନ୍ନ ।" (ନନ୍ଦିକେଶ୍ୱରୀ,ରା.ଗ୍ର. ପୃ-୭୮)

ତାପରେ ଗଙ୍ଗାଙ୍କ ମୁଖରେ ମହାନଦୀର ଉତ୍ପତ୍ତି କଥା କହି ମହାନଦୀ କୂଳବର୍ତ୍ତୀ ନୀଳମାଧବ, ଭଟ୍ଟାରିକା, ଚର୍ଚ୍ଚିକା, ସିଂହନାଥ ଓ ଧବଳେଶ୍ୱର ଆଦି ଦେବସ୍ଥାନର ସୂଚନା ଦେଇଛନ୍ତି । ଗଙ୍ଗାଦେବୀ ଯେଉଁଠାରେ ଆବିର୍ଭୂତା ହୋଇଥିଲେ, ତାହାର ନାମ ଚୋଡ଼ଗଙ୍ଗ ଦହ ଏବେ ମଧ୍ୟ ଅଛି । ଯେପରି –

"ବୋଲାଇବ ଏହା ଉତ୍କଳେ ସନ୍ତତେ
ଚୋରଗଙ୍ଗ ଦହ ତୋର ନାମ ମତେ ।"
ଏହା କହି ଦେବୀ ହେଲେ ଅନ୍ତର୍ହିତ
ଜଳଦେ ଯେସନେ ମିଶଇ ତଡ଼ିତ ।" (ନନ୍ଦିକେଶ୍ୱରୀ, ରା.ଗ୍ର. ପୃ-୭୬)

କଟକରୁ ଚାରିକୋଶ ଦୂରବର୍ତ୍ତୀ ସାରଙ୍ଗଗଡ଼ ନିକଟସ୍ଥ ଅରଣ୍ୟ ମଧ୍ୟରେ ଏହି ଚୁଡ଼ଙ୍ଗଦହ ଅବସ୍ଥିତ । କେହି କେହି କହନ୍ତି ଯେ ଏହା ମଧ୍ୟରେ ଗଙ୍ଗାଦେବୀଙ୍କର ମନ୍ଦିର ଅଛି ଏବଂ ୧୮୬୬ର ନଅଙ୍କ ଦୁର୍ଭିକ୍ଷ ବେଳେ କିଛି ଜଳ ଶୁଖିଯିବାରୁ ଏହି

ମନ୍ଦିରର ଚୂଡ଼ା ଦୃଷ୍ଟିଗୋଚର ହୋଇଥିଲା । ଦେବୀଦ୍ୱାର ଗିରିଶୃଙ୍ଗ, ସାରଙ୍ଗଗଡ଼ଠାରୁ ଆଠଗଡ଼, କଟକର ପଶ୍ଚିମରେ ସପ୍ତଶଯ୍ୟା ପର୍ବତ, ବୌଦ୍ଧକୀର୍ତ୍ତିରାଜି ମଣ୍ଡିତ ନରାଜ ଓ ଶୈଳ ସର୍ପେଶ୍ୱରଆଦି ଐତିହାସିକ ସ୍ଥାନଗୁଡ଼ିକର ବର୍ଣ୍ଣନା ରାଧାନାଥଙ୍କ ଲେଖନୀରେ ହୋଇଛି ଜୀବନ୍ତ । କିମ୍ବଦନ୍ତୀ ଭିତ୍ତିକ ଇତିହାସ ସହିତ ଯାଜପୁର, କଟକ, ଭୁବନେଶ୍ୱର ଓ ପୁରୀର ସଂପର୍କକୁ ଆଧାର କରି ଓଡ଼ିଶା ଇତିହାସର ସ୍ପଷ୍ଟଚିତ୍ର ରାଧାନାଥଙ୍କ କାବ୍ୟକୃତିରୁ ପରିଲକ୍ଷିତ ହୁଏ । ସେ ସମୟର ଇତିହାସର ପ୍ରଭାବ ରାଧାନାଥଙ୍କ ଏହି କାବ୍ୟରେ ଅନୁଭୂତ ହୋଇଥାଏ ।

## ଇତିହାସ ଓ କିମ୍ବଦନ୍ତୀର ସମନ୍ୱୟ : ପାର୍ବତୀ

ଓଡ଼ିଶାର ଇତିହାସ ଓ କିମ୍ବଦନ୍ତୀକୁ ନେଇ ରାଧାନାଥ ଲେଖିଲେ 'ପାର୍ବତୀ' କାବ୍ୟ । ଗଙ୍ଗେଶ୍ୱରଦେବଙ୍କ ନିଜ କନ୍ୟା ସହିତ ସହବାସ ଜନିତ ପାପ, ଅପବାଦ ଓ ତାର ପ୍ରାୟଶ୍ଚିତ୍ତ ସ୍ୱରୂପ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖନନ ଆଦି ଏ କାବ୍ୟର ବିଷୟବସ୍ତୁ । ଅସଂପୂର୍ଣ୍ଣ ପାର୍ବତୀ କାବ୍ୟଟି ପରବର୍ତ୍ତୀ ସଂସ୍କରଣରେ ଗଦ୍ୟ ଉପସଂହାର ଦ୍ୱାରା ସଂପୂର୍ଣ୍ଣ କରି ଦିଆଯାଇଛି । କାବ୍ୟର ବର୍ଣ୍ଣନାନୁସାରେ ରାଜା ଗଙ୍ଗେଶ୍ୱର ମୟୂରଭଞ୍ଜ ଅନ୍ତର୍ଗତ ମେଘାସନ ଶିଖରୀର ଦକ୍ଷିଣ ଦିଗବର୍ତ୍ତୀ 'ରତ୍ନପୁର' ଦୁର୍ଗର ଅବରୋଧରେ ସଂପୃକ୍ତ ରହିଛନ୍ତି । କବିଙ୍କ ଭାଷାରେ—

ସମସ୍ତ ଉତ୍କଳେ ଦିଗ୍‌ବିଜୟ ସାରି
ବୀରସିଂହ ଗଙ୍ଗେଶ୍ୱର
ରତ୍ନପୁର ଦୁର୍ଗ ଅବରୋଧେ ଏବେ
ହୋଇଛନ୍ତି ତତପର ।

(ପାର୍ବତୀ, ରା.ଗ୍ର., ପୃ. ୧୧୬)

କବି ଏଠାରେ କଞ୍ଚୁକୀ ମୁଖରେ ଉତ୍କଳର କିମ୍ବଦନ୍ତୀମୂଳକ ଇତିହାସ ବର୍ଣ୍ଣନା କରିଛନ୍ତି । ଗଙ୍ଗବଂଶୀ ରାଜା ଗଙ୍ଗେଶ୍ୱର ଓ ରାଣୀ ପାର୍ବତୀ ପ୍ରଭୃତି କାବ୍ୟର ନାୟକ ନାୟିକା ଆଦି କାଳ୍ପନିକ ଓ ଏହି କାବ୍ୟଟି କୌଶଲ୍ୟାଗଙ୍ଗ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି ଯେ କେଶରୀ ବଂଶ ୧୧୩୨ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତା'ପରେ ଗଙ୍ଗବଂଶର ପ୍ରଥମ ରାଜା ଅନନ୍ତବର୍ମନ ଚୋଡ଼ଗଙ୍ଗଦେବ ରାଜା ହେଲେ ।ସେ ପ୍ରଥମେ କର୍ଣ୍ଣାଟ ଦେଶରେ ଥିଲେ । ସେ ୧୨୩୧ସାଲ ଆଶ୍ୱିନ ଦି୧୩ନରେ କଟକ ଜୟ କରିଥିଲେ । ସେ ପୁରୀ ଦେଉଳରେ ମାଦଳାପାଞ୍ଜିର ପ୍ରଥମ ଲେଖା ଚଳାଇଲେ । ତାଙ୍କର ପୁତ୍ର ଗଙ୍ଗେଶ୍ୱର ଦେବ ୧୧୫୨ ଖ୍ରୀ:ଅରେ ରାଜତ୍ୱ କଲେ । ତାଙ୍କ ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ

ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତାଙ୍କର ଯାଜପୁର, ଚୌଦ୍ୱାର, ଅମରାବତୀ, ଶାରଙ୍ଗଗଡ଼ ଓ ବାରାଣସୀ କଟକ ଆଦି ପଞ୍ଚକଟକ ଥିଲା । ସେ ତାଙ୍କ କନ୍ୟା ସହ-ସହବାସ ଜନିତ ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ଧଉଳିଠାରେ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଳାଇଲେ । ମାଦଳାପାଞ୍ଜିର ଉକ୍ତିଟି ନିମ୍ନରେ ପ୍ରଦତ୍ତ ହେଲା—‘‘ଏ ଗଙ୍ଗେଶ୍ୱର ଦେବ ଗୋଦାବରୀଠାରୁ ଗଙ୍ଗା ପର୍ଯ୍ୟନ୍ତ ଏକଛତ୍ର କଲେ । ଏ ରାଜା ବ୍ରାହ୍ମଣମାନଙ୍କୁ ପଚାରିଲେ ଯଉ ଫଳ ଉପୁଯାଇ ସେ ଫଳ ଖାଇ କି ନଖାଇ । ତହିଁକି ବ୍ରାହ୍ମଣେ ବୋଇଲେ ଯେ ଫଳ ଉପୁଜାଇ ସେ ଫଳ ଖାଇ । ସେଠାରୁ ରାଜା ଝିଅଙ୍କ ସଙ୍ଗେ ଅଙ୍ଗସଙ୍ଗ ହେଲେ । ସେ ଝିଅ ଗର୍ଭବାସ ହେଲେ । ତହିଁ ସକାଶୁ ସେ କଥା ପ୍ରଘଟ ହେଲା । ସେଠାରୁ ରାଜା ବ୍ରାହ୍ମଣଙ୍କୁ ପଚାରିଲେ । ତହିଁକି ବ୍ରାହ୍ମଣମାନେ କହିଲେ, ତୁମ୍ଭେ ଝିଅଙ୍କ ସଙ୍ଗେ ଅଙ୍ଗସଙ୍ଗହେଲ । ଏ କଥା ଗର୍ହିତ ହେଲା । ଏକଥା ଉଚିତ ନୁହଁଇ । ତହିଁକି ରାଜା ପଚାରିଲେ ଏଥିକି ପ୍ରାଶ୍ଚିତ । ତହିଁକି ବ୍ରାହ୍ମଣ କହିଲେ—ଦୁଇମାଠିଆ ପାଣିଘେନି ଚାଲିଯିବ । ତାହା ଗୋଡ଼ରୁ ଯେଉଁଠାରୁ ରୁଧିର ଜାତ ହେବ ସେହିଠାରେ ଚାରିବାହି ଆୟତନରେ ପୋଖରୀ ଖୋଳାଯିବ । ମଧରେ ଦୀପଦଣ୍ଡୀ ହେବ । ତହିଁ ଭିତରେ ସେ ଝିଅ ରହିବ । କାହାରି ମୁଖ ନ ଚାହିଁବ । ଏମନ୍ତ ସେ ଏହାଙ୍କ ଦିହକ ରହିବେ । ତେବେ ସେ ତହିଁରେ ଦୋଷଯିବ । ସେଠାରୁ ସେ ରାଜା ଏହା ଶୁଣି ଝିଅଙ୍କ ହାତରେ କାଖରେ ପାଣି ଦୁଇ ମାଠିଆ ଦେଇ ଚଳାଇଲେ । ଏ ଝିଅଙ୍କୁ ଏରୂପେ ଚଳାଇଲାବେଳକୁ ରାଜ୍ୟଲୋକେ ଶୁଣି ବହୁତ ଉପହାସ କଲେ । ରାଜା ବଡ଼ ସଙ୍କୋଚ ପାଇଲେ । ଏ ଝିଅକୁ ନଅରକୁ ନେଲେ । ଏ ଉତ୍ତାରୁ ଝିଅକୁ ଯେଉଁଯାଏ ବୁଲାଇ ରକତଗୋଡ଼ରୁ ବହି ନଥିଲା ସୀମାନ୍ତ ଘେନି ପୋଖରୀ ଦୀପଦଣ୍ଡୀ କଲେ । ଦୀପଦଣ୍ଡୀ କରି ଝିଅକୁ ଆଣି ତହିଁରେ ରଖିଲେ । ରାଣୀମାନେ ରାଜାଙ୍କ ମୁଣ୍ଡ ଛେଚି ମାଇଲେ । ସେଇଦିନୁ ପୋଖରୀ କୌଶଲ୍ୟାଗଙ୍ଗ ବୋଲାଇଲା । (ମାଦଳାପାଞ୍ଜି, ରାଜଭୋଗ ଇତିହାସ-୧୯୬୯, ପୃ-୨୩,୨୪)

ଯେପରି କବିଙ୍କ ଭାଷାରେ—

‘‘ଗୁପ୍ତପ୍ରେମେ ପଡ଼ି ସସତ୍ତ୍ୱା କୌଶଲ୍ୟା
ହେଲା ସେ ସେନା-ନିବେଶେ
‘‘ଜଳେ ତୈଳ ବିନ୍ଦୁ ପରାଏ କଳଙ୍କ
ବ୍ୟାପିଗଲା ଦେଶେ ଦେଶେ ।’’

(ପାର୍ବତୀ, ରାଧାନାଥ ଗ୍ରନ୍ଥାବଳୀ, ପୃ-୧୧୬)

ମାଦଳାପାଞ୍ଜିକୁ ଭିତ୍ତିକରି ପ୍ୟାରୀମୋହନ ଆଚାର୍ଯ୍ୟ ତାହାଙ୍କ ଓଡ଼ିଶା ଇତହାସରେ ଏ ବିଷୟରେ ମଧ ଉଲ୍ଲେଖ କରିଅଛନ୍ତି । ମାଦଳାପାଞ୍ଜିର ବିବରଣୀ ସହିତ ଗଙ୍ଗବଂଶୀୟ ରାଜାମାନଙ୍କ ପ୍ରଦତ୍ତ ତାମ୍ରଫଳକମାନଙ୍କରୁ ଯେଉଁ ସୂଚନା ମିଳେ, ତା'ର ତୁଳନା କରିବା ଏଠାରେ ଆବଶ୍ୟକ । ଗଙ୍ଗବଂଶର ଆଦିରାଜା କାମାର୍ଣ୍ଣବ ଇନ୍ଦ୍ରବର୍ମା କର୍ଣ୍ଣାଟକରୁ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଆସି ଦକ୍ଷିଣ କଳିଙ୍ଗ ରାଜ୍ୟ ଅଧିକାର କଲେ । ପାରଳାଖେମୁଣ୍ଡିର ମୁଖଲିଙ୍ଗ ନଗରୀ ତାହାଙ୍କ ରାଜଧାନୀ ଥିଲା । ତାଙ୍କ ରାଜ୍ୟ ଦକ୍ଷିଣରେ ବିଜୟନଗରସ୍ଥ ସିଂହାଚଳ ପର୍ଯ୍ୟନ୍ତ ଏବଂ ଉତ୍ତରରେ ଚିଲିକା ହ୍ରଦ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଆଧୁନିକ ଗଞ୍ଜାମ ଜିଲ୍ଲା ଓ ଜୟପୁର ଏ ସମସ୍ତ ଅଂଶ ବିଶାଖାପତ୍ତନ ଉପକୂଳର ଉତ୍ତରାଂଶ ସେହି ଗଙ୍ଗବଂଶର ଅଧୀନରେ ଥିଲା । ମହେନ୍ଦ୍ରଗିରିର ଗୋକର୍ଣ୍ଣେଶ୍ୱର ଥିଲେ ତାଙ୍କର ଇଷ୍ଟଦେବତା । ଆନ୍ଧ୍ରର ପୂର୍ବ ଚାଲୁକ୍ୟ ଓ ଚୋଳ ରାଜାମାନଙ୍କ ସଙ୍ଗେ ଗଙ୍ଗବଂଶର ବେଳେବେଳେ ଯୁଦ୍ଧ ସଂଘଟିତ ହେଉଥିଲା । କିନ୍ତୁ ସେମାନେ ସ୍ୱାଧୀନତାକୁ ବଜାୟ ରଖିଥିଲେ । ଗଙ୍ଗାବଂଶର ତୃତୀୟ ବଜ୍ରହସ୍ତ ଅନନ୍ତବର୍ମା ଖ୍ରୀ:ଅ ୧୦୪୦ରୁ ୧୦୭୦ ପର୍ଯ୍ୟନ୍ତ ରାଜତ୍ୱ କଲେ । ସେ ସମ୍ଭବତଃ ସୋମବଂଶୀ ବା କେଶରୀବଂଶୀୟ କୌଣସି ରାଜାଙ୍କୁ ପରାସ୍ତ କରିଥିବେ । ତାଙ୍କ ପୁତ୍ର ପ୍ରଥମ ରାଜରାଜଦେବ ଆଠବର୍ଷ ରାଜତ୍ୱ କରିବା ପରେ ତାହାଙ୍କ ପୁତ୍ର ଅନନ୍ତବର୍ମା ଚୋଡ଼ଗଙ୍ଗଦେବ ଖ୍ରୀ:ଅ: ୧୦୭୮ରେ କଳିଙ୍ଗରେ ରାଜତ୍ୱ କଲେ । ସେ ଖ୍ରୀ:ଅ: ୧୧୧୮ ପୂର୍ବରୁ ଉତ୍କଳ ଅଧିକାର କରିଥିଲେ (Indian Antiquary, Vol.XVIII, P-29) । ତାଙ୍କର ଚାଲୁକ୍ୟ ଗଙ୍ଗ, ବିକ୍ରମଗଙ୍ଗ, ବୀର ରାଜେନ୍ଦ୍ର ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ଦେବ ଆଦି ଭିନ୍ନ ଭିନ୍ନ ନାମ ବା ଉପାଧି ଥିଲା । ମାତା ଚୋଳବଂଶୀୟ ଓ ପିତା ଗଙ୍ଗବଂଶୀୟ ଥିବାରୁ ତାଙ୍କର ନାମ ହୋଇଥିଲା ଚୋଳଗଙ୍ଗ ବା ଚୋରଗଙ୍ଗ ବା ଚୋଡ଼ଗଙ୍ଗ । ତାଙ୍କ ମାତାମହୀ ଚାଲୁକ୍ୟ ବଂଶ ସହିତ ବୈବାହିକ ସମ୍ପର୍କ ରଖିଥିବାରୁ ସେ ହେଲେ ଚାଲୁକ୍ୟ ଗଙ୍ଗ । କିନ୍ତୁ ତାଙ୍କର ପ୍ରକୃତ ନାମ ଥିଲା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ । ଗଙ୍ଗାବଂଶର ତାମ୍ରଶାସନ ଅନୁସାରେ ସେ ହିଁ କେବଳ ଗଙ୍ଗେଶ୍ୱର ନାମ ଧାରଣ କରିଥିଲେ । ସେ ବେଙ୍ଗୀ ରାଜ୍ୟ ଜୟକରି ଗୋଦାବରୀ ପର୍ଯ୍ୟନ୍ତ ଦକ୍ଷିଣ ଦିଗରେ ରାଜ୍ୟ ବିସ୍ତାର କରିଥିଲେ ଓ ଉତ୍କଳ ରାଜାଙ୍କୁ ପ୍ରଥମେ କରଦରାଜା ରୂପେ ରଖିଥିଲେ । ଛତିଶଗଡ଼ ରତ୍ନପୁରର ରାଜା ରତ୍ନଦେବଙ୍କ ସହିତ ଚୋଡ଼ଗଙ୍ଗଦେବଙ୍କ ଯୁଦ୍ଧ ହୋଇଥିଲା ଓ ସେଥିରେ ଚୋଡ଼ଗଙ୍ଗ ପରାସ୍ତ ହୋଇଥିଲେ । ରତ୍ନଦେବ ଖ୍ରୀ:ଅ: ୧୧୧୪ରୁ ୧୧୪୫ ପର୍ଯ୍ୟନ୍ତ ରାଜତ୍ୱ କଲେ [Epigraphica Indica, Vol-I, P-207] । ବଙ୍ଗଳାର ସେନବଂଶୀୟ ରାଜାମାନଙ୍କ ସହିତ ତାଙ୍କର ସମ୍ପର୍କ ଥିଲା ।

କାରଣ 'ବଲ୍ଲାଳ ଚରିତ' ରେ ବିଜୟ ସେନଙ୍କୁ ଚୋଡ଼ଗଙ୍ଗଙ୍କ ସଖା ବୋଲି କୁହାଯାଇଛି । ତାମ୍ରଶାସନମାନଙ୍କରୁ ଜଣାଯାଏ ଯେ ସେ ଅନେକ ଦାନଧର୍ମ କରିଥିଲେ ଓ ତାଙ୍କ ଆଦେଶରେ ପୁରୀ ବଡ଼ଦେଉଳ ନିର୍ମିତ ହୋଇଥିଲା ।

ଏହି ଉଭୟ ବିବରଣୀର ତୁଳନା କଲେ ମାଦଳାପାଞ୍ଜିରେ ଥିବା ଭ୍ରମ ଜାଣିହୁଏ । ମାଦଳାପାଞ୍ଜିରେ ଚୋଡ଼ଗଙ୍ଗଙ୍କ ପୁତ୍ର ନାମ ଗଙ୍ଗେଶ୍ୱର ଦେବ । କିନ୍ତୁ ତାମ୍ରଶାସନରେ ଚୋଡ଼ଗଙ୍କ ନିଜେ ଗଙ୍ଗେଶ୍ୱର । ଅନ୍ୟ କେହି ସେହି ବଂଶର ରାଜା ଗଙ୍ଗେଶ୍ୱର ନାହାନ୍ତି । କିନ୍ତୁ ପାଞ୍ଜିକାର ଗଙ୍ଗେଶ୍ୱରଙ୍କୁ ଆଉଜଣେ ରାଜା ବୋଲି ଧରି ଚୋଡ଼ଗଙ୍ଗଙ୍କ ଠିକ୍ ପରବର୍ତ୍ତୀ ରାଜା ବୋଲି ଉଲ୍ଲେଖ କରିଛନ୍ତି ଓ ଏହି ରାଜାଙ୍କର ତାଙ୍କ ନିଜ କନ୍ୟା ସହିତ ଏଭଳି କୁତ୍ସିତ ସମ୍ପନ୍ଧ ଥିଲା ବୋଲି ପ୍ରଚାର କରିଛନ୍ତି । ମାଦଳାପାଞ୍ଜିରେ ଚୋଡ଼ଗଙ୍ଗ ଖ୍ରୀ:ଅ: ୧୧୩୧ରେ ଉତ୍କଳ ଜୟ କରି ଖ୍ରୀ:ଅ: ୧୧୫୧ ପର୍ଯ୍ୟନ୍ତ ରାଜତ୍ୱ କଲେ । କିନ୍ତୁ ତାମ୍ରଶାସନ ଅନୁସାରେ ସେ ୧୧୧୮ ପୂର୍ବରୁ ଉତ୍କଳ ଜୟ କରି ୧୧୪୮ ପର୍ଯ୍ୟନ୍ତ ସେଠାରେ ରାଜତ୍ୱ କରିଥିଲେ । ଯେବେ ଗଙ୍ଗେଶ୍ୱର ନାମ ଦ୍ୱାରା ତାଙ୍କୁ ବୁଝାଯାଏ, ତେବେ ମଧ ତାଙ୍କ ଧର୍ମ ଜୀବନର ଯେଉଁସବୁ ବିବରଣ ଦିଆଯାଇଛି ସେଥିରୁ ଜଣାପଡ଼େ ସେ କେବେ କନ୍ୟା ସହିତ ସହବାସ ସମ୍ପର୍କୀୟ ପାପ କାର୍ଯ୍ୟରେ ଲିପ୍ତ ହୋଇ ନଥିବେ । ପାର୍ବତୀ କାବ୍ୟରେ ଯେଉଁ ରତ୍ନପୁର 'ଯୁଦ୍ଧର ବର୍ଣ୍ଣନା ଅଛି ସେହି ରତ୍ନପୁରର ନାମ ମଧ ଇତିହାସରୁ ମିଳେ । ଆଧୁନିକ ଛତିଶଗଡ଼ର ପୂର୍ବନାମ ଥିଲା ରତ୍ନପୁର । ଏହା ପଶ୍ଚିମ କଳିଙ୍ଗର ଅନ୍ତର୍ଭୁକ୍ତ ଥିଲା । କାରଣ କଳିଙ୍ଗ ସୀମା ରତ୍ନପୁରର ଉତ୍ତର ପଶ୍ଚିମଦିଗରେ ଅମରକଣ୍ଟକ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଚେଦୀ ରାଜ୍ୟର କାଳାଚୁରୀମାନେ ପଶ୍ଚିମ କଳିଙ୍ଗ ଅଧିକାର କରି ନିଜେ 'କଳିଙ୍ଗରାଜା' ଉପାଧି ଗ୍ରହଣ କରିଥିଲେ । ସେହିଦିନଠାରୁ ଚେଦୀବଂଶୀୟ କାଳାଚୁରୀ ରାଜାମାନଙ୍କୁ 'ତ୍ରିକଳିଙ୍ଗାଧିପତି' ଉପାଧିରେ ଭୂଷିତ କରାଗଲା । ରତ୍ନପୁରରେ ସେହି କଳିଙ୍ଗରାଜାଙ୍କ ବଂଶଧର ଦ୍ୱିତୀୟ ରତ୍ନଦେବ ଖ୍ରୀ:ଅ: ୧୧୧୪ରୁ ୧୧୪୫ ମଧ୍ୟରେ ରାଜତ୍ୱ କରିଥିଲେ । ସେ କଳିଙ୍ଗଦେଶର ରାଜା ଚୋଡ଼ଗଙ୍ଗଙ୍କୁ ଯୁଦ୍ଧରେ ପରାସ୍ତ ମଧ କଲେ (Indian Antiquiary, Vol. XXII, P-82) ଖ୍ରୀ:ଅ: ୧୧୪୫ ବେଳକୁ ଚୋଡ଼ଗଙ୍ଗଦେବ ଜୀବିତ ଥିଲେ । ତେଣୁ ରତ୍ନପୁର ଓ କଳିଙ୍ଗ ଯୁଦ୍ଧ ନିଶ୍ଚୟ ଚୋଡ଼ଗଙ୍ଗଦେବଙ୍କ ସମୟରେ ଘଟିଥିଲା । ଚୋଡ଼ଗଙ୍ଗଦେବ ଉତ୍ତର ଦକ୍ଷିଣରେ ଦିଗ୍‌ବିଜୟୀ ହୋଇଥିଲେ ସୁଦ୍ଧା ପଶ୍ଚିମ ଦିଗରେ ସେତେଦୂର ସଫଳ ହୋଇ ପାରିନଥିଲେ । ଚୋଡ଼ଗଙ୍ଗ ୧୧୩୫ ସାଲରେ ଯେଉଁ ତମ୍ବାପଟ୍ଟା ଖୋଦନ କରାଇଥିଲେ,ସେଥିରେ ସେ ରତ୍ନପୁର ବିଷୟ ଉଲ୍ଲେଖ କରି ନାହାନ୍ତି । ସେ ନିଜେ

ଗଙ୍ଗେଶ୍ୱର ଥିଲେ ଓ ତାଙ୍କ ସଙ୍ଗେ ରତ୍ନପୁର ରାଜାଙ୍କ ଯୁଦ୍ଧ ହୋଇଥିଲା । ନନ୍ଦିକେଶ୍ୱରୀ କାବ୍ୟରେ ଯେଉଁ ଚୋଡ଼ଗଙ୍ଗଙ୍କ ଚରିତ୍ର ଚିତ୍ରିତ ହୋଇଛି, ସେ ଚୋଡ଼ଗଙ୍ଗଙ୍କ ପକ୍ଷରେ ଏଭଳି ପାପଘଟଣା ସମ୍ପୂର୍ଣ୍ଣ ଅସମ୍ଭବ । କିନ୍ତୁ ଚୋଡ଼ଗଙ୍ଗ କୌଣସି ପୁତ୍ରର ନାମ ଗଙ୍ଗେଶ୍ୱର ନଥିଲା । ତାଙ୍କର ପ୍ରଥମ ତିନି ପୁତ୍ରଙ୍କ ରାଜତ୍ୱ ଖୁବ୍ କ୍ଷଣସ୍ଥାୟୀ ଥିଲା । ସେମାନଙ୍କ ରାଜତ୍ୱ ସମ୍ପର୍କରେ ତମ୍ବାପଟ୍ଟାରୁ କିଛି ପ୍ରମାଣ ମିଳେ ନାହିଁ । ରତ୍ନପୁର ରାଜବଂଶାବଳୀରେ ଏମାନଙ୍କ ସମ୍ପର୍କରେ ବିଶେଷ କିଛି ଉଲ୍ଲେଖ ନାହିଁ । ଅନଙ୍ଗଭୀମଦେବଙ୍କ ସମୟରେ ରତ୍ନପୁର ସଙ୍ଗେ ଯୁଦ୍ଧ ହୋଇଥିବା ପ୍ରସଙ୍ଗ ରତ୍ନପୁର ଲିପିରୁ ଜଣାଯାଏ । ଅନଙ୍ଗଭୀମଦେବଙ୍କ ନାମ ଗଙ୍ଗେଶ୍ୱର ନଥିଲା । ସେ ଖ୍ରୀ:ଅ: ୧୧୭୬ରୁ ୧୧୯୬ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ସମୟରେ ରତ୍ନପୁରର ରାଜାଥିଲେ ପୃଥ୍ୱୀଦେବ । ତାଙ୍କ ସମ୍ପର୍କରେ (Epigraphica Indica, Vol.-II, P-87) ରେ ଉଲ୍ଲେଖ ଅଛି ଯେ ଚନ୍ଦ୍ରଙ୍କୁ ରାହୁ ଗ୍ରାସ କଲାପରି ପୃଥ୍ୱୀଦେବ ଚୋଡ଼ଗଙ୍ଗଙ୍କୁ ଗ୍ରାସ କରିଥିଲେ । ଏପରିକି ଦାକ୍ଷିଣାତ୍ୟରେ ଚୋଡ଼ ଓ କଳିଙ୍ଗର ଗଙ୍ଗବଂଶର ସମ୍ମିଳିତ ସୈନ୍ୟଙ୍କୁ ସେ ପରାସ୍ତ କରିଥିଲେ । କାରଣ ସେତେବେଳକୁ ଚୋଡ଼ଗଙ୍ଗଦେବ ମୃତ ଥିଲେ ଓ ଦାକ୍ଷିଣାତ୍ୟରେ ଚୋଡ଼ ଓ କଳିଙ୍ଗର ଗଙ୍ଗବଂଶୀ ରାଜାମାନେ ବଳଶାଳୀ ଥିଲେ । ସେତେବେଳେ ଅନଙ୍ଗଭୀମଦେବଙ୍କ ଉପାଧି ଥିଲା 'ତ୍ରିକଳିଙ୍ଗନାଥ' । ସେ ଆଦୌ ରତ୍ନପୁର ଅଭିଯାନ କରି ନାହାନ୍ତି । ଚୋଡ଼ଗଙ୍ଗଦେବଙ୍କ ପୁତ୍ରମାନଙ୍କ ଅଭିଲେଖରୁ ମଧ୍ୟ ରତ୍ନପୁର ଯୁଦ୍ଧ ପ୍ରସଙ୍ଗର କୌଣସି ସୂଚନା ମିଳେ ନାହିଁ । ରତ୍ନପୁର ଲିପିରୁ କେବଳ ଅନନ୍ତବର୍ମନ ଚୋଡ଼ଗଙ୍ଗଦେବ ଓ ଅନଙ୍ଗଭୀମଦେବଙ୍କ ବିବରଣୀ ମିଳୁଛି । କାମାର୍ଣ୍ଣବଦେବ, ରାଘବଦେବ ଓ ରାଜରାଜଦେବ କାହାରି ମଧ୍ୟ ଗଙ୍ଗେଶ୍ୱର ନାମ ନଥିଲା ଓ ସେମାନେ କୌଣସି ସ୍ଥାନକୁ ଯୁଦ୍ଧ କରିବାକୁ ଯାଇନଥିଲେ । ତେବେ ଚୋଡ଼ଗଙ୍ଗଙ୍କ ନାମରେ ଏଭଳି ଅପବାଦ କିପରି ମାଦଳାପାଞ୍ଜିରେ ସ୍ଥାନ ପାଇଲା ? ମାଦଳାପାଞ୍ଜି ଲେଖା ଚୋଡ଼ଗଙ୍ଗଙ୍କ ସମୟରୁ ଆରମ୍ଭ ହୋଇଥିଲା । ଡଃ ପାଣିଗ୍ରାହୀଙ୍କ ମତରେ ମାଦଳାପାଞ୍ଜି ଗଙ୍ଗରାଜତ୍ୱ ମଧ୍ୟରେ ଲେଖା ହୋଇଥିଲା । ଗଙ୍ଗବଂଶର ଜଣେ ମାତ୍ର ରାଜା ବଞ୍ଚିଥିବା ପର୍ଯ୍ୟନ୍ତ ଏପରି ଘଟଣା ଆଦୌ ଲିପିବଦ୍ଧ ହୋଇ ପାରିନଥିବ । ସେତେବେଳେ ଓଡ଼ିଆ ଅକ୍ଷର ବର୍ତ୍ତମାନ ଆକାରରେ ନଥିଲା । ନରସିଂହଦେବଙ୍କ ସମୟରେ ନାଗରୀ ଅକ୍ଷର ମିଶା ଓଡ଼ିଆ ଅକ୍ଷର ପ୍ରଚଳିତ ଥିଲା । ମୁଖଲିଙ୍ଗ ଓ ଶ୍ରୀକୂର୍ମ ମନ୍ଦିର ମାନଙ୍କରେ ଯେଉଁ ଲିପି ସବୁ ଅଛି, ତାହା ପୁରୁଣା କର୍ଣ୍ଣାଟୀ ଅକ୍ଷର ଗଙ୍ଗବଂଶ ରାଜାମାନେ ଦକ୍ଷିଣର କର୍ଣ୍ଣାଟ ଦେଶରୁ ଆସିଥିବାରୁ ପ୍ରାଚୀନ କର୍ଣ୍ଣାଟୀ ଅକ୍ଷରକୁ ଛାଡ଼ିପାରି ନାହାନ୍ତି । ଚୋଡ଼ଗଙ୍ଗ ଦେବଙ୍କ ସମୟରେ

ତାଳପତ୍ର ଲେଖା ପାଞ୍ଜି ନୂତନ ଭାବରେ ନକଲ କଲାବେଳେ ପରବର୍ତ୍ତୀ ରାଜାଙ୍କ ସମୟରେ ଏଭଳି ଘଟଣାଗୁଡ଼ିକ ମାଦଳାପାଞ୍ଜିରେ ସ୍ଥାନ ପାଇଲା । ତେଣୁ କାମାର୍ଣ୍ଣବଦେବଙ୍କ ନାମରୁ ପାଞ୍ଜିକାରମାନେ ଭିନ୍ନ ଅର୍ଥରେ ବୁଝି ତାଙ୍କ ମୃତ୍ୟୁର ବହୁକାଳପରେ ସେ ପ୍ରବାଦଟିକୁ ତାଙ୍କ ନାମର ଅର୍ଥ ସଙ୍ଗେ ଯୋଡ଼ି ଏକ ନୂତନ ନାମଧାରୀ ଗଙ୍ଗେଶ୍ୱର ଦେବଙ୍କୁ କଳ୍ପନାରୁ ସୃଷ୍ଟି କଲେ । ତେବେ କୌଶଲ୍ୟା ଗଙ୍ଗା ବା କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଦନର ତାତ୍ପର୍ଯ୍ୟ କ'ଣ ? ମାଦଳାପାଞ୍ଜିର ତିନୋଟି ସ୍ଥାନରେ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଦନ ବିଷୟ ଉଲ୍ଲେଖ ଅଛି । ଧର୍ମଶୀଳ କେଶରୀଙ୍କ ଅମଳରେ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖୋଳାଯାଇଥିଲା । ଏ ପୁଷ୍କରିଣୀ ଚାରିଦିଗରେ ଚାରିଶାସନ ବସାଇ ମଧ୍ୟରେ ବାରବାଟୀ ଦ୍ୱୀପଦଣ୍ଡୀ କରାଇଥିଲେ । (ଜଗବନ୍ଧୁ ସିଂହ-ପ୍ରାଚୀନ ଉତ୍କଳ, ପୃ-୨୯) କାମାର୍ଣ୍ଣବ ବା ଗଙ୍ଗେଶ୍ୱର— ଏ କୌଶଲ୍ୟାଗଙ୍ଗା ପୁଷ୍କରିଣୀ ଖୋଳାଇଥିଲେ । ଏ ପୁଷ୍କରିଣୀ ପିପିଲି ନିକଟରେ । ରାଣୀମାନେ ଏହାଙ୍କ ମୁଣ୍ଡଛେଚି ମାରି ପକାଇଥିଲେ (ଜଗବନ୍ଧୁ ସିଂହ-ପ୍ରାଚୀନ ଉତ୍କଳ, ପୃ-୩୨୪) । ଭାନୁନରସିଂହ ନରେନ୍ଦ୍ର ପୋଖରୀ ଖୋଳାଇ ପାତ୍ରଙ୍କ ନାମରେ ନାମକରଣ କରାଇଲେ । କୌଶଲ୍ୟାଗଙ୍ଗା ପୁଷ୍କରିଣୀ ଖୋଳାଇଲେ । ଗୀତଗୋବିନ୍ଦ ଦେଉଳ ନୀତିରେ ଖଞ୍ଜା କଲେ । (ଜଗବନ୍ଧୁ ସିଂହ-ପ୍ରାଚୀନ ଉତ୍କଳ, ପୃ-୩୨୮) । ଉପରୋକ୍ତ ତିନୋଟି ରାଜାଙ୍କ ନାମରେ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖନନ କାର୍ଯ୍ୟ ଲେଖା ହୋଇଥିଲେ ହେଁ ରାଧାନାଥ କେବଳ କାମାର୍ଣ୍ଣବ ବା ଗଙ୍ଗେଶ୍ୱରଙ୍କୁ ଏହାର କର୍ତ୍ତାଭାବେ ଗ୍ରହଣ କରି ପାଦଟୀକାରେ ସେହି ବିଷୟ ଉଲ୍ଲେଖ କରିଛନ୍ତି । ଐତିହାସିକ ହଣ୍ଟର ସାହେବ ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱରଙ୍କୁ ଦୁଇଜଣ ବୋଲି ଉଲ୍ଲେଖ କରିଥିବାରୁ ବୋଧହୁଏ ରାଧାନାଥଙ୍କର ଏପରି ଧାରଣାର କାରଣ ହୋଇଥାଇପାରେ । ଉତ୍କଳରେ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବ ଓ ଗଙ୍ଗେଶ୍ୱରଙ୍କ ସମ୍ପର୍କରେ କବିବର ରାଧାନାଥ ଉଦ୍‌ଘାଟିତ ସମସାମୟିକ ଐତିହାସିକ ତଥ୍ୟକୁ ଆଧାର କରି ଏହି ନନ୍ଦିକେଶରୀ ଓ ପାର୍ବତୀ କାବ୍ୟ ରଚନା କରିଛନ୍ତି । ଅତିପ୍ରାଚୀନ କାଳରେ କୌଶଲ୍ୟାଗଙ୍ଗା ନିକଟରେ ଧଉଳିର ଅପରପାର୍ଶ୍ୱରେ ତୋଷାଳୀ ନାମ୍ନୀ ଏକ ସମୃଦ୍ଧିଶାଳୀ ନଗରୀ କଳିଙ୍ଗର ରାଜଧାନୀ ଥିଲା । ଅଶୋକ ତୋଷାଳୀ ନଗରକର୍ତ୍ତାଙ୍କ ପାଇଁ ଧଉଳିସ୍ଥ ଅନୁଶାସନ ଖୋଦିତ କରାଇଥିଲେ । ତୋଷାଳୀକୁ ତୋଷଳ କୁହାଯାଉଥିଲା । ବରାହମିହିର କୋଶଳ, ତୋଷଳ ଓ ମୋଷଳ ପ୍ରଭୃତି ପଡ଼ୋଶୀ ରାଜ୍ୟମାନଙ୍କର ନାମୋଲ୍ଲେଖ କରିଛନ୍ତି । କୋଶଳ ଆଧୁନିକ ଛତିଶଗଡ଼ ଓ ସମ୍ବଲପୁର , ରାୟପୁର ଅଞ୍ଚଳକୁ, ତୋଷଳ- କଳିଙ୍ଗ ଉପକୂଳକୁ ଓ ମୋଷଳ ଆନ୍ଧ୍ର ରାଜ୍ୟକୁ ବୁଝାଉଥିଲା ।

ସୋମବଂଶୀ ବା କେଶରୀବଂଶୀୟ ରାଜାମାନେ ସେମାନଙ୍କ ଅନେକ ତାମ୍ର ଶାସନରେ ଦକ୍ଷିଣ ତୋଷଳ, ଦକ୍ଷିଣ କୋଶଳ ଏବଂ ଉଭୟ ତୋଷଳ ପ୍ରଭୃତି ସ୍ଥାନର ନାମୋଲ୍ଲେଖ କରିଛନ୍ତି । ଉଦୟଗିରି ହାତିଗୁମ୍ଫା ଶିଳାଲେଖରୁ ଜଣାଯାଏ କଳିଙ୍ଗାଧିପତି ମହାମେଘବାହନ ଐର ଖାରବେଳ ତଉସୁଲ୍ୟା (ତଉଷଲ୍ୟା-ତୋଷଳର ଅପଭ୍ରଂଶ) ନଗର ମଧ୍ୟରେ ଗୋଟିଏ ଜଳାଶୟ ଖୋଳାଇଥିଲେ । ତେବେ ଜଳାଶୟ ଖୋଳାଇବା ଖ୍ରୀ:ପୂ: ଶତାବ୍ଦୀର ଖାରବେଳଙ୍କ ରାଜଧାନୀ କଳିଙ୍ଗ ନଗର ତୋଷାଳୀରେ ଘଟିଥିଲା । ଅତଏବ ଦୟାନଦୀର ଅପରପାର୍ଶ୍ୱରେ ଧଉଳି ପର୍ବତ ନିକଟରେ ତୌଷଲ୍ୟା ବା କୌଶଲ୍ୟା ନାମରେ ଏକ ଜଳାଶୟ ବା ପୁଷ୍କରିଣୀ ଗଙ୍ଗା ଭଳି ପବିତ୍ରୀକୃତ କରିବା ସକାଶେ ଚୋଡ଼ଗଙ୍ଗଦେବଙ୍କ ବହୁକାଳ ପୂର୍ବରୁ ଖୋଦିତ ହୋଇଥିବା ସମ୍ଭବପର । ଅନ୍ୟପକ୍ଷରେ କୋଶଳ ଦେଶ ସଙ୍ଗେ ଗଙ୍ଗାବଂଶର ସମ୍ପର୍କ ରହିଥିବାରୁ କୋଶଳ ଗଙ୍ଗାବଂଶ ସମ୍ଭୂତ କୌଣସି ରାଜା କୋଶଳଗଙ୍ଗା ପୁଷ୍କରିଣୀ ଖୋଦିତ କରାଇଥିବା ମଧ୍ୟ ସମ୍ଭପର । ଚୋଡ଼ ଓ ଗଙ୍ଗ ଦୁଇ ରାଜବଂଶର ସମ୍ବନ୍ଧରୁ ଚୋଡ଼ଗଙ୍ଗଦେବଙ୍କ ଉତ୍ପତ୍ତି ଭଳି କୋଶଳ ଓ ଗଙ୍ଗା ଦୁଇବଂଶରୁ ଜାତ କୋଶଳଗଙ୍ଗା କୀର୍ତ୍ତି ଗଙ୍ଗବଂଶୀ ରାଜାଙ୍କର ହୋଇପାରେ । କାଳର କୁଟିଳଗତିରେ ଏହି ପ୍ରବାଦଟି ମାଦଳାପାଞ୍ଜି ଏବଂ ଇତିହାସ ଭିତରେ ପ୍ରବେଶ କରି ରାଧାନାଥଙ୍କ କାବ୍ୟରେ ସ୍ଥାନ ପାଇଛି । ରାଧାନାଥ ଏଭଳି ବୀଭତ୍ସ ଘଟଣାରେ ମର୍ମାହାତ ହୋଇ ତାଙ୍କ କାବ୍ୟରେ ଉଲ୍ଲେଖ କରିଛନ୍ତି । କୋଶଳଗଙ୍ଗାର କିମ୍ବଦନ୍ତୀ ଷ୍ଟାର୍ଲିଂ ସାହେବ ୧୮୨୫ରେ ପ୍ରଥମେ ଇଂରେଜୀରେ ଲେଖିଲେ । କିଟୋ ସାହେବ ଏକଥା ମଧ୍ୟ ଏସିଆଟିକ୍ ସୋସାଇଟି ପତ୍ରିକାରେ ୧୮୩୭ରେ ପ୍ରକାଶ କଲେ । ମାଦଳାପାଞ୍ଜିରେ ମଧ୍ୟ ଏହି ବୃତ୍ତାନ୍ତର ଉଲ୍ଲେଖ ଅଛି । ଏହାର ଏଭଳି ଲିଖିତ ରୂପ ଦେଖି କବିବର ରାଧାନାଥ ତାହାକୁ ହିଁ କାବ୍ୟଗତ ବିଷୟ ରୂପେ ମନୋନୀତ କରି ୧୮୯୧ରେ 'ପାର୍ବତୀ' କାବ୍ୟ ଲେଖିଛନ୍ତି । ଏହି କୌଶଲ୍ୟାଗଙ୍ଗ ସରୋବର ପ୍ରସଙ୍ଗ ମାଦଳାପାଞ୍ଜି ଅବଲମ୍ବନରେ ଲିଖିତ ବୋଲି ଯୁକ୍ତିବାଢ଼ି ଓଡ଼ିଆ ଜାତି ମନରେ ସେ ଇତିହାସର ପୁଟ ଦେବାକୁ ଚେଷ୍ଟା କରଛନ୍ତି । କିନ୍ତୁ ଓଡ଼ଆ ଜାତିର ଇତିହାସରେ ଏଭଳି କଳଙ୍କିତ ଅଧ୍ୟାୟର ଚିତ୍ର ଆଦୌ ଦେଖିବାକୁ ମିଳେ ନାହିଁ । ତେଣୁ କିମ୍ବଦନ୍ତୀର ରାଜା ଗଙ୍ଗେଶ୍ୱରଙ୍କୁ ଐତିହାସିକ ପୁରୁଷ ରୂପେ ଗ୍ରହଣ କରିବା ଅସମୀଚୀନ । କୌଶଲ୍ୟାଗଙ୍ଗ କିମ୍ବଦନ୍ତୀ ସହିତ ଓଡ଼ିଶା ଇତିହାସର ଆଦୌ ସମ୍ପର୍କ ନାହିଁ । ମହାନଦୀ ଗର୍ଭରେ ଥିବା ନନ୍ଦିକେଶ୍ୱରୀ ପଠାର ନାମ ଯେଉଁକାରଣରୁ ହୋଇଥିଲେ ମଧ୍ୟ 'ନନ୍ଦିକେଶ୍ୱରୀ' କାବ୍ୟର ପାଠକ ସେଥିରୁ ଉତ୍କଳ ଇତିହାସରେ ବିଦିତ

ସୁବର୍ଣ୍ଣକେଶରୀ ଓ ଚୋଡ଼ଗଙ୍ଗ ପ୍ରଭୃତି ରାଜାମାନଙ୍କ ନାମ ପାଇ ରାଧାନାଥଙ୍କ କାବ୍ୟକୁ ନିରାଟ ଇତିହାସ ରୂପେ ଗ୍ରହଣ କରେ । କିନ୍ତୁ କବି ଯେ ଏକ ବିଦେଶୀୟ ଗଳ୍ପର ଅବଲମ୍ବନରେ ଏହି କାବ୍ୟ ଲେଖିଛନ୍ତି, ତାହା ସେ ଏକାବେଳକେ ଭୁଲିଯାଏ । ସେହିପରି କୋଶଳଗଙ୍ଗର କିମ୍ବଦନ୍ତୀ ମୂଳରେ ଏହି ଗଙ୍ଗେଶ୍ୱର ଦେବଙ୍କ କିମ୍ବଦନ୍ତୀ ନିହିତ ଥିବାରୁ ଇତିହାସର ସତ୍ୟତା ଏଥିରୁ ମିଳେ ନାହିଁ ସତ କିନ୍ତୁ ଇତିହାସ ଅନୁସନ୍ଧାନରେ ଏହା ସହାୟକ ହୋଇଥାଏ ।

## ରାଧାନାଥଙ୍କ ଯଯାତିକେଶରୀ ଏକ ଐତିହାସିକ ନାମ :

ଯଯାତିକେଶରୀ ନାମ ଇତିହାସକୁ ସୂଚିତ କରୁଥିଲେ ମଧ୍ୟ କବି କଳ୍ପନାରେ ଏହା ଐତିହାସିକ କାବ୍ୟ ନୁହେଁ । ଯଯାତିକେଶରୀଙ୍କ ଓଡ଼ିଶା ଆଗମନ ଓ ଯାଜପୁରରେ ରାଜଧାନୀ ସ୍ଥାପନ ଏହି ଐତିହାସିକ ଭିତ୍ତି ଉପରେ କାବ୍ୟଟି ରଚିତ । ଗଙ୍ଗବଂଶର ପୂର୍ବବର୍ତ୍ତୀ ରାଜାମାନଙ୍କୁ ଓଡ଼ିଶା ଏବଂ ଓଡ଼ିଶା ବାହାରେ କେଶରୀବଂଶର ରାଜା ବୋଲି କହୁଥିଲେ । ଜନଶ୍ରୁତିରେ ଜୀବିତ କେଶରୀବଂଶ ମାଦଳାପାଞ୍ଜିରେ ସ୍ଥାନ ପାଇଲା ଓ କାଳକ୍ରମେ ଇତିହାସରେ ସେମାନେ ସୋମବଂଶୀ ରୂପେ ପରିଚିତ ହେଲେ । ଅତଏବ ତାମ୍ରଶାସନର ସୋମବଂଶୀ ଓ ମାଦଳାପାଞ୍ଜିର କେଶରୀବଂଶ ଏକ ଓ ଅଭିନ୍ନ । ଯଯାତିକେଶରୀ ଚରିତ୍ର ଇତିହାସର ଚରିତ୍ର ହେଲେମଧ୍ୟ କବି କଳ୍ପନା ଏହି କାବ୍ୟରେ ଅଧିକ । କବି ରାଧାନାଥ ଇତିହାସରେ ଜୀବନର ଛବି ଅଙ୍କନ ନକରି ତାହାର ଛାୟାମୂର୍ତ୍ତି ପ୍ରଦର୍ଶନ କରିଛନ୍ତି । ସେଥିରେ ଇତିହାସର ରଙ୍ଗ ଅଛି, ଆଡ଼ମ୍ବର ପୂର୍ଣ୍ଣ ବର୍ଣ୍ଣନାର ଚମତ୍କାରିତା ଅଛି, କିନ୍ତୁ ଇତିହାସର ଜୀବନ ନାହିଁ । ବୈତରଣୀ ଓ ବିରୂପା ନଦୀର ମଧ୍ୟସ୍ଥଳୀରେ ଅବସ୍ଥିତ ଯାଜପୁର, ଉଦୟଗିରି, ଲଳିତଗିରି ଓ ଚଉଦ୍ୱାରର ପ୍ରାଚୀନ କୀର୍ତ୍ତିଗୁଡ଼ିକର ବର୍ଣ୍ଣନାରେ ଏହି ଯଯାତିକେଶରୀ କାବ୍ୟ ମୁଖରିତ । କବିଙ୍କ ଭାଷାରେ—

ଦେବଯଜ୍ଞ ଭୂମି ସ୍ରୋତ ଯାର ସପ୍ତ
ମାତୃକା-ମାଜଣା-ପୂତ
ସିକତିଳ ବକ୍ଷେ ଶ୍ରୀ ବରାହରୂପୀ
ବସନ୍ତି ଯାର ଅଚ୍ୟୁତ

(ଯଯାତିକେଶରୀ, ରା.ଗ୍ର.,ପୃ-୨୨୧)

ମିଳିଲା ବିରୂପା ତୀରେ ଉଭା ଯହିଁ
ପୁରାଣ ଉଦୟାଚଳ
ଗୁଳ୍ମାକୀର୍ଣ୍ଣ ଯାର ଅସଂଖ୍ୟ ଗୁମ୍ଫାରୁ

ବୋଧିସତ୍ତ୍ୱଙ୍କର ଶିଳା
ମୂର୍ତ୍ତିଏ ଦେଖନ୍ତି ଯୁଗେ ଯୁଗେ ଏହି
ମର୍ତ୍ତ୍ୟରେ ଭଙ୍ଗୁର ଲୀଳା ।
(ଯଯାତିକେଶରୀ, ରା.ଗ୍ର.,ପୃ-୨୩୩)

ଘୋଡ଼ାଇଛି ଆହା କାଳ ଖ୍ୟାତି ଯାର
ବିସ୍ମୃତିର ଆବରଣେ
ଜରାଜୀର୍ଣ୍ଣ ତାର ଦେଉଳ ପନ୍ତି କି
ଶୈବାଳସ୍ତରେ ଯେସନେ ।
(ଏଜ୍‌ନ-୨୩୩)

ଏହିସବୁ ଅଞ୍ଚଳର ଭୌଗୋଳିକ ଓ ଐତିହାସିକ ବର୍ଣ୍ଣନା ଯଯାତିକେଶରୀ କାବ୍ୟକୁ ଋଦ୍ଧିମନ୍ତ କରିଛି । ମାଦଳାପାଞ୍ଜି ଅନୁସାରେ ରାଜା ଯଯାତିକେଶରୀ କେଶରୀବଂଶର ପ୍ରତିଷ୍ଠାତା । ଏହି କିମ୍ବଦନ୍ତୀଟି ଓଡ଼ିଶା ଇତିହାସରେ ପରିଲକ୍ଷିତ ହୋଇଥିବାରୁ ରାଧାନାଥ ତାହାଙ୍କ କାବ୍ୟରେ ଏଭଳି ଘଟଣାର ଉଲ୍ଲେଖ କରିଛନ୍ତି । କବି କଳ୍ପନାରେ ଇତିହାସର ପ୍ରୟୋଗ ଏଠି ଏକ ଭିନ୍ନ ରୂପରେ ପ୍ରକାଶ ଲାଭ କରିଛି । ଭୁବନେଶ୍ୱର ମନ୍ଦିରର ପ୍ରତିଷ୍ଠାତା ଲଲାଟେନ୍ଦୁକେଶରୀଙ୍କ ସମ୍ପର୍କରେ ମାଦଳାପାଞ୍ଜି ଏବଂ ଓଡ଼ିଶା ଇତିହାସରେ ଉଲ୍ଲେଖ ଅଛି । ଯେଉଁଠାରେ କେଦାର ଗୌରୀ ପ୍ରାଣ ହରାଇଥିଲେ, ସ୍ୱପ୍ନାଦେଶ ପାଇ ରାଜା ଲଲାଟକେଶରୀ ସେଠାରେ ଉପସ୍ଥିତ ହୋଇ ଉଭୟଙ୍କର ଶବ ଦେଖିଲେ ଓ ଉଭୟଙ୍କ ନାମରେ ପ୍ରତିମା ସ୍ଥାପନ କଲେ । ଏବେ ମଧ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ନିକଟରେ କେଦାରଗୌରୀ କୁଣ୍ଡ ଇତିହାସର ମୂକସାକ୍ଷୀ ଭଳି ପଡ଼ିରହିଛି । ତାକୁ ଆଧାର କରି ରାଧାନାଥ ଲେଖିଲେ କେଦାରଗୌରୀ କାବ୍ୟ । ଇତିହାସ ସହିତ କବି କଳ୍ପନା ଓ ଜନଶ୍ରୁତି ଏଠି ସମନ୍ୱିତ ହୋଇଛି । ଭୁବନେଶ୍ୱରର ମନ୍ଦିରଗୁଡ଼ିକର ସ୍ଥାନୀୟଚିତ୍ର ଉଲ୍ଲେଖ କରିବା କବିଙ୍କର ଥିଲା ମୁଖ୍ୟ ଉଦ୍ଦେଶ୍ୟ । କିମ୍ବଦନ୍ତୀର ରାଜା ଲଲାଟକେଶରୀ କିଏ ଥିଲେ ତାହା ଇତିହାସରୁ ଜଣାଯାଏ ନାହିଁ । କିନ୍ତୁ କବି କଳ୍ପନାରେ ଲଲାଟକେଶରୀ କେଦାରଗୌରୀ କାବ୍ୟରେ ପ୍ରାଧାନ୍ୟ ଲାଭ କରିଛି ।

ଇତିହାସ ପ୍ରସିଦ୍ଧ ତୀର୍ଥସ୍ଥାନ 'ଚନ୍ଦ୍ରଭାଗା'କୁ ଦେଖି କବି ରାଧାନାଥ ଲେଖିଲେ 'ଚନ୍ଦ୍ରଭାଗା' କାବ୍ୟ । କୋଣାର୍କ ମନ୍ଦିରର ଦକ୍ଷିଣ ଦିଗରେ ରହିଛି ଚନ୍ଦ୍ରଭାଗା ତୀର୍ଥ । ମୋଗଲ ରାଜତ୍ୱରେ ମୁସଲମାନ ଅତ୍ୟାଚାର ଯୋଗୁଁ କୋଣାର୍କ ମନ୍ଦିର ପ୍ରତିଷ୍ଠା ନ ହେବାରୁ ଖୋର୍ଦ୍ଧା ରାଜା ସେଠାରେ ଥିବା ସୂର୍ଯ୍ୟମୂର୍ତ୍ତି ପୁରୀ ଜଗନ୍ନାଥ ମନ୍ଦିରକୁ

ସ୍ଥାନାନ୍ତରିତ କଲେ । ଏଇଥିପାଇଁ କୋଣାର୍କ ମନ୍ଦିରରୁ ସୂର୍ଯ୍ୟପୂଜା ଉଠିଗଲା । ଖୋର୍ଦ୍ଧାରାଜା ନରସିଂହଦେବ ଖ୍ରୀ:ଅ: ୧୬୨୭ରେ କୋଣାର୍କ ମନ୍ଦିର ମାପ କରାଇଥିଲେ । ଏହି ସମୟରେ କୋଣାର୍କ ମନ୍ଦିର ଭାଙ୍ଗି ନଥିଲା । ୧୮୩୭ରେ ଫର୍ଗୁସନ ସାହେବ କୋଣାର୍କ ମନ୍ଦିରର ଯେଉଁ ଚିତ୍ର ଅଙ୍କିତ କରିଥିଲେ ସେଥିରୁ ଜଣାପଡ଼େ ଯେ ଦକ୍ଷିଣପାର୍ଶ୍ୱରେ ମନ୍ଦିରର ଉଚ୍ଚ ପ୍ରାୟ ୨୬୦ ହାତରୁ ଅଧିକ ଉଚ୍ଚଥିଲା । ୧୮୭୦ ଖ୍ରୀ:ଅ: ବେଳକୁ ସେତକ ମଧ ଭାଙ୍ଗି ପଡ଼ିଲା । କିନ୍ତୁ ରାଧାନାଥ ଏହିସବୁ ଐତିହାସିକ କଥା ସ୍ମରଣ ନ କରି ମନ୍ଦିର ପତନର କାରଣ ଦେଖାଇଛନ୍ତି ଯେ ସୂର୍ଯ୍ୟ ଦେବତାଙ୍କ ସଂଯମହୀନତା ଲାଗି ସୁମନ୍ୟୁ ତପସ୍ୱୀଙ୍କ ଅଭିଶାପରେ ମନ୍ଦିର ଭାଙ୍ଗି ପଡ଼ିଲା । କବିମାତ୍ରକେ କାବ୍ୟର ଉତ୍କର୍ଷ ସାଧନ ଲାଗି ଐତିହାସିକ ସତ୍ୟ ଉପରେ କବିକଳ୍ପନା ଦ୍ୱାରା ବିଷୟର ଉତ୍କର୍ଷ ସାଧନ କରିଥାନ୍ତି— ରାଧାନାଥ ତାହା ହିଁ କରିଛନ୍ତି । ଐତିହାସିକ ସତ୍ୟ କୋଣାର୍କ ମନ୍ଦିର ଓ ସେଠାରେ ସୂର୍ଯ୍ୟଦେବତାଙ୍କ ପୂଜା ଉପରେ ବୈଦେଶିକ ଇଂରାଜୀ ଓ ଗ୍ରୀକ୍ ସାହିତ୍ୟରୁ ଗୃହୀତ ଉପଖ୍ୟାନ ମିଶାଇ ସେ ଚନ୍ଦ୍ରଭାଗା କାବ୍ୟ ରଚନା କରି ତହିଁରେ ପୁରୀ ଓ ତାର ଆଖପାଖ ଅଞ୍ଚଳର ପ୍ରାକୃତିକ ଭୂଗୋଳ ଏବଂ ବିଭିନ୍ନ ଦେବଦେବୀ ମନ୍ଦିରର ଐତିହ୍ୟ ଓ ପରମ୍ପରା ଉପରେ ଆଲୋକପାତ କରିଛନ୍ତି ।

ରାଧାନାଥଙ୍କ ଚିଲିକା କାବ୍ୟରେ ଓଡ଼ିଶାର ତିନୋଟି ପ୍ରସିଦ୍ଧ କିମ୍ବଦନ୍ତୀ ମାଣିକ ଗଉଡୁଣୀ ହାତରୁ ବଳଭଦ୍ର ଓ ଜଗନ୍ନାଥଙ୍କ ଦହିଖିଆ ଓ ରତ୍ନମୁଦି ପ୍ରଦାନ, ରାଣୀ ପଦ୍ମାବତୀ ଓ ପୁରୁଷୋତ୍ତମ ଦେବଙ୍କ ମିଳନ ବୃତ୍ତାନ୍ତ ଓ ରକ୍ତବାହୁ ଆକ୍ରମଣ ଏବଂ ପରାଜୟ ପ୍ରସଙ୍ଗ ଅତି ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି । କବିଙ୍କ ଭାଷାରେ—

''ଇତିହାସ ରଙ୍ଗସ୍ଥଳୀ ତୁ ଚିଲିକା
ତୋର ତୀରେ ପରା ଶ୍ରୀମତୀ ମାଣିକା
ହସ୍ତେ ଭୁଞ୍ଜିଥିଲେ ସାଦରେ ଲବଣି,
ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି ।''
(ଚିଲିକା, ରାଧାନାଥ ଗ୍ରନ୍ଥାବଳୀ, ପୃ. ୧୫୫)
'ଦିନେ ତୋର ତୀରେ ବସି ନିକାଞ୍ଚନେ,
କାଞ୍ଚିଯାତ୍ରା କଥା ପଡ଼ିଗଲା ମନେ । (ଏକ୍ନ-ପୃ.୧୫୫)
× × ×
'ଏ ଘୋର ଯାମିନୀ-ଅବସାନ-ଶଂସୀ
କାବ୍ୟତାରା ରୂପେ ବୀର ଗଙ୍ଗବଂଶୀ

ଉଦିଲେ ପ୍ରଥମେ ବାମଣ୍ଡା-ରାଜନ
ବାସୁଦେବ ବିଶ୍ୱ କଲ୍ୟାଣ ଭାଜନ' (ଏଜ୍‌ନ - ପୃ. ୧୬୧)

× × ×

'ସେହି ମୂର୍ତ୍ତି ତୋର ଉତ୍କଳେ ଚଢ଼ାଉ
କରି ଦେଖିଥିଲା ଦୈତ୍ୟ ରକ୍ତବାହୁ ।' (ଏଜ୍‌ନ - ପୃ.୧୫୭)

ପ୍ରଚଳିତ ଜନଶ୍ରୁତି ଓ ମାଦଳାପାଞ୍ଜିକୁ ଆଧାର କରି ରାଧାନାଥ କାଞ୍ଚିକାବେରୀ ଉପାଖ୍ୟାନର ଅବତାରଣା କରିଛନ୍ତି । ଏହି ପ୍ରସଂଗଟି ଜନଶ୍ରୁତି ଉପରେ ପର୍ଯ୍ୟବସିତ ହୋଇଥିଲେ ମଧ୍ୟ ଇତିହାସ ଦୃଷ୍ଟିରୁ ଏହାର ସତ୍ୟତା ଅପ୍ରାସଙ୍ଗିକ ନୁହେଁ । କାରଣ ଏବେ ମଧ୍ୟ ମାଣିକପାଟଣା ଗ୍ରାମର ଅବସ୍ଥିତି ପ୍ରାଚୀନ ଓଡ଼ିଆ ଇତିହାସର ସତ୍ୟତାକୁ ସୂଚିତ କରେ । ସେହିପରି ରକ୍ତବାହୁ ଅଭିଯାନ ପ୍ରସଙ୍ଗଟି ଐତିହାସିକ ସତ୍ୟ ଉପରେ ଆଧାରିତ । ରକ୍ତବାହୁ ଶ୍ରୀମନ୍ଦିର ଉପରେ ଆକ୍ରମଣ କରିବାରୁ ସିଂହାସନାରୂଢ଼ ତ୍ରିମୂର୍ତ୍ତିଙ୍କୁ ସ୍ଥାନାନ୍ତର କରାଯାଇ ସୋନପୁରର ଗୋଗାଳିଠାରେ ପାତାଳି କରାଯାଇଥିଲା । ଦୀର୍ଘ ୧୪୪ ବର୍ଷ ପାତାଳିହେବାପରେ ସୋମବଂଶୀ ପ୍ରଥମ ଯଯାତିକେଶରୀ (ଖ୍ରୀ.ଅ. ୯୩୧-୧୦୦୦) ଉତ୍କଳର ରାଜା ହେବାପରେ ପାତାଳି କରାଯାଇଥିବା ଜଗନ୍ନାଥଙ୍କ ସନ୍ଧାନ କାର୍ଯ୍ୟ ହାତକୁ ନେଇଛନ୍ତି ଓ ତ୍ରିମୂର୍ତ୍ତିଙ୍କୁ ଉଦ୍ଧାର କରି ନବକଳେବର କରାଇ ଶ୍ରୀମନ୍ଦିରରେ ପୁନଃ ପ୍ରତିଷ୍ଠା କରିଛନ୍ତି । ଏହି ରକ୍ତବାହୁ ଆକ୍ରମଣକୁ ଇତିହାସରେ ରାଷ୍ଟ୍ରକୂଟଅଭିଯାନ ରୂପେ ବର୍ଣ୍ଣନା କରାଯାଇଛି । ଭୌମକର ବଂଶୀୟ ପ୍ରଥମ ଶୁଭାକରଦେବ (ଖ୍ରୀ.ଅ. ନବମ ଶତାବ୍ଦୀ) ଙ୍କ ରାଜତ୍ୱ କାଳରେ ରାଷ୍ଟ୍ରକୂଟ ବଂଶୀୟ ତୃତୀୟ ଗୋବିନ୍ଦ ଉତ୍କଳ ଆକ୍ରମଣ କରିବାରୁ ଶ୍ରୀମନ୍ଦିରରୁ ତ୍ରିମୂର୍ତ୍ତିଙ୍କୁ ସୋନପୁର ଗୋଗାଳିରେ ପାତାଳି କରାଯାଇଥିଲା ବୋଲି ଇତିହାସ ସ୍ୱୀକାର କରେ । ଇତିହାସ ଲୋକମୁଖରେ ପ୍ରଚଳିତ ହୋଇ କିମ୍ବଦନ୍ତୀ ବା ଜନଶ୍ରୁତି ଆକାର ଧାରଣ କରେ । କିମ୍ବଦନ୍ତୀର ସ୍ୱରୂପ ଆକାଶ କୁସୁମ ଭଳି । ଯେତେବେଳେ କିମ୍ବଦନ୍ତୀର ବିଷୟବସ୍ତୁ ସମସାମୟିକ ଲେଖା ଦ୍ୱାରା ପ୍ରମାଣିତ ହୁଏ, ସେହିଠାରେ ହିଁ କିମ୍ବଦନ୍ତୀ ଗୁଡ଼ିକ ସତ୍ୟରୂପେ ଇତିହାସରେ ଗୃହୀତ ହୁଏ ।

କବିବର ରାଧାନାଥଙ୍କ ସମୟରେ ଓଡ଼ିଶା ଇତିହାସ ପ୍ରାୟତଃ ଅନ୍ଧକାର ଭିତରେ କିମ୍ବଦନ୍ତୀକୁ ଆଶ୍ରୟ କରି ବଞ୍ଚିରହିଥିଲା । ତାହାଙ୍କ ନନ୍ଦିକେଶ୍ୱରୀ, ପାର୍ବତୀ, ଯଯାତିକେଶରୀ, ଚନ୍ଦ୍ରଭାଗା, ଚିଲିକା ଓ ଦରବାର ଆଦି କାବ୍ୟ ରଚନା କଲାବେଳେ ଉଦ୍‌ଘାଟିତ ସମସାମୟିକ ଇତିହାସରୁ ନିଜ କାବ୍ୟର ଉପାଦାନ ସଂଗ୍ରହ କରିବା ପାଇଁ ଚେଷ୍ଟା କରିଅଛନ୍ତି । ପ୍ରଚଳିତ କମ୍ବଦନ୍ତୀ ବା ଇତିହାସରୁ ବିଭିନ୍ନ ଉପାଦାନ

ସଂଗ୍ରହ କରି ତାହାକୁ ଏକ କାବ୍ୟର ରୂପ ଦେଲାବେଳେ କବିପ୍ରାଣର ଯେଉଁ କଳ୍ପନାବିଳାସ ପ୍ରକାଶ ପାଇଛି, ତାହା ହୁଏତ ଆଧୁନିକ ଐତିହାସିକ ତଥ୍ୟମାନଙ୍କ ଦୃଷ୍ଟିରୁ ଭ୍ରମାତ୍ମକ ହୋଇପାରେ । ମାତ୍ର କବି ରାଧାନାଥ ଯେ ସମସାମୟିକ ଇତିହାସ ସଂପର୍କରେ ସଚେତନ ଥିଲେ ଏହା ଅସ୍ୱୀକାର କରାଯାଇ ନପାରେ । ଇତିହାସର ଘଟଣା ଓ ଚରିତ୍ରକୁ କାଳ୍ପନିକ ପୁଟଦେଇ ଯୁଗସ୍ରଷ୍ଟା ରାଧାନାଥ ଐତିହାସିକ ସତ୍ୟ ଉଦ୍‌ଘାଟନର ପଥ ଉନ୍ମୁକ୍ତ କରି ଦେଇଛନ୍ତି । ଇତିହାସକୁ ନୂତନ ରୂପ ଦେବା ଓ ସ୍ଥାନ ବିଶେଷକୁ ନୂତନ ଅର୍ଥରେ ବିନିଯୋଗ କରିବା କାବ୍ୟ ସୃଷ୍ଟିର ଏହି ଦୁଇଟି କୌଶଳ ରାଧାନାଥ ପ୍ରଥମଥରପାଇଁ ତାଙ୍କ କାବ୍ୟରେ ପ୍ରୟୋଗ କରିଛନ୍ତି । କେଦାରଗୌରୀ ଓ ଚନ୍ଦ୍ରଭାଗା କାବ୍ୟ ରଚନା ପଛରେ ଇତିହାସ, ପୁରାଣ ବା କିମ୍ବଦନ୍ତୀ କୌଣସିଟି ନଥିଲା । ରାଧାନାଥ କିନ୍ତୁ ଏମାନଙ୍କୁ ଇତିହାସ ଓ ପୁରାଣମୁଖୀ କରିଦେଇଛନ୍ତି । ଏଣେ ନନ୍ଦିକେଶ୍ୱରୀ କାବ୍ୟ ଏକ ଐତିହାସିକ ମିଥ୍ୟା ହେଲେ ମଧ୍ୟ ସଂପୂର୍ଣ୍ଣ ସତ୍ୟବୋଲି ଲୋକମୁଖରେ ଗୃହୀତ ହୋଇଯାଇଛି । ଐତିହାସିକ ସତ୍ୟତାର ମାନଦଣ୍ଡରେ ତାହାଙ୍କ ଏହି କାବ୍ୟଗୁଡ଼ିକୁ ନିର୍ଣ୍ଣୟକଲେ ପାଠକ ମନରେ ଭ୍ରମ ସୃଷ୍ଟିହୁଏ । ରାଧାନାଥଙ୍କ କାବ୍ୟଗୁଡ଼ିକ ଇତିହାସ ନୁହେଁ କିମ୍ବା ଐତିହାସିକ ସତ୍ୟତା ଏହାର ପ୍ରାଣକେନ୍ଦ୍ର ନୁହେଁ । କିନ୍ତୁ ଇତିହାସ ପଛରେ ଥିବା କିମ୍ବଦନ୍ତୀଗୁଡ଼ିକୁ ବର୍ଣ୍ଣନା କରାଯାଇ ଇତିହାସପ୍ରତି ସଚେତନତା ସୃଷ୍ଟି କରାଯାଇଛି । ପ୍ରାଚୀନ ଜନଶ୍ରୁତି ଭିତ୍ତିକ ଇତିହାସ ସହିତ ନୂତନ କଳ୍ପନାର ସମନ୍ୱୟ ହିଁ ରାଧାନାଥଙ୍କ କାବ୍ୟରେ ଇତିହାସର ବୈଶିଷ୍ଟ୍ୟ । କବିବର ରାଧାନାଥ ଯେ ଇତିହାସ ପ୍ରତି ସଚେତନ, ତାହା ତାଙ୍କର ଆଲୋଚ୍ୟ କାବ୍ୟରୁ ପ୍ରତୀୟମାନ ହୁଏ ।



# ରାଧାନାଥ ସାହିତ୍ୟରେ ଆଧୁନିକତାର ଐତିହ୍ୟ ଓ ସାମ୍ପ୍ରତିକୀ ଭାବବୋଧ

ଡଃ ରଂଜିତ୍ କୁମାର ପରିଡ଼ା

ସାହିତ୍ୟରେ ଆଧୁନିକତା ସମୟ ଭିତ୍ତିକ ନୁହେଁ, ଚେତନା ଭିତ୍ତିକ । ଏହାର ସ୍ଥାନ ସମୟର ଊର୍ଦ୍ଧ୍ୱରେ । ଆଧୁନିକ ସାହିତ୍ୟ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତର ସୃଷ୍ଟି ହେଲେ ମଧ୍ୟ ତାହାର ଏକ ଚିରନ୍ତନ ମୂଲ୍ୟବୋଧ ରହିଛି । ଯଦି ସାହିତ୍ୟ ନିଜ ସମୟର ସୀମା ମଧ୍ୟରେ ଆବଦ୍ଧ ହୋଇଯାଏ ତାହା ନୂତନ ସାହିତ୍ୟ ହୋଇପାରେ । କିନ୍ତୁ ଆଧୁନିକ ସାହିତ୍ୟ ନୁହେଁ । ନୂତନତା ଓ ଆଧୁନିକତା ଯଦିଓ ବହୁ ନିକଟବର୍ତ୍ତୀ କିନ୍ତୁ ସବୁ ନୂତନତା ଆଧୁନିକତା ନୁହେଁ । ଯେଉଁ ସାହିତ୍ୟ ନୂତନ ଓ ଚିରନ୍ତନ ତାହା ହିଁ ଆଧୁନିକ ସାହିତ୍ୟ । ସମାଲୋଚକ ସି. ଡେ. ଲୁଇସ୍‌ଙ୍କ ଭାଷାରେ—ଆଧୁନିକ କବିତା ତାହା ଯାହା ଗତବର୍ଷ ଲେଖା ହୋଇଥାଉ କିମ୍ବା ପାଞ୍ଚ ହଜାର ବର୍ଷ ତଳର ହୋଇଥାଉ, ଯାହାର ଏକ ସର୍ବକାଳୀନ ମୂଲ୍ୟବୋଧ ରହିଛି, ତାହା ହିଁ ଆଧୁନିକତା ।

କବି ହେଉଛି ତ୍ରିକାଳଦ୍ରଷ୍ଟା ଓ ସ୍ରଷ୍ଟା; ସେ କେବଳ ଯୁଗର ଧର୍ମକୁ ପ୍ରଚାର କରେ ନାହିଁ । ସର୍ବଯୁଗମୟୀ ସତ୍ୟକୁ ମଧ୍ୟ ପରିବେଷଣ କରେ । ତେଣୁ ଉତ୍କୃଷ୍ଟ କବିତା ହେଉଛି ନିତ୍ୟ ନୂତନ ।

ପୁରାତନର ସଂପୂର୍ଣ୍ଣ ପରିହାର ଭିତ୍ତିରେ ନୂତନତାର ନିର୍ମାଣ ସମ୍ଭବ ନୁହେଁ । ଆଧୁନିକ ସାହିତ୍ୟ ଏକ ସମନ୍ୱୟର ସାହିତ୍ୟ । ଏହା ପରମ୍ପରା ଉପରେ ପ୍ରତିଷ୍ଠିତ ହେଲେ ମଧ୍ୟ ପୁରୋଦୃଷ୍ଟି ପ୍ରତି ପରାଙ୍‌ମୁଖ ନୁହେଁ, ବରଂ ଗୋଟିଏ ଦ୍ୱାରା ଅନ୍ୟଟିକୁ ଶକ୍ତିଶାଳୀ ଓ ଅଧିକ ପ୍ରାଞ୍ଜଳ କରି ଗଢ଼ିତୋଳିବା ଏହାର ଧର୍ମ । ସମାଲୋଚକ ସାମ୍ପସନ କହନ୍ତି—— ପ୍ରଥମ ଶ୍ରେଣୀ ଶିଳ୍ପୀର ବିଶେଷ ଗୁଣ ହେଉଛି ପରମ୍ପରାକୁ ସମୃଦ୍ଧ କରିବା । ଆଧୁନିକ ସ୍ରଷ୍ଟାମାନେ ପରମ୍ପରାକୁ ଗ୍ରହଣକରି ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ନୂତନତାର ଝଲକ ସୃଷ୍ଟି କରନ୍ତି । ପରମ୍ପରା କୋଳରେ ଏହି ଝଲକର ସ୍ଥିତି ହିଁ ଆଧୁନିକତାର ସଂକେତ, ଯାହା କାଳରେ ସୃଷ୍ଟି ହୋଇ ବି ହୁଏ କାଳୋତ୍ତୀର୍ଣ୍ଣ ।



ଓଡ଼ିଆ ସାହିତ୍ୟର ଇତିହାସ କାଳକ୍ରମରେ ଆଧୁନିକ ଯୁଗକୁ ରାଧାନାଥ ଯୁଗ ନାମରେ ଅଭିହିତ କରାଯାଇଥାଏ । ରାଧାନାଥ ସେ ଯୁଗର ଶକ୍ତିଶାଳୀ କବିପ୍ରତିଭା ବୋଲି ପରବର୍ତ୍ତୀ କାଳରେ ତାଙ୍କୁ ଯୁଗଜ୍ୟୋତି, ଯୁଗ ପ୍ରବର୍ତ୍ତକ, ଯୁଗସ୍ରଷ୍ଟା ଆଦି ବିଭୂଷଣରେ ବିଭୂଷିତ କରାଯାଇଛି । ତାଙ୍କ ଜୀବନର ଏକ କୌତୁକପୂର୍ଣ୍ଣ ଘଟଣାକୁ ଏସ୍ଥଳରେ ଅବତାରଣାକଲେ ଅପ୍ରାସଙ୍ଗିକ ହେବନାହିଁ । ଅର୍କକ୍ଷେତ୍ର କୋଣାର୍କରେ ରାଧାନାଥଙ୍କୁ ତତ୍କାଳୀନ ଶିକ୍ଷା ବିଭାଗର ଇନିସ୍‌ପେକ୍‌ଟର ଭୂଦେବ ମୁଖୋପାଧ୍ୟାୟ ଉପଦେଶ ଦେବା ଛଳରେ କହିଥିଲେ— "ପୁରାତନ ବିଷୟ ଘେନି ଶକ୍ତିର ଓ ଶ୍ରମର ଅଯଥା ବିନିଯୋଗ କର କାହିଁକି × × × × ମୁଁ ଆଶା କରୁଛି ନୂଆ ଗଢ଼ିବାକୁ ଚେଷ୍ଟାକରିବ । ଓଡ଼ିଶାର ଯେଉଁ ଆଡ଼କୁ ଚାହିଁବ ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ଅଛି ।" ପୁରାତନ ବିଷୟରେ ନିଜ ଶକ୍ତିର ଅପଚୟ ନକରି ଯେଉଁ ଶିଳ୍ପୀମାନେ ନୂତନ ସୃଷ୍ଟି କର୍ମରେ ନିଜକୁ ନିୟୋଜିତ କରନ୍ତି ବାସ୍ତବରେ ସେଇମାନଙ୍କ ସୃଷ୍ଟିହୁଏ ଆଧୁନିକ ।

ରାଧାନାଥ 'କୀଚକବଧ' ମୁଖବନ୍ଧ ଲେଖିଲାବେଳେ ଠିକ୍ ଏଇଭାବ ପ୍ରକାଶ କରିଛନ୍ତି । ସେଠାରେ ସେ ଲେଖିଛନ୍ତି— "ପୁରାତନରେ ନୂତନତା ଓ ଆହୃତରେ ମୌଳିକତା ପ୍ରତିଫଳିତ କରିବା ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର" ପୁରାତନକୁ ନୂତନ କରି ଗଢ଼ିବା ଭିତରେ 'ପୁରାତନର ସ୍ଥିତି ଓ ସ୍ୱୀକୃତି ସବିଶେଷ କଥା ନୁହେଁ । ଅଧିକନ୍ତୁ ନୂତନର ମୌଳିକତା ଓ ପ୍ରାଧାନ୍ୟ ସଂକେତାତ୍ମକ ଭାବେ ସେଠାରେ ସୂଚିତ । ଏଥିରୁ ରାଧାନାଥଙ୍କ ସାହିତ୍ୟ ଦୃଷ୍ଟିକୋଣ ପ୍ରତିପନ୍ନ । ତେଣୁ ତାଙ୍କର ସୃଷ୍ଟି ବିଚାରରେ ତାଙ୍କ ଉକ୍ତିଟିକୁ ଉପେକ୍ଷା କରାଯାଇ ନପାରେ ।

ଆଧୁନିକ ଓଡ଼ିଆ ସାହିତ୍ୟ ବିଚାର ଓ ବିବେଚନା ପ୍ରସଙ୍ଗରେ ପାଶ୍ଚାତ୍ୟ ସାହିତ୍ୟ ଓ ଶିକ୍ଷାର ସଂସ୍ରବ ଓ ସଂକ୍ରମଣ କଥା ସ୍ମରଣ କରାଯାଇ ପାରେ । କାରଣ ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତା-ଚେତନା ଓ ସଂସ୍କୃତିର ସମନ୍ୱୟରୁ ହିଁ ଓଡ଼ିଆ ସାହିତ୍ୟରେ ଆଧୁନିକତାର ସୂତ୍ରପାତ ଘଟେ । ମୁଖ୍ୟତଃ ଇଂରାଜୀ ଶିକ୍ଷା ଓ ସାହିତ୍ୟର ପ୍ରଚାର ଫଳରେ ଭାରତବର୍ଷରେ ମଣିଷର ସାମାଜିକ ଓ ସାହିତ୍ୟିକ ଜୀବନରେ ଏକ ଦ୍ରୁତ ପରିବର୍ତ୍ତନ ଦେଖାଦେଲା । ସେଇ ନୂତନ ଚିନ୍ତାରେ ପ୍ରେରଣାପୁଷ୍ଟ ହୋଇ ନବ୍ୟ ଶିକ୍ଷିତମାନେ ଏକ ସ୍ୱତନ୍ତ୍ର ସାହିତ୍ୟ ସୃଷ୍ଟିକଲେ, ତାହାରି ନାମାନ୍ତର ହିଁ ଆଧୁନିକ ଓଡ଼ିଆ ସାହିତ୍ୟ । ଡଃ. ନଟବର ସାମନ୍ତରାୟଙ୍କ ଭାଷାରେ— "ଆଧୁନିକ ସାହିତ୍ୟ ବୋଲି ଆମେ ଆଜି ଯେଉଁ ସାହିତ୍ୟକୁ ବୁଝୁ, ତାହା ପ୍ରାଚ୍ୟ-ପାଶ୍ଚାତ୍ୟ ଶିକ୍ଷା,

ସଭ୍ୟତା ସଂଘର୍ଷର ଏକ ଅମୃତମୟ ଫଳ ବ୍ୟତୀତ ଅନ୍ୟକିଛି ନୁହେଁ'' (ଓଡ଼ିଆ ସାହିତ୍ୟର ଇତିହାସ–୧୮୦୩-୧୯୨୦— ଡଃ. ନଟବର ସାମନ୍ତରାୟ-ପୃ-୨୫)। ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟ କହିଲେ ପାଶ୍ଚାତ୍ୟ ସାହିତ୍ୟାଦର୍ଶ ସହିତ ନିଜର ମୌଳିକତା, ସାର୍ଥକ ପ୍ରତିଭାସଂପନ୍ନ ଦୃଷ୍ଟିକୋଣକୁ ହିଁ ବୁଝାଯାଇପାରେ ।

ଆଧୁନିକ ଚେତନାର ମୁଖ୍ୟ କାରକ ଭାବରେ ଇଂରାଜୀ ସାହିତ୍ୟରେ ସଂସ୍କୃତିର ନବଜନ୍ମ ବା ରେନାସାଁର ଉଦ୍‌ବର୍ତ୍ତନ । ପରବର୍ତ୍ତୀ କାଳରେ ମାର୍କସଙ୍କର ସାମ୍ୟବାଦୀ ଚିନ୍ତାଧାରା, ଶିଳ୍ପ ବିପ୍ଳବ ଓ ଜ୍ଞାନ ବିଜ୍ଞାନର ଅଗ୍ରଗତି ସ୍ମରଣୀୟ । ଅଷ୍ଟାଦଶ ଶତାବ୍ଦୀର ଶିଳ୍ପ ବିପ୍ଳବ ଫଳରେ ୟୁରୋପରେ ଯେଉଁ ପୁଞ୍ଜିବାଦୀ ଗୋଷ୍ଠୀର ଉଦ୍‌ଭବ ହେଲା ସେମାନଙ୍କ ଶୋଷଣ ଓ ତାଡନାରେ ସମାଜ ଜୀବନ ଦୁର୍ବିସହ ହୋଇଉଠିଲା । ଧର୍ମ ଓ ଅର୍ଥନୈତିକ ରାକ୍ଷସମାନଙ୍କ କବଳରୁ ସାଧାରଣ ଜନତାକୁ ରକ୍ଷା କରିବା ପାଇଁ କାର୍ଲମାର୍କସଙ୍କର ସୁଚିନ୍ତିତ 'ସାମ୍ୟବାଦୀ' ଦର୍ଶନ ବିଶେଷ ସହାୟତା କଲା । କାର୍ଲମାର୍କସଙ୍କ ପ୍ରବର୍ତ୍ତିତ ଏହି ନୂତନ ଦର୍ଶନ ବ୍ୟକ୍ତି ଓ ସମାଜ ଜୀବନରେ ଏକ ବିରାଟ ପରିବର୍ତ୍ତନ ଆନୟନ କଲା । ଧର୍ମ ଓ ଭାଗ୍ୟବାଦ ପଥରୁ ଓହରିଯାଇ କର୍ମ ଓ ବିପ୍ଳବକୁ ବ୍ୟକ୍ତି ନିଜ ଦର୍ଶନ ଭାବରେ ଗ୍ରହଣ କଲା ।

ଇଂରାଜୀ ସାହିତ୍ୟର ଇତିହାସରେ ଷୋଡ଼ଶ ଶତାବ୍ଦୀକୁ 'ରେନାସାଁ' ଯୁଗ ଭାବରେ ନାମିତ କରାଗଲା । ରେନାସାଁ ସାହିତ୍ୟର ମୁଖ୍ୟ ପ୍ରବୃତ୍ତିଗୁଡ଼ିକ ହେଉଛି ଜାତୀୟପ୍ରୀତି, ମାନବ ସଂପ୍ରୀତି, ପ୍ରକୃତି ପ୍ରୀତି ଇତ୍ୟାଦି । ରାଧାନାଥ ଓଡ଼ିଆ ସାହିତ୍ୟରେ ରେନାସାଁର ପ୍ରବର୍ତ୍ତକ । ଓଡ଼ିଆ ସାହିତ୍ୟରେ ରାଧାନାଥ ଯେ ଜାତୀୟବାଦୀ, ମାନବବାଦୀ ଓ ପ୍ରକୃତି-ପ୍ରେମୀ ଜଣେ ସ୍ରଷ୍ଟା ଏଥିରେ ମତାନ୍ତର ଥାଇ ନପାରେ ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପ୍ରକୃତିର ଆଲେଖ୍ୟ ଅଭାବ ନାହିଁ । କିନ୍ତୁ ପାଶ୍ଚାତ୍ୟ-ଶିକ୍ଷା ଓ ସାହିତ୍ୟ ସଂପର୍କରେ ଆସି ଆଧୁନିକ କାବ୍ୟ ସାହିତ୍ୟର ଭିତ୍ତି ସଂସ୍ଥାପକ ରାଧାନାଥ ପ୍ରକୃତି ସଂପର୍କରେ ଯେଉଁ ସ୍ୱତନ୍ତ୍ର ଅଭିରୁଚି ପୋଷଣ କଲେ, ପ୍ରାଚୀନ ସାହିତ୍ୟ ସମ୍ଭାରରେ ଆମେ ତାର ସୂଚନା ପାଉନା । ପ୍ରାଚୀନ ସାହିତ୍ୟର ପ୍ରକୃତି ତଥାକଥିତ ଧର୍ମ ଧାରଣା, ନାୟକ ନାୟିକାର ମିଳନରେ ଆଲମ୍ବନ ବିଭବ କିମ୍ବା ଉପମା ରୂପେ ବ୍ୟବହୃତ ହୋଇ ଆସିଛି । କେଉଁଠି କେମିତି ବହିଃ ପ୍ରକୃତିର ଚିତ୍ର ଦୃଷ୍ଟିଗୋଚର ହୁଏ ସିନା, କିନ୍ତୁ ସେଥିରେ ସାହିତ୍ୟର କଳା ଗୌରବ ପ୍ରାୟତଃ ଅସ୍ଫୁଟ ।

ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରକୃତି ରାଧାନାଥଙ୍କ ହାତରେ ନବଜନ୍ମ ନେଲା । ରାଧାନାଥ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରେ ଗତାନୁଗତିକତାରେ ବ୍ୟତିକ୍ରମ ଘଟାଇ ପ୍ରକୃତିକୁ ଏକ ସ୍ୱତନ୍ତ୍ର ରୂପ ପ୍ରଦାନ କଲେ । ଜଣେ ଇଂରାଜୀ ସମାଲୋଚକଙ୍କ ଭାଷାରେ ଆଧୁନିକ କବିତାର କବି ପ୍ରକୃତିକୁ ଇନ୍ଦ୍ରିୟ ଗ୍ରାହ୍ୟ ସତ୍ତା ଭାବରେ ଗ୍ରହଣ କରି ମିତ୍ରସୁଲଭ ବ୍ୟବହାର ମଧ୍ୟ ପ୍ରଦର୍ଶିତ କରିଛନ୍ତି ।

ରାଧାନାଥ ପ୍ରକୃତିକୁ ଏକ ଜୀବନ୍ତ ସତ୍ତା, ମିତ୍ର ଓ ବନ୍ଧୁ ଭାବରେ ଗ୍ରହଣ କରିଛନ୍ତି । ରାଧାନାଥ ଓ ମଧୁସୂଦନ ୱାର୍ଡ଼ସୱାର୍ଥଙ୍କ ପରି ପ୍ରକୃତି ମଧ୍ୟରେ ଅତୀନ୍ଦ୍ରିୟ ଶକ୍ତିର ସନ୍ଧାନ କରି ନାହାନ୍ତି । ଇଂରାଜୀ କବି କୀଟ୍ସଙ୍କ ପରି ସେ ସୌନ୍ଦର୍ଯ୍ୟର ନିରାଜନା କରିଛନ୍ତି । ରାଧାନାଥଙ୍କ ରୂପ ଓ ସୌନ୍ଦର୍ଯ୍ୟପିପାସା ପ୍ରବଳ । ସେ ପ୍ରକୃତି ଚିତ୍ରଣ କଲାବେଳେ ସୌନ୍ଦର୍ଯ୍ୟବୋଧର ପରିସର ମଧ୍ୟରେ ଅଟକିଯାଇ ନାହାନ୍ତି । ପ୍ରକୃତିକୁ ବାରମ୍ବାର ଦର୍ଶନ ଦ୍ୱାରା ତାଙ୍କର ରୂପ ପିପାସା କମୁନାହିଁ ବରଂ ବଢ଼ିବାରେ ଲାଗିଛି । କବିଙ୍କ ଭାଷାରେ —

"ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ" (ଚିଲିକା)

ରାଧାନାଥ ସାହିତ୍ୟରେ ପ୍ରକୃତିକୁ ଏକ ଜୀବସତ୍ତାସଂପନ୍ନ ଶକ୍ତିମୟ ସୃଷ୍ଟି ଓ ମାନବୀୟତା ଭିତ୍ତିରେ ଯେପରି ଉପସ୍ଥାପନ କରିଛନ୍ତି ଓଡ଼ିଆ ସାହିତ୍ୟରେ ତାହା ଅନନ୍ୟ । ପ୍ରକୃତି ଯେ ଏକାଧାରରେ ସ୍ନେହ ଓ ପ୍ରଳୟର ମୂର୍ତ୍ତିମନ୍ତ ବିଗ୍ରହ, ଚିଲିକାର ରକ୍ତବାହୁ ଆକ୍ରମଣ ପ୍ରସଙ୍ଗରୁ ତାହା ସ୍ପଷ୍ଟ ।

"ରୁଦ୍ର ମୂର୍ତ୍ତି ତୋର ରଖୁ ତୁ ଘୋଡ଼ାଇ
ଦୂରନ୍ତ ଉତ୍କଳ ପରିପନ୍ଥୀ ପାଇଁ
× × × ×
ଶତ୍ରୁ ଦେଖି ତୁହି ସେ ରୂପେ ଚିଲିକା
ପ୍ରକଟୁ ପ୍ରଚ୍ଛନ୍ନ ଶକ୍ତି ମାରାତ୍ମିକା" (ଚିଲିକା)

ରାଧାନାଥ ପ୍ରକୃତିକୁ ଗୁରୁ ସମ୍ମିତ ନୁହେଁ କାନ୍ତା ସମ୍ମିତ ଭାବରେ ଗ୍ରହଣ କରିଛନ୍ତି ବା ସଖାଭାବରେ ଗ୍ରହଣ କରିଛନ୍ତି । ରାଧାନାଥଙ୍କ ଭାଷାରେ—

"ଗୁରୁପ୍ରାୟ ତାଙ୍କୁ ଦୂରୁ କରି ଭୀତି
ସଖୀ ପ୍ରାୟେ ତୋତେ ସ୍ମରୁଥିଲି ନିତି" (ଚିଲିକା)

କାଳିଦାସଙ୍କ 'ରଘୁବଂଶ' ର ପ୍ରକୃତି ପରି ରାଧାନାଥଙ୍କ ପ୍ରକୃତି ମିତ୍ରପରି ସମବେଦନା ପ୍ରକାଶ କରିପାରେ ।

ରାଧାନାଥଙ୍କ ପ୍ରକୃତି ବାସ୍ତବ ଚେତନାକୁ ଭିତ୍ତିକରି ଗଢ଼ି ଉଠିଛି । ତାଙ୍କ କାବ୍ୟରେ ସେ ପ୍ରକୃତି ଚିତ୍ର ଯେଉଁଠାରେ ଦେଇଛନ୍ତି ତାହା ଏକ ନିର୍ଦ୍ଦିଷ୍ଟ ସ୍ଥାନରେ । 'ଚିଲିକା'ର ପଛଭୂମି ବର୍ଣ୍ଣନା ଠାରୁ 'ମହାଯାତ୍ରା'ରେ ମାଲ୍ୟଗିରି ଓ କୈଳାସ ଇତ୍ୟାଦି ବର୍ଣ୍ଣନା କବି ପ୍ରଜ୍ଞାର ପରିଚୟ ଦେବା ସଙ୍ଗେ ସଙ୍ଗେ ଅପୂର୍ବ କବିତ୍ୱକଳାର ପରିଚୟ ଦିଏ ।

ସଂସ୍କୃତିର ଜାଗରଣ ଓ ପାଶ୍ଚାତ୍ୟ ଶିକ୍ଷାଦର୍ଶ ମାଧ୍ୟମରେ ଦେଶର କବିମାନଙ୍କ ମନରେ ବିଭିନ୍ନ ଭାବଧାରା ଦେଖାଦେଲା । ଦେଶପ୍ରୀତି ତନ୍ମଧ୍ୟରୁ ଅନ୍ୟତମ । ରାଧାନାଥ ପୂର୍ବବର୍ତ୍ତୀ ସାହିତ୍ୟର ଦେଶପ୍ରେମ ପୂର୍ଣ୍ଣତଃ ଅଞ୍ଚଳ ପ୍ରୀତି ବା ଓଡ଼ିଶା ମଧ୍ୟରେ ସୀମାବଦ୍ଧ । କିନ୍ତୁ ରାଧାନାଥ କେବଳ ଓଡ଼ିଶା ଜନନୀର ସ୍ତୁତିଗାନ କରିନାହାନ୍ତି । ସେ ଭାରତ ଜନନୀଙ୍କୁ ମଧ୍ୟ ନିଜର ନିବେଦନ ବାଢ଼ିଛନ୍ତି 'ଭାରତ ଗୀତିକା'ରେ ସେ କହିଛନ୍ତି— 'ସର୍ବେଷାଂ ନେତା ଜନନୀ ଭାରତ ଧରଣୀ କଳ୍ପ ଲତେୟଂ, 'ଶିବାଜୀଙ୍କର ଉତ୍ସାହବାକ୍ୟ' ରେ କହନ୍ତି—

"ଏଇ ଭାରତ ଭୂମି ଆମ୍ଭର ଜନନୀ
ପୁଣ୍ୟ ଭୂମି ନାହିଁ ସରି ଏହାର "

ଏଥିରୁ ରାଧାନାଥଙ୍କ ମହାନତା କେବଳ ନୁହେଁ, ତାଙ୍କର ଉଦାର ଭାବନାର ପରିଚୟ ମିଳେ । ରାଧାନାଥ ଭାରତ ଜନନୀ ଅପେକ୍ଷା ଉତ୍କଳ ଜନନୀକୁ ଶ୍ରେଷ୍ଠସ୍ଥାନ ଦେଇଛନ୍ତି । 'ମହେନ୍ଦ୍ରଗିରି' କବିତାରେ କଳିଙ୍ଗର ଲୋକମାନଙ୍କୁ 'କଳିଙ୍ଗାଃ ସାହାସିକା' ଯେଉଁ କଥାଅଛି ତାହା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଯେ ଏକ ନୌବାଣିଜ୍ୟ କୁଶଳୀ ଓ ଧର୍ମ ପରାୟଣ ଜାତି ଏହା ବ୍ୟକ୍ତ କରିଛନ୍ତି । 'ଦରବାର'ରେ ସ୍ୱଦେଶବତ୍ସଳତାର ବଳିଷ୍ଠତା ଦର୍ଶାଇ କହିଛନ୍ତି—

"ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପି
କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି
ଏକାମ୍ର କୋଣାର୍କେ ଯା କୀର୍ତ୍ତି ଭାସ୍ୱର
ଯୋଗ୍ୟ ପୁତ୍ର ତୁମ୍ଭେ ସେହି ଉତ୍କଳର ।" (ଦରବାର)

ଭାରତମାତାର ଗୌରବଗାନ ସଙ୍ଗେ ସଙ୍ଗେ ଅନ୍ୟ ତିନୋଟି ମୁଖ୍ୟ ଦିଗ ହେଲା ଅତୀତର ଗୌରବଗାନ ଓ ସମସାମୟିକ ଅବକ୍ଷୟୀ ସମାଜରେ ତାର ଭୂମିକା । ଦେଶର ବୀର ପୁରୁଷ ମାନଙ୍କର ପ୍ରଶସ୍ତିଗାନ, ଉଦ୍‌ବୋଧନ ମାଧ୍ୟମରେ ହତଗୌରବ ଓ ମୃତଗୌରବ ଓଡ଼ିଆ ପ୍ରାଣରେ ଦେଶପ୍ରୀତି ଉଦୀପ୍ତ କରିବା ତାଙ୍କ ଜାତୀୟବାଦୀ କବିବ୍ୟକ୍ତିତ୍ୱର ଅନନ୍ୟଦିଗ । ଦେଶପ୍ରେମର ଉଜ୍ଜ୍ୱଳ ନିଦର୍ଶନ ହେଲା— 'ଶିବାଜୀଙ୍କର ଉତ୍ସାହବାକ୍ୟ', 'ଦରବାର', 'ମହାଯାତ୍ରା' ତାଙ୍କର ପ୍ରତ୍ୟେକ କାବ୍ୟରେ ମଧ୍ୟ ସୂଚନା ମିଳେ, ଯାହା ପରବର୍ତ୍ତୀ ସତ୍ୟବାଦୀ ସାହିତ୍ୟିକ ଗୋଷ୍ଠୀଙ୍କ ସାହିତ୍ୟର ମୂଳପ୍ରାଣ ଥିଲା ।

ସଂସ୍କୃତିର ନବଜାଗରଣ ଦ୍ୱାରା ସମାଜର ମୋଡ଼ ବଦଳିଗଲା । ସଂସ୍କାର ଚେତନାଦ୍ୱାରା ପ୍ରଭାବିତ ହୋଇ ଏଠି ମଣିଷ ହେଲା ତଥାକଥିତ ସମାଜର ବିରୋଧୀ । ଶାସ୍ତ୍ରର ଅନୁକାରୀ ନହୋଇ, ବିଚାରପ୍ରବଣତାର ମନ ନେଇ ସମାଜର ବିଭିନ୍ନ ମୂଲ୍ୟବୋଧ ସ୍ଥିର କରିବାକୁ ପ୍ରୟାସ କଲା । ବିଜ୍ଞାନ ଓ ହେତୁବାଦୀ ମନନେଇ ଏ ସଂସ୍କାରଶୀଳ ସମାଜ ପରିଚାଳିତ କରିବାକୁ ଉଚିତ୍ ମନେକଲା । ସେଥିପାଇଁ ସେ ହେଲା ବହୁ ପରିମାଣରେ ମାନବବାଦୀ, ନୈତିକତାରେ ବିଶ୍ୱାସୀ । ସଂସ୍କୃତିର ଏ ପରିବର୍ତ୍ତନଦ୍ୱାରା ସାହିତ୍ୟର ମୋଡ଼ ମଧ୍ୟ ବଦଳିଗଲା । ସାହିତ୍ୟ ତଥାକଥିତ ଧର୍ମ ଧାରଣାରୁ ଓହରିଯାଇ ଜୀବନ ଓ ଜଗତ ସଂପର୍କରେ ବେଶୀ ସଚେତନ ହୋଇ ଉଠିଲା । ତା ପାଇଁ ଆଦର୍ଶ ମଣିଷ ହିଁ ସତ୍ୟ । ସେ ମଣିଷର ଜୈତ୍ରୀଗାନ କଲା । ତେଣୁ ସେ ନୀତି ଓ ଅନୀତିର ମାପକାଠିରେ ସେମାନଙ୍କୁ ପରୀକ୍ଷା କରି ଆଦର୍ଶପ୍ରତି ସମବେଦନା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଅପଦର୍ଶର ପ୍ରାୟଶ୍ଚିତ୍ତ ବିଧାନ କଲା ।

ରାଧାନାଥ ଜଣେ ମାନବବାଦୀ କବି । ରାଧାନାଥ ତତ୍‌କାଳୀନ ସମାଜର ରାକ୍ଷସୀଲୀଳାର ନାନା ନଷ୍ଟ, ବିନଷ୍ଟ, ଅର୍ଦ୍ଧନଷ୍ଟ କାହାଣୀକୁ ଗୋଟାଇ ନେଇ ନିଜ ହୃଦୟର ସହିତ ମିଶାଇ ସ୍ୱତନ୍ତ୍ର ବିଚାର କରିଛନ୍ତି । 'ଚନ୍ଦ୍ରଭାଗା' କାବ୍ୟରେ ଭାରତୀୟ ସଂସ୍କୃତିର ଦେବତା ଭାବରେ ପୂଜିତ ସୂର୍ଯ୍ୟ କନ୍ଦର୍ପ ଶରାହତ ହୋଇ, ଯେଉଁ ଅନୀତି କରି ବସିଲେ ରାଧାନାଥଙ୍କ ମାନବୀୟ ଦୃଷ୍ଟି ତାଙ୍କୁ କ୍ଷମା ଦେଇନାହିଁ । ତାର ପ୍ରାୟଶ୍ଚିତ୍ତ ସ୍ୱରୂପ ବିଶାଳକାୟ ସୂର୍ଯ୍ୟମନ୍ଦିର ଭାଙ୍ଗି ପଡ଼ିଲା । ନନ୍ଦିକା ପବିତ୍ର କେଶରୀବଂଶର ରାଜକନ୍ୟା ହୋଇପାରେ କିନ୍ତୁ ଦେଶଦ୍ରୋହୀ, ପିତୃଦ୍ରୋହୀ ନନ୍ଦିକା ପାଇଁ ରାଧାନାଥ ମୃତ୍ୟୁକୁ ସର୍ବଶ୍ରେଷ୍ଠ ପ୍ରାୟଶ୍ଚିତ୍ତ ଭାବରେ ବାଛିଛନ୍ତି । 'ପାର୍ବତୀ'

କାବ୍ୟରେ ଗଙ୍ଗେଶ୍ୱରଙ୍କୁ ମଧ୍ୟ ସେ କ୍ଷମା ଦେଇ ନାହାନ୍ତି । ତାଙ୍କ କାବ୍ୟର ବିଷୟବସ୍ତୁର ପରିସମାପ୍ତି ପାଠକୀୟ ଉତ୍କଣ୍ଠା ଓ ଅବଶୋଷର ଖୋରାକ ହୁଏ । ସତେ ଯେପରି ତାଙ୍କ କାବ୍ୟର ବିଷୟ ରବୀନ୍ଦ୍ରଙ୍କ ଭାଷାରେ— 'ଶେଷ ହୟ ହଇଲାନା ଶେଷ' ଭଳି ରସସ୍ନିଗ୍ଧ ଭାଷା ବର୍ଣ୍ଣିତ ଘଟଣାକ୍ରମରେ ନାଟକୀୟତା ଓ ସର୍ବୋପରି ସଚେତନ ସତର୍କ ଶବ୍ଦ ପ୍ରୟୋଗ ତାଙ୍କ କାବ୍ୟ ପ୍ରସଙ୍ଗକୁ ଅଧିକ ମାନବବାଦୀ କରି ଗଢ଼ି ତୋଳେ । କେଦାରଗୌରୀ କାବ୍ୟରେ ନାୟକ ନାୟିକାର ଭ୍ରାନ୍ତି ଉଭୟଙ୍କୁ ମୃତ୍ୟୁମୁଖୀ କରାଇଛି । ପ୍ରେମରେ ସନ୍ନ୍ୟାସୀ ଓ ସନ୍ନ୍ୟାସିନୀଙ୍କ ଜୀବନ ସଂଧ୍ୟାକୁ ସେଇଠି କବି ସାରି ପାରି ନାହାନ୍ତି । ତାଙ୍କ ଲେଖନୀରୁ ନିଃସୃତ ହୋଇଛି—

"ଅନୁମାନ ପରା ଭବ-ମାନେ ଏଥି
ଅନୁଭବ ହିଁ ଭାଜନ (କେଦାରଗୌରୀ)

ତାଙ୍କ ପ୍ରତ୍ୟେକ କାବ୍ୟର ପରିଣତିହିଁ ପାଠକର ପ୍ରାଞ୍ଜୋଜ୍ଜ୍ୱଳ ଅନୁଭବ ଓ ପୁରୋଦୃଷ୍ଟି ସମ୍ପନ୍ନତା ଯାଚଞ୍ଚ କରେ । ତେଣୁ ସର୍ବତ୍ର ମାନବବାଦର ଜୈତ୍ରୀ ଉଦ୍‌ଘୋଷିତ ଓ ପରିଦୃଷ୍ଟ । ଅନୁଭୂତିସିକ୍ତ ଭାବମାନଙ୍କ ମଧ୍ୟରେ ସେ ବି ଜଣେ ରସଗ୍ରାହୀ ବ୍ୟକ୍ତି । ପାଠକୀୟ ଅବଶୋଷ ଓ ଉତ୍କଣ୍ଠା ହିଁ ତାଙ୍କ ମାନବବାଦୀ ଦୃଷ୍ଟିକୋଣର ଏକ ବଳିଷ୍ଠ ଦିଗ, ଯାହା ବୁଝାଇ ହୁଏନା, ଅନୁଭବ ଭାଜନତାର ଅପେକ୍ଷା ରଖେ ।

ନିଛକ ହାସ୍ୟରସ ସ୍ରଷ୍ଟାଭାବେ ସରସ୍ୱତୀ ଫକୀରମୋହନ ଯେପରି ଓଡ଼ିଆ ସାହିତ୍ୟର ଯଶସ୍ୱୀ ଶିଳ୍ପୀଭାବେ ପରିଚିତ, ସେହିପରି ବ୍ୟଙ୍ଗ କବିତା ରଚନାରେ ରାଧାନାଥଙ୍କ ସିଦ୍ଧି ଓ ପରିବେଷଣରେ ଅକୁତୋଭୟ ବ୍ୟକ୍ତିତ୍ୱର ପଟାନ୍ତର ନାହିଁ । ପ୍ରାକ୍ ରାଧାନାଥ ସାହିତ୍ୟରେ ବ୍ୟଙ୍ଗ ଖୁବ୍ ଅଳ୍ପ ପରିମାଣରେ ଦୃଷ୍ଟିଗୋଚର ହେବାସ୍ଥଳେ ବର୍ତ୍ତମାନ ସମାଜ ଓ ସାହିତ୍ୟରେ ବ୍ୟଙ୍ଗର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ରାଧାନାଥଙ୍କ ବ୍ୟଙ୍ଗରଚନା ଇଂରାଜୀ ସାହିତ୍ୟର ପ୍ରଭାବ । ଯାହାର ସର୍ବଶ୍ରେଷ୍ଠ ନମୁନା 'ଦରବାର' ଇଂରାଜୀ ସାହିତ୍ୟରେ ବିଶୁଦ୍ଧ ହାସ୍ୟରସ (Humour) ଅପେକ୍ଷା ବ୍ୟଙ୍ଗ (Satire)ର ସ୍ଥାନ ଅଧିକ ଗୁରୁତ୍ୱପୂର୍ଣ୍ଣ । ସେକ୍‌ସପିଅରଙ୍କଠାରୁ ବ୍ୟଙ୍ଗ ରସର ଆରମ୍ଭ ହେଲେ ମଧ୍ୟ ରେଷ୍ଟୋରେସନ୍ ପିରିଅଡ଼ରେ ଏହା ଉନ୍ନତିର ଚରମସୀମାରେ ପହଞ୍ଚିଥିଲା । ଜନ ଡ୍ରାଇଡ଼େନଙ୍କ ନେତୃତ୍ୱରେ ସପ୍ତଦଶ ଶତାବ୍ଦୀ ବେଳକୁ ସୃଷ୍ଟ ଇଂରାଜୀ ସାହିତ୍ୟକୁ 'ବ୍ୟଙ୍ଗର ଯୁଗ' ଭାବରେ ନାମିତ କରାଯାଏ ।

ହାସ୍ୟରସର ବିଭିନ୍ନ ବିଭାଗ ମଧ୍ୟରୁ ବିଶୁଦ୍ଧ ହାସ୍ୟରସ ଏବଂ ବ୍ୟଙ୍ଗ ଏ ଦୁଇଟି ମୁଖ୍ୟ ଅଟେ । ବର୍ତ୍ତମାନ ସମାଜ ଓ ସାହିତ୍ୟରେ ବିଶୁଦ୍ଧ-ହାସ୍ୟରସ ପରିବର୍ତ୍ତେ ବ୍ୟଙ୍ଗର ଅନିବାର୍ଯ୍ୟତା ଅଧିକ । ବ୍ୟଙ୍ଗ କବିତା ସଂପର୍କରେ ଲୁଇସ ମ୍ୟାକନିସ୍ କହନ୍ତି— "ବ୍ୟଙ୍ଗ କବି ବଡ଼ପାଟିରେ କୁହେନାହିଁ, ସ୍ୱଳ୍ପ ସ୍ୱରରେ ମନ ଓ ହୃଦୟକୁ ଛୁଇଁଲାଭଳି କଥା କୁହେ" । ବ୍ୟଙ୍ଗକାର ସତ୍ୟ, ନ୍ୟାୟ ଓ ସାଧୁତାର ବିଶ୍ୱାସରୁ ପଳାୟନ କରୁଥିବା ବ୍ୟକ୍ତିକୁ ପ୍ରତ୍ୟକ୍ଷ ଭାଷଣ ମାଧ୍ୟମରେ ଚେଷ୍ଟା କରେ ନାହିଁ । ପରୋକ୍ଷ, ତିର୍ଯ୍ୟକ ଓ ସଂକ୍ଷିପ୍ତ ବ୍ୟଙ୍ଗ ଅସ୍ତ୍ରର ପରିଚାଳନା ଦ୍ୱାରା ସମାଜରେ ଏକ ସୁସ୍ଥ ବାତାବରଣ ପ୍ରତିଷ୍ଠା ପାଇଁ ସେ ସତତ ଚେଷ୍ଟିତ । ରାଧାନାଥଙ୍କ 'ଦରବାର' ଏହାର ସର୍ବଶ୍ରେଷ୍ଠ ନମୁନା ।

ଦେଶର କେତେକ ଜ୍ଞାନୀ ଗୁଣୀ ତଥା ମାନ୍ୟଗଣ୍ୟ ବ୍ୟକ୍ତି ଯଥାର୍ଥ ପ୍ରତିଭାର ଅଧିକାରୀ ହୋଇଥିଲେ ମଧ୍ୟ ସେମାନେ ସମ୍ମାନର ଅଧିକାରୀ ହୋଇପାରନ୍ତି ନାହିଁ । ଅର୍ଥାତ ଶସ୍ତାସ୍ତାବକତା ଦ୍ୱରା ଗୁଣହୀନ ଲୋକମାନେ ପ୍ରତିପତ୍ତି ହାସଲ କରିପାରନ୍ତି । ରାଧାନାଥ ସେଇ ସ୍ତାବକଦଳପ୍ରତି ନାସିକା କୁଞ୍ଚନ କରିଛନ୍ତି—

"ମଞ୍ଚପାଶେ କିମ୍ବା ଏତେ ଲୋକ ଠିଆ
ଲାଗିଅଛି ପରା ଆସନ କଜିଆ
ନିଜ ଅହମିକା ସଦୃଶ ଆସନ
ନ ଦେଖି ଥୋକାଏ ମହାକ୍ଷୁଣ୍ଣ ମନ" (ଦରବାର)

ରାଧାନାଥ ତୋଷାମୋଦକାରୀଙ୍କୁ ପୋଷାଶ୍ୱାନ ବୋଲି ଆକ୍ଷେପ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ବାଗାଡ଼ମ୍ବର ଓ ତୁଚ୍ଛ ପରିପାଟୀକୁ ଘୃଣା କରିଛନ୍ତି—

"କେହି ବୋଲେ ମୁଁ ହିଁ ଅଟଇ ଡିପୋଟୀ
କଳା ଲୋକଙ୍କର ଉନ୍ନତିର କୋଟୀ
ଲଭିଅଛି ମୁହିଁ କଳ କଉଶଳେ
ମୋତେ ପୁଣି କିଏ ବସାଇବ ତଳେ ।" (ଦରବାର)

ଜଣେ ବ୍ୟଙ୍ଗ କବି ଉଚ୍ଚ ମୂଲ୍ୟବୋଧରେ ବିଶ୍ୱାସ କରେ । 'ଦରବାର' କାବ୍ୟ ମଧ୍ୟରୁ ରାଧାନାଥ ଜଣେ ହିନ୍ଦୁ ଶାସ୍ତ୍ରୀୟ ମୂଲ୍ୟବୋଧର ପ୍ରତିନିଧି ଏହା ନିଚ୍ଛକ ଭାବରେ ସତ୍ୟ । 'ଦରବାର' ପାଠ କଲାବେଳେ ସ୍ୱତଃ 'ମନବୋଧ ଚଉତିଶା' ଠାରୁ ଗୀତା, ଭାଗବତ, ହିନ୍ଦୁ ଦର୍ଶନର ରୂପ ମନେପଡ଼େ । ଏ ସଂସାର ମନୁଷ୍ୟ ପାଖରେ ଚଟିଘର, ଜୀବନ ଏଥିରେ ପାଣିଫୋଟକା ତୁଲ୍ୟ । ତେଣୁ ମନୁଷ୍ୟ ଏହି

ସ୍ୱଳ୍ପ ସମୟ ପାନ୍ଥଶାଳା ରହଣି ମଧ୍ୟରେ ସତ୍‌କର୍ମ ସାଧନା ଦ୍ୱାରା କିପରି ସ୍ୱର୍ଗପଥର ଯାତ୍ରୀ ହୋଇ ପାରିବ ତାହା ଦର୍ଶାଇଛନ୍ତି । ଖୁବ୍ ସଂକ୍ଷିପ୍ତ ଶବ୍ଦ ଓ ବକ୍ତୃତାଧର୍ମୀ ଭାଷାଦ୍ୱାରା ରାଧାନାଥ ଓଡ଼ିଆ ସାହିତ୍ୟରେ ବ୍ୟଙ୍ଗର ଭିତ୍ତି ପ୍ରତିଷ୍ଠା କରିଛନ୍ତି ।

ଆଧୁନିକ ସାହିତ୍ୟର କ୍ଷମାଶୂନ୍ୟ ପ୍ରଜ୍ଞା ନିଜକୁ ମଧ୍ୟ କ୍ଷମା ଦିଏନାହିଁ । ବ୍ୟଙ୍ଗ ସର୍ବବ୍ୟାପୀ । ରାଧାନାଥଙ୍କ ଦରବାରରେ ପ୍ରଥମେ ଆମେ ଏହି କ୍ଷମାଶୂନ୍ୟ ଆତ୍ମପ୍ରଜ୍ଞା ଦେଖୁ । ଏହି ଭଦ୍ରଖୋଳ ପିନ୍ଧା ମଣିଷସମାଜ ମଧ୍ୟରେ ସେ ଜଣେ । ସେ ଭଗବାନ କିମ୍ବା ମହାପୁରୁଷ ନୁହନ୍ତି । ଶସ୍ତା ସ୍ତାବକତା କରୁଥିବା ମଣିଷସମାଜ ମଧ୍ୟରେ ସେ ମଧ୍ୟ ଜଣେ । ରାଧାନାଥଙ୍କ ଭାଷାରେ—

> "ମଣନାହିଁ ମୁହିଁ ନେଇଛି ଏସନ
> ଜ୍ଞାନ ଦର୍ପେ ଜ୍ଞାନଦାତାର ଆସନ
> ଥୋଇ ସେ ମୁକୁର ତୁମ୍ଭ ଆଗେ ଭାଇ
> ନିଜ ମୁଖ ମୁଁ କି ନିଜେ ଦେଖୁ ନାହିଁ ।" (ଦରବାର)

ରାଧାନାଥଙ୍କ ବ୍ୟଙ୍ଗ ପରମୁଖାପେକ୍ଷୀ ନୁହେଁ । ଆତ୍ମ କୈନ୍ଦ୍ରିକ । ଏହି ଭାବଧାରା ପରବର୍ତ୍ତୀ ଆଧୁନିକ କବିତାକୁ ପ୍ରଭାବିତ କରିଛି । ପ୍ରତ୍ୟେକ ଆଧୁନିକ ସଚେତନ ଶିଳ୍ପୀ ବୋଧହୁଏ ପ୍ରଥମେ ମୁଁ କୁ ବ୍ୟଙ୍ଗ କରନ୍ତି ।

ଊନବିଂଶ ଶତାବ୍ଦୀର ଇଂରାଜୀ ସାହିତ୍ୟରେ ଦେଖାଦେଇଥିବା ବାସ୍ତବବାଦ ଦ୍ୱାରା ରାଧାନାଥ ପ୍ରଭାବିତ ହୋଇଥିଲେ । ତେଣୁ ରାଧାନାଥ ସାହିତ୍ୟରେ ଆମେ ବାସ୍ତବ ଚେତନାର ସୂଚନା ପାଉ । ବାସ୍ତବତା ଆଧୁନିକ ଓଡ଼ିଆ କବିତାର ଗୋଟିଏ ପ୍ରଧାନ ଧର୍ମ । ପ୍ରାଚୀନ ଓଡ଼ିଆ କାବ୍ୟ ସାହିତ୍ୟରେ ବାସ୍ତବ ଚିତ୍ର ଥିଲେ ହେଁ ଏହା ସ୍ରଷ୍ଟାର ସଚେତନ ମନର ଅଭିବ୍ୟକ୍ତି ନୁହେଁ । କିନ୍ତୁ ଆଜିର କବିତା ବାସ୍ତବବାଦୀ । ଏହା ସ୍ରଷ୍ଟାର ସଂସ୍କାରଶୀଳ ଓ ନୀତିପ୍ରବଣ ମନର ଏକ ସଚେତନ ଅଭିବ୍ୟକ୍ତି । ଆଧୁନିକ ସାହିତ୍ୟ କେବଳ କଳ୍ପନା କିମ୍ବା କେବଳ ବାସ୍ତବତାକୁ ନେଇ ଗତିଶୀଳ ନୁହେଁ । ଏଇ ଦୁଇଟିର ସମନ୍ୱୟରେ ହିଁ ବାସ୍ତବବାଦୀ କବିତାର ସୃଷ୍ଟି । ସାହିତ୍ୟର ଦର୍ପଣରେ ସମାଜର ପ୍ରତିଫଳନ ଘଟେ । ଏହି ନ୍ୟାୟରେ ଜଣେ ସୃଜନକ୍ଷମ ପ୍ରତିଭା ସ୍ୱୀୟ ସାହିତ୍ୟ ମଧ୍ୟରେ କେବଳ ସମାଜକୁ ପ୍ରତିଫଳିତ କରାଇ ଦାସତ୍ୱମୁକ୍ତ ହୋଇପାରେ ନାହିଁ । ସମାଜର ଭଲ ଓ ଭେଲ ପରୀକ୍ଷାର କଷଟି ହୁଏ । ତାର ସାହିତ୍ୟ ସେଇଥିପାଇଁ ଅନେକ ସମୟରେ ହୁଏ ନୀତିବାଦୀ ଆଦର୍ଶବାଦୀ ଶିକ୍ଷକଟିଏ ।

ରାଧାନାଥ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ବାସ୍ତବଧର୍ମୀ କବି । ତାଙ୍କ ସାହିତ୍ୟ ଜୀବନ ଉପରେ ପ୍ରତିଷ୍ଠିତ ହୋଇ - କ୍ରମଶଃ ବାସ୍ତବତାମୁଖୀ ହୋଇ ସମାଜରେ ଏକ ନୂତନ ଜୀବନ ସୃଷ୍ଟି ପାଇଁ ପ୍ରେରଣା ଯୋଗାଇଛି । ଯାହାର ପ୍ରକୃଷ୍ଟ ଉଦାହରଣ— 'ପାର୍ବତୀ', 'ଦରବାର', 'ମହାଯାତ୍ରା' ଇତ୍ୟାଦି । 'ପାର୍ବତୀ'ରେ ପିତା ଓ ପୁତ୍ରୀର ଅବୈଧ ପ୍ରେମ ଯାହା ଫ୍ରଂୟେଡୀୟ ମନସ୍ତତ୍ତ୍ୱ ଦୃଷ୍ଟିରୁ ଓଡ଼ିପସ୍‌କମ୍ପ୍ଲେକସ୍ ଭାବରେ ଗୃହୀତ ।

ଦରବାରର ଆସନ କଜିଆ, ମହାଯାତ୍ରାରେ ଯୁଧିଷ୍ଠିରଙ୍କର ଜ୍ଞାନ ଅଞ୍ଜନ ଲାଭ ଓ କଳିର ସ୍ୱରୂପ ବର୍ଣ୍ଣନା ଅତ୍ୟନ୍ତ ଜୀବନ୍ତ । ସେଠାରେ ଯୁଧିଷ୍ଠିର ନୁହନ୍ତି ରାଧାନାଥ ଜ୍ଞାନ ଅଞ୍ଜନ ଲାଭକରି, ସମାଜ ଜୀବନରେ କିପରି ହତ୍ୟା, ଲୋଭ, ଈର୍ଷା, ଅହଂକାର, ଅସତ୍ୟ ପ୍ରଭୃତିଦ୍ୱାରା କବଳିତ, ସେଠାରେ ସତ୍ୟ ଓ ନ୍ୟାୟ ନାହିଁ । ମଣିଷ ହୋଇଛି ଅସତ୍ୟର ବଶବର୍ତ୍ତୀ । ପର ନିନ୍ଦା ଓ କାନରେ କହିବା ତାର ପ୍ରବୃତ୍ତି । ରାଧାନାଥ ଏହି କୁ ପ୍ରବୃତ୍ତିମାନଙ୍କର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି । ତତ୍‌କାଳୀନ ସମାଜରେ ଧର୍ମର ଗୈରିକ ବସନ ପରିଧାନ କରିଥିବା ଭସ୍ମ ବିଲୋପିତ ସାଧୁମାନଙ୍କର ମୁଖା ଖୋଲି ଦେଇଛନ୍ତି । ସାଧୁମାନଙ୍କର ବହିଃ ରୂପକୁ ଉଦ୍‌ଘାଟନ କରି ସେମାନଙ୍କ ଅନ୍ତଃ ମନରେ ଲୁଚି ରହିଥିବା ବହୁ କୁ-ପବୃତିକୁ ରାଧାନାଥ ଦେଖାଇଛନ୍ତି—

''ନାନାଗୁଣ ଆବରଣେ ଆବୃତ ସରବେ
ଭେଦି ନ ପାରଇ ଯାହା ଚକ୍ଷୁ ସାରସ୍ୱତ (ମହାଯାତ୍ରା)

'ଚିଲିକା' କାବ୍ୟରେ ପ୍ରକୃତି ରାଧାନାଥଙ୍କ ପାଇଁ ସୁଖ ଓ ଶାନ୍ତିପ୍ରଦ ହେଲେ ମଧ୍ୟ ସଂସାର ଜୀବନକୁ ତାଙ୍କୁ ଫେରିବାକୁ ହେବ । ଦୁଃଖ ଓ ଜଞ୍ଜାଳପୂର୍ଣ୍ଣ ସେ ସଂସାର ମଣିଷ ପାଇଁ ସର୍ବଶ୍ରେଷ୍ଠ ସତ୍ୟ ଓ ବାସ୍ତବ । ରାଧାନାଥଙ୍କ ଭାଷାରେ—

''ମାଗୁଛି ଚିଲିକା ମେଲାଣି ତୋଠାରେ
ବାହୁଡ଼ିବି ଏବେ ଦାରୁଣ ସଂସାରେ'' (ଚିଲିକା)

ଓଡ଼ିଶାର ବାସ୍ତବ ଭୌଗୋଳିକ ଚିତ୍ର ଦେବାରେ ରାଧାନାଥ ପ୍ରଥମ ସ୍ରଷ୍ଟା । କେବଳ ଭୌଗୋଳିକ ଚିତ୍ର ନୁହେଁ, ଓଡ଼ିଶାର ପ୍ରକୃତି, ଦେବଦେବୀ ଓ ସାମାଜିକ ଚିତ୍ର ଦେବାରେ ରାଧାନାଥ ଜଣେ ବାସ୍ତବବାଦୀ ସ୍ରଷ୍ଟା, ଏହା ସର୍ବବାଦିସମ୍ମତ ।

ରୋମାଣ୍ଟିକ ଚେତନାଠାରୁ ଆଧୁନିକତାର ଆରମ୍ଭବୋଲି କୁହାଯାଏ । ଓଡ଼ିଆ ସାହିତ୍ୟରେ ରୋମାଣ୍ଟିକ ଚେତନା ମୁଖ୍ୟତଃ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧଠାରୁ

ଆରମ୍ଭ । ରାଧାନାଥଙ୍କୁ ଓଡ଼ିଆ ସାହିତ୍ୟରେ ରୋମାଣ୍ଟିକ ଚେତନାର ଅଗ୍ରଦୂତ ଭାବରେ ଗ୍ରହଣ କରାଯାଏ । ଯଦି ରୋମାଣ୍ଟିକ ଭାବଧାରାକୁ ପ୍ରେମ ପ୍ରଣୟ ଅର୍ଥରେ ଗ୍ରହଣ କରାଯାଏ ସେ ଦୃଷ୍ଟିରୁ ଭଞ୍ଜ କିଛି ପରିମାଣରେ ଅଭିନନ୍ଦନୀୟ । କିନ୍ତୁ ଏହି ରୋମାଣ୍ଟିକ ଶିଳ୍ପକଳା କେବଳ ପ୍ରେମ ପ୍ରଣୟ ମଧ୍ୟରେ ଆବଦ୍ଧ ନୁହେଁ । ତାର ଅନ୍ୟ ଦିଗଗୁଡ଼ିକ ହେଲା— ଜାତୀୟ ସଂପ୍ରୀତି, ପ୍ରକୃତି ପ୍ରୀତି, ବିଷାଦବାଦ, ସ୍ୱତଃ ସ୍ଫୂର୍ତ୍ତତା, କଳ୍ପନା, ସୁଦୂରର ମୋହ ଇତ୍ୟାଦି । ଏ ଦୃଷ୍ଟିରୁ ପ୍ରାକ୍ ରାଧାନାଥ ସାହିତ୍ୟରେ ରୋମାଣ୍ଟିକ କାବ୍ୟ ଖୋଜିଲେ ନିରାଶ ହେବାକୁ ପଡ଼େ । ରୋମାଣ୍ଟିକ ଚେତନାର ସଂଜ୍ଞା ଦୃଷ୍ଟିରୁ ରାଧାନାଥ ଜଣେ ସଫଳ ସ୍ରଷ୍ଟା । ବର୍ତ୍ତମାନ ରୋମାଣ୍ଟିକ ଚେତନାର ସବୁଦିଗ ଉପରେ ଆଲୋକପାତ ନକରି କେବଳ ପ୍ରେମ ଓ ପ୍ରଣୟ ଉପରେ ଆଲୋଚନା କରୁଛି ।

ରାଧାନାଥ କାବ୍ୟ ସାହିତ୍ୟକୁ ପ୍ରେମ ଦୃଷ୍ଟିରୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ଭାଗରେ ଆମେ-'କେଦାରଗୌରୀ', 'ନନ୍ଦିକେଶ୍ୱରୀ' ଓ 'ଉଷା' କାବ୍ୟକୁ ନେଇ ପାରିବା, ପ୍ରେମ ପାଇଁ ପ୍ରେମମୁଗ୍ଧ କେଦାର ଗୌରୀ ସାମାଜିକ ବାଧା ବନ୍ଧନକୁ ଏଡ଼ାଇ ଦେଇ, ପ୍ରେମ ପଥର ପଥିକ ହେବା, ପ୍ରେମ ପାଗଳୀ ନନ୍ଦିକାର ଶତ୍ରୁପକ୍ଷ ନିକଟରେ ପ୍ରେମଭିକ୍ଷା, ଉଷା ଓ ଜୟନ୍ତଙ୍କର ପ୍ରତିଯୋଗିତା ମଧ୍ୟରେ ପରସ୍ପରକୁ ପାଇବାର ନିବିଡ଼ତା ଏହା ରାଧାନାଥଙ୍କ ବାସ୍ତବ ରୋମାଣ୍ଟିକ ମନର ପରିଚୟ ପ୍ରଦାନ କରେ । ଦ୍ୱିତୀୟ ଭାଗରେ ଆମେ 'ଚନ୍ଦ୍ରଭାଗା' ଓ 'ପାର୍ବତୀ'କୁ ନେଇପାରିବା । ଏଥିରେ ରାଧାନାଥୀ ରୋମାଣ୍ଟିକ ମନର ପରିଚୟେ ମିଳୁଥିଲେ ମଧ୍ୟ 'ପାର୍ବତୀ'ରେ ପିତାର କନ୍ୟା ପ୍ରତି ପାଶବିକ ଆଚରଣ, 'ଚନ୍ଦ୍ରଭାଗା'ରେ ସୂର୍ଯ୍ୟଙ୍କର ଚନ୍ଦ୍ରଭାଗା ପ୍ରତି କ୍ଷୁଧାର୍ତ୍ତ ଦୃଷ୍ଟି ରାଧାନାଥଙ୍କ ରୋମାଣ୍ଟିକ ପ୍ରେମ ଭାବନାର ଏକ ନିରୀହ ଗାଈ ନୁହେଁ ବରଂ ଏକ କ୍ଷୁଧିତ ସିଂହ । ଆଧୁନିକ ଭାଷାରେ ଏହାକୁ ଧର୍ଷଣ କହିଲେ ସମ୍ଭବତଃ ଠିକ୍ ହେବ । ଏ ସବୁ ସତ୍ତ୍ୱେ ରାଧାନାଥ ଯେ ଜଣେ ପ୍ରଥମ ସଫଳ ରୋମାଣ୍ଟିକ କବି ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।

ଚଳିତ ଶତାବ୍ଦୀର କବିତାରେ ଚିତ୍ରକଳ୍ପ ପ୍ରୟୋଗ ଏକ ଆମ୍ବ ବିଭବ ଭାବରେ ଗୃହୀତ । ଓଡ଼ିଆ କବିତା କ୍ଷେତ୍ରରେ କବିବର ରାଧାନାଥ ଚିତ୍ରକଳ୍ପ ପ୍ରୟୋଗରେ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ମାର୍କିନ କବି ଏଜରାପାଉଣ୍ଡ କହନ୍ତି— "ପୋଥିଏ କହିବା ଅପେକ୍ଷା ଜୀବନ କାଳରେ ଗୋଟିଏ ଚିତ୍ରକଳ୍ପ ଉପସ୍ଥାପନ କରିବା ଯଥେଷ୍ଟ ।" ଚିତ୍ରକଳ୍ପ ଓ ଉପମା ମଧ୍ୟରେ ରୂପଗତ ସାମଞ୍ଜସ୍ୟ ହେଉଛି

ଚିତ୍ରକଳ୍ପ ତୁଳନା ଅପେକ୍ଷା ଭାବ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରେ । ଏହା ବସ୍ତୁର ରୂପ ଗୁଣ ଠାରୁ ଅଧିକ ମନୋଜ୍ଞ, ବୌଦ୍ଧିକ ସମ୍ଭାବନା ଉପସ୍ଥାପିତ କରିଥାଏ । ଚିତ୍ରକଳ୍ପ କ୍ୟାମେରାର ଫଟୋଗ୍ରାଫରେ ପ୍ରତିବିମ୍ବିତ ସାଧାରଣ ଚିତ୍ରନୁହେଁ । ଏହାକୁ ଚିନ୍ତା ଓ ଚେତନା ମଧ୍ୟରୁ ଅନୁଭବ କରିହୁଏ । ସି.ଡେ. ଲୁଇସଙ୍କ ଭାଷାରେ— "ଚିତ୍ରକଳ୍ପ ଶବ୍ଦ ଚିତ୍ରଟିଏ କିନ୍ତୁ ଏହା ଭାବାବେଗ ବା ସଂବେଦନାରେ ରସୋଜ୍ଜ୍ୱଳ" ।

ଆଧୁନିକ ସାହିତ୍ୟରେ ଚିତ୍ରକଳ୍ପ କହିଲେ ଯାହା ବୁଝୁ ରାଧାନାଥ ସାହିତ୍ୟରେ ତାହା ଖୋଜି ବସିଲେ ବିଡ଼ମ୍ବନା ମାତ୍ର ହେବ । ରାଧାନାଥ ସାହିତ୍ୟରେ ବ୍ୟବହୃତ ହୋଇଥିବା ଉପମାର ଶ୍ରେଷ୍ଠତ୍ୱକୁ ଚିତ୍ରକଳ୍ପ ଅର୍ଥରେ ବୁଝିବାକୁ ପଡ଼ିବ । ରାଧାନାଥ ଯେଉଁଠି ଚିତ୍ର ଚେତନା ସୃଷ୍ଟି କରିଛନ୍ତି ସେଥିରେ ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି ଓ ବାସ୍ତବ ଜ୍ଞାନର ପରିଚୟ ମିଳେ । ରାଧାନାଥ ଚନ୍ଦ୍ରଭାଗା ରୂପବର୍ଣ୍ଣନାରେ ସୁନ୍ଦର ଚିତ୍ରଚେତନା ସୃଷ୍ଟି କରିଛନ୍ତି—

"ସ୍ୱଭାବେ ସୁବର୍ଣ୍ଣ, ଯୌବନ
ହେଲା ଯୋଗ୍ୟ ରସାଣ
ରୂପାନ୍ତର-ହେଲା ରୂପସୀ
ଷଷ୍ଠ ଅମୋଘ ବାଣ " (ଚନ୍ଦ୍ରଭାଗା)

କନ୍ଦର୍ପର ପଞ୍ଚବାଣ ଦ୍ୱାରା ଆଘାତପ୍ରାପ୍ତ ହେଲେ ଯୋଗୀଜନ ମାନେ ମଧ କାମାସକ୍ତ ହୋଇ ଉଠନ୍ତି । ଏଠାରେ ରାଧାନାଥ ଏକ ଶବ୍ଦ ଚିତ୍ରକଳ୍ପ ଦ୍ୱାରା 'ଚନ୍ଦ୍ରଭାଗା'କୁ 'ଷଷ୍ଠ ଅମୋଘବାଣ' ଭାବରେ ଆଖ୍ୟାୟିତ କରିଛନ୍ତି । ତେଣୁ ତାର ଦର୍ଶନରେ ସୂର୍ଯ୍ୟଙ୍କର ଧୈର୍ଯ୍ୟର ବାଲିବନ୍ଧ ଭୁଷୁଡ଼ି ପଡ଼ିବା ସ୍ୱାଭାବିକ । ଅନ୍ୟ ଏକ ସ୍ଥାନରେ କାମାସକ୍ତ ସୂର୍ଯ୍ୟ ଚନ୍ଦ୍ରଭାଗାର ପଶ୍ଚାତ ଧାବନ କରୁଥିବା ସମୟରେ ରାଧାନାଥ ଏକ ସୁନ୍ଦର ଜୀବନ୍ତ ଚିତ୍ରକଳ୍ପଟିଏ ସୃଷ୍ଟି କରିଛନ୍ତି । ରାଧାନାଥଙ୍କ ଭାଷାରେ—

(କ) "ହଳଦି ବସନ୍ତ ଏକାନ୍ତ
ପ୍ରାଣ ଭୟେ ଅସ୍ଥିର
କ୍ଷଣେ ଧୃତ କ୍ଷଣେ ମୁକତ
ମଣେ ନିଜ ଶରୀର" (ଚନ୍ଦ୍ରଭାଗା)

(ଖ) "ଛଞ୍ଚାଣ ମୁଖରୁ କପୋତ
ଏହି ରୂପେ ପଳାଏ" (ଚନ୍ଦ୍ରଭାଗା)

ଅନେକ ସ୍ଥାନରେ ଚନ୍ଦ୍ରଭାଗାର ବକ୍ର ଚାହାଁଣି ଯେ ମନ ଭିତରେ କେତେ ନୂଆ ସ୍ୱପ୍ନ ଗଢ଼େ, ରୋମାଣ୍ଟିକ କବି ରାଧାନାଥ ସେ ସଂପର୍କରେ ଚିତ୍ର ଚେତନାଟିଏ ସୃଷ୍ଟି କରିଛନ୍ତି ।

"ଉଠେ ନବ ଶୋଭା ତରଙ୍ଗ
ପ୍ରତି ଅଙ୍ଗ ଭଙ୍ଗୀରେ" (ଚନ୍ଦ୍ରଭାଗା)

ରାଧାନାଥଙ୍କ କାବ୍ୟକୃତିରେ ଆମେ ଏହିପରି ବୁହୁଚିତ୍ର କଳ୍ପର ସନ୍ଧାନ ପାଉ ।

ଅସହାୟତା ଓ ବିଚ୍ଛିନ୍ନତା ଯାହା ଉତ୍ତର ଷାଠିଏ ଓଡ଼ିଆ କବିତାରେ ବେଶୀ ଗୁରୁତ୍ୱପୂର୍ଣ୍ଣ ତାହା ଅଷ୍ଟାଦଶ ଶତାବ୍ଦୀରୁ ବିଶ୍ୱ ସାହିତ୍ୟରେ ଜନ୍ମ ନେଲାଣି । ମଣିଷର ସେଇ ଅସହାୟତା, ଅକ୍ଷମତା, ମଣିଷ ନିଜ ଶକ୍ତି ବଳରେ କିଛି କରିପାରିବ ନାହିଁ ବୋଲି ଅନୁଭବ କରିବା, ନିଜ କ୍ଳୀବତ୍ୱର ଅନୁଭୂତି ପ୍ରତ୍ୟେକ ଯୁଗର ସାହିତ୍ୟରେ ସତ୍ୟ । ପ୍ରତ୍ୟେକ ଯୁଗର ସ୍ରଷ୍ଟା ଥୋଇ ଦେଇଥାଏ ଅନ୍ତର ତଳର ଅୟୁତ ଦୁଃଖ ସଙ୍ଗେ ସଙ୍ଗେ ସମାଜ ଜୀବନର ଅସରନ୍ତି ବେଦନାବୋଧ । ରାଧାନାଥ ସେଥିରୁ ମୁକ୍ତ ହୁଅନ୍ତେ ବା କିପରି ? ରାଧାନାଥଙ୍କ ପ୍ରତ୍ୟେକ କାବ୍ୟରେ ଆମେ ସେଇ ଅସହାୟତାର ସ୍ୱର ଦେଖୁ । "ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ' ରେ ବିନାଯୁଦ୍ଧରେ ସୂଚୀଅଗ୍ରରେ ଭୂମି ନ ଦେବାପାଇଁ ପ୍ରତିଜ୍ଞାବଧ ମାନଗୋବିନ୍ଦ ରକ୍ତନଦୀ ପାର ହେଲାବେଳେ କେଡ଼େ ଅସହାୟ ସତେ । ଜର୍ମାନ କବି ଗେଟେ କହିଥିଲେ— "Man errs as long as he aspires" ମଣିଷର ଆଶାରୁ ନିଷ୍କୃତି କାହିଁ ? ତେଣୁ ସେ ଦୁଃଖ ଭୋଗିବନି ତ ଆଉ କିଏ ଦୁଃଖ ଭୋଗିବ । ତାରୁଣ୍ୟ ଶତପୁଲକ ଓ ପ୍ରାଚୁର୍ଯ୍ୟ ଭିତରେ ପରିଚାଳିତ ରାଜକନ୍ୟା କୌଶଲ୍ୟା ନିଜ ପିତାଙ୍କ ଦ୍ୱାରା ଧର୍ଷିତା ହେବାପରେ ନିଜ ମା ନିକଟରେ ସେ କେତେ ଅସହାୟ ? ରାଧାନାଥ ସାହିତ୍ୟରେ ପ୍ରତ୍ୟେକ ଚରିତ୍ର, ନନ୍ଦିକା, ସୂର୍ଯ୍ୟଦେବ, ଚନ୍ଦ୍ରଭାଗା, କେଦାରଗୌରୀ, ଗଙ୍ଗେଶ୍ୱର ସମସ୍ତେ ଅସହାୟ, କାହାରି ଜୀବନରେ ଶାନ୍ତି ନାହିଁ ଏବଂ ସେମାନଙ୍କ ଅସହାୟତାର ପରିସମାପ୍ତି ଘଟିଛି ମୃତ୍ୟୁରେ । ବୋଧହୁଏ ଏହା ହିଁ ଏକାନ୍ତ ସତ୍ୟ ଓ ସମାଧାନ । ଏହା ବ୍ୟତିରେକେ କବିଙ୍କ ଗତ୍ୟନ୍ତର କାହିଁ ।

ମୃତ୍ୟୁ ଏକାନ୍ତଭାବରେ ଜୀବନର ସତ୍ୟ ଦିଗଟି ହୋଇଥିଲେ ବି, ତାହା ପାପବୋଧର ସଙ୍କେତ ଦୃଷ୍ଟିରୁ ପ୍ରାକ୍ତନ ଓଡ଼ିଆ ସାହିତ୍ୟରେ ଯଥାର୍ଥ ଭାବରେ ଅନୁଗୃହୀତ ହୋଇ ପାରିନଥିଲା । ଦୁର୍ବୋଧ୍ୟତା ଓ ଛଦ୍ମାର୍ଥକତା ମଧ୍ୟରେ ମୃତ୍ୟୁର ସ୍ୱରୂପ ଅସ୍ପଷ୍ଟ । ଆଧୁନିକ ଓଡ଼ିଆ ସାହିତ୍ୟର ସାର୍ଥକ କାବ୍ୟଶିଳ୍ପୀ ରାଧାନାଥ ବୋଧହୁଏ ପ୍ରଥମେ ତାଙ୍କ କାବ୍ୟଗୁଡ଼ିକୁ ବିୟୋଗାତ୍ମକ କରି ପାଠକମାନଙ୍କୁ ମୃତ୍ୟୁ ପ୍ରତି ସଚେତନ କରାଇଛନ୍ତି । ତାଙ୍କ ଭାଷାରେ— "ଜୀବନ ଯାହାକୁ ବୋଲନ୍ତି ସେ ସିନା ମୃତ୍ୟୁକୁ ଗତି, ଜୀବନର ଶାଶ୍ୱତ ବାସ୍ତବ ଓ ସ୍ପଷ୍ଟ ଦିଗହିଁ ମୃତ୍ୟୁ । ତେଣୁ ରାଧାନାଥ କେବଳ କାବ୍ୟଗୁଡ଼ିକୁ ବିୟୋଗାନ୍ତକ କରାଇ ମୃତ୍ୟୁ ସଚେତନତା ସୃଷ୍ଟି କରି ନାହାନ୍ତି । ଅଧିକନ୍ତୁ ମୃତ୍ୟୁର ନିୟାମକ କାଳ ସମ୍ପର୍କରେ ଦାର୍ଶନିକ ଉକ୍ତିମାନ କହି ସେ ସଂପର୍କରେ ପ୍ରାଞ୍ଜଳ ଅବବୋଧ ସୃଷ୍ଟି କରିଛନ୍ତି । ଦରବାରରେ କହନ୍ତି—

"ସର୍ବେ ଯିବେ ଉଭେଇ ଅଚିରେ
ବୁଦ୍‌ବୁଦ ପରାୟେ ଏହି ନଦୀ ନୀରେ"

ମହାଯାତ୍ରାରେ କହନ୍ତି—

"ଏ ଜୀବ ନୁହଁଇ ସ୍ଥିର, ସ୍ଥିରଟି ମରଣ
ମାଟିର ଏ ଘଟ ନିଶ୍ଚେ ମିଶିବ ମାଟିରେ ।"

ମୃତ୍ୟୁ ସମ୍ପର୍କିତ ଦାର୍ଶନିକ ଚିନ୍ତାଧାରା ହୁଏତ ପ୍ରାକ୍ତନ ସଂସ୍କୃତ ସାହିତ୍ୟ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପରିଦୃଷ୍ଟ ହୁଏ; ମାତ୍ର ରାଧାନାଥ ସାହିତ୍ୟରେ ମୃତ୍ୟୁର ଶ୍ରୀ ଅଧିକ ଜୀବନ୍ତ ଓ ନିକଟବର୍ତ୍ତୀ । ସେ ଗଙ୍ଗେଶ୍ୱରଙ୍କ ଭାଗ୍ୟଡୋରି ପୁଣି ଗଙ୍ଗେଶ୍ୱରଙ୍କର ବ୍ୟଙ୍ଗକାର । ବେଳେବେଳେ ଅସହାୟତାରୁ ନିଷ୍କୃତି ଦେବାପାଇଁ ମୃତ୍ୟୁର ଆବଶ୍ୟକତା ତାଙ୍କ କାବ୍ୟରେ ପରିଲକ୍ଷିତ । ଯାହା ଆଧୁନିକ ଓଡ଼ିଆ କବିତାରେ ବିଶେଷ ଲକ୍ଷଣ ଭାବରେ ପରବର୍ତ୍ତୀ ଅଧ୍ୟାୟରେ ରମାକାନ୍ତ, ସୀତାକାନ୍ତ ଓ ଦୀପକ ମିଶ୍ରଙ୍କ କବିତାକୁ ସଂକ୍ରମିତ । ଅସହାୟତା, ଜ୍ୱଳନ, ନିପୀଡ଼ନ ଦୁଷ୍କୃତି ସବୁରୁ ମୁକ୍ତି ହିଁ ମୃତ୍ୟୁ ।

ଜୀବନବାଦୀ ରାଧାନାଥ 'ମହାଯାତ୍ରା'ରେ କେବଳ ପାଣ୍ଡବ ପାଞ୍ଚଭାଇଙ୍କୁ 'ମହାଯାତ୍ରା'ର ଯାତ୍ରୀ କରାଇନାହାନ୍ତି, ତାଙ୍କର ଚନ୍ଦ୍ରଭାଗା, କେଦାରଗୌରୀ, ନନ୍ଦିକା, ଉଷା, ଜୟନ୍ତ ସମସ୍ତେ ସେ ପଥର ଯାତ୍ରୀ, ସମସ୍ତଙ୍କ ପାଇଁ ମୃତ୍ୟୁର ଦରବାର ସର୍ବଶ୍ରେଷ୍ଠ ଦରବାର ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତା ଚେତନାର ସମନ୍ୱୟକାରୀ ରାଧାନାଥ ସାହିତ୍ୟ ହିଁ ପାରମ୍ପରିକତାର ବ୍ୟତିକ୍ରମ । ଏହି ବ୍ୟତିକ୍ରାନ୍ତ ଶ୍ରୀ ହିଁ ବାସ୍ତବରେ ଆଧୁନିକ । ଯାହା ପରବର୍ତ୍ତୀ ସାରସ୍ୱତ ସମ୍ପଦକୁ ବହୁଳାଂଶରେ ପ୍ରଭାବିତ କରିଛି । ସାହିତ୍ୟ ଓ ଶିଳ୍ପ କ୍ଷେତ୍ରରେ ଶିଳ୍ପୀ ଓ ସାହିତ୍ୟିକ ମରଣଶୀଳ । କିନ୍ତୁ ଶିଳ୍ପ, ସ୍ଥାପତ୍ୟ ଓ ସାହିତ୍ୟ, ସ୍ରଷ୍ଟାର ଶାଶ୍ୱତ ଚେତନା ଦୃଷ୍ଟିରୁ ହୁଅନ୍ତି କାଳଜୟୀ, ରୂପପ୍ରାଣ, ଭାଗ୍ୟବାଦୀ । ରାଧାନାଥଙ୍କ ଶିଳ୍ପ ପୁରୁଷ ନିଶ୍ଚିତ ଭାବରେ ଆଧୁନିକ ଚେତନାର ନିକଟବର୍ତ୍ତୀ ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ। ପ୍ରାଚୀନ ସାହିତ୍ୟର ସ୍ୱର ମୂର୍ଚ୍ଛନା ଶିଳ୍ପକୁ ଯେଉଁଭଳି ଚକିତ କରିଥିଲା, ସେହି ପରିମାଣରେ ଶିଳ୍ପୀଟି ଶୁଣିଥିଲା ଭବିଷ୍ୟତର ଅନାହତ ରାଗିଣୀ । ତେଣୁ ତାଙ୍କ ସୃଷ୍ଟି ନିର୍ଦ୍ଦିଷ୍ଟ କାଳକୁ ଅପେକ୍ଷା କରିବ ବା କିପରି ? ଯଥାର୍ଥତଃ ରାଧାନାଥ ଓଡ଼ିଆ ସାହିତ୍ୟରେ ଆଧୁନିକ ଚେତନାର ବାର୍ତ୍ତାବହ ଓ ଉତ୍ତରକାଳୀନ ଆଧୁନିକ ଓଡ଼ିଆ କବିମାନଙ୍କ ମନ୍ତ୍ରଗୁରୁ । ସେଇଥିପାଇଁ ସାହିତ୍ୟର ଇତିହାସ ଧାରା ଓ କବି କ୍ରମରେ ତାଙ୍କ ଆସ୍ଥାନ ସ୍ୱତନ୍ତ୍ର ଓ ଅନନ୍ୟ ।



# ଗଦ୍ୟ ସୃଷ୍ଟିରେ ରାଧାନାଥ

ଡଃ ବାବାଜୀ ଚରଣ ପଟ୍ଟନାୟକ

॥ ୧ ॥

ଏକଦା ଔପନ୍ୟାସିକ ୱିଲିୟମ ଫକ୍‌ନର (William Faulekner) କହିଥିଲେ— "ଯେଉଁ ଲେଖକ ଏବେ ଔପନ୍ୟାସିକ ଭାବେ ପରିଚିତ; ସେ ପ୍ରାୟତଃ କବିତା ଲେଖାରୁ ସାହିତ୍ୟିକ ଜୀବନ ଆରମ୍ଭ କରିବାକୁ ମନ ବଳାଇଥିଲେ । ପରେ ତାଙ୍କଦେହି ତାହା ହୋଇପାରିବ ନାହିଁ ଭାବି, ପାଠକର ପରବର୍ତ୍ତୀ ସାହିତ୍ୟ-ଚାହିଦା ଗଳ୍ପ ରଚନା ଆଡ଼କୁ ଢଳିଥିଲେ । ସେଥିରେ କୃତକାର୍ଯ୍ୟ ହେବାର ସମ୍ଭାବନା ନ ଦେଖି ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲେ ।" ଔପନ୍ୟାସିକଙ୍କ ପାଇଁ ଫକ୍‌ନରଙ୍କ ଉକ୍ତିର ତାତ୍ପର୍ଯ୍ୟ ଥାଉ ବା ନ ଥାଉ; ଏକଥା ସତ୍ୟ ଯେ; ପ୍ରତ୍ୟେକ ସାରସ୍ୱତ ସାଧକଙ୍କ ସାହିତ୍ୟ ସାଧନା କବିତା ରଚନାରୁ ହିଁ ଆରମ୍ଭ ହୋଇଥାଏ । ଓଡ଼ିଆ ସାହିତ୍ୟରେ ରାଧାନାଥ ରାୟଙ୍କ କଥା କିନ୍ତୁ ନିଆରା । ପ୍ରଥମେ ସେ ବଙ୍ଗଳା ଭାଷାରେ କବିତା ରଚନା କରିଥିଲେ । ଅଥଚ ଓଡ଼ିଆ ଭାଷା-ସାହିତ୍ୟରେ ତାଙ୍କର ପ୍ରଥମ ପ୍ରେମ ହେଉଛି ଗଦ୍ୟ-ବଦ୍ଧ ପ୍ରବନ୍ଧ ରଚନା ।

ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତା-ଚେତନାର ସମନ୍ୱୟଧର୍ମୀ ନୂତନ ରୁଚି-ପରଖ ଆଧୁନିକ ଓଡ଼ିଆ ସାହିତ୍ୟର ଆଦ୍ୟ ସଂକେତ ରୂପେ ରାଧାନାଥଙ୍କ କାବ୍ୟାବଳୀର ପ୍ରଭୂତ ସମାଲୋଚନା କରାଯାଇଅଛି । ତା'ରି ଭିତ୍ତିରେ ରାଧାନାଥଙ୍କୁ 'ଉତ୍କଳର ଗୌରବ କେତନ', 'ଯୁଗ ପ୍ରବର୍ତ୍ତକ', 'ଯୁଗଜ୍ୟୋତି', 'ଯୁଗସ୍ରଷ୍ଟା'ଦି ବିଶେଷଣରେ ବିଭୂଷିତ କରାଯାଇଛି । ହେଲେ, ତାଙ୍କ ଗଦ୍ୟଶିଳ୍ପ କାବ୍ୟ-କୀର୍ତ୍ତିର ବଟ ଛାୟା ତଳେ ଅନ୍ଧାରିତ ଗୁଳ୍ମ ଭଳି ଅଦୃଷ୍ଟ ଓ ଅନାଲୋଚିତ ରହିଯାଇଛି । 'ରାଧାନାଥଙ୍କର ଗଦ୍ୟ ରଚନା ପରିମାଣାତ୍ମକ ଓ ଗୁଣାତ୍ମକ ଦୃଷ୍ଟିରୁ ତାଙ୍କ ପଦ୍ୟ ରଚନା ତୁଳନାରେ ସ୍ୱଳ୍ପ ଓ ଗୌଣ ବୋଲି ରାଧାନାଥଙ୍କର ସମସ୍ତ ଆଲୋଚକଙ୍କୁ ମନେହୋଇଛି । ସେଥିପାଇଁ ଗଦ୍ୟଶିଳ୍ପୀ ଓ ଚିନ୍ତାନାୟକ ରାଧାନାଥଙ୍କୁ ନେଇ କରାଯାଇଥିବା ଆଲୋଚନାର ପରିମାଣ ସ୍ୱଳ୍ପ ଓ ଖଣ୍ଡିତ ।'[୧] ଅବଶ୍ୟ ରାଧାନାଥଙ୍କ ମୃତ୍ୟୁର ଛଅବର୍ଷ ପରେ 'ଗଦ୍ୟ ସାହିତ୍ୟରେ

---

୧ - ଦାଶ, ଦେବେନ୍ଦ୍ର— ରାଧାନାଥଙ୍କ ରଚିତ ଦୁଇଟି ଭୂମିକା– ଏଷଣା-୧୮, ପୃ. ୧୭୧

ରାଧାନାଥ' ଶୀର୍ଷକ ରଚନାରେ ଛଦ୍ମନାମଧାରୀ ଶ୍ରୀନନ୍ଦୀ, ଏଭଳି ଆଲୋଚନାର ସୂତ୍ରପାତ କରିଥିଲେ ।[୨]

'ଗଦ୍ୟଂ କବୀନାଂ ନିକଷଂ ବଦନ୍ତି' ଭଳି ପୂର୍ବରୁ ପ୍ରଚଳିତ ଥିବା ଏକ ଉକ୍ତିକୁ ଆଚାର୍ଯ୍ୟ ବାମନ ଉଦ୍ଧାର କରିଛନ୍ତି ତାଙ୍କ 'କାବ୍ୟାଳଙ୍କାର ସୂତ୍ରବୃତ୍ତି' ଗ୍ରନ୍ଥରେ । ତହିଁର ତାତ୍ପର୍ଯ୍ୟ ହେଉଛ—କବିଙ୍କ ପକ୍ଷେ ଗଦ୍ୟ ରଚନା ନିକଷପଥର ତୁଲ୍ୟ । ଅନ୍ୟ ଅର୍ଥରେ କହିଲେ ହେବ କବିତ୍ୱର ଚରମ ପରୀକ୍ଷା ଗଦ୍ୟକାବ୍ୟର ନିକଷରେ ହିଁ ମୂଲ୍ୟାୟନ କରିହୁଏ । ବୋଧହୁଏ ରାଧାନାଥ ଓଡ଼ିଆ କାବ୍ୟ ରଚନା କରିବା ପୂର୍ବରୁ ଗଦ୍ୟ-କଳା-କର୍ମରେ ନିଜର ସାରସ୍ୱତ ଶକ୍ତି ଓ ସାମର୍ଥ୍ୟର ପରୀକ୍ଷା ଲୋଡ଼ିଛନ୍ତି । ନତୁବା ଯୁଗବାଣୀ ପ୍ରତି ଉତ୍କର୍ଣ୍ଣ ଓ ସତର୍କ ରହି ଓଡ଼ିଆ ଗଦ୍ୟ ମାଧ୍ୟମରେ ନିଜର ସାରସ୍ୱତ ମୁକ୍ତି ପରିଚ୍ଛନ୍ନ ଓ ପ୍ରଶସ୍ତ ହେବ ବୋଲି ଚିନ୍ତା କରିଛନ୍ତି ।[୩] ସେତେବେଳକୁ ସେ ବଙ୍ଗଳାଭାଷାରେ କବିତା ଲେଖାଲେଖି କରୁଥାନ୍ତି । ସମୟକ୍ରମେ ସେ ସ୍କୁଲ ବିଭାଗର ନିର୍ଦ୍ଦେଶକ, ସୁ-ସାହିତ୍ୟିକ ଭୂଦେବ ମୁଖୋପାଧ୍ୟାୟଙ୍କ ସାନ୍ନିଧ୍ୟ ଲାଭ କରିଥିଲେ । ତାଂକୁ ନିଜର ଖଣ୍ଡିଏ ବଙ୍ଗଳା କାବ୍ୟର ପାଣ୍ଡୁଲେଖ୍ୟ ଦେଇଥିଲେ । ତାକୁ ପଢ଼ିସାରି ପଣ୍ଡିତ ମୁଖୋପାଧ୍ୟାୟ ଯେଉଁ ଅଭିମତ ଦେଇଥିଲେ ତାହା ହିଁ ବୋଧହୁଏ ରାଧାନାଥଂକୁ ଗଦ୍ୟମାର୍ଗ ଛାଡ଼ି ଓଡ଼ିଆରେ କବିତା ରଚନା କରିବାକୁ ପ୍ରଚୋଦିତ କରିଥିଲା ।[୪] ସେ କିନ୍ତୁ ଗଦ୍ୟର ନିକଷ ପଥରତ୍ୱକୁ ଭୁଲି ପାରିନଥିଲେ । ପରିଣତିରେ ଗଦ୍ୟ ଓ ପଦ୍ୟର ନର୍ଯାସର ସମନ୍ୱୟକୁ ଏକକ ଭାବେ ଉପସ୍ଥାପନ କରିବାର ଅଭିନବ କଳା-କୌଶଳ ପ୍ରଣୟନ କଲେ । ତାହା ହିଁ 'ଅମିତ୍ରାକ୍ଷର ଛନ୍ଦ'; ରାଧାନାଥୀ ସାରସ୍ୱତ ପ୍ରତିଭାର ସର୍ବୋତ୍କୃଷ୍ଟ ସିଦ୍ଧି । ''ଅମିତ୍ରାକ୍ଷରର ଏକ ପ୍ରଧାନ ସୂଚକ ହେଉଛି ଛନ୍ଦ ସହିତ ସ୍ୱାଚ୍ଛନ୍ଦ୍ୟର ସହଯୋଗ; ନିର୍ଦ୍ଦିଷ୍ଟ ବର୍ଣ୍ଣ ସଜ୍ଜାର କଠୋର ନିୟମ ଦ୍ୱାରା ଏହା ଶୃଙ୍ଖଳିତ ନୁହେଁ; ଛନ୍ଦରୂପ ଓ ସାବଲୀଳତା ଉଭୟର ସଙ୍ଗତିରେ ଯେଉଁ ସ୍ୱଚ୍ଛନ୍ଦତା ସୃଷ୍ଟି ହୁଏ, ତାହା ହିଁ ଏହି ଛନ୍ଦ ପ୍ରବାହର ଅନୁକୂଳ ଅଟେ । ++ ଅମିତ୍ରାକ୍ଷର ମାତ୍ରା ବିନ୍ୟାସରେ ଯେଉଁ ସ୍ୱାଧୀନତା

---

୨- ନନ୍ଦୀଙ୍କ ଟିପାଖାତା— ଶ୍ରୀନନ୍ଦୀ– ଉତ୍କଳ ସାହିତ୍ୟ - ୧୭/୧୧

୩- An civilization grew the poetry declined and the age of prose began (Hamilton, K.G.— The Two Harmonies Poetry and Prose in the Seventeenth century, 1963, Page-07)

୪- 'ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସଂପୂର୍ଣ୍ଣ ଉପଯୋଗୀ ।' (ପଟ୍ଟନାୟକ, ଦେବୀ ପ୍ରସନ୍ନ- କବିଲିପି (୧୯୫୭)- ପୃ-୭)

ଅର୍ଜନ କରିଅଛି ତାହା କଥାଭଙ୍ଗୀ ବା ବାଗ୍‌ଧାରାର ସ୍ୱାଧୀନତା'' ।[୫] ସ୍ୱାଛନ୍ଦ୍ୟ, ସାବଲୀଳତା, ବାଗ୍‌ଧାରା, ଛନ୍ଦ-ସ୍ପନ୍ଦ ଆଦି ଗଦ୍ୟର ସୌନ୍ଦର୍ଯ୍ୟ । ''ଗଦ୍ୟର ସୌନ୍ଦର୍ଯ୍ୟ ନାହିଁ କହିଲେ ଆଜି କେହି ବିଶ୍ୱାସ କରିବେ ନାହିଁ । ତାହାର ଯଥେଷ୍ଟ ସୌନ୍ଦର୍ଯ୍ୟ ଅଛି, ସେ ସୌନ୍ଦର୍ଯ୍ୟ ସ୍ୱାଛନ୍ଦ୍ୟର; ଶକ୍ତି ବି ଅଛି ସେ ଶକ୍ତି ପ୍ରଶସ୍ତ ଔଦାର୍ଯ୍ୟର । ଏହି ଗଦ୍ୟର ବୈଶିଷ୍ଟ୍ୟ ସହଜତାରେ ।''[୬] ଗଦ୍ୟର ଏବଂବିଧ ବୈଶିଷ୍ଟ୍ୟ ସହ ପଦ୍ୟର ବ୍ୟଞ୍ଜନା, ଧ୍ୱନି, ଆବେଗାଭିବ୍ୟକ୍ତିର ସମନ୍ୱୟରେ ଅମିତ୍ରାକ୍ଷର ଛନ୍ଦର ଗତିଛନ୍ଦ ପରିଗଠିତ । ବସ୍ତୁତଃ ଏଭଳି କଳା-କୌଶଳର ପ୍ରାକ୍ ପ୍ରସ୍ତୁତି ହେଉଛି ରାଧାନାଥଙ୍କ ଗଦ୍ୟ ରଚନା । ପଦ୍ୟ ଓ କବିତା ମଧ୍ୟରେ ଥିବା ପାର୍ଥକ୍ୟ ସମ୍ପର୍କରେ ସେ ଅବହିତ ଥିଲେ । ଯେପରି—''ଯେଉଁମାନେ ପଦ୍ୟ ଓ କବିତା ଏକ ପଦାର୍ଥ ବୋଲି ଭାବନ୍ତି, ସେମାନେ ଏହି ଲେଖିକାମାନଙ୍କୁ କବି ଆଖ୍ୟାରେ ଭୂଷିତ କରି ଏମାନଙ୍କ ପ୍ରଭୂତ ଅନିଷ୍ଟ ସାଧନ କରୁଅଛନ୍ତି । ଏହି ଲେଖିକାମାନଙ୍କ ଲେଖାରେ ମୁଁ ଏକସମୟରେ ଆଶାତୀତ ଉତ୍କର୍ଷ ଦେଖି ପ୍ରୀତ ହୋଇଅଛି । ମାତ୍ର ଏହାବୋଲି ମୁଁ ଏମାନଙ୍କୁ କବି ଆଖ୍ୟା ଦେବାକୁ ସାହସୀ ହେବି ନାହିଁ ।[୭] ଏତଦ୍‌ଭିନ୍ନ ରାଧାନାଥ ନିଜସ୍ୱ ଛନ୍ଦରୀତିର ଉଦ୍ଭାବନ ଓ ସଂଯୋଜନ ସଂପର୍କରେ ବି ସଚେତନ ଥିଲେ । ତାଙ୍କରି ଭାଷାରେ କହିଲେ ହେବ— କୌଣସି କାବ୍ୟ ରଚନାର ''ଉତ୍କର୍ଷ ଛନ୍ଦ ସାପେକ୍ଷ ନୁହେଁ, କ୍ଷମତା ସାପେକ୍ଷ । ମିତ୍ରାକ୍ଷର ଅପେକ୍ଷା ଅମିତ୍ରାକ୍ଷର ରଚନା ଅଧିକତର କଠିନ ।''[୮] ''ଅମିତ୍ରାକ୍ଷର ରଚନା ଅଧିକତର କଠିନ' କହିବା ମୂଳରେ ଗଦ୍ୟରୀତି ଓ ପଦ୍ୟରୀତିକୁ ସମଞ୍ଜସ ସମନ୍ୱୟରେ ଏକକ ଆଧାର କରିବାର ଭାବ ହିଁ ବ୍ୟଞ୍ଜିତ । ହୁଏତ ଏହି ଛନ୍ଦ ସଂଯୋଜନ କରିବାର କଳା-କୌଶଳ ପଛରେ ବ୍ଲାଙ୍କଭର୍ସ କିମ୍ବା ମିଲଟନଙ୍କ ପାରାଡ଼ାଇଜ୍ ଲଷ୍ଟର ଶୈଳୀ ପ୍ରେରଣା ଅଥବା ବଙ୍ଗର କବି ମାଇକେଲ ମଧୁସୂଦନଙ୍କ ଛନ୍ଦମୁକ୍ତି ଧାରାର ପ୍ରଭାବ ରହିଛି । 'କିନ୍ତୁ ରାଧାନାଥଙ୍କ ଅମିତ୍ରାକ୍ଷର ଛନ୍ଦର ଗଠନ ପଦ୍ଧତି ଓ ପ୍ରୟୋଗ କୌଶଳ ଏପରି ସ୍ୱତନ୍ତ୍ର ଯେ ଏହାକୁ ଛନ୍ଦ ଶାସ୍ତ୍ରର ପରମ୍ପରା ସମ୍ମତ ଏକ ଅଭିନବ ସୃଷ୍ଟି ବୋଲି ଗ୍ରହଣ କରାଯାଇପାରେ ।[୯] ଏଭଳି ଅଭିନବ

---

୫- ମିଶ୍ର, ତ୍ରିଲୋଚନ— ଅମିତ୍ରାକ୍ଷର ଛନ୍ଦ ଓ ରାଧାନାଥ–ଡଗର–୨୪/୬-୭, ପୃ-୧୭/୧୮
୬- ଦାସ, ଦାଶରଥି— ପଦ୍ୟ ଓ କବିତା– ସାହିତ୍ୟ ସଂଧାନ (୧୯୭୫)-ପୃ-୨୩
୭- ରାୟ, ରାଧାନାଥ— ଖଣ୍ଡିଏ ପତ୍ର– ରାଧାନାଥ ଗ୍ରନ୍ଥାବଳୀ-ପୃ.-୪୪୩
(କ୍ଷେତ୍ରବାସୀ ନାୟକଙ୍କ ଦ୍ୱାରା ସଂପାଦିତ)
୮- ରାୟ, ରାଧାନାଥ— ସାହିତ୍ୟ ସମ୍ବନ୍ଧରେ ଏଣୁ ତେଣୁ ପାଞ୍ଚକଥା– ରା.ଗ୍ରଃ- ପୃ. ୪୪୪
୯- ମିଶ୍ର, ତ୍ରିଲୋଚନ— ଅମିତ୍ରାକ୍ଷର ଛନ୍ଦ ଓ ରାଧାନାଥ- ଡଗର- ୨୪/୬-୭– ପୃ.-୬୮

ସୃଷ୍ଟି କେବଳ ଅନୁସରଣ ହେତୁ ଅଥବା ନିଜ ବାଗରେ ଆପେ ବନେଇଥିବା ଦୃଷ୍ଟିରୁ ସମ୍ଭବ ହୋଇଛି କହିବା ଅଯୌକ୍ତିକ । ବରଂ ଅନୁସରଣରେ ମୌଳିକ ଆହରଣ ଓ ତାକୁ ପରମ୍ପରା ସମ୍ମତ ଢାଞ୍ଚାରେ ପ୍ରକାଶ କରିବାର ସାରସ୍ୱତ ଅଭୀପ୍‌ସାରୁ ଅମିତ୍ରାକ୍ଷର ଛନ୍ଦର ସୃଷ୍ଟି । ରାଗ-ରାଗିଣୀର ସଂଗୀତ ଓ ଛାନ୍ଦବୃତ୍ତର ପାରମ୍ପରିକ ଓଡ଼ିଆ କବିତାରେ ରାଧାନାଥ ପ୍ରବର୍ତ୍ତିତ ଅମିତ୍ରାକ୍ଷର ଛନ୍ଦ ହେଉଛି ଛନ୍ଦମୁକ୍ତିର ସଂକେତ । ଆବୃତ୍ତିରେ ନାଟକୀୟତା ଓ ବାକ୍‌ଭଙ୍ଗୀ ଏହାକୁ ଗଦ୍ୟର ନିକଟ ସଂପର୍କୀୟ ରୂପେ ପରିଚିତ କରାଇବା ବେଳେ ଧ୍ୱନ୍ୟାନୁରଣନ ଓ ସଂଗୀତର ଉଚ୍ଛ୍ୱାସରୁ କବିତାର ସଗୋତ୍ର ପ୍ରତୀତି ଉପଲବ୍‌ଧ ହୁଏ । ତେଣୁ ଅମିତ୍ରାକ୍ଷର ଛନ୍ଦ ସଂରଚନା ପଛରେ କବିତାର ଆବେଗ ଓ ଗଦ୍ୟର ପରିଚ୍ଛନ୍ନତା ବର୍ତ୍ତମାନ । ରାଧାନାଥଙ୍କ ଗଦ୍ୟଚାତୁରୀର କାବ୍ୟିକ ଛନ୍ଦ ମୁକ୍ତିରେ ଅମିତ୍ରାକ୍ଷର କିଭଳି ବିଶେଷ ନିୟାମକ ରୂପେ ପାଠକ/ସମାଲୋଚକଙ୍କ ଦୃଷ୍ଟି ଆକର୍ଷଣ କରିଅଛି ଓ ପରକାଳର କବିଙ୍କଦ୍ୱାରା ଅନୁସୃତ ହୋଇଅଛି ତାହା ଦୃଷ୍ଟାନ୍ତ ଭିତ୍ତିରେ ପ୍ରତିପାଦନ କିରବା; ସ୍ୱତନ୍ତ୍ର ପ୍ରବନ୍ଧ ରଚନା ସାପେକ୍ଷ । ଆଲୋଚନାର ଶୀର୍ଷକ ଦୃଷ୍ଟିରୁ ଏଠାରେ କେବଳ ତାଙ୍କ ଗଦ୍ୟ-ରଚନାର ତଥ୍ୟନିଷ୍ଠ ବିବରଣୀ, ଶୈଳୀ-ପରୂପ ଓ ସ୍ରଷ୍ଟା ଦୃଷ୍ଟିକୁ ଆକଳନ କରାଯାଉଛି ।

॥ ୨ ॥

ରାଧାନାଥ ୧୮୪୮ ମସିହା ସେପ୍ଟେମ୍ବର ୨୮ ତାରିଖରେ ଜନ୍ମଗ୍ରହଣ କରି ମୃତ୍ୟୁ ଲଭନ୍ତି ୧୯୦୮, ଅପ୍ରେଲ ୧୭ ତାରିଖରେ । 'ବିବେକୀ' ପ୍ରବନ୍ଧ, 'ଇତାଲୀୟ ଯୁବା' ଭଳି ଅନୂଦିତ ଉପନ୍ୟାସ ରଚନା ଓ 'ଉତ୍କଳ ଦର୍ପଣ' (୧୮୭୩) ପତ୍ରିକାରେ ତହିଁର ପ୍ରକାଶନ ଅର୍ଥାତ୍ ୧୮୭୩ ମସିହାରୁ ତାଙ୍କର ସାହିତ୍ୟିକ ଜୀବନ ଆରମ୍ଭ ହୋଇଛି । ଆଗରୁ ସେ ବଙ୍ଗଳା ଭାଷାରେ କବିତା ରଚନା କରିଥିଲେ । ଗଦ୍ୟର ଦେହଳି ଦେଇ ଓଡ଼ିଆ ଭାଷା-ସାହିତ୍ୟଜଗତକୁ ଏଇମାତ୍ର ତାଙ୍କର ପ୍ରଥମ ପ୍ରବେଶ । ସେବଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ରଚନା କରିଥିବା ଓ ସେହି ସମୟ ମଧ୍ୟରେ ପ୍ରକାଶ ପାଇଥିବା ତାଙ୍କ ଗଦ୍ୟକୃତି ଗୁଡ଼ିକ ହେଉଛି—

୧- ବିବେକୀ (ଉତ୍କଳ ଦର୍ପଣ, ୧୮୭୩)

୨- ଇତାଲୀୟ ଯୁବା (ଉତ୍କଳ ଦର୍ପଣ, ଜୁଲାଇ, ୧୮୭୩)

୩- ଅନୂଦିତ 'ମେଘଦୂତ' ର ଭୂମିକା (୧୨।୧୨।୧୮୭୩)

୪- ସମାଲୋଚନା-'ପ୍ରବନ୍ଧମାଳା'
(ବାଲେଶ୍ୱରର ସମ୍ବାଦ ବାହିକା (ଅତିରିକ୍ତ), ୦୭।୧୦।୧୮୮୦)
୫- ପରଲୋକଗତ ଦାଶରଥି କବିଚନ୍ଦ୍ର
(ସଂସ୍କାରକ-୩/୫, ୩୦।୧।୧୮୮୬)
୬- ଭ୍ରମଣକାରୀର ପତ୍ର (ନବସମ୍ବାଦ, ୧୮୮୭)
୭- ଦାମୋଦର ମିଶ୍ରଙ୍କ 'କମଳା' ପୁସ୍ତକର ସମାଲୋଚନା,
(ସମ୍ବଲପୁର ହତୈଷିଣୀ-୫/୩, ୨୧।୦୬।୧୮୯୩)
୮- ରାଜନାରାୟଣ ଦାସଂକ 'ବନ୍ୟ ପୁଷ୍ପାଞ୍ଜଳି' ବହିର ସମାଲୋଚନା
ସମ୍ବଲପୁର ହିତୈଷିଣୀ - ୬/୬, ୧୧।୦୭।୧୮୯୪
୯- ଦାମୋଦର ମିଶ୍ରଙ୍କ 'ମାତା' ପୁସ୍ତକରେ ମନ୍ତବ୍ୟ (୮।୯।୧୮୯୪)
୧୦-ଗଙ୍ଗାଧରଙ୍କ 'ଇନ୍ଦୁମତୀ' କାବ୍ୟରେ ମନ୍ତବ୍ୟ (୬।୧୨।୧୮୯୪)
୧୧-ବାମଣ୍ଡା (ଓଡ଼ିଆ ଓ ନବ ସମ୍ବାଦ, ୧୮୯୬)
୧୨-ବିକ୍ରମ ଦେବଙ୍କ 'ନାଟକ ରଚନା ପ୍ରଣାଳୀ' ପୁସ୍ତକରେ ମନ୍ତବ୍ୟ
(୦୨।୦୧।୧୯୦୩)
୧୩-ଗଙ୍ଗାଧରଙ୍କ 'କୀଚକବଧ' କାବ୍ୟରେ ମନ୍ତବ୍ୟ (୧୨।୦୮।୧୯୦୩)
୧୪-ଉତ୍କଳ ସାହିତ୍ୟର ଉନ୍ନତି (୨୯।୧୨।୧୯୦୩)
୧୫-ସାର୍ ରାଜା ବାସୁଦେବ ସୁଢ଼ଳଦେବ K. C. I. E.
(ଉତ୍କଳ ସାହିତ୍ୟ-୭/୯, ଡିସେମ୍ବର ୧୯୦୩)
୧୬-ଆତ୍ମକଥାର କିୟଦଂଶ (୨୫।୦୭।୧୯୦୭)

ଏହା ବ୍ୟତୀତ ଅନ୍ୟ କେତୋଟି ଗଦ୍ୟ ରଚନା ରାଧାନାଥଙ୍କ ମୃତ୍ୟୁପରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଛି । ଏଥିସହିତ କେତୋଟି ଅପ୍ରକାଶିତ ଗଦ୍ୟରଚନାକୁ ରାଧାନାଥ ଗ୍ରନ୍ଥାବଳୀରେ ସଂଯୋଜନ କରାଯାଇଛି । ସେଗୁଡ଼ିକ ହେଲା- (୧୭) ପାର୍ବତୀ କାବ୍ୟର ଉପସଂହାର (ଉତ୍କଳ ସାହିତ୍ୟ-୧୫/୪) (୧୮) ଉର୍ବଶୀ କାବ୍ୟର ଉପସଂହାର (୧୯) ଟିପାଖାତା, (୨୦) ଖଣ୍ଡିଏ ପତ୍ର (ଉତ୍କଳ ସାହିତ୍ୟ-୧୪/୧୧), (୨୧) ସାହିତ୍ୟ ସମ୍ବନ୍ଧରେ ଏଣୁ ତେଣୁ ପାଞ୍ଚକଥା (ଉତ୍କଳ ସାହିତ୍ୟ-୧୪/୧୧) । ପରେ ରାଧାନାଥଙ୍କର ଗଙ୍ଗାଧରଙ୍କ ନିକଟକୁ ପତ୍ର ଅଠଚାଳିଶ ଖଣ୍ଡର ସଂପାଦନା କରିଛନ୍ତି ଦେବୀ ପ୍ରସନ୍ନ ପଟ୍ଟନାୟକ । ସଂପାଦନା ପୁସ୍ତକର ନାମ 'କବିଲିପି' (୧୯୫୭) । ରାଧାନାଥଙ୍କର ଅନ୍ୟ ଦୁଇଟି ଉପାଦେୟ ପତ୍ର ଡକ୍ଟର ନଟବର ସାମନ୍ତରାୟଙ୍କ ଦ୍ୱାରା 'ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି' ପୁସ୍ତକରେ ପ୍ରକାଶିତ ଓ ଆଲୋଚିତ । ଏଭଳି ପତ୍ର ରଚନାରୁ ରାଧାନାଥଙ୍କର ଗଦ୍ୟଶୈଳୀ ଉପଲବ୍ଧି କରିହୁଏ ।

୧୮୭୩ ମସିହା ଠାରୁ ଦେହାନ୍ତ (୧୭-୦୪-୧୯୦୮) କାଳ ମଧ୍ୟରେ ରାଧାନାଥଙ୍କ ଗଦ୍ୟ ରଚନା ସଂଖ୍ୟା ଦୃଷ୍ଟିରୁ ଅପ୍ରଚୁର ନୁହେଁ; ମାନ ଦୃଷ୍ଟିରୁ ନ୍ୟୂନ ମଧ ନୁହେଁ । ନଟବର ସମାନ୍ତରାୟଂକ ଦ୍ୱାରା ସମାଲୋଚନା : 'ପ୍ରବନ୍ଧମାଳା', ଜାନକୀ ବଲ୍ଲଭ ମହାନ୍ତିଙ୍କ ଦ୍ୱାରା ମେଘଦୂତର 'ଭୂମିକା' ଦେବେନ୍ଦ୍ର ଦାଶଙ୍କ ଦ୍ୱାରା 'ପରଲୋକଗତ ଦାଶରଥି କବିଚନ୍ଦ୍ର', ଦାମୋଦର ମିଶ୍ରଙ୍କ 'କମଳା' ରାଜନାରାୟଣ ଦାସଙ୍କ 'ବନ୍ୟପୁଷ୍ପାଞ୍ଜଳି' ଦାମୋଦର ମିଶ୍ରଙ୍କ 'ମାତା' ପୁସ୍ତକରେ ମନ୍ତବ୍ୟ, ବିକ୍ରମ ଦେବଙ୍କ 'ନାଟକ ରଚନା ପ୍ରଣାଳୀ' ଆଦି ରାଧାନାଥଙ୍କ ଭୂମିକା ଓ ସମାଲୋଚକୀ ଗଦ୍ୟ ଆବିଷ୍କୃତ ତଥା ଆଲୋଚିତ । 'ପାର୍ବତୀ କାବ୍ୟର ଉପସଂହାର' ଓ 'ଉର୍ବଶୀ' ଶୀର୍ଷକରେ ଗ୍ରନ୍ଥାବଳୀରେ ସଂଯୋଜିତ ରାଧାନାଥୀ ଗଦ୍ୟକୃତି ଗଦ୍ୟର କଳାବିଭବ ବିଚାର ଦୃଷ୍ଟିରୁ ବିତର୍କର ଅପେକ୍ଷା ରଖେ । 'ପାର୍ବତୀ' ର ଉତ୍ତରାର୍ଦ୍ଧ ରାଧାନାଥଙ୍କ ଦ୍ୱାରା ବଙ୍ଗଳା ଗଦ୍ୟରେ ଲେଖାହୋଇ-ଥିଲା । ଏହି ରଚନାଂଶ ଶଶିଭୂଷଣ ରାୟଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ହୋଇ ପ୍ରକାଶିତ ହୋଇଥିଲା ।[୧୦] ତେଣୁ 'ପାର୍ବତୀ କାବ୍ୟର ଉପସଂହାର'ର ଗଦ୍ୟକୁ ରାଧାନାଥଙ୍କ ଓଡ଼ିଆ ଗଦ୍ୟର ନମୁନା ଭାବେ ଆଲୋଚନା କରିହେବ ନାହିଁ । 'ଉର୍ବଶୀ' କାବ୍ୟର ଦ୍ୱିତୀୟ ସର୍ଗଠାରୁ ଷଷ୍ଠ ସର୍ଗ ପର୍ଯ୍ୟନ୍ତ କବିଙ୍କ କାବ୍ୟ କଳ୍ପିତ ପ୍ରସଙ୍ଗ ଗଦ୍ୟରେ ଲିଖିତ । ଗୋଟିଏ ମାତ୍ର ସର୍ଗ କାବ୍ୟଭାଷାରେ ରଚିତ । 'ଉର୍ବଶୀ'ର ଗଦ୍ୟ ନିଷ୍ପ୍ରାଣ । ସମାସ ବହୁଳ ତତ୍ସମ ଶବ୍ଦର ଉଚ୍ଚାରଣରେ ଲୋଭନୀୟ ଧ୍ୱନ୍ୟାନୁରଣନ ନିହିତ । ଯେଉଁଥିପାଇଁ ଗଦ୍ୟରେ ସ୍ରଷ୍ଟାର ଆତ୍ମା ଚହଟେ, ତହିଁରେ ବିଶେଷ ଅଭାବ ସେଠି ଅନୁଭବ୍ୟ । ତାହା ହେଉଛି ନିଜସ୍ୱ ସଂଲଗ୍ନତା । ତେଣୁ ଉର୍ବଶୀର ଗଦ୍ୟାଂଶ ରାଧାନାଥୀ ଗଦ୍ୟର ପ୍ରତିନିଧିତ୍ୱ କରିବା ଆଦୌ ସମ୍ଭବପର ନୁହେଁ । ଯେପରି : "ବନରେ ଅବସ୍ଥାନକାଳୀନ ବର୍ଷାକାଳ ଆରବ୍ଧ ହେଲା । ଗିରିକନ୍ଦରରେ କଦମ୍ବବନ୍ଧୁ ମେଘମାଳା ଅବତରଣ କଲା । ଘନଘଟାରେ ଦିଙ୍ମଣ୍ଡଳ ଆଚ୍ଛନ୍ନ ହେଲା । ଭେକ ଦାତ୍ୟୂହରବରେ, ନିର୍ଝର ପତନ ଶବ୍ଦରେ ବନଭୂମି ନିନାଦିତ ହେଲା ।" (ରାଧାନାଥ ଗ୍ରନ୍ଥାବଳୀ- ପୃ-୩୯୬) ଏହା ବ୍ୟତୀତ ରାଧାନାଥଙ୍କ ଅନ୍ୟାନ୍ୟ ଗଦ୍ୟକୃତିକୁ ବିଷୟ ଦୃଷ୍ଟିରୁ ଅଥବା ଶୈଳୀ ଦୃଷ୍ଟିରୁ ବିଭାଗୀକରଣ କରି ଆଲୋଚନା କରିହେବ । ବିବେକୀ ଭଳି ମନ୍ମୟ ଅଥବା 'ଇଟାଲୀୟ ଯୁବା' ଭଳି ଅନୁବାଦ ପ୍ରବନ୍ଧରଚନା କରିବା ରାଧାନାଥଙ୍କ ପକ୍ଷେ ଦ୍ୱିତୀୟବାର ସମ୍ଭବ ହୋଇନାହିଁ । କାରଣ ଗଦ୍ୟାଙ୍ଗନର ଊଷର ଭୂମିକୁ ପଦ୍ୟାଙ୍ଗନର ଶ୍ୟାମଳ ପରିବେଶରୁ ଫେରିବା ତାଙ୍କ ପକ୍ଷେ ଆଉ ସମ୍ଭବ ହୋଇନାହିଁ । ସାମୟିକ ଭାବେ ପୁସ୍ତକ ସମୀକ୍ଷା, ଭ୍ରମଣ ବୃତ୍ତାନ୍ତ ଅଥବା ଭ୍ରମଣ ସାହିତ୍ୟ ରଚନାରେ ଅଭିନିବିଷ୍ଟ ରହିଛନ୍ତି ସେ ।

---

୧୦- ମିଶ୍ର, ଶ୍ରୀନିବାସ—ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ (୧୯୮୧)-ପୃ-୧୭୨

॥ ୩ ॥

ରାଧାନାଥଙ୍କ 'ବିବେକୀ' ପ୍ରବନ୍ଧ ରଚନା ଓ ପ୍ରକାଶନ (୧୯୭୩) କାଳର ଓଡ଼ିଆ ସାହିତ୍ୟିକ ପୃଷ୍ଠଭୂମି ଜଟିଳ ଓ କଣ୍ଟକିତ ଥିଲା । ସେଥିପାଇଁ 'ବିବେକୀ' ପ୍ରକାଶନର ପୂର୍ବ ପଚାଶ ବର୍ଷର ଇତିହାସକୁ ଓଡ଼ିଆ ସାହିତ୍ୟର ଇତିହାସରେ ଅନ୍ଧକାର ଯୁଗ ନାମରେ ନାମିତ କରାଯିବା ପ୍ରାସଙ୍ଗିକ ବୋଲି ଯୁକ୍ତି ଉପସ୍ଥାପନ କରିଛନ୍ତି ସୁରେନ୍ଦ୍ର ମହାନ୍ତି । ସାହିତ୍ୟ ରଚନା ଦୃଷ୍ଟିରୁ ରାଧାନାଥଙ୍କ ସମକାଳ ଅନୁବାଦର ଭୂମିକା ଦେଇ ନୂତନ ରୁଚିତୃପ୍ତକାରୀ ସାହିତ୍ୟ ପ୍ରଣୟନର ସମୟ ଭିନ୍ନ ଅନ୍ୟକିଛି ନଥିଲା । 'ବିବେକୀ' ଭଳି ଦୀର୍ଘ ପ୍ରବନ୍ଧ ରଚନା କରିବା ପଛରେ ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ନୀତିଗ୍ରନ୍ଥ ଅଧ୍ୟୟନର ପ୍ରଭାବ ହୁଏତ ପଡ଼ିଥିବ ତାଙ୍କ ଉପରେ । କିନ୍ତୁ ବହୁବିଧ ପ୍ରଭାବ ସଂଶ୍ଳେଷଣ ବିକ୍ରିୟାରେ 'ବିବେକୀ'; ଅନନ୍ୟ ଆବେଦନର ଅଭିପ୍ରେତ ପ୍ରତିମା ଭଳି ସାହିତ୍ୟ ଭୂମିରେ ଦୃଢ଼ ହୋଇ ପାରିଛି । "ଓଡ଼ିଆ ସାହିତ୍ୟରେ ଏହା ପ୍ରଥମ ସାହିତ୍ୟିକ ପ୍ରବନ୍ଧ ପଦବାଚ୍ୟ ମାତ୍ର । ଏହି ଐତିହାସିକ ମୂଲ୍ୟ ବ୍ୟତୀତ ଏହାର ସାହିତ୍ୟିକ ମୂଲ୍ୟ ମଧ୍ୟ ଅନସ୍ୱୀକାର୍ଯ୍ୟ ।"[୧୧] 'ବିବେକୀ' ପ୍ରବନ୍ଧାଧ୍ୟୟନରୁ ଜୀବନ-ଚିନ୍ତା, ଅନୁଭବ ଏବଂ ଜଗତ ଦୃଷ୍ଟିର ନିତ୍ୟ ପରିଚିତ ଘଟଣାବଳୀ ଓ ଭାବବୋଧକୁ ପାଠକ ପୁନରାୟ ସାମ୍ନାକରେ । ସଂସାରରେ ଅନେକ ପ୍ରକାରର ଲୋକ ଥାନ୍ତି । କେହି କେହି ଲୋକ ସହସ୍ର କଷ୍ଟରେ ଧୈର୍ଯ୍ୟହରା ହୁଅନ୍ତି ନାହିଁ । ଆଉ କେତେକ ଲୋଭରେ ପଡ଼ନ୍ତି ନାହିଁ ବୋଲି କହନ୍ତି । ପୁଣି କେତେଜଣ କାମ ନ କରୁଣୁ କରିଦେବେ ବୋଲି ବାହାଦୁରୀ ଦେଖାଉଥାନ୍ତି । ସମସ୍ତ ପ୍ରକାରର ଲୋକ କିଛି ନା କିଛି ଆପଦରେ ପଡ଼ନ୍ତି । ମଣିଷ ପାଇଁ ଆପଦ ହେଉଛି ଶିକ୍ଷାଦାତା ଓ ଉପକାରକ । ଏଠି ମଧ୍ୟ ବିଜ୍ଞମନ୍ୟ, ଈର୍ଷୀ ଓ ଅଜ୍ଞ ଲୋକଙ୍କର ଅଭାବ ନାହିଁ । ପରନିନ୍ଦା ଭିନ୍ନ ସେମାନଙ୍କୁ ମିଷ୍ଟାନ୍ନ ବି ଏତେ ମଧୁର ଲାଗେ ନାହିଁ । ସେଭଳି ଲୋକଙ୍କ ଉତ୍ପୀଡ଼ନାରୁ ରକ୍ଷାପାଇବାକୁ ହେଲେ ବିବେକକୁ ତଉଲିବା ଅପରିହାର୍ଯ୍ୟ । ଧୈର୍ଯ୍ୟର ସହ ସମୟକୁ ପ୍ରତୀକ୍ଷା କରିବା ଜରୁରୀ । କାରଣ ସମୟରୁ ଯାହା ଜାତ ତାହା ସମୟରେ ହିଁ ନିଃଶେଷ ହୁଏ । ଲେଖକଙ୍କ ଭାଷାରେ 'କାଦୁଅ ଯେତେବେଳେ ଶୁଷ୍କ ହେବ, ଆପେ ଝଡ଼ି ପଡ଼ିବ, ଶୁଷ୍କ ହେବା ଆଗେ ଝଡ଼ି ପଡ଼ିବ ନାହିଁ ।' (ପୃ.-୩୩୫) ନିଜର ବଡ଼ପଣ ଜାହିର କରିବା ଓ ଅପରର ନିନ୍ଦାରେ କ୍ରୋଧାନ୍ୱିତ ହେବା ବ୍ୟକ୍ତିର ସ୍ୱଭାବ । ଏଭଳି ଦୋଷରୁ ନିକିଳିବାର ଶିକ୍ଷା ଖୁବ୍ ବିଳମ୍ବରେ ଅର୍ଥାତ୍ ବିବେକର ଉଦୟରେ ହିଁ ସମ୍ଭବ ହୋଇଥାଏ । ଏହିପରି

୧୧- ମହାନ୍ତି, ଜାନକୀବଲ୍ଲଭ (କ)— 'ବିବେକୀ-ଏକ ଅଧ୍ୟୟନ'– ରାଧାନାଥ ପରିଚିତି (୧୯୫୯-ପୃ-୧୧୨)

ମନୁଷ୍ୟ ନନାବିଧ ଦୁଃଖ କରୁଥିବା କଥା ବିବେକୀ ପ୍ରବନ୍ଧରେ ଉଲ୍ଲିଖିତ । ଏଥିସହିତ ମଣିଷର ତିନୋଟି ବିଶେଷ ଦୋଷ କଥା ଉତ୍‌ଥାପିତ । ସେଗୁଡ଼ିକ ହେଲା— ସୁଭଗମ୍ମନ୍ୟତା, ଅପରିପକ୍ୱତା ଓ ବୋଝ । ସୁଭଗମ୍ମନ୍ୟତା କହିଲେ ଆପେ ଆପଣାକୁ ସୌଭାଗ୍ୟଶାଳୀ ଅର୍ଥାତ୍ ବଡ଼ ବୋଲି ଭାବିବା । ଅପରିପକ୍ୱତା ବହୁବିଧ । ଯେପରି-ଶାରୀରିକ, ମାନସିକ, ନୈତିକ ଏବଂ ରୈତିକ । ଶାରୀରିକ ଅପରିପକ୍ୱତାକୁ ବାଦ୍ ଦେଇ ଲେଖକ ଅପର ତିନିପ୍ରକାରର ଅପରିପକ୍ୱତା କଥା ନିତ୍ୟନିୟତ ଦୃଷ୍ଟ ଦୃଷ୍ଟାନ୍ତ ଜରିଆରେ ଉପସ୍ଥାପନ କରିଅଛନ୍ତି । ମଣିଷ ପାଇଁ ସାଂସାରିକ ପ୍ରତିବନ୍ଧକ ଆଦିକୁ ସେ ବୋଝ ଭାବେ ଦର୍ଶାଇଛନ୍ତି । ବିବେକୀ ମାତ୍ରକେ ଅପୂର୍ଣ୍ଣ ଜୀବନର ଏବଂବିଧ ତ୍ରୁଟି-ବିଚ୍ୟୁତି ସଂପର୍କରେ ସଚେତନ ରହିଥାନ୍ତି । 'ବିବେକୀ' ପ୍ରବନ୍ଧରେ ଲେଖକ ଜନଜୀବନକୁ ନୀତି-ନିଷ୍ଠ ଓ ଆଦର୍ଶ ଦୀକ୍ଷିତ କରିବାକୁ ବହୁ ଉପଦେଶ ଓ ଉଦାହରଣ ପ୍ରଦାନ କରିଅଛନ୍ତି ।

୧୮୭୩ ମସିହାରେ 'ବିବେକୀ' ଭଳି ଓଡ଼ିଆ ମନ୍ମୟ ପ୍ରବନ୍ଧ ରଚନା କେବଳ ଦୁର୍ଲଭ ନୁହେଁ, ବିସ୍ମୟବହ ମଧ୍ୟ । ବିଷୟ ପ୍ରସଙ୍ଗରୁ ଲେଖକଙ୍କ ମାନସିକ ପରିପକ୍ୱତା ଅବଧାରଣ କରିହୁଏ । ରଚନାଶୈଳୀରେ ଲେଖକୀୟ ଆତ୍ମସଂଲଗ୍ନତାର ନିବିଡ଼ ପ୍ରଚ୍ଛାପ ବର୍ତ୍ତମାନ । ଆତ୍ମଶ୍ଲାଘା ରହିତ ଆତ୍ମବ୍ୟଙ୍ଗରେ ଅଭିବ୍ୟକ୍ତିର ଧ୍ୱନିଭାଷ୍ୟ ରାଧାନାଥୀ ଗଦ୍ୟର ଅନନ୍ୟତା । ତାଙ୍କ ସମକାଳର କୌଣସି ଗଦ୍ୟ ସ୍ରଷ୍ଟାଙ୍କ ରଚନାରେ ଏଭଳି ରୀତି ଅନୁସୃତ ହୋଇଥିବା ଦେଖାଯାଏ ନାହିଁ । ଯେପରି- (କ) 'ଯେତେ ଚଷା ହେଉ ପଛକେ, ମନୁଷ୍ୟ ହୃଦୟରେ ପଡ଼ିଆ ଜମିର କେବେ ହେଁ ଅଭାବ ନାହିଁ । (ପୃ. ୩୩୧) (ଖ) ଓକିଲର ଚିନ୍ତା ସୂର୍ଯ୍ୟଙ୍କ ସଙ୍ଗେ ଉଦିତ ହୁଏ, ସୂର୍ଯ୍ୟଙ୍କ ସଂଗେ ଅସ୍ତ ହୁଏ' । (ପୃ.୩୩୩) (ଗ) ବଳଦ ଭଲ ଅବା ମନ୍ଦ ଶିଷ୍ଟ ଅବା ଦୁଷ୍ଟ ଠେକୁଆ ଏ ବିଷୟରେ ବିଚାର କରି ନ ପାରେ । (ପୃ.୩୩୬) ବିବେକୀ ପ୍ରବନ୍ଧର ଆକୃତି ଦୀର୍ଘ ।

ଅଥଚ ପଠନ କ୍ଲାନ୍ତିକର ନୁହେଁ । କାରଣ ସ୍ଥଳ ବିଶେଷରେ ରହିଥିବା ଆବେଗନିଷ୍ଠ ରମ୍ୟ ବର୍ଣ୍ଣନା ପାଠକକୁ ବାରମ୍ବାର ଆମୋଦିତ କରେ । ଯେପରି— "ମେଘ ଛାଡ଼ିବ ନାହିଁ, ଦିନଯାକ ବର୍ଷାହେବ, ଏହା ଭାଳିଥିଲି । ମାତ୍ର ମେଘ କଟିଗଲା । ସୂର୍ଯ୍ୟ ବାହାରିଲେ । ବୃକ୍ଷ ପତ୍ରାଗ୍ରରେ ଲମ୍ବିତ ଜଳ ବନ୍ଦୁରେ ରବି କିରଣ ପତିତ ହୋଇ ଇନ୍ଦ୍ରଧନୁ ପ୍ରଭାପୁଞ୍ଜ ପ୍ରାୟ ଦିଶିଲା; ଆର୍ଦ୍ରି ଏବଂ ଭକ୍ତିର ଏକତ୍ର ସମାବେଶ ପ୍ରାୟ ମନୋହର ଦିଶିଲା ।" (ପୃ. ୩୩୯) ଅଥବା "ବ୍ରୀହି, ମୁଗ ଓଜନ ନିମନ୍ତେ ଯେମନ୍ତ ଦୋକାନରେ ତରାଜୁ ଅଛି, ମନୁଷ୍ୟର ମାନସିକ ଉତ୍କର୍ଷ ଓଜନ କରିବା ନିମନ୍ତେ ଥାନା ଆଗରେ ଅଥବା କୌଣସି ପ୍ରସିଦ୍ଧ ଛକ ଜାଗାରେ

ସେହିପରି ଗୋଟିଏ ତରାଜୁ ଥାନ୍ତା କି ?'' (ପୃ. ୩୬୦) ଅନେକତ୍ର ରୂପକଧର୍ମୀ ବର୍ଣ୍ଣନାର ଭାବନୀୟତାରେ ପାଠକ ମୁଗ୍ଧ ହେବାର ଅବକାଶ ରହିଛି । ଯେପରି- 'ଉଦ୍ଧତ ଭାବ ଓ ଉଦ୍ଧତ ଦୃଷ୍ଟି', 'କଞ୍ଚା ଗଦ୍ୟ', ମୁଚକି ମୁଚକି ହସୁଥିବା ଲୋକ ଉଦ୍ଦେଶ୍ୟରେ— 'ଏପରି ଗଧ ଥୋକାଏ ଦେଖିଥିବେ ।' 'ମୁଁ' ପରିବର୍ତ୍ତେ 'ଆମ୍ଭେ ବା 'ଆମ୍ଭେମାନେ'ର ବ୍ୟବହାର ହେତୁ ବାକ୍ୟର କିଞ୍ଚିତ ଅପ୍ରାକୃତିକ ଉଚ୍ଚାରଣ ଯୁଗପତ୍ ଆମୋଦ ଓ ଗାମ୍ଭୀର୍ଯ୍ୟରେ ମହାନତାର ଭାବ ସଞ୍ଚାର କରେ । ଉଦାହରଣ ସ୍ୱରୂପ ''ଆମ୍ଭେମାନେ ଆପଣାକୁ ଯେତେ କରି ମଣୁ ବାସ୍ତବରେ ଆମ୍ଭେମାନେ ସେପରି ନୋହୁଁ । ଆମ୍ଭେମାନେ ଜୀଇଲେ ଅତି ଅଳ୍ପ ଲୋକର ସ୍ୱାର୍ଥ ସିଦ୍ଧି, ମଲେ ଅତି ଅଳ୍ପ ଲୋକର ସ୍ୱାର୍ଥହାନି ହେବ ।'' (ପୃ.୩୪୧) କିମ୍ବା 'ବାଲ୍ମୀକି ଆପଣାକୁ 'ମୁନିସତ୍ତମ' ବୋଇଲେ ଆମ୍ଭେମାନେ ବିରକ୍ତ ହେବୁ ନାହିଁ । ମାତ୍ର ମାଘ ଆପଣାକୁ 'କବିକୀର୍ତ୍ତି ଦୁରାଶାଗ୍ରସ୍ତ' ବୋଇଲେ ଆମ୍ଭେମାନେ ସେହି ବିନୟକୁ ନିର୍ମଳ ବିନୟ ମଣିବୁ ନାହିଁ ।' (ପୃ. ୩୪୪) ସ୍ୱାଧୀନତା ପରବର୍ତ୍ତୀକାଳର ଓଡ଼ିଆ ଗଦ୍ୟରେ ଅଭିବ୍ୟକ୍ତ ଭାବବକ୍ରତା ଅଥବା ଆତ୍ମବ୍ୟଙ୍ଗର ଶୈଳୀ ଭାଷାଦୃଷ୍ଟିରୁ ତତ୍ସମ ବହୁଳତା ବର୍ଜିତ ହେଲେ ହେଁ ଭଂଗୀଦୃଷ୍ଟିରୁ ଯେ ରାଧାନାଥଙ୍କ ଗଦ୍ୟଶିଳ୍ପାନୁସାରୀ— ଏହା ସ୍ୱୀକାର୍ଯ୍ୟ । ଭୁବନେଶ୍ୱର ବେହେରା, ବସନ୍ତ ଶତପଥୀ, ଗୋବିନ୍ଦଚନ୍ଦ୍ର ତ୍ରିପାଠୀ, ବାମାଚରଣ ମିତ୍ର, ମନୋଜ ଦାସ, ଚିତ୍ତରଞ୍ଜନ ଦାସ ପ୍ରଭୃତିଙ୍କ ଗଦ୍ୟସାଧନାରେ ଉପର୍ଯ୍ୟୁକ୍ତ ଶୈଳୀର ଭୂୟୋବିକାଶ ସଂସାଧିତ । ଲେଖକଙ୍କର ଅନୁଭୂତିରେ ସଠିକତା, ପ୍ରଞ୍ଚାର ସ୍ୱଚ୍ଛତା, ବିବେକବୋଧର ସୂକ୍ଷ୍ମତା ଓ ଚିନ୍ତାର ଗଭୀରତା ଥିଲେ ଗଦ୍ୟ ରଚନା ରୀତି ଅଭିବ୍ୟକ୍ତିରେ ଅନର୍ଗଳ ହୁଏ । ପଦ୍ୟଭଳି ଖଣ୍ଡବାକ୍ୟ ଅଥବା ପୂର୍ଣ୍ଣବାକ୍ୟର ଉପାନ୍ତ୍ୟବର୍ଣ୍ଣ ମେଳ ଓ ଏକା ପ୍ରକାର କ୍ରିୟାପଦରୁ ପୁନରୁକ୍ତିରୁ ଶ୍ରୁତିସୁଖକର ଧ୍ୱନି ଉଦ୍ଭୁତ ହୁଏ । ଯେପରି— ''କେତେଗୁଡ଼ିଏ ମନୁଷ୍ୟ ଅଛନ୍ତି, ପ୍ରକୃତି ସେମାନଙ୍କୁ କବି କରିନାହାନ୍ତି, ଏହା ଶୀଘ୍ର ବୁଝି ପାରନ୍ତି ନାହିଁ । ସେମାନେ କେତେ ଚୌପଦୀ ରଚନ୍ତି, ରସିକତାର ପରିଚୟ ଦେବା ପାଇଁ କଥା କହୁଁ କହୁଁ ଢଗ ବୋଲନ୍ତି । ନିରୀହ ଲୋକଙ୍କୁ ଦେଖି କେତେ ବ୍ୟଙ୍ଗ କରନ୍ତି । ଏହିପରି ଦିନଯାପି ସ୍ଥବିରତାକୁ ଲଭନ୍ତି'' (ପୃ. ୩୩୯) ସାଂପ୍ରତିକ ଓଡ଼ିଆ ସାହିତ୍ୟର ଗଦ୍ୟଶୈଳୀରେ ଏଭଳି ଶୈଳ୍ପିକ ଢଂଗ ଚିତ୍ତରଞ୍ଜନ ଦାସଙ୍କ ଗଦ୍ୟରେ ଲକ୍ଷ୍ୟକରି ହୁଏ । ଯେପରି— ''ଯେଉଁଠି ମଣିଷ ଅଛନ୍ତି, ସେଠି ସେମାନଙ୍କ ଭିତରେ ଏ ବାବୁମାନେ ମଧ୍ୟ ରହିଛନ୍ତି । ବାବୁମାନେ ସବୁ ଯୁଗରେ ରହି ଆସିଛନ୍ତି, ସବୁଦେଶରେ ବି ରହି ଆସିଛନ୍ତି । ଗୋରାଙ୍କ ଭିତରେ ଅଛନ୍ତି, କଳାଙ୍କ ଭିତରେ ଅଛନ୍ତି++ ପଖାଳରେ ଅଛନ୍ତି, ତବତରେ ଅଛନ୍ତି, ଧୋଇଆରେ ଅଛନ୍ତି, ନିର୍ଧୋଇଆରେ ଅଛନ୍ତି; ଗାଆଁରେ

ଅଛନ୍ତି, ସହରରେ ମଧ୍ୟ ଅଛନ୍ତି ।''[୧୨] ରାଧାନାଥଙ୍କ 'ବିବେକୀ' ଠାରୁ ଦୃଷ୍ଟାନ୍ତ ଦିଆଯାଇଥିବା ଚିତ୍ତରଞ୍ଜନଙ୍କ 'ଏ ବାବୁମାନେ' ପ୍ରବନ୍ଧ ମଧ୍ୟରେ ସମୟର ଦୂରତା ଏକଶହ ବର୍ଷରୁ ଅଧିକ । ଅଭିବ୍ୟକ୍ତିରେ କେବଳ ଯାହା ଭାଷା ବଦଳିଛି; କିନ୍ତୁ ଭଂଗୀ ସେମିତି ଅକ୍ଷୁଣ୍ଣ ଓ ନିଟୋଳ ରହିଛି । ପଦ୍ୟରେ ଭାବାଭିବ୍ୟକ୍ତି ଭଳି ଗଦ୍ୟରେ ମଧ୍ୟ ରାଧାନାଥ ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଅଛନ୍ତି । କିନ୍ତୁ ପରବର୍ତ୍ତୀକାଳରେ କାବ୍ୟସାଧନା ପ୍ରତି କାହିଁକି ସେ ଅଧିକ ଆସକ୍ତି ପ୍ରକାଶ କଲେ, ତାହା ପୂର୍ବରୁ ଆଲୋଚନା କରାଯାଇଛି । ତେଣୁ ସଂଶିତ କାଳରେ ମଧୁସୂଦନ ରାଓଙ୍କ ଭାବବ୍ୟଞ୍ଜନା ଶୂନ୍ୟ ମାଂସଳ ସାଧୁଶବ୍ଦ[୧୩] ବ୍ୟବହାରରେ ଆନତ ପ୍ରବନ୍ଧାବଳୀ ଭବିଷ୍ୟତର ଓଡ଼ିଆ ପ୍ରବନ୍ଧ ରଚନା ନିମିତ୍ତ ମାର୍ଗଦର୍ଶକ ହୋଇଛି କହିବା ବାହୁଲ୍ୟ ନୁହେଁ । ଫକୀରମୋହନ ଓ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭଳି ଗଦ୍ୟସ୍ରଷ୍ଟାଙ୍କ ରଚନା ଶୈଳୀର ଲୋକପ୍ରିୟତା ଦେଇ ରାଧାନାଥୀ ଗଦ୍ୟର ସରସ ଭାବବ୍ୟଞ୍ଜନା ରୀତି କାଳାନ୍ତରଣ ଲାଭ କରିଛି ।

'ବିବେକୀ ପ୍ରବନ୍ଧରେ ତତ୍ସମ ଶବ୍ଦ ବହୁଳତା ଓ ପାଦ୍ରୀଙ୍କ ଗଦ୍ୟାନୁବାଦ ରୀତିର ସାମୟିକ ଅନୁସରଣକୁ ଲକ୍ଷ୍ୟକରି କେହି କେହି ଓଡ଼ିଆ ସମାଲୋଚକ ରାଧାନାଥୀ ଗଦ୍ୟଶୈଳୀର ତ୍ରୁଟି ଦର୍ଶାଇଥାନ୍ତି । କିନ୍ତୁ 'ବିବେକୀ' ପ୍ରବନ୍ଧର ରଚନା ଓ ପ୍ରକାଶନର ପୃଷ୍ଠଭୂମିରେ ରାଧାନାଥଙ୍କ ସର୍ଜନଶୀଳ ଶିଳ୍ପବୋଧ କଥା ବିଚାର କଲେ, ପୂର୍ବୋକ୍ତ ଅଭିଯୋଗ ଗୌଣ ମନେହେବ । ବସ୍ତୁତଃ ଓଡ଼ିଆ ସାହିତ୍ୟର ଆଧୁନିକତାର ଉପୋଦ୍‌ଘାତରେ ରାଧାନାଥଙ୍କ 'ବିବେକୀ' ଯେ; ଯଥାର୍ଥତଃ ଆଦ୍ୟ ସାହିତ୍ୟିକ ପ୍ରବନ୍ଧ; ଏହା ନିଃସନ୍ଦେହ ।

---

୧୨- ଦାସ, ଚିତ୍ତରଞ୍ଜନ— 'ଏ ବାବୁମାନେ'– ନବରବି-ଅକ୍ଟୋବର ୧୯୭୫, ପୃ-୧୭

୧୩- ମଧୁସୂଦନ ରାଓଙ୍କ 'ପ୍ରବନ୍ଧମାଳା' (୧୮୮୦) ପ୍ରକାଶିତ ଓ ପୁରସ୍କୃତ ହେବାପରେ ତାର ସମାଲୋଚନା ପ୍ରକାଶ ପାଇଥିଲା 'ବାଲେଶ୍ୱର ସମ୍ବାଦ ବାହିକା,(ଅତିରିକ୍ତ) ରେ । ସମାଲୋଚକଙ୍କ ନାଁ ନ ଥିଲା । ୧୮୮୨ ସାଲ ଫେବୃୟାରୀରେ ମଧୁସୂଦନ ସ୍ୱୀକାର କଲେ ଯେ ତହିଁର ଲେଖକ ରାଧାନାଥ ରାୟ । ମଧୁସୂଦନଙ୍କ ପ୍ରବନ୍ଧର ଭାଷା ସଂପର୍କରେ ରାଧାନାଥ ଲେଖିଥିଲେ— 'ପୁସ୍ତକର ଭାଷା ଅନେକ ସ୍ଥାନରେ ଦୁରୂହ ହୋଇଅଛି ଏବଂ ମାଂସଳ ସାଧୁଶବ୍ଦ ମାନଙ୍କର ଅତି ପ୍ରାଚୁର୍ଯ୍ୟ-ଦ୍ୱାରା କୌଣସି କୌଣସି ପ୍ରବନ୍ଧର ବାକ୍ୟମାନ ଅତ୍ୟନ୍ତ ଭାରାକ୍ରାନ୍ତ ହୋଇଅଛି ''।
(ସାମନ୍ତରାୟ, ନଟବର— '' ସମାଲୋଚନା–ପ୍ରବନ୍ଧମାଳା '' – ଓଡ଼ିଆ ସାହିତ୍ୟରେ ସମୀକ୍ଷା ସଂଗ୍ରହ ୧୯୭୭, ପୃ.-୫୩,୫୪ ।

॥ ୪ ॥

ମଧୁସୂଦନ ରାଓଙ୍କ 'ପ୍ରବନ୍ଧମାଳା' (୧୮୮୦) ର ସମାଲୋଚନା କରିବା କାଳରେ ରାଧାନାଥ ଲେଖିଥିଲେ— "ସଂପ୍ରତି ଉତ୍କଳ ସାହିତ୍ୟ ସମାଜରେ ଅତିରିକ୍ତ ଅନୁବାଦର ଜୀବନ୍ତ ପ୍ରତିଘାତ ସ୍ୱରୂପ ଅନୁବାଦ-ବିଦ୍ୱେଷୀ ଗୋଟିଏ ଦଳର ଆବିର୍ଭାବ ହୋଇଅଛି । ଏହି ଦଳର ଉଦ୍ଦେଶ୍ୟ ଉତ୍ତମ ହେଲେ ହେଁ ସେହି ଉଦ୍ଦେଶ୍ୟକୁ ଯେତେଦୂର କାର୍ଯ୍ୟରେ ପରିଣତ କଲେ ତଦ୍ୱାରା ପ୍ରକୃତ ହିତ ସାଧନ ହେବ, ସାମ୍ପ୍ରଦାୟିକମାନେ କେବେ କେବେ ସେହି ସୀମାକୁ ଅତିକ୍ରମ କରି କେବଳ ଅନୁବାଦ ବୋଲି ଅନୁବାଦ ପ୍ରତି ଉପେକ୍ଷା ପ୍ରଦର୍ଶନ କରନ୍ତି । ଏହି ସମ୍ପ୍ରଦାୟର ସାନ୍ତ୍ୱନା ନିମନ୍ତେ ବକ୍ତବ୍ୟ ଏହି ଯେ, ସେମାନଙ୍କ ଅନୁବାଦ ବିମୁଖତା ନ୍ୟାଯ୍ୟ ସୀମା ମଧ୍ୟରେ ପରିଚାଳିତ ହେଲେ ଆମ୍ଭେମାନେ ସେଥିପ୍ରତି ସମ୍ପୂର୍ଣ୍ଣ ସହାନୁଭୂତି ପ୍ରଦର୍ଶନ କରିବାକୁ ପ୍ରସ୍ତୁତ ଅଛୁ ଏବଂ ସଚରାଚର ଯେପରି ଅଳ୍ପାୟାସସାଧ୍ୟ ବଙ୍ଗାନୁବାଦ ଦ୍ୱାରା ଓଡ଼ିଆ ଭାଷା ବିକୃତ ହେଉଅଛି, ଆମ୍ଭେମାନେ ସେଭଳି ଅନୁବାଦର ନିତାନ୍ତ ପକ୍ଷପାତୀ ନୋହୁ; କିନ୍ତୁ ଅନୁବାଦ ଆଦୌ ପ୍ରୟୋଜନୀୟ ନୋହେ, ଏହା ଆମ୍ଭେମାନେ କଦାଚ ସ୍ୱୀକାର କରି ନ ପାରୁଁ । ଭାଷାର କଳେବର ପୁଷ୍ଟି ବିଷୟରେ ଅନୁବାଦ ଅନ୍ୟତର ସାଧନ ।"[୧୪] ଅନୁବାଦ ଦ୍ୱାରା ଭାଷାର ପରିପୁଷ୍ଟି ବିଧାନ ସମ୍ଭବ ହୁଏ— ଏକଥା ରାଧାନାଥ ଭଲଭାବେ ବୁଝିଥିଲେ । କିନ୍ତୁ ଅଳ୍ପ ଆୟାସରେ ବଙ୍ଗଳାରୁ ଓଡ଼ିଆ ଅନୁବାଦ ହେବା ଓଡ଼ିଆ ଭାଷାର ବିକୃତୀକରଣର କାରଣ ବୋଲି ସେ ଜାଣିଥିଲେ । ସେଥିପାଇଁ ମଧୁବାବୁଙ୍କ 'ବାଲାଜୀ' ପ୍ରବନ୍ଧରେ ରହିଥିବା ତ୍ରୁଟିକୁ ସେ ନିମ୍ନମତେ ଉଲ୍ଲେଖ କରିଛନ୍ତି— 'ସଂବତ୍ ୧୮୧୬ ଅବ୍ଦରେ ୧୫ ପୌଷଦିନ' ଏହା ଓଡ଼ିଆ ଭାଷାର ଇଡ଼ିୟମ ନୋହେ, ବଙ୍ଗଳା ଭାଷାର ଇଡ଼ିୟମ । ସଂବତ ୧୮୧୬ ଅବ୍ଦର ପୌଷମାସ ୧୫ ଦିନରେ' ଏଭଳି ହେବା ଉଚିତ୍ ଥିଲା' ।[୧୫] ବୋଧହୁଏ ଏଇଥିପାଇଁ ସେ ସାରସ୍ୱତ ଜୀବନର ଆରମ୍ଭରେ ଇଂରାଜୀ ଭାଷାରେ ପ୍ରକାଶିତ ଇଟାଲୀର ଏକ କାହାଣୀକୁ ଓଡ଼ିଆରେ ଅନୁବାଦ କରିଥିଲେ । ଫକୀରମୋହନଙ୍କ ରାଧାନାଥ ସ୍ମୃତିଚାରଣରେ ଏହା ସୂଚିତ— "ଦିନେ ଗଡ଼ଗଡ଼ିଆଠାରେ ରାଧାନାଥ କହିଲେ, ମୁଁ ଇଟାଲୀୟ ଯୁବା ବୋଲି ଗୋଟିଏ ଗଳ୍ପ ଇଂରାଜୀରେ ପଢ଼ିଅଛି, ତାହାକୁ ଲେଖିବି ବୋଲି ମନେକରୁଅଛି ।"[୧୬] ପରେ ଏହି ଲେଖା 'ଉତ୍କଳଦର୍ପଣ' (୧୮୭୩) ପତ୍ରିକାରେ କ୍ରମଶଃ ପ୍ରକାଶ ପାଇଥିଲା ।

---

୧୪- ତତ୍ରୈବ- ପୃ.-୫୧

୧୫- ତତ୍ରୈବ - ପୃ- ୫୪

୧୬- ରାଧାନାଥ ଜୀବନୀ (୧୯୪୧)- ପୃ-୪୨

ଅନୁବାଦ ସଂପର୍କରେ ରାଧାନାଥଙ୍କ ନିଜସ୍ୱ ଦୃଷ୍ଟିକୋଣ ପୂର୍ବରୁ ଉଦ୍ଧୃତ ହୋଇଅଛି । ତେବେ 'ଇତାଲୀୟ ଯୁବା' ଯେଉଁ ଇଂରାଜୀ ପୁସ୍ତକରୁ ଅନୂଦିତ, ତାହା ନ ମିଳିବା ପର୍ଯ୍ୟନ୍ତ ରାଧାନାଥଙ୍କ ଅନୁବାଦ କଳାର ଆକଳନ ସମ୍ଭବପର ନୁହେଁ ।

ଇତାଲୀୟ ଯୁବାର କାହାଣୀ ବେଶ୍ ରୋମାଞ୍ଚକର ଓ ଆଦର୍ଶ ଗର୍ଭିତ । ଇଉରୋପ ଭୂଖଣ୍ଡର ଇଟାଲୀରେ ଆଲ୍ପସ ପର୍ବତମାଳା ରହିଛି । ସେଠି ବରଫ ଝଡ଼ ହୁଏ । ତେଣୁ ମେଣ୍ଢା ଜଗୁଆଳମାନେ କୁଡ଼ିଆ ଘର କରିଥାନ୍ତି । ଏକଦା କୌଣସି ଏକ କୁଡ଼ିଆରେ ଆଶ୍ରୟ ନେଇଥିବା ଚାରିଜଣଙ୍କ ମଧ୍ୟରୁ ସେହି କୁଡ଼ିଆର ମାଲିକ ଅନ୍ୟମାନଙ୍କୁ ଏକ କାହାଣୀ ଶୁଣାଇଥିଲେ । ତାହା ଏହିପରି— ନେପ୍‌ଲସର ଜଣେ ଯୁବକ, ପିତା ଓ ବଡ଼ଭାଇଙ୍କ ଦ୍ୱାରା ଲାଞ୍ଛିତ ହୋଇ ଗୃହତ୍ୟାଗ କରିଥିଲା । ଜେନେଭାରେ ରହି ଚିତ୍ରବିଦ୍ୟା ସାହାଯ୍ୟରେ ପେଟ ପୋଷୁଥିଲା । ସେଇଠି ସେ ସୁନ୍ଦରୀ ଲରାଙ୍କୁ ଭଲ ପାଇଲା । ପିତାଙ୍କ ଅସୁସ୍ଥତାର ଖବର ପାଇ ସେ ନେପ୍‌ଲସ ଆସିଲା । ଏହି ସମୟରେ ଫିଲପ୍‌ସ ନାମକ ଜଣେ ଯୁବକ ଲରାଙ୍କୁ ତାଂକ ମୃତ୍ୟୁ ସମ୍ବାଦ ଦେଇଥିଲେ । ଫିଲିପ୍‌ସ ମଧ୍ୟ ସେହି ଯୁବକଙ୍କର ବନ୍ଧୁ ଥିଲେ । ଲରାଙ୍କୁ ମିଛକଥା କହି ଫିଲିପ୍‌ସ ବିବାହ କଲେ । ଯୁବକ ଜେନେଭା ଆସି ସବୁକଥା ଜାଣିଲେ । ଛୁରୀ ସାହାଯ୍ୟରେ ଫିଲ୍‌ପ୍‌ସଙ୍କୁ ହତ୍ୟାକଲେ । ସେଥିପାଇଁ ତାଙ୍କୁ ଫାଶିଦଣ୍ଡ ହେଲା । ଫାଶି ପାଇବାକୁ ଯିବାର ଅବ୍ୟବହିତ ମୁହୂର୍ତ୍ତରେ ସେ ସେହି କୁଡ଼ିଆର ମାଲିକଙ୍କୁ କାନ୍ଥରେ ଟଙ୍ଗାଯାଇଥିବା ଫଟୋଟି ଉପହାର ଦେଇଥିଲେ ।

ଆଧୁନିକ ଓଡ଼ିଆ ସାହିତ୍ୟର ଆଦ୍ୟପ୍ରସ୍ତୁତି ଅନୁବାଦ ଭିତ୍ତିରେ ହିଁ ଆରବଧ ଓ ପ୍ରସାରିତ ହୋଇଥିଲା । ସେମାନେ ବୋଧହୁଏ ଲରେଞ୍ଜୋ ଲାଞ୍ଜୋଙ୍କ ମନ୍ତବ୍ୟ ସଂପର୍କରେ ଅବହିତ ଥିଲେ । ଲାଞ୍ଜୋ କହୁଥିଲେ— 'ଆମର ଏହି ଯୁଗରେ ଯିଏ ଅନୁବାଦକ ହୋଇପାରି ନାହିଁ, ମୁଁ ତାହାଙ୍କୁ ମଣିଷ ବୋଲି କଦାପି କହିବି ନାହିଁ ।'[୧୭] ତେବେ ଅନୁବାଦରେ ଦୁଇଟି କଥା ଗୁରୁତ୍ୱପୂର୍ଣ୍ଣ । ତାହା ହେଲା- ବିଶ୍ୱାସହୀନ ସୌନ୍ଦର୍ଯ୍ୟ (Faithless beauty) ଓ ବିଶ୍ୱସ୍ତ ବିରୂପତା(Faithful ugliness) । ମୂଳ ଇଂରାଜୀ ପୁସ୍ତକଟି ନ ମିଳିବା ପର୍ଯ୍ୟନ୍ତ ରାଧାନାଥଙ୍କ ଅନୂଦିତ 'ଇତାଲୀୟ ଯୁବା' କେଉଁ ପର୍ଯ୍ୟାୟର ତାହା ନିର୍ଦ୍ଧାରଣ କରିହେବ ନାହିଁ । ଛୋଟ ଛୋଟ ବାକ୍ୟରେ ଗୋଟିଏ ଗୋଟିଏ ଏକାର୍ଥବାଚକ ଶବ୍ଦର ବାରମ୍ବାର ବ୍ୟବହାର ଅନୂଦିତ ଗଦ୍ୟଶୈଳୀକୁ ମନୋରମ କରିଅଛି । ଯେପରି— "ଘର ଭିତରକୁ ଗଲୁଁ । ଦୀପ ନିଭିଯାଇଥିଲା । ବିଛଣାରେ ବସିଲୁଁ । ପୁଣି ସେହି ଭୂତର ଭୟ ଉପସ୍ଥିତ ହେଲା ।

---

୧୭- ଦାସ, ଦାଶରଥି— ସାହିତ୍ୟ ସଂଧାନ-ପୃ-୪୮

ରକ୍ତ ଜଳ ହୋଇଗଲା । ଦେହ ଥରିଲା । ଆଖି ମେଲିଲେ ସେହି ଭୂତ, ଆଖି ବୁଜିଲେ ସୁଦ୍ଧା ସେହି ଭୂତ ।'' (ପୃ-୩୬୭) ଏଭଳି ଗଦ୍ୟଶୈଳୀର ନମୁନା ସାଂପ୍ରତିକ କାଳର ଓଡ଼ିଆ କ୍ଷୁଦ୍ରଗଳ୍ପ ରଚୟିତାଂକ କୃତିରେ ସୁଲଭ୍ୟ ।

॥ ୪ ॥

''ଭ୍ରମଣବେଳେ ଅନେକ ନବ ନବ ଭାବର ଉଦୟ ହେଉଥାଏ, ମନରେ ଅନେକ ଅନନୁଭୂତ ପୂର୍ବ ବାସନା ଜାତ ହେଉଥାଏ ।'' (ପୃ- ୩୭୮) 'ଇତାଲୀୟ ଯୁବା'ରେ ଯୁବକଙ୍କ ଜେନେଭାର ଉଦ୍ୟାନ ଭ୍ରମଣକାଳୀନ ଅନୁଭବ ପୂର୍ବମତେ ବର୍ଣ୍ଣିତ । ରାଧାନାଥଂକ ସାରସ୍ୱତ ଜୀବନଚର୍ଯ୍ୟା ପୂର୍ବକଥିତ ମତଠାରୁ ଦୂରବର୍ତ୍ତୀ ନୁହେଁ । ବ୍ୟକ୍ତିଗତ ଜୀବନରେ ରାଧାନାଥ ଥିଲେ ଭ୍ରମଣ ପ୍ରିୟ । ଭ୍ରମଣ ଜନିତ ଅନୁଭବକୁ 'ଟିପାଖାତା'ରେ ଟିପି ରଖୁଥିଲେ । କାବ୍ୟଟି ଚଟନା କାଳରେ ତହିଁର ଯଥାର୍ଥ ଉପଯୋଗ କରୁଥିଲେ । ସେ ଦୃଷ୍ଟିରୁ ବିଚାରକଲେ ରାଧାନାଥଙ୍କ କାବ୍ୟକବିତା ହେଉଛି 'ଟିପାଖାତାର' କାବ୍ୟିକ ବିସ୍ତୃତୀକରଣ ଓ ଭ୍ରମଣାନୁଭବରେ ପଠନାନୁଭୂତିର ସଂଶ୍ଳେଷିତ ବାଙ୍‌ମୟବିନ୍ୟାସ । ସେଥିପାଇଁ 'ଟିପାଖାତା' ଭଳି ସାଧାରଣରେ ଆପାଙ୍‌କ୍ତେୟ ବିବେଚିତ ହେଉଥିବା ରାଧାନାଥଙ୍କ ସୂଚନାଧର୍ମୀ ଗଦ୍ୟକୃତି ସଂପର୍କରେ ଅସିତ ମହାନ୍ତି ଯଥାର୍ଥରେ କହନ୍ତି—'ଟିପାଖାତା' କେବଳ ଏକ ପର୍ଯ୍ୟଟନର ଡାଏରୀ ବା ନୋଟ୍-ବୁକ୍ ନୁହେଁ, ଏହା ରାଧାନାଥୀ ସାହିତ୍ୟ ସୃଷ୍ଟିର ହ୍ୟାଣ୍ଡବୁକ୍ ମଧ......... ଯାହା ଏକ ଅସାମାନ୍ୟ ସୃଜନସତ୍ତାର ଆଧାର ଭୂମି । ତେଣୁ ରାଧାନାଥୀ ସାହିତ୍ୟ ସୃଷ୍ଟିର ନିୟାମକ ନିର୍ଣ୍ଣୟ ଓ ରାଧାନାଥୀ ସାହିତ୍ୟର ପ୍ରଚ୍ଛଦ ସମୀକ୍ଷା କାଳରେ 'ଟିପାଖାତା'ର ଗୁରୁତ୍ୱ ଓ ଅବଦାନ ସ୍ପଷ୍ଟତଃ ଉପଲବ୍ଧ ହୁଏ ।''[୧୮] ଭ୍ରମଣପ୍ରିୟ ରାଧାନାଥ ସେହି ଅନୁଭବକୁ ଗଦ୍ୟରେ ଲିପିବଦ୍ଧ କରିଯାଇଛନ୍ତି । ଗଦ୍ୟକୁ ଭ୍ରମଣ ସାହିତ୍ୟ ପ୍ରକାଶନର ଆଧୁନିକ ମାଧମଭାବେ ଗ୍ରହଣ କରାଯାଏ । ସେଦୃଷ୍ଟିରୁ ୧୮୮୭ ମସିହା 'ନବସମ୍ବାଦ'ରେ ପ୍ରକାଶିତ ରାଧାନାଥଙ୍କ 'ଭ୍ରମଣକାରୀର ପତ୍ର' ହେଉଛି ଓଡ଼ିଆ ସାହିତ୍ୟର ଆଦ୍ୟ ଭ୍ରମଣ ସାହିତ୍ୟ । ତାଳଚେର, ବାମଣ୍ଡା, ପାଲଲହଡ଼ା, କେନ୍ଦୁଝର ଭଳି ରାଜ୍ୟର ପ୍ରାକୃତିକ ବିଭବ, ଲୋକଚରିତ୍ର, ରାଜସାନ୍ନିଧ୍ୟାଦି ପ୍ରସଙ୍ଗ ଲିପିବଦ୍ଧ ହୋଇଛି 'ଭ୍ରମଣକାରୀର ପତ୍ର' ଶୀର୍ଷକରେ । ବାମଣ୍ଡାର ପ୍ରଧାନପାଟ ପ୍ରପାତକୁ ରାଜାଙ୍କ ଗହଣରେ ଦେଖିଥିଲେ ରାଧାନାଥ । ସେହି ସୌନ୍ଦର୍ଯ୍ୟାନୁଭବକୁ ସେ ନିମ୍ନମତେ ବର୍ଣ୍ଣନା କରିଅଛନ୍ତି— ''ପ୍ରପାତର ଶିରୋଦେଶରେ ବନ୍ଧୁର ଶିଳାର ପ୍ରତିଘାତ ନିବନ୍ଧନ

୧୮- ମହାନ୍ତି ଅସିତ— ରାଧାନାଥଙ୍କ ଟିପାଖାତା–.ଝଙ୍କାର—୩୨/୧୨, ମାର୍ଚ୍ଚ-୧୯୮୧,ପୃ-୯୭୭

ଜଳବିନ୍ଦୁ ଇତସ୍ତତଃ ପ୍ରକ୍ଷିପ୍ତ ହୋଇ ମୁକ୍ତାବୃଷ୍ଟି ହେଲା ପ୍ରାୟ ବୋଧ ହେଉଅଛି । ଜଳର ଶୀକରରେ ଇନ୍ଦ୍ରଧନୁ ନୃତ୍ୟ କରୁଅଛି । ଘୋର ଅରଣ୍ୟ ଏବଂ ଗିରିକନ୍ଦର-ସୁଲଭ ନିର୍ଜନତାରେ ଏହି ଅପ୍ସରା ଦୃଶ୍ୟ ଦେଖିଲେ ମନ କିପରି ହୁଏ, ତାହା ଯେବେ ତୁମ୍ଭର ଅନୁଭବ କରିବାର ଇଚ୍ଛା ଥାଏ, ଶ୍ରମସ୍ୱୀକାର ପୂର୍ବକ ଥରେ ପ୍ରଧାନପାଟ ଦେଖି ଆସ ।'' ଶୈଳୀଦୃଷ୍ଟିରୁ ଏହି ଉଦ୍ଧୃତି କ୍ଲିଷ୍ଟତା କଣ୍ଟକିତ ପୁନରାୟ ବାମଣ୍ଡା ଭ୍ରମଣର ଅନୁଭୂତିକୁ ସେ 'ବାମଣ୍ଡା' ଶୀର୍ଷକରେ ପ୍ରକାଶ କରିଛନ୍ତି ୧୮୯୬ ମସିହା 'ଓଡ଼ିଆ ଓ ନବସମ୍ବାଦ' ପତ୍ରିକାରେ । ଏଥିରେ ତୃତୀୟ ବାର ବାମଣ୍ଡା ପରିଦର୍ଶନର ଅନୁଭୂତି ପ୍ରକାଶ ପାଇଛି । ରାଜାଙ୍କର ଜନହିତକର କାର୍ଯ୍ୟ, ରାଜକୁମାରଙ୍କ ଶିକ୍ଷା, ରାଜ୍ୟର ପ୍ରକୃତି ଆଦିକୁ ଖୁବ୍ ନିକଟରୁ ଦେଖି ଯେଉଁଳି ସେ ଭାବାବିଷ୍ଟ ହୋଇଛନ୍ତି, ସେହିପରି ଅକୃତ୍ରିମ ଭାଷାରେ ପ୍ରକାଶ କରିଅଛନ୍ତି । ନିରୁତା ଭାବର ଋଜୁଭାଷାନ୍ୟାସ ହେଉଛି ଭ୍ରମଣ ସାହିତ୍ୟର ବୈଶିଷ୍ଟ୍ୟ । ସେଦୃଷ୍ଟିରୁ ରାଧାନାଥଙ୍କ 'ଭ୍ରମଣକାରୀର ପତ୍ର' ଓ 'ବାମଣ୍ଡା' କେବଳ ସଫଳ ନୁହେଁ, ପରବର୍ତ୍ତୀକାଳର ଓଡ଼ିଆ ଭ୍ରମଣ ସାହିତ୍ୟିକଙ୍କ ମାର୍ଗଦର୍ଶନରେ ଆଦର୍ଶ ମଧ୍ୟ ।

॥ ୬ ॥

କେତେକ ପୁସ୍ତକରେ ସନ୍ନିବିଷ୍ଟ ଥିବା ରାଧାନାଥଙ୍କ ମୁଖବନ୍ଧ ରଚନା ଓ ମନ୍ତବ୍ୟରୁ ତାଙ୍କ ଗଦ୍ୟଶିଳ୍ପ ଓ ଶକ୍ତିର ମୂଲ୍ୟାୟନ କରିହେବ । ସେ କାଳିଦାସଙ୍କ 'ମେଘଦୂତ' ଖଣ୍ଡକାବ୍ୟର ଓଡ଼ିଆ ଅନୁବାଦ କରିଥିଲେ । ଅନୂଦିତ ପୁସ୍ତକ ୧୮୭୩ ମସିହାରେ ପ୍ରକାଶ ପାଇଥିଲା । ତହିଁରେ ରାଧାନାଥ ଦୁଇପୃଷ୍ଠା ବ୍ୟାପୀ ଭୂମିକାଟିଏ ରଚନା କରିଥିଲେ । ତାହା ସମାଲୋଚନା ରୀତିର ଗଦ୍ୟ ନମୁନା । ଯେପରି—
''ମହାକବି କାଳିଦାସ ପ୍ରଣୀତ ମେଘଦୂତ ସଂସ୍କୃତ ଭାଷାରେ ଖଣ୍ଡିଏ ଅତ୍ୟୁତ୍କୃଷ୍ଟ କାବ୍ୟ । ଏହି କାବ୍ୟର ଅନୁକରଣରେ ହଂସଦୂତ, ପଦାଙ୍କଦୂତ, କୋକିଳଦୂତ ପ୍ରଭୃତି ଖଣ୍ଡକାବ୍ୟମାନ ବିରଚିତ ହୋଇଅଛି । ମାତ୍ର କେହି ମେଘଦୂତ ସଙ୍ଗେ ଉପମିତ ହେବାର ଯୋଗ୍ୟ ନୁହଁଇ । କାଳିଦାସ ଆଉ କିଛି ନ ଲେଖି କେବଳ ଯେବେ ମେଘଦୂତ ଲେଖିଥାଆନ୍ତେ ଏକା ସେହି ମେଘଦୂତ ଦ୍ୱାରା ସେ ଅଦ୍ୱିତୀୟ କବି ବୋଲି ପ୍ରତିଷ୍ଠିତ ହୋଇଥାଆନ୍ତେ ।[୧୯] ଦାମୋଦର ମିଶ୍ରଙ୍କ 'ମାତା' ପୁସ୍ତକରେ ତାଙ୍କ ମନ୍ତବ୍ୟ ଯେଉଁଥିପାଇଁ ପ୍ରାସଙ୍ଗିକ ତାହା ହେଲା 'ଆଦିରସରେ ଲେଖକମାନଙ୍କର ଅଧିକ ପ୍ରୟାସୀ ହେବାର ଉଚିତ ନୁହେଁ । ଆଦିରସରେ ବିଶେଷତଃ ସ୍ଥୂଳ ଆଦିରସରେ ଭଞ୍ଜଙ୍କୁ କେହି ଅତିକ୍ରମ କରି ପାରିବେ ନାହିଁ ।''[୨୦] ଇନ୍ଦ୍ରଧନୁ-ବିଜୁଳି

୧୯- ଏଷଣା— ପୃ-୩୭

୨୦- ଦେବେନ୍ଦ୍ର ଦାଶଙ୍କ ପ୍ରବନ୍ଧରୁ ଉଦ୍ଧୃତ- ଏଷଣା -୧୮, ପୃ-୧୭୬

ପତ୍ରିକାର ବିବାଦଦୃଷ୍ଟେ ରାଧାନାଥଙ୍କର ଏଭଳି ମନ୍ତବ୍ୟ ପ୍ରଦାନ କିଭଳି ଭାବେ ପ୍ରାସଙ୍ଗିକ ତାହା ସ୍ୱତନ୍ତ୍ର ଆଲୋଚନାର କଥା । ଗଙ୍ଗାଧରଙ୍କ 'ଇନ୍ଦୁମତୀ' (୧୮୯୪) କାବ୍ୟରେ ରାଧାନାଥଙ୍କ ମନ୍ତବ୍ୟ ମୂଲ୍ୟାୟନ ରୀତିର ସମାଲୋଚନା ଶୈଳୀରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଗଙ୍ଗାଧରଙ୍କ ପ୍ରତିଭାକୁ 'ନୈସର୍ଗିକ ପ୍ରତିଭା' କହି ତାହାରି ବଳରେ ସେ ପ୍ରକୃତିର ସୌନ୍ଦର୍ଯ୍ୟ ପରୋକ୍ଷଭାବେ ପୁସ୍ତକରୁ ନଦେଖି 'ଚାକ୍ଷୁଷ ପ୍ରତ୍ୟକ୍ଷ କରିଅଛନ୍ତି' । ଉଦ୍ୟାନ ବର୍ଣ୍ଣନାରେ ତହିଁର ପ୍ରମାଣ ରହିଅଛି । ଅଧିକନ୍ତୁ 'ଭାବ ବା ଶବ୍ଦ' ଦୃଷ୍ଟିରୁ ଇନ୍ଦୁମତୀ ଆଧୁନିକ ରୁଚିରେ ବର୍ଜନୀୟ ନୁହେଁ— ଏହା ହିଁ ତାର ପ୍ରଧାନ ଗୁଣ । ରାଧାନାଥଙ୍କ ମନ୍ତବ୍ୟଠୁ ବଳି ଇନ୍ଦୁମତୀ ସମ୍ପର୍କରେ ଆଉ କେହି ସମାଲୋଚକ ନୂତନ ଅଭିମତ ଦେଇଥିବା ବା ମୂଲ୍ୟାୟନ କରିଥିବା ଜଣାଯାଏ ନାହିଁ । ପୁଣି 'କୀଚକବଧ' (୧୯୦୩)ରେ ପ୍ରଦତ୍ତ ରାଧାନାଥୀ ମନ୍ତବ୍ୟ ଗଙ୍ଗାଧରଙ୍କ କାବ୍ୟଆକଳନ କାଳରେ ଆପ୍ତକାବ୍ୟ ଭଳି ଏବେସୁଦ୍ଧା ବ୍ୟବହୃତ । ତନ୍ମଧ୍ୟରେ 'ବହିଃପ୍ରକୃତି' ବା 'ଅନ୍ତଃପ୍ରକୃତି' ବା 'ମନୁଷ୍ୟ ଚରିତ୍ର-ଚିତ୍ର' କଥା, ଗଙ୍ଗାଧରଙ୍କ କାବ୍ୟ 'ଭାବପ୍ରଧାନ ନହୋଇ ରସପ୍ରଧାନ' ହେବା କଥା ସମାଲୋଚକଙ୍କ ସ୍ମୃତିରେ ଏବେ ବି ଅଭୁଲା ରହିଛି । 'କୀଚକବଧ'ରେ ରାଧାନାଥଙ୍କ ମନ୍ତବ୍ୟ ପର୍ଯ୍ୟାୟରେ ଆଉ ଏକ ସ୍ମରଣୀୟ ଦୃଷ୍ଟାନ୍ତ ହେଲା—'ପୁରାତନରେ ନୂତନତା ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବାର ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର ଅଟେ ।'

ରାଧାନାଥ ସେକାଳରେ ଅନେକ ପୁସ୍ତକର ସମାଲୋଚନା କରିଅଛନ୍ତି । ତନ୍ମଧ୍ୟରେ ମଧୁସୂଦନ ରାଓଙ୍କ 'ପ୍ରବନ୍ଧମାଳା' (୧୮୮୦), ଦାମୋଦର ମିଶ୍ରଙ୍କ 'କମଳା' (କବିତା ପୁସ୍ତକ), ରାଜାନାରାୟଣ ଦାସଙ୍କ 'ବନ୍ୟ ପୁଷ୍ପାଞ୍ଜଳି' (କବିତା ପୁସ୍ତକ) ସମ୍ପର୍କିତ ଆଲୋଚନା ସ୍ମରଣୀୟ । ମଧୁବାବୁଙ୍କ 'ପ୍ରବନ୍ଧମାଳା'ରେ ସନ୍ନିବିଷ୍ଟ ଥିବା ପ୍ରବନ୍ଧ ଯେଉଁ ଉଦ୍ଦେଶ୍ୟରେ ସଙ୍କଳିତ ହୋଇଅଛି ସେହି ଉଦ୍ଦେଶ୍ୟ ସୁଚାରୁରୂପେ ସାଧିତ ହେବ ବୋଲି ଶ୍ରୀ ରାୟ ଅଭିମତ ପ୍ରଦାନ କରିଛନ୍ତି । 'ପ୍ରବନ୍ଧମାଳା' ଛାତ୍ର ପାଠ୍ୟୋପଯୋଗୀ ପୁସ୍ତକ । ତହିଁରେ ଥିବା ଅନୂଦିତକୃତି ସମ୍ପର୍କରେ ତାଙ୍କ ମୂଲ୍ୟାୟନ ଦୃଷ୍ଟି ପୂର୍ବରୁ ଆଲୋଚିତ । ସାହିତ୍ୟରେ କଳ୍ପନାଭିନ୍ନ ବାସ୍ତବତା, ଭାବବ୍ୟଞ୍ଜକ ଭାଷା ବ୍ୟବହୃତ ହେବା ଆବଶ୍ୟକ ବୋଲି ସେ ଅନୁଭବ କରିଛନ୍ତି । ତେଣୁ ସମାଲୋଚନାର ନିଷ୍କର୍ଷରେ ଉଲ୍ଲେଖ କରିଛନ୍ତି—''ପ୍ରାଚ୍ୟ ଜାତିର କଳ୍ପନାବୃତ୍ତି ସ୍ୱଭାବତଃ ଅତ୍ୟନ୍ତ ପ୍ରବଳ, ସେଥିଉପରେ ପୁଣି କଳ୍ପନା ପ୍ରସୂତ ଗ୍ରନ୍ଥମାନଙ୍କର ନିରତିଶୟ ଚର୍ଚ୍ଚାଦ୍ୱାରା ପ୍ରାଚ୍ୟମନ ନିତାନ୍ତ ସୁକୁମାର ଏବଂ ନିସ୍ତେଜ ହୋଇ ଯାଇଅଛି । ଏହି ବୈଷମ୍ୟ ନିରାକରଣ ଏବଂ ସମତା ପ୍ରତିଷ୍ଠାପନ ନିମନ୍ତେ ଜୀବନ୍ତ

ସତ୍ୟାଶ୍ରିତ ବିଷୟର ଅନୁଶୀଳନ ନିତାନ୍ତ ଆବଶ୍ୟକ ।'' ଦାମୋଦର ମିଶ୍ରଙ୍କ କବିତା ପୁସ୍ତକର ସମାଲୋଚନା କାଳରେ 'ପ୍ରତ୍ୟେକ କବିତା ନ୍ୟୂନାଧିକରେ ପ୍ରତିଭା ଓ ଭାବୁକତାର ପରିଚାୟକ'' ବୋଲି ଉଲ୍ଲେଖ କରଅଛନ୍ତି । ପ୍ରକୃତି ସେବାରୁ ଭାବପ୍ରଧାନ କବିତା ରଚନା ସମ୍ଭବର । ଶବ୍ଦପ୍ରଧାନ କବିତା ଉଦ୍ଦେଶ୍ୟରେ ଜଣେ ସଂସ୍କୃତ ପଣ୍ଡିତଙ୍କ ପଙ୍କ୍ତି ଉଦ୍ଧାର କରି ନିଜ ବିରୋଧୀ ମାନସର ପରିଚୟ ଦେଇଛନ୍ତି । ତାଙ୍କର ଚିଠିପତ୍ରରେ ବି ସମାଲୋଚକର ଏବଂବିଧ ତତ୍ତ୍ୱନିଷ୍ଠ ଶାସ୍ତ୍ରୀୟ ଦୃଷ୍ଟିକୋଣ ବେଳେ ବେଳେ ପ୍ରତିଫଳିତ ହୋଇଥିବା ଦେଖାଯାଏ । ସେ ଜାଣିଥିଲେ; ''ସାହିତ୍ୟ ଚର୍ଚ୍ଚା ଗୋଟିଏ, ଜୀବନବ୍ୟାପୀ ବ୍ରତ । ପୁଣି ସାହିତ୍ୟାନୁରାଗ ଗୋଟିଏ ଈଶ୍ୱର ଦତ୍ତ ପଦାର୍ଥ ।''[୨୧] ତେଣୁ ସେହି ବ୍ରତରେ ସତ୍ ସମାଲୋଚନା ଦୃଷ୍ଟିକୁ ସେ ଶାଣିତ କରିଥିଲେ । ଅନ୍ୟ ଏକ ଚିଠିରେ ଗୋବିନ୍ଦବାବୁଙ୍କ କବିତାରେ 'ପ୍ରସାଦ ଗୁଣର ଅଭାବ, କ୍ଲିଷ୍ଟତା, ଅପ୍ରଚୁର ଶବ୍ଦପ୍ରୟୋଗ, ଦୂରନ୍ୱୟ, ଦୂଷିତ ମିତ୍ରାକ୍ଷର ପ୍ରଭୃତି ଦୋଷମାନ' ଥିବା ସ୍ୱୀକାର କରିଛନ୍ତି । ହେଲେ ଆପେକ୍ଷିକ ଭାବେ ଦୋଷ ଓ ଗୁଣର ବିବେଚନା କରିଥିବା କଥା ଦର୍ଶାଇଛନ୍ତି ।[୨୨]

ପୁସ୍ତକର 'ଭୂମିକା' ରଚନା, ପୁସ୍ତକର 'ମନ୍ତବ୍ୟ' ପ୍ରଦାନ, ପୁସ୍ତକରେ 'ସମାଲୋଚନା' ଓ ଭିନ୍ନ ଭିନ୍ନ ଚିଠିପତ୍ରରୁ ତାଙ୍କ ସମାଲୋଚକୀ ଗଦ୍ୟର ଦୃଷ୍ଟାନ୍ତ ଉପଲବ୍ଧ ହୁଏ । ତାରି ଭିତ୍ତିରେ ରାଧାନାଥଙ୍କ ସାହିତ୍ୟିକ ପାଣ୍ଡିତ୍ୟ ନିର୍ଣ୍ଣୀତ ହୋଇପାରିବ । ସେ କାଳରେ 'ଗୁଣଦର୍ପଣ' ପତ୍ରିକାର ସମ୍ପାଦକଙ୍କ ନିକଟକୁ ଗୋଟିଏ ପତ୍ରରେ ସେ ଲେଖିଥିଲେ—''ପୁରାତନ ବଙ୍ଗଳା ପୁସ୍ତକ କିମ୍ବା ମାସିକ ପତ୍ରିକାର ପ୍ରବନ୍ଧ ନେଇ ତାହାକୁ ଅନୁବାଦ ଓ ଈଷତ୍ ରୂପାନ୍ତରିତ କରି ଉତ୍କଳୀୟ ସାଧାରଣ ସମକ୍ଷରେ ମୌଳିକ ପ୍ରବନ୍ଧ ବୋଲି ଉପସ୍ଥାପିତ କରିବାର ସୁକୌଶଳରେ ଅନେକ ତଥାକଥିତ ଓଡ଼ିଆ ଲେଖକ ସିଦ୍ଧହସ୍ତ ଦେଖାଯାନ୍ତି ।'' (ଗ୍ରନ୍ଥାବଳୀ, ପୃ-୪୪୨) ସେହି ଚିଠିରେ 'ପଦ୍ୟ ଓ କବିତା'କୁ ଏକପଦାର୍ଥ ବୋଲି ଭାବୁଥିବା ଆଲୋଚକଙ୍କୁ ସେ ଆକ୍ଷେପ କରିଛନ୍ତି । ଏଥିରୁ ରାଧାନାଥଙ୍କ ସମାଲୋଚକ-ମନୀଷା କେତେ ଗଭୀର ଓ ତୀକ୍ଷ୍ଣ ତାହା ଉପଲବ୍ଧ ହୁଏ । ଏବକାର ଓଡ଼ିଆ ଭାଷା-ସାହିତ୍ୟର ଅନେକ ସମାଲୋଚକଙ୍କ କୃତିର ଚହଲା ପାଣିରେ ସମାଲୋଚକ ରାଧାନାଥଙ୍କ ଅବିକଳ ପ୍ରତିବିମ୍ବନକୁ ଚିହ୍ନି ହୁଏ । ରାଧାନାଥଙ୍କ ସର୍ଜନ ପ୍ରତିଭା କି କବିତା କି ଗଦ୍ୟ ସବୁଠି ଯେ କାଳୋତ୍ତୀର୍ଣ୍ଣତାର ଆଲିମ୍ପନ ଅଙ୍କନ କରିଯାଇଛି; ମୁକ୍ତକଣ୍ଠରେ ତାହା ସ୍ୱୀକାର କରାଯାଇ ପାରେ ।

୨୧- ପଟ୍ଟନାୟକ ଦେବୀ ପ୍ରସନ୍ନ— କବିଲିପି (୧୯୫୭), ପୃ-୮୫

୨୨- ସାମନ୍ତରାୟ ନଟବର— ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି(୧୯୬୪), ପୃ-୪୧

॥ ୭ ॥

ଦୁଇଜଣ ସାରସ୍ୱତ ସ୍ରଷ୍ଟାଙ୍କ ମୃତ୍ୟୁରେ ସ୍ମୃତିଚାରଣ ପୂର୍ବକ ପ୍ରବନ୍ଧ ରଚନା କରିଛନ୍ତି ରାଧାନାଥ । ସଂସ୍କୃତ କବିତା ରଚନାରେ ସିଦ୍ଧହସ୍ତ ଦାଶରଥି କବିଚନ୍ଦ୍ରଙ୍କ ମୃତ୍ୟୁରେ ବ୍ୟଥିତ ହୋଇ ସେ ଲେଖିଥିଲେ—'ଉତ୍କଳାକାଶରୁ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ଅସ୍ତମିତ ହୋଇଅଛି । ପଣ୍ଡିତ ଦାଶରଥି କବିଚନ୍ଦ୍ର ମାନବଲୀଳା ସମ୍ବରଣ କରିଛନ୍ତି । ଏହାଙ୍କ ପରି ସଂସ୍କୃତଜ୍ଞ ଓଡ଼ିଶାରେ ନାହାନ୍ତି ଏହା ମୁଁ କହୁ ନାହିଁ, ମାତ୍ର ଏହାଙ୍କର ଯେଉଁ ଅସାଧାରଣ ଶକ୍ତିଥିଲା, ସେଥିର ଉଦାହରଣ ଓଡ଼ିଶାରେ ଦୁର୍ଲଭ ।" [ପରଲୋକଗତ ଦାଶରଥି କବିଚନ୍ଦ୍ର-ସଂସ୍କାରକ ୩/୫ (୩୦-୧-୧୮୮୬)][୨୩] ଦେବଗଡ଼ ରାଜା ବାସୁଦେବ ସୁଢ଼ଳଦେବଙ୍କ ମୃତ୍ୟୁରେ ସେ ଲେଖିଥିଲେ-"ବାସୁଦେବ କେବଳ ବିଧିର ନୃପତି ନଥିଲେ, ସେ ନିସର୍ଗର ନୃପତି । ରାଜୋଚିତ ଗୁଣ ଥାଉ ବା ନଥାଉ, କେବଳ ମାତ୍ର ଜନ୍ମ ହେବାର କଷ୍ଟ ସ୍ୱୀକାର କରିଥିବା ଦାବୀରୁ ଅଧିକାଂଶ ରାଜା ରାଜା ହୁଅନ୍ତି । +++ ବାସୁଦେବ ମଧ ଏହିପରି ଭାଗ୍ୟଧର ହୋଇ ଜନ୍ମଗ୍ରହଣ କରିଥିଲେ ସତ୍ୟ, ମାତ୍ର ସେ ଯେ ପୂର୍ଣ୍ଣମାତ୍ରାରେ ଏହି ସୌଭାଗ୍ୟର ଉପଯୁକ୍ତ ଥିଲେ, ତାହାଙ୍କ ଅମୂଲ୍ୟ ଜୀବନ ସେଥିର ଅଭ୍ରାନ୍ତ ସମର୍ଥନ ଅଟେ ।" (ଗ୍ରନ୍ଥାବଳୀ, ପୃ-୪୨୭) । ଏଭଳି କୌଣସି ବିଶିଷ୍ଟ ବ୍ୟକ୍ତିତ୍ୱଙ୍କ ତିରୋଧାନ ପରେ ତାଙ୍କର ପ୍ରାବନ୍ଧିକ ସ୍ମୃତିଚାରଣରେ ଉପର୍ଯ୍ୟୁକ୍ତ ପ୍ରବନ୍ଧ ଦୁଇଟି କେବଳ ସର୍ବାଦ୍ୟ ନୁହେଁ ଅଭିନବ ପ୍ରଚେଷ୍ଟା ମଧ ।

ରାଧାନାଥଙ୍କ ଗଦ୍ୟ ରଚନାରେ ଗୋଟିଏ ଲିଖିତ ଅଭିଭାଷଣ ସୁଲଭ ହୁଏ । ରାଧାନାଥ ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନରେ ଏକ ଲିଖିତ ଭାଷଣ ପ୍ରଦାନ କରିଥିଲେ । ୧୯୦୩ ମସିହାରେ ସେହି ଭାଷଣରେ ସେ ସୂଚାଇଥିଲେ—'ଜାତିକୁ ଉନ୍ନତ କରିବାକୁ ହେଲେ ଉନ୍ନତ ଜାତୀୟ ସାହିତ୍ୟ ନିତାନ୍ତ ପ୍ରୟୋଜନୀୟ । ସେଭଳି ସାହିତ୍ୟ ପାଇଁ କାର୍ଯ୍ୟ ଆରମ୍ଭ ହେବା ଉଚିତ୍ । ଖାଲି କଥାରେ ଚୁଡ଼ା ତିନ୍ତିବ ନାହିଁ ।" ସେହିପରି ବିନା ଉତ୍ସାହରେ ଜାତୀୟ ସାହିତ୍ୟ ରଚନା ସମ୍ଭବପର ନୁହେଁ ବୋଲି ସେ କହିଥିଲେ । ଅଭିଭାଷଣଟି ସଂକ୍ଷିପ୍ତ, ଭାବାବୋଧ ଦୃଷ୍ଟିରୁ ପ୍ରାଞ୍ଜଳ ଓ ଯୁକ୍ତିନିଷ୍ଠ ଗଦ୍ୟର ନିଦର୍ଶନ ।

ନଗେନ୍ଦ୍ର ବାଳାଙ୍କ ସହ ଅବୈଧ ସମ୍ପର୍କ ହେତୁ ରାଧାନାଥ ଜୀବନର ଶେଷ ପର୍ଯ୍ୟାୟରେ ତୀବ୍ର ମାନସିକ ଯନ୍ତ୍ରଣା ଭୋଗ କରିଥିଲେ । କ୍ଷମାପ୍ରାର୍ଥୀ ସ୍ୱାମୀଭାବେ ପତ୍ନୀଙ୍କ ଉଦ୍ଦେଶ୍ୟରେ 'ସତୀପ୍ରତି ସତୀଦ୍ରୋହୀ ପତିର ଉକ୍ତି' କବିତା ଲେଖିଥିଲେ ।

୨୩- ଦାଶ, ଦେବେନ୍ଦ୍ର— 'ବଙ୍ଗୀୟ କାବ୍ୟଗ୍ରନ୍ଥର ରାଧାନାଥଙ୍କ ରଚିତ ଦୁଇଟି ଭୂମିକା'— ଏଷଣା-୧୮/୧୯୮୯, ପୃ-୧୭୨ ।

'ନିବେଦନ' ଶୀର୍ଷକରେ କବିତା ଲେଖି ବାଣ୍ଟିଥିଲେ । ତଥାପି ହୃଦୟର ବ୍ୟଥା ଅପ୍ରଶମିତ ରହିଲା । ସେହି କଥାକୁ 'ଆତ୍ମକଥାର କିୟଦଂଶ' ଭାବେ ଗଦ୍ୟରେ ରଚନା କରିଥିଲେ ସେ । ଏହା ତାଙ୍କ ଉତ୍କୃଷ୍ଟ ଗଦ୍ୟ କଳାର ନମୁନା ନୁହେଁ । ତେବେ ଆତ୍ମଜୈବନିକ ଶୈଳୀରେ ପାଠକଙ୍କୁ ଭାବାବିଷ୍ଟ କରିବାରେ ତହିଁର ସାର୍ଥକତା ସ୍ୱୀକାର୍ଯ୍ୟ । ଯେପରି—''ମୁଁ ବାର୍ଦ୍ଧକ୍ୟରେ କଳଙ୍କ ଦେଲି, ମନୁଷ୍ୟ ନାମରେ କଳଙ୍କ ଦେଲି, ପବିତ୍ର ଶିକ୍ଷାବିଭାଗରେ କଳଙ୍କ ଦେଲି, ପାପର ଏଭଳି କୁଦୃଷ୍ଟାନ୍ତ ଜଗତରେ ବିରଳ ।''

॥ ୮ ॥

ରାଧାନାଥଙ୍କ ଗଦ୍ୟସାଧନା ତାଙ୍କ କାବ୍ୟସ୍ଫୂର୍ତ୍ତିର ପରିପୂରକତା ନୁହେଁ । ତେବେ କବିତ୍ୱକୁ ସଂକ୍ଷିପ୍ତ ସାର ରୀତିର ଶବ୍ଦରେ ପ୍ରକାଶ କରିବାରେ ତହିଁର ସାର୍ଥକ ସାଧନା ନିଷ୍ଫଳ ହୋଇ ନାହିଁ । ଅପରପକ୍ଷେ 'ଭ୍ରମଣ ସାହିତ୍ୟ', 'ଜୀବନୀମୂଳକ ପ୍ରବନ୍ଧ', 'ଗଳ୍ପ ରଚନାର ନମୁନା', 'ଗ୍ରନ୍ଥ ସମୀକ୍ଷା', 'ସମାଲୋଚନା', 'ସ୍ୱୀକାରୋକ୍ତି' ଓ 'ପତ୍ର ରଚନା' ଭଳି ବହୁବିଧ ଗଦ୍ୟଶୈଳୀ ସମ୍ପର୍କରେ ଅବହିତ ହୋଇହୁଏ ରାଧାନାଥଙ୍କ ଗଦ୍ୟରୁ । ତାଙ୍କ ଗଦ୍ୟକୁ ଅନାଲୋଚିତ ରଖି ତାଙ୍କୁ ଯୁଗପ୍ରବର୍ତ୍ତକ କବିଭାବେ ଆଖ୍ୟାୟନ କରିବା ନିରର୍ଥକ । ରାଧାନାଥ ଥିଲେ, ଶାସ୍ତ୍ରୀୟ ଦୃଷ୍ଟିରୁ କବି । 'କବିନଃ କ୍ରାନ୍ତଦର୍ଶିନଃ' । 'ଗଦ୍ୟଂ କବୀନାଂ ନିକଷଂ ବଦନ୍ତି' ସମ୍ପର୍କରେ ଅବହିତ ଥିବା ସ୍ରଷ୍ଟା । ତେଣୁ ରାଧାନାଥଙ୍କ ଗଦ୍ୟଚାତୁରୀ ନିରୂପିତ ନ ହେବା ପର୍ଯ୍ୟନ୍ତ ତାଙ୍କୁ ଆଧୁନିକ ଚେତନାର ଜନକ କହିବାର ମାନେଇ କିଛି ହୁଏନା ।



# ରାଧାନାଥଙ୍କ କାବ୍ୟ ଭାଷା ଓ ତା'ର ଉତ୍ତରଣ ପ୍ରସଙ୍ଗ

ଡଃ ଶରତଚନ୍ଦ୍ର ପ୍ରଧାନ

କବିତା ଉର୍ବଶୀ ପରି । ସେ ମାତା ନୁହେଁ, କନ୍ୟା ନୁହେଁ, ବଧୂ ବି ନୁହେଁ । ଅଦେହୀ ସତ୍ତାର ସଦେହୀ ରୂପ ସେ । ଭାଷା ପ୍ରତିମାଟିଏ । ସେ ବିଶ୍ୱମାନସର ପ୍ରେୟସୀ । ଅନନ୍ୟ ରୂପସୀ । ସେ କାହା ଅଗଣରେ ବନ୍ଦିନୀ ହୋଇ ରହେନା । ନିତ୍ୟ ବିବର୍ତ୍ତମାନ ଭାବସତ୍ତା । ଯୁଗଯୁଗାନ୍ତରରେ କବିତାର ଭାଷାଗତ ପରିବର୍ତ୍ତନ ଜାଣି ହୁଏ । ତାର ଫଳଶ୍ରୁତି ହେଉଛି କାବ୍ୟଭାଷା ।

ଯୁଗ ଶବ୍ଦଟି ବଡ଼ ବିଭ୍ରାନ୍ତିକର । କେତେବେଳେ କେଉଁ ଯୁଗ ଆସେ ତାକୁ ସହଜେ ଚିହ୍ନଟ କରି ହୁଏନା । ଏକ ଯୁଗର କାବ୍ୟଭାଷାରେ ଅନ୍ୟଯୁଗର କାବ୍ୟ ଭାଷାର ପ୍ରଭାବ ବି ପଡ଼େ । ଫଳତଃ କୌଣସି ଯୁଗର କାବ୍ୟଭାଷା ସେହିଯୁଗର ସେହି ଯୁଗର ନିରୁତା ପ୍ରତିନିଧି ନୁହେଁ । ଏଣୁ ରାଧାନାଥଙ୍କ କାବ୍ୟଭାଷା ବିଚାର କଲାବେଳେ ନାନା ପ୍ରଶ୍ନ ମନରେ ଉଦେ ହେବା ସ୍ୱାଭାବିକ ।

ରାଧାନାଥଙ୍କ କାଳ କହିଲେ ସାଧାରଣତଃ ଊନବିଂଶ ଶତକର ଶେଷ ତିନୋଟି ଦଶନ୍ଧି ଓ ବିଂଶ ଶତକର ପ୍ରଥମ ଦୁଇଟି ଦଶନ୍ଧିର ସମୟସୀମାକୁ ବୁଝାଇଥାଏ । ଅବଶ୍ୟ କେହି କେହି ଊନବିଂଶ ଶତକରେ ରାଧାନାଥ ଯୁଗର ସମାପ୍ତି ଘୋଷଣା ବି କରିଥାନ୍ତି; ମାତ୍ର ଚେତନାର ଅଭିବ୍ୟକ୍ତି ଓ ଭାଷା ପ୍ରୟୋଗ ଦୃଷ୍ଟିରୁ ଆଲୋଚ୍ୟ ପାଞ୍ଚଟି ଦଶନ୍ଧିରେ ରାଧାନାଥୀ କାବ୍ୟଭାଷାର ସ୍ୱର ଓ ସାମ୍ପନ୍ନ ଯନ୍ତ୍ରୋନ ମୁଠଙ୍କ ଅନ୍ୱାଧିକେ ଅନୁଭବ କରି ପାରିବେ ।

ରାଧାନାଥ ଥିଲେ, ସଚେତନ କାବ୍ୟଶିଳ୍ପୀ । ସେ ବହୁ ସମୟରେ କାବ୍ୟମାୟା ସୃଷ୍ଟି କରି ଯାଇଛନ୍ତି । ଅସରଳ କଥା କହି ପାଠକମାନଙ୍କୁ ବିଭ୍ରାନ୍ତ ବି କରିବାକୁ ପଶ୍ଚାଦ୍‌ପଦ ହୋଇ ନାହାନ୍ତି । ଇନ୍ଦ୍ରଧନୁ ବିଜୁଳି ବିବାଦର ପୂର୍ଣ୍ଣାହୁତି ଦେବାକୁ ଯାଇ ସେ ଏକଦା ଲେଖିଥିଲେ—

"ଭଞ୍ଜକବିଙ୍କୁ ମୁଁ ମୋହର ଏକତର ଗୁରୁଜ୍ଞାନ କରି ଆବାଲ୍ୟ ଭକ୍ତି କରି ଆସୁଅଛି । ମୁଁ ଯେ କେବଳ ବାହ୍ୟତଃ ଭକ୍ତି ଦେଖାଇ ଅଛି, ତାହା ନୁହେଁ; କାର୍ଯ୍ୟତଃ ଭକ୍ତି ଦେଖାଇବାର ଅନେକ ନିଦର୍ଶନ ମୋହର ନିଜର ପ୍ରକାଶିତ ପଦ୍ୟରୁ ସଙ୍କଳିତ

ହୋଇପାରେ । ମୋହଠାରୁ ଭଞ୍ଜଙ୍କର ଅଧିକ ଅନୁକରୀ ଲେଖକ ଓଡ଼ିଶାରେ ବୋଧହୁଏ ଅନ୍ତବାହାରିବେ ।''

ରାଧାନାଥଙ୍କ ଏ ଉକ୍ତିର ନିରୁତା ସତ୍ୟତା ଥିଲା ପରି ମନେହୁଏନା । କାବ୍ୟଚେତନା ଦୃଷ୍ଟିରୁ ସେ ଭଞ୍ଜ ଅନୁକରୀ ଲେଖକ ନୁହନ୍ତି । ପ୍ରଣୟ ଓ ପରିଣୟ ତାଙ୍କ କାବ୍ୟର ଶେଷ ନିଷତ୍ତି ନୁହେଁ । ତେବେ କାବ୍ୟଭାଷା ଓ ବାଚନଭଙ୍ଗୀ କ୍ଷେତ୍ରରେ ସେ କିୟତ୍ ପରିମାଣରେ ପୂର୍ବସୂରୀ ଉପେନ୍ଦ୍ରଙ୍କର ଅନୁସରଣ କରିଛନ୍ତି । ଏଣୁ ରାଧାନାଥଙ୍କ କାବ୍ୟଭାଷା ବିଚାର କଲାବେଳେ ରୀତିକାଳର କାବ୍ୟଭାଷା ବେଳେ ବେଳେ ଭସାମେଘ ପରି ପାଠକମନରେ ଦେଖାଦିଏ । କାବ୍ୟ ମୀମାଂସାରେ 'ନାସ୍ତ୍ୟଚୋରଃ କବିଜନୋ' କଥାଟି କୁହାଯାଇଛି । ପ୍ରତ୍ୟେକ କବି ପୂର୍ବବର୍ତ୍ତୀ କବିର ଚେତନା ଓ କାବ୍ୟର ଭାଷା ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ କଥା । ରାଧାନାଥଙ୍କ କାବ୍ୟଭାଷାରେ ଉପେନ୍ଦ୍ର, କବିସୂର୍ଯ୍ୟ ବଳଦେବ ପରି ବିଖ୍ୟାତ କବିଙ୍କ କାବ୍ୟଭାଷାର ଭସାଣିଆ ଛାଇ ପଡ଼ିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ରାଧାନାଥଙ୍କ କାବ୍ୟଭାଷାର ବିଚାର କଲାବେଳେ ରୀତିକାବ୍ୟ ପ୍ରତି ଏ କାଳର ବିଶିଷ୍ଟ କବି ସଚ୍ଚି ରାଉତରାୟଙ୍କ ଉକ୍ତିଟିକୁ ସ୍ମରଣ କରାଯାଇପାରେ—

''ସୁନ୍ଦରୀ ତୁମେ ସନ୍ଦେହ ନାଇ
ଶହେବାର କହିବି ତୁମେ ସୁନ୍ଦରୀ
କିନ୍ତୁ ତୁମର ଏଇ ସୁନ୍ଦର ପଣିଆଁ ହିଁ
ତୁମକୁ ଯାଇଚି ବଳି ।
ତେଣୁ ମନେହୁଏ, ମୁଖ ନୁହଁ, ତାହା ମୁଖା ।
ଛାଞ୍ଚେ ଗଢ଼ା ପ୍ରତିମାଟି ପରି
ନିୟମର ମାପରେ ତିଆରି
ପଦେ ପଦେ ଶୃଙ୍ଖଳାର ସୁବର୍ଣ୍ଣ ଶିଙ୍କୁଳି ।
× × × × ×
ବେଳେ ବେଳେ ମନେ ଲାଗେ ଶଙ୍କା
ତୁମେ ଅବା କେଉଁ ଏକ ସର୍କସ ବାଳିକା
ସୁଲଳିତ ଦେହଟିକୁ ବଳି ବଳି
[illegible] ବୁଜ କାଚର ଏକ ଦୀପଧାରେ
ଯେପରି ବା ପରିମିତ
ତୁମେ ଏକ ଶିଖା ।''

ଏ କାବ୍ୟାଂଶରେ ରୀତିକାଳର ସ୍ୱରୂପ ଉଦ୍‌ଘାଟିତ । ତାହା କିପରି ଏକ କୃତ୍ରିମ ପ୍ରୟାସ, ଏହା ସୂଚାଇ ଦିଆଯାଇଛି । ଛାଞ୍ଚେ ଗଢ଼ା ପ୍ରତିମା, ନିବୁଜ କାଚର ଧାରେ ପରିମିତ ଦୀପଶିଖା ପରି ଚିତ୍ରକଳ୍ପ ଯେପରି ରୀତିକାବ୍ୟର ଭାବସଂବାହୀ ସେହିପରି ତାର ସ୍ଥାପତ୍ୟଧର୍ମର ସୂଚକ ମଧ । ଏଥିରେ ରୀତିକାଳର କାବ୍ୟଭାଷାର କୃତ୍ରିମ ପରିପ୍ରକାଶକୁ 'ସର୍କସ ବାଳିକା' ସହ ତୁଳନା କରାଯାଇଛି ।

ରାଧାନାଥ ଓଡ଼ିଆ କାବ୍ୟ ସରସ୍ୱତୀଙ୍କୁ ସର୍କସ ବାଳିକା ଅଭିଧାରୁ ମୁକ୍ତ କଲେ । କାବ୍ୟ-ଭାରତୀ ବିଦଗ୍ଧା ହେଲେ ହେଁ, ନିତ୍ୟ ସଞ୍ଚାରିଣୀ ନାରୀ ଭାବେ ଦେଖାଦେଲା । ତାହା କବିକୁ ଆକୁଳ କଲା, ବାଙ୍‌ମୟ କଲା, ମୂର୍ତ୍ତ କଲା ଓ ନିଜକୁ ଆବି... କଲା । ଏଣୁ ରାଧାନାଥ ସମୀକ୍ଷକଙ୍କ ଦୃଷ୍ଟିରେ ଯୁଗପତ୍ ଭାବରେ ଭଞ୍ଜ ସାହିତ୍ୟର ଜୀବନସଂଧ୍ୟା ଓ ନବଯୁଗର ଜୀବନ ପ୍ରଭାତର ପ୍ରବକ୍ତା ହୋଇ ଉଠିଥିଲେ ।

ରାଧାନାଥଙ୍କ କାବ୍ୟଭାଷାରେ ରୀତିକାଳ ଓ ସମକାଳର ଅପୂର୍ବ ବୁଣାଟ ଲକ୍ଷ୍ୟ କରାଯାଇପାରେ । ରୀତିଯୁଗର କବିମାନେ କାବ୍ୟଭାଷା ଚୟନ କାଳରେ ସଂସ୍କୃତ କାବ୍ୟତତ୍ତ୍ୱର ଅନୁସରଣ କରୁଥିଲେ । ସଂସ୍କୃତରେ ବୈଦର୍ଭୀ, ଗୌଡ଼ୀ, ଓଜ ଓ ...ସାଦ ପରି ରୀତି ଓ ଗୁଣକୁ ସ୍ୱୀକୃତି ଦିଆଯାଇଛି ।

ରାଧାନାଥ ମୁଖ୍ୟତଃ କାବ୍ୟର କବି । ତାଙ୍କ କାବ୍ୟଭାଷା ଚୟନରେ ତତ୍‌ସମ, ତଦ୍‌ଭବ, ଦେଶଜ ଓ ସ୍ଥଳ ବିଶେଷରେ ବୈଦେଶିକ ଶବ୍ଦର ସମବାୟ ଲକ୍ଷିତ ହୁଏ । 'ମହାଯାତ୍ରା'ରୁ କେତୋଟି ଦୃଷ୍ଟାନ୍ତ ନିଆଯାଉ—

(କ) ଜରାଜୀର୍ଣ୍ଣ ଦେଉଳର ତାମସଗରଭେ
ସଂସ୍କାର ସକାଶେ ଯେବେ ଜାଳଇ ସ୍ଥପତି
ଦଉଡ଼ି, ତା, ଶିଖାଯେହ୍ନେ ଦିଅନ୍ତି ଲିଭାଇ ।
ଡେଣା ବିଞ୍ଚି ଚିରତମଃ ସଞ୍ଚରୀ ଚିମଣି
ପଲପଲ ବାହାରି ସେ ଦେଉଳ-ସନ୍ଧିରୁ
ସେହି ରୂପେ ଏହି ଜ୍ଞାନ-ପ୍ରଦୀପର ଶିଖା
ଲିଭାଇ ଦେବେଟି ବେଗେ ସ୍ୱାର୍ଥାନ୍ଧ ଦ୍ୱିଜାତି ।

(ଖ) ଗୃହସ୍ଥ ସଞ୍ଚୟପଟୁ ଯତନେ ସମ୍ପାଦି
ସମ୍ପତ୍ତିକି ଠୁଳ କରି ରଖି ଆଟୁଘରେ
ନିଶ୍ଚିନ୍ତ ରହଇ ଅଗ୍ନିଭୟ ମନେ ମନେ
ଦୈବେ ଯେବେ ଦେଖେ ବହ୍ନି ଆଟୁ ମଞ୍ଚତଳେ
ଗୃହପତି, କାତର ସେ ହୁଅଇ ଯେସନେ

ବିପ୍ର କ୍ଷତ୍ରିୟର ଭାବୀ ଅବନତି ଶୁଣି
କାତର ତେସନେ ହେଲେଏ କୌନ୍ତେୟ ସୁମତି ।

ଏଠାରେ ବୌଦ୍ଧଧର୍ମର ବିଲୋପ ସାଧନରେ ବ୍ରାହ୍ମଣଗୋଷ୍ଠୀ ସମ୍ପର୍କରେ ବର୍ଣ୍ଣନାପ୍ରଦତ୍ତ । ତତ୍ସମ, ତଦ୍ଭବ ଶବ୍ଦର ସହ ଦେଶଜ ଶବ୍ଦ ମନୋଜ୍ଞ ବିନ୍ୟାସକୁ ଏଠାରେ ଲକ୍ଷ୍ୟ କରାଯାଇପାରେ । 'ଜରାଜୀର୍ଣ୍ଣ' ତତ୍ସମ ଶବ୍ଦ ସହ ଦେଉଳ ପରି ତଦ୍ଭବର, ଡେଣାବିଞ୍ଛି ତଦ୍ଭବ ସହ ତମଃ ସଞ୍ଚାରୀ ତତ୍ସମ ଓ ଚିମିଣି ଦେଶଜର; ସମ୍ପତ୍ତିକି ଠୁଳ କରି ରଖି ଆଟୁଘରେ'ରେ ତଦ୍ସମ ତଦ୍ଭବ ଓ ଦେଶଜର ସଂହତ ସମାବେଶକୁ ଦେଖିହୁଏ ।

ରାଧାନାଥଙ୍କ କାବ୍ୟରେ ଦେଶଜ ଓ ବୈଦେଶିକ ଶବ୍ଦ କମ ଆଦର ପାଇନାହାନ୍ତି । ରାଧାନାଥଙ୍କ ଯାଦୁକରୀ ସ୍ପର୍ଶରେ ତତ୍ସମ ଓ ତଦ୍ଭବ ସହ ଅଙ୍ଗାଙ୍ଗୀ ଭାବେ ମିଶି ଯାଇଛନ୍ତି ।

"ଶାରୀ, ଶୁଆ, ଶ୍ୟାମା , ତୁତ ଚଷାପୁଅ
ଦୟାଳୁ ପୁଣି ମୁନିଆ
ନେତ୍ରୋତ୍ସବେ କର୍ଣ୍ଣୋତ୍ସବ ବିହୁଥିଲେ
ସେ ବନେ ହୋଇ କୁଣିଆ ।"

—ଯଯାତି କେଶରୀ

ରୋମାଣ୍ଟିକ୍ ପରିବେଶ ସୃଷ୍ଟି କରିବାକୁ ବନାନୀର ବର୍ଣ୍ଣନା ପ୍ରସଙ୍ଗରେ ଅଜଣା ଅଶୁଣା ପକ୍ଷୀମାନେ ଆସିଛନ୍ତି । ଏଠାରେ ଦେଖିବାର କଥା—କୁଣିଆ ପରି ଦେଶଜ ଶବ୍ଦଟି ତତ୍ଭବ ଓ ତଦ୍ସମ ଭିତରେ ଯୋଡ଼ି ହୋଇ ଯାଇଛି । ସେହିପରି 'କେହୁ ବୋଲେ ମୁହିଁ ଅଟଇ ପୁଲିଶ/ବିନା ମେଘେ ସୃଜି ପାରଇ କୁଳିଶ'ରେ 'ପୁଲିଶ' ବୈଦେଶିକ ଶବ୍ଦଟି ତଦ୍ଭବ ଶବ୍ଦ ମଧ୍ୟରେ ଗୁନ୍ଥି ହୋଇ ରହିଛି । ତେବେ ରାଧାନାଥ ଶବ୍ଦ ଚୟନ କଲାବେଳେ ବହୁ ସମୟରେ ଅପୂର୍ବ କାବ୍ୟ କୌଶଳ ପ୍ରଦର୍ଶନ କରି ଯାଇଛନ୍ତି । 'ଉଷା'ରୁ ପଙ୍କ୍ତିଟିଏ ନିଆଯାଉ—

"ଇନ୍ଦ୍ରାୟୁଧେ ତା'ର ଅଧ-ବିମ୍ବେ ନଭେ ଯେଉଁ ତୁଳନା
ତହିଁ ବଳି ଇନ୍ଦୁ ସାଙ୍ଗେ ସୁନ୍ଦରୀର ତୁଳା ଅଳଣା ॥"

ଏଠାରେ ଉଷାର ମୁଖ ଶୋଭା ବର୍ଣ୍ଣିତ । ପଦାର୍ଥ ବିଦ୍ୟାର real image ଓ invert image ଧାରଣାଟିକୁ ହୁଏତ ସ୍ମରଣ କରାଯାଇପାରେ । ଇନ୍ଦ୍ରଧନୁର ସାତୋଟି ରଙ୍ଗରୁ ତିନୋଟି ହିଁ (ଲାଲ, ହଳଦିଆ, ସବୁଜ) ପ୍ରାଥମିକ ରଙ୍ଗ, ଅନ୍ୟ ଚାରୋଟି ଦ୍ୱିତୀୟକ ରଙ୍ଗ (secondary colour) । ବସ୍ତୁତଃ କବି ଗତାନୁଗତିକ

ମେଟାଫରଟିଏ ଦେଇ 'ଅଲଣା' ପରି ଗ୍ରାମ୍ୟ ଅଥଚ ଭାବସଂବାହୀ ଶବ୍ଦ ଚୟନ କରି କାବ୍ୟମାୟା ସୃଷ୍ଟି କରିଛନ୍ତି ।

ଚିଲିକା ରାଧାନାଥ କାବ୍ୟ ମାନସର ସାର୍ଥକ ସିଦ୍ଧି । ଏହାକୁ ଜଗନ୍ନାଥ ବଳଭଦ୍ରଙ୍କ ମଧ୍ୟରେ ଶୋଭାଙ୍ଗୀ ସୁଭଦ୍ରାଙ୍କ ସ୍ଥିତି ସହ ତୁଳନା କରାଯାଇଛି । ଏଠି ରାଧାନାଥଙ୍କ କାବ୍ୟଭାଷାର ବିଚିତ୍ର ଦେହଳିକୁ ଦେଖି ହୁଏ । ସଂସ୍କୃତ କାବ୍ୟ ଶାସ୍ତ୍ରାନୁସାରେ ଏ କାବ୍ୟର ଶାନ୍ତରସର ବର୍ଣ୍ଣନା ରହିଛି । ମାଧୁର୍ଯ୍ୟ ଗୁଣ ଏ କାବ୍ୟର ଅଙ୍ଗୀ ଗୁଣ । ଏଠି ବୈଦର୍ଭୀରୀତି ମୁଖ୍ୟତଃ ପ୍ରଯୁକ୍ତ । ମୃଦୁ ଧ୍ୱନିଯୁକ୍ତ ପଦ ବିନ୍ୟାସ, ସମାସଶୂନ୍ୟତା ଓ ଅଳ୍ପ ସମାସର ବ୍ୟବହାର ଏକାବ୍ୟରେ ଦେଖିବାକୁ ମିଳେ । ସ୍ଥଳବିଶେଷରେ ଅବଶ୍ୟ ସମାସ ବହୁଳା ଗୌଡ଼ୀରୀତି ଓ ଓଜଃ ପ୍ରକାଶକ ବର୍ଣ୍ଣାବଳୀର ପ୍ରୟୋଗ ବି ରହିଛି । ବିଶେଷତଃ ରକ୍ତବାହୁର ଆକ୍ରମଣ ଓ ତାର ପରିଣତି ବର୍ଣ୍ଣନାରେ ଏ ରୀତି ବ୍ୟବହୃତ । ଦୃଷ୍ଟାନ୍ତ—

"ତୋ ଇଙ୍ଗିତେ ସଙ୍ଗେ ଘେନି ଊର୍ମିଥାଟ
ଦଉଡ଼ି ଆସିଲେ ନୀଳାମ୍ବୁ-ସମ୍ରାଟ
ବିଶ୍ୱ-ଧ୍ୱଂସି-ରୁଦ୍ର-ପ୍ରଖର ନିଃଶ୍ୱାସ
ପରାୟେ ବହିଲା ବାୟୁ ଅଣଚାଶ ।
ଦୈତ୍ୟହନ୍ତା ବଜ୍ରୀ ଭୀମ-ବଜ୍ର କରେ
ଜୀମୁତ-ବାହନେ ଉଇଁଲେ ଅମ୍ବରେ ।
ଦମ୍ଭୋଳି ସେକାଳେ କଲା ଘୋରଧ୍ୱନି
ଥରଥର ହୋଇ କମ୍ପିଲା ଅବନୀ ।।"

ସମାସ ବହୁଳା ଗୌଡ଼ୀ ଓ ସମାସହୀନା ବୈଦର୍ଭୀର ମିଶ୍ରଣରେ ପାଞ୍ଚାଳୀ ରୀତି, ତହିଁରେ ସମାସଯୁକ୍ତ ପଦର ସଂଖ୍ୟା ପାଞ୍ଚ କିମ୍ବା ଛଅ ରହିପାରେ । ଏ ରୀତିର ନମୁନା ମହାଯାତ୍ରାରୁ ନିଆଯାଇପାରେ—

"ଶକ୍ରାୟୁଧ-ବର୍ଣ୍ଣୋଶୋଭି-ପ୍ରବେଣୀ-ଆବୃତ,
ଝରୋଦ୍‌ଗାରି-ଖଣ୍ଡଗିରି ପ୍ରାୟେ ମଦସ୍ରାବୀ
ସଙ୍ଗେ ଦନ୍ତାବଳ ଘଟ, ଦିଗନ୍ତ-ନିର୍ଘୋଷୀ
ଘନ ଘଣ୍ଟାରବେ, ପୁଣି ଭୈରବେ-ବୃଂହିତେ
ବ୍ୟାଘ୍ର-ଚର୍ମ-ଅଙ୍ଗତ୍ରାଣେ ସର୍ବାଙ୍ଗେ ଆବରି
ଆସନ୍ତି କ୍ଷତ୍ରିୟେ କର୍ମନାସା-ତୀର ବାସୀ ।"

ଫଳତଃ ରାଧାନାଥ ଭାଷା ଚୟନ ଓ ପଦଗୁମ୍ଫନରେ ସଂସ୍କୃତ କାବ୍ୟ ତତ୍ତ୍ୱାନୁଶାସନକୁ ଯେ ନ ମାନିଛନ୍ତି, ତାହା ନୁହେଁ, ସେ ନିଜକୁ ଭଞ୍ଜଙ୍କ

ଅନୁକରୀ କହିବା ମୂଳରେ ସଂସ୍କୃତ କାବ୍ୟରୀତି ଓ କାବ୍ୟାନୁଶାସନରେ ଆବିଷ୍ଟ ହେବା କଥାଟି ପ୍ରତିପାଦିତ । ଏ ସମ୍ପର୍କରେ ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା 'ରୀତିକାବ୍ୟ ଓ ରାଧାନାଥ' ଶୀର୍ଷକ ବିଚାରରେ ବିସ୍ତୃତ ଆଲୋଚନା କରିଛନ୍ତି ।

ଏ ସମସ୍ତ ସତ୍ତ୍ୱେ ରାଧାନାଥ ଥିଲେ ଇଂରେଜୀ କାବ୍ୟରୀତି ଓ ବାକ୍‌ଭଙ୍ଗୀରେ ମଣ୍ଡିତ କାବ୍ୟପୁରୁଷ । ତାଙ୍କର କାବ୍ୟମାନଙ୍କର ବିଷୟଚୟନରେ ପାଶ୍ଚାତ୍ୟ ଉପାଦାନର ଆହରଣ ସମ୍ପର୍କରେ ସମାଲୋଚକମାନେ ଚର୍ଚ୍ଚା କରିଛନ୍ତି । ସେ ପାଶ୍ଚାତ୍ୟ କାବ୍ୟଭାଷା (poetic diction) ଚୟନରେ ମଧ୍ୟ ପଟୁତା ପ୍ରଦର୍ଶନ କରି ଯାଇଛନ୍ତି । 'ମହାଯାତ୍ରା' ତୁଲ୍ୟ ମହାକାବ୍ୟ ରଚନାରେ ସେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନରେ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଶୃଙ୍ଖଳାକୁ ଭଙ୍ଗ କରିଛନ୍ତି ।

ତାଙ୍କର ଆହରଣପ୍ରବଣ ମାନସରେ ବଙ୍ଗଳାର ଉପଧାମିଳନ ଜନିତ ସଙ୍ଗୀତମୟତା ଧରା ଦେଇଛି । ରାଧାନାଥ ଓଡ଼ିଆ କାବ୍ୟଜଗତରୁ ବିଷମବୃତ୍ତର ପରିହାର କରି ସମବୃତ୍ତର ପ୍ରଚଳନ କରିଛନ୍ତି । ତାଙ୍କର କାବ୍ୟଗୁଡ଼ିକ ସମବୃତ୍ତରେ ରଚିତ । କେଦାରଗୌରୀ-ବଙ୍ଗଳାଶ୍ରୀ, ଚନ୍ଦ୍ରଭାଗା-ରାମକେରୀ, ନନ୍ଦିକେଶ୍ୱରୀ-ନଟବାଣୀ, ଚିଲିକା-ନଟବାଣୀ, ପାର୍ବତୀ-ବଙ୍ଗଳାଶ୍ରୀ, ମହାଯାତ୍ରା- ଅମିତ୍ରାକ୍ଷର. ଯଯାତିକେଶରୀ-ବଙ୍ଗଳାଶ୍ରୀ, ତୁଳସୀସ୍ତବକ-କଳହଂସକେଦାର, ଉର୍ବଶୀ-ବଙ୍ଗଳାଶ୍ରୀ, ଦରବାର-ନଟବାଣୀ ।

ଏଣୁ ମଧ୍ୟଯୁଗୀୟ କାବ୍ୟରେ ବିଷମବୃତ୍ତ ଜନିତ ଯେଉଁ ସାଙ୍ଗିତିକତା ସୃଷ୍ଟି ହେଉଥିଲା, ତାର ଭରଣା କଲା ଉପାଧା ମିଳନ । ଅବଶ୍ୟ ଏ ଉପଧାମିଳନ ମଧ୍ୟ ଏକ କୃତ୍ରିମ ପ୍ରୟାସ । ଏହା କବିତାର ସାବଲୀଳଗତିର ବାଧକ ବୋଲି ନାନା ପ୍ରଶ୍ନ ପ୍ରତିପ୍ରଶ୍ନ କରାଯାଇଥାଏ ।

ତେବେ ରାଧାନାଥ ପାଶ୍ଚାତ୍ୟ କବିର କାବ୍ୟଭାଷା ସମ୍ପର୍କରେ ସଚେତନ ଥିଲେ । ସେ ସ୍ୱୟଂ କଳାବାଦୀ କବି, କଳା ପାଇଁ କଳାସୃଷ୍ଟି ଚେତନାକୁ ସେ ବିଶ୍ୱାସ କରୁଥିଲେ । ଇଂରେଜୀ ରୋମାଣ୍ଟିକ୍ କାବ୍ୟାକୃତି ଓ ସମାଲୋଚନା ଧାରା ସମ୍ପର୍କରେ ସେ ଖବର ରଖୁଥିଲେ । ତାଙ୍କର କ୍ଷୁଦ୍ର କବିତାଗୁଡ଼ିକ ଦେଖିଲେ ସେ ଇଂରେଜୀ କାବ୍ୟପ୍ରରୂପ (Type) ସମ୍ପର୍କରେ ସଚେତନ ଥିଲେ ବୋଲି ଜଣାଯାଏ ।

(କ) 'ଓଡ୍' ଧାରାର ପ୍ରବକ୍ତା—ପବନ, ଶିବାଜୀଙ୍କ ଉତ୍ସାହ ବାକ୍ୟ ପରି ସଂବୋଧ ଗୀତିକାରେ ଇଂରେଜୀ ଓଡ୍ ସୁଲଭ ଉଦାତ୍ତ କାବ୍ୟସ୍ୱର ଧ୍ୱନିତ ହୋଇଛି । ପ୍ରତିପାଦ୍ୟ ବିଷୟକୁ ସମ୍ବୋଧନ କରି କବିତା ଆରମ୍ଭ କରାଯାଇଛି । 'ପବନ'ରେ ସେହି ଧାରା ଅନୁସୃତ—

"କେ ତୋ ସମବଳୀ କହସମୀର
ଅସୀମ ଅନନ୍ତ ତୋହ ଶରୀର,
କେତେ ଭଙ୍ଗି କରି କେତେ ଆଢ଼େ ଚରି
ନ ହୁଅଇ କ୍ଳାନ୍ତି , ନିତ୍ୟ ଅସ୍ଥିର
ଅଟୁଟ ତୋ ଗୁଣ ବଳଇ ଗୀର ।"

ଏଠି ପବନକୁ ସମ୍ବୋଧନ କରି ଗୁରୁଗଭୀର ଭଙ୍ଗୀରେ କବିତାର ଆରମ୍ଭ ହୋଇଛି ।

(ଖ) ବର୍ଣ୍ଣନାତ୍ମକ କବିତାର ପ୍ରବର୍ତ୍ତକ— ରାଧାନାଥ ଓଡ଼ିଆରେ ବର୍ଣ୍ଣନାତ୍ମକ କବିତାର ବିଶିଷ୍ଟ ସ୍ରଷ୍ଟା । ବର୍ଣ୍ଣନାତ୍ମକ କବିତାର ଭାଷା ଅନ୍ୟ କାବ୍ୟ ଭାଷାଠାରୁ ସ୍ୱତନ୍ତ୍ର । ରାଧାନାଥଙ୍କର ଚିଲିକାର ଭାଷା ଅନ୍ୟାନ୍ୟ କାବ୍ୟକୃତିର ଭାଷା ଅପେକ୍ଷା ଅଧିକ ମସୃଣ ଓ ସ୍ୱଚ୍ଛନ୍ଦ । ବହୁ ସମୟରେ ତାହା ଭାବାନୁସାରୀ, ଗୋଟିଏ ଗୋଟିଏ ଭାବମୋଚନ ପାଇଁ କବି ସଂକେତାତ୍ମକ ଶବ୍ଦ ବି ପ୍ରୟୋଗ କରିଛନ୍ତି । କେତୋଟି ଦୃଷ୍ଟାନ୍ତ ନିଆଯାଉ—

(୧) "ଅତୀତର ତୁହି ସାକ୍ଷୀ ପୁରାତନ
ଦେଖିଲୁ ନରର ଉତ୍‌ଥାନ ପତନ ।"

(୨) "ଇତିହାସ-ରଙ୍ଗ ସ୍ଥଳି ତୁ ଚିଲିକା
ତୋର ତୀରେ ପରା ଶ୍ରୀମତୀ ମାଣିକା
ହସ୍ତେ ଭୁଞ୍ଜିଥିଲେ ସାଦରେ ଲବଣୀ
ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି ।"

ଚିଲିକାକୁ ସାକ୍ଷୀ ପୁରାତନ କହି କବି ଚିଲିକା ଓ ତାର ତଟବର୍ତ୍ତୀ ଇତିହାସର ପୃଷ୍ଠପଟ ଉଦ୍‌ଘାଟନ କରିଛନ୍ତି । ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ଓ ପ୍ରତ୍ୟାବର୍ତ୍ତନର ଦୃଶ୍ୟ; ରକ୍ତବାହୁର ଆକ୍ରମଣ ଆଦି ଘଟଣାର ଉନ୍ମୋଚନ ପାଇଁ ଏହି ସଙ୍କେତଧର୍ମୀ ଶବ୍ଦ ପ୍ରୟୋଗ କରାଯାଇଛି । ପୁଣି ଚିଲିକାକୁ ଇତିହାସ ରଙ୍ଗସ୍ଥଳୀ କହିବା ସହିତ ଜଗନ୍ନାଥଙ୍କୁ 'ଭାବଗ୍ରାହୀ' କହି ତାଙ୍କର ଭକ୍ତବତ୍ସଳତା ଓ ଭାବବିନୋଦିଆ ସ୍ୱରୂପ ମାଣିକ କାହାଣୀରେ ବ୍ୟଞ୍ଜିତ ହୋଇଛି ।

(ଗ) ମିଥ୍ ଧର୍ମୀ ସଙ୍କେତାତ୍ମକ ଶବ୍ଦ ପ୍ରୟୋଗ—

"ପାରିଲେଣି ଏବେ ଦେବ ବିକର୍ତ୍ତନ
ଭାଲେରୀ ଶିଖରେ ସ୍ୱର୍ଣ୍ଣସିଂହାସନ ।"

'ବିକର୍ତ୍ତନ' ଶବ୍ଦଟି ଅଳ୍ପ ତେଜଯୁକ୍ତ ସୂର୍ଯ୍ୟର ପ୍ରତୀକ । ଏଥିରେ ପୁରାଣାନୁଷଙ୍ଗିକ ବା ମିଥ୍‌କୁ ଦେଖିହୁଏ । ଛାୟା ଓ ସଂଜ୍ଞା କାହାଣୀର ସଙ୍କେତ ଏଠି ନିହିତ ।

ପ୍ରଜାପତିଙ୍କ ନିର୍ଦ୍ଦେଶରେ ସୂର୍ଯ୍ୟଙ୍କର କୁନ୍ଦରେ ବସିବା ଓ ତେଜ କମାଇବା କାହାଣୀ ସହ ଅସ୍ତାନୁମୁଖୀ ରଶ୍ମିକଥା ଏଠାରେ ସୂଚିତ ।

(ଘ) ରାଧାନାଥ କଲରିଜ୍‌ଙ୍କ Biographia diteraria ଓ ୱାର୍ଡ଼ସ୍‌ୱାର୍ଥଙ୍କ Preface to Lyrical ballad ଅବଶ୍ୟ ରାଧାନାଥ ପାଠ କରିଥିବେ । ସେଥିରେ କାବ୍ୟଭାଷା ସମ୍ପର୍କରେ ଯେଉଁ ନିର୍ଦ୍ଦେଶ ଦିଆଯାଇଛି, ତାହା ତାଙ୍କ ମାନସରେ ରେଖାପାତ କରିଥିବା ସମ୍ଭବ । ୱାର୍ଡ଼ସ୍‌ୱାର୍ଥ ଚାହୁଁଥିଲେ କବିତାର ଭାଷା ହେବ ନିତିଦିନିଆ କଥିତ ଭାଷା । ତାଙ୍କ ଦୃଷ୍ଟିରେ କବି ହେଉଛି - He is a man speaking to men. ତାର ଭାଷାରେ ଆଟୋପ ରହିବା ଉଚିତ ନୁହେଁ । ଯଥାସମ୍ଭବ ନିତିଦିନିଆ ଭାଷାରେ କବିତା ରଚିତ ହେଲେ ମହିମାମୟ ହୁଏ । କଲରିଜ୍ ଏକଥାକୁ ସମର୍ଥନ ନ ଦେଇ କାବ୍ୟଭାଷାର ସ୍ୱରୂପ ଉଦ୍‌ଘାଟନ ପୂର୍ବକ ତ୍ରିବିଧ କବିତାର ପରିକଳ୍ପନା କରିଥିଲେ—

୧. ଶ୍ରବଣର କବିତା—Poetry of the ear
୨. ଚକ୍ଷୁର କବିତା—Poetry of the eye
୩. ଭାଷାର କବିତା—Poetry of the language

ଏହି ଚେତନାକୁ ଭିତ୍ତି କରି କବି ଏଜରାପାଉଣ୍ଡ କାବ୍ୟ ଭାଷାର ତିନୋଟି ଶକ୍ତି ଦେଖିଛନ୍ତି ।

(କ) Melo Poeia—ସଙ୍ଗୀତ ସୃଜନକ୍ଷମ ଭାଷା
(ଖ) Phono Poeia—ଚିତ୍ରସୃଜନକ୍ଷମ ଭାଷା
(ଗ) Logo Poeia—ମନୀଷାସୃଜନକ୍ଷମ ଭାଷା

ଏହାକୁ ନର୍ଥ୍ରୋ ଫ୍ରେୟଙ୍କ ପରି ସମୀକ୍ଷକ କହନ୍ତି— Melos, Opsis ଓ Lexis.

Melos ବାକ୍ ସଂଯୋଜନଗତ ଏକ ସାଙ୍ଗୀତିକ ପ୍ରକ୍ରିୟା । ଏହା କଲ୍ଲୋଳ ସୃଷ୍ଟି, ଶବ୍ଦଧ୍ୱନି ଓ କର୍ଣ୍ଣରସାୟନ ପାଇଁ ଉଦ୍ଦିଷ୍ଟ । Opsis ଏକ ଚାକ୍ଷୁଷ ପଦ୍ଧତି । ଏହା କବିତାର ଚିତ୍ରକଳ୍ପ ପାର୍ଟନ ଏବଂ ବସ୍ତୁବିଷୟକ ଅଭିକ୍ରିୟାକୁ ସୂଚାଇଥାଏ । Lexis କାବ୍ୟ ନିହିତ ଭାଷା ସମ୍ଭାରର ସଂଯୋଜନାକାରୀ ନିୟମ ।

ଏହି ପରିପ୍ରେକ୍ଷରୀରେ ବିଚାର କଲେ ରାଧାନାଥଙ୍କ କାବ୍ୟଭାଷାରେ ସଙ୍ଗୀତ ସୃଜନକ୍ଷମ ଭାଷାର ବହୁ ଦୃଷ୍ଟାନ୍ତ ମିଳିବ । ତାଙ୍କ କୃତିର ବହୁସ୍ଥଳରେ ଏ ଧରଣର ପ୍ରୟୋଗମାନ ଦେଖିବାକୁ ମିଳେ ।

୧.　ଅତି ମନୋହର କାଳଶୀତରତୁ
ଧରା ଛାଡ଼ି ଛାଡ଼ି ନାହିଁ
ପଲ୍ଲବ-ପାଟଳେ ମଧୁରତୁ-ରାଟ
ଧରା ମାଡ଼ି ମାଡ଼ି ନାହିଁ ।'' —ଉର୍ବଶୀ

ଏଥିରେ ସାଙ୍ଗୀତିକତାରେ ଧୂସର ଶବ୍ଦଗୁଡ଼ିକ କିପରି ସଙ୍ଗୀତମୟ ହୋଇ ଉଠିଛନ୍ତି, ତାହା ଲକ୍ଷ୍ୟ କରାଯାଇପାରେ । ଛାଡ଼ି ଛାଡ଼ି ନାହିଁ, ମାଡ଼ି ମାଡ଼ି ନାହିଁ ପରି ଗ୍ରାମ୍ୟ ଶବ୍ଦଗୁଡ଼ିକ କାବ୍ୟାବେଗରେ ଆକୁଳିତ ହୋଇ ଅନୁପମ ସାଙ୍ଗୀତିକ ଅନୁରଣନ ସୃଷ୍ଟି କରୁଛନ୍ତି ।

(୨)　''ଯାମେ ଯାମେ ଅଗ୍ରେ　　କୁଞ୍ଜ ନଦୀତୀରେ
ସମସ୍ୱରେ ତୋଳି ଧ୍ୱନି
ହୁଳହୁଳି ହର୍ଷେ　　ଦିଅନ୍ତି ସଘନେ
ଘଟରଘୁମା-ଘରଣୀ
କାନନେ ଅସ୍ଫୁଟେ　　ଶୁଭେ କେତେ କେତେ
କଳଗୀତ କୋକିଳାର
ଟଙ୍କାରି ଚଢ଼ାଉ　　ଅଛି କି ସେ ନିଜ
କଣ୍ଠ-ସ୍ୱରେ ନୂଆ ତାର ।''

ଏଠାରେ ହୁଳହୁଳି, ଘଟର ଘୁମା, ପରି ଦେଶଜ ଶବ୍ଦ 'କଣ୍ଠ-ଯନ୍ତ୍ରେ ନୂଆ ତା'ର ପରି ବୈଜ୍ଞାନିକ ଭାଷାର ସମବାୟକୁ ଦେଖିହୁଏ । ପୁଣି କବି ଓଡ଼ିଆ କାବ୍ୟଜଗତର ସଙ୍ଗୀତ ପ୍ରବଣ ଦୁଇଜଣ କବି ଅର୍ଥାତ୍ ବଳଦେବ ଓ ଉପେନ୍ଦ୍ରଙ୍କୁ ସଙ୍ଗୀତ ସଂପ୍ରୀତିର ଆବେଗରେ ସ୍ମରଣ କରିଛନ୍ତି । ଫଳତଃ ରାଧାନାଥଙ୍କ କୃତିରେ ସଂଗୀତଧର୍ମିତାର ସ୍ୱାକ୍ଷର ସୁସ୍ପଷ୍ଟ ।

(ଖ)　ଚିତ୍ର ସୃଜନକ୍ଷମ ଭାଷା— ରାଧାନାଥ ଥିଲେ ଉତ୍କଳ ପ୍ରକୃତିର ମୁଗ୍ଧ ପୂଜକ । ଉତ୍କଳୀୟ ପ୍ରକୃତିକୁ କାବ୍ୟାୟିତ କରିବାରେ ତାଙ୍କର କୃତିତ୍ୱ ସ୍ୱୀକାର୍ଯ୍ୟ । ସେ ଉତ୍କଳର ଭୂପ୍ରକୃତି ସନ୍ଦର୍ଶନବେଳେ ବିଭିନ୍ନ ଦୃଶ୍ୟାବଳୀକୁ ଟିପାଖାତାରେ ଟିପି ରଖୁଥିଲେ । କବିତା ଲେଖିଲାବେଳେ ଭାଷାରେ ତାଦୃଶ ଚିତ୍ରଟିଏ ଆଙ୍କିବାକୁ ଆକାଙ୍କ୍ଷା ଜନ୍ମିବା ସ୍ୱାଭାବିକ । ତେଣୁ ତାଙ୍କ କାବ୍ୟରେ ଚିତ୍ରସୃଜନ କ୍ଷମ ଭାଷାର ପ୍ରୟୋଗ ସୁଲଭ୍ୟ । ଚିଲିକାରୁ କେତୋଟି ଦୃଷ୍ଟାନ୍ତ ନିଆଯାଉ ।

(୧)　''ଏହି ଯେ ତୋ ନୀଳ-ବକ୍ଷ ତାରକିତ
କରି ବିହରନ୍ତି ହଂସ ଅଗଣିତ''

ଏଠାରେ ହଂସମାନଙ୍କର ଚିଲିକା ବକ୍ଷରେ ବିହାରରେ ତାରା ଖଚିତ ଆକାଶର ଦ୍ୟୋତନାକୁ ସ୍ମରଣ କରାଯାଇପାରେ ।

(୨) "ଅଶୋକ-ବସନ୍ତ-ବିଭବ-ବିକାଶୀ,
କଦମ୍ବ-ଜଳଦ-ଡମ୍ବର-ବିଳାସୀ,
ସଦାଶିବ ପ୍ରିୟ ପବିତ୍ର ଶ୍ରୀଫଳ
ସଦା ଚଳଦଳ ପବିତ୍ର ପିପ୍ପଳ ।"

ଏଠରେ ଚିତ୍ର ସହ ଧ୍ୱନି(Sound) ଓ ଭାବାନୁବାହୀ ଶବ୍ଦ ସମ୍ଭାରକୁ ଦେଖା ଯାଇପାରେ ।

(୩) "ଡୋରା ଡୋରା ହୋଇ ପରଶିଛି ଶିଖ,
ଠାବେ ଠାବେ ଯା'ର ମାର୍ଗ ଗଇରିକ ।
ସୁଶ୍ୟାମଳ ଗୁଳ୍ମ-ଜଟିଳ ଜଟିଆ
ତୀରୁ ନୀରେଯା'ର ହୋଇଅଛି ଠିଆ ।"

ଏଠାରେ ଗ୍ରାଫିକ୍ ଚିତ୍ରର ଏକ କାବ୍ୟ ଶୈଳୀକୁ ସ୍ମରଣ କରାଯାଇଥାଏ ।

(୪) "ପାଷାଣଭେଦୀରେ ମଣ୍ଡିତ ତୋରଣ
ଶଇବାଳସ୍ତରେ ଭିତ୍ତି ସୁଚିକ୍କଣ
ବସି ଯହିଁ ହ୍ରଦ ବାସିନୀ ଅମରୀ
ସ୍ୱଚ୍ଛ ମୁକ୍ତା ଫଳେ ବାନ୍ଧନ୍ତି କବରୀ ।"

ଏଠରେ ଏକ ଚାକ୍ଷୁଷ ଚିତ୍ର ନାଚିଉଠେ । ଏକ କାବ୍ୟମାୟା ଦେଖାଦିଏ ।

(୫) "ପୁନ୍ନାଗ ଅରଣ୍ୟ-ଲକ୍ଷ୍ମୀ ଦରପଣ
ତେଜଃ ପୁଞ୍ଜି-ଭୃଗୁ-ପ୍ରଭାବେ ପ୍ଲାବନ ।"

ନଦୀତଟର ଚାକ୍ଷୁଷ ଚିତ୍ର ନାଚିଉଠେ । ନଦୀ ହୋଇଯାଏ ଦର୍ପଣ । ବନ ହୋଇଯାଏ ସୌନ୍ଦର୍ଯ୍ୟଲକ୍ଷ୍ମୀ ।

(୬) 'ମହିଷିଟିପାର ଗୁରୁଗୁରୁଧ୍ୱନି
ଘୋଷେ ମୁଖରିତ ଅରଣ୍ୟସରଣୀ ।'

ଧ୍ୱନ୍ୟାନୁକୃତି ଶବ୍ଦସମ୍ଭାର ପାଠକ ମନରେ ପରିବେଶାନୁକୂଳ ଭାବ ସଞ୍ଚାର କରିଦିଏ !

(୭) "ଜଳ-ଦେବୀଙ୍କର-କଳ-କିଙ୍କିଣୀ-ନିକ୍ୱଣ
ପ୍ରାୟ ଶୁଭୁଥାଏ ଶରାଳି ନିଃସ୍ୱନ ।"

ଶରାଳିଙ୍କର ସ୍ୱନ କବି ଚେତନାରେ ଜଳଦେବୀଙ୍କର କିଙ୍କିଣୀ-ନିକ୍ୱଣ ପାଲଟିଯିବା ଯେପରି ରୋମାଣ୍ଟିକ ସେହିପରି ଚିତ୍ରଧର୍ମୀ ମଧ୍ୟ ।

(ଗ) ମନୀଷା ସୃଜନକ୍ଷମ ଭାଷା— ରାଧାନାଥ ରୋମାଣ୍ଟିକ ଚେତନାପ୍ରବଣ କବି ହେଲେହେଁ ତାଙ୍କର ଭାଷାଗୁମ୍ଫନରେ ପ୍ରଜ୍ଞାଦୀପ୍ତତାର ଅଭାବ ନଥିଲା । ତାହା ଶାଣିତ ବ୍ୟଙ୍ଗ ମାଧ୍ୟମରେ ବେଶ ହୃଦୟଗ୍ରାହୀ ହୋଇ ପାରିଛି ।

(୧) 'ଚିଡ୍ରୋପ୍‌ଳା ନୀର-ପାୟୀ କି ଆଶାରେ
ପଶିଲ କାସର ସେବିତ କାସାରେ ।'

(୨) ସଲିଳ ନ ସିଞ୍ଚି ଖାଲି ଦଣ୍ଡବତ
କରିବାକୁ ଛନ୍ତି ଲୋକ ଶତ ଶତ ।'

(୩) 'ବୋଲି ଦେଇଅଛି ଅଜ୍ଞାନର ମସି
ସେ ଉତ୍କଳେ ତୁମେ ଶ୍ମଶାନ-ତୁଳସୀ ।'

ଏଠାରେ ଚନ୍ଦ୍ର ଶେଖରଙ୍କ ବିଷୟ ଅବତାରଣାରେ କବିଙ୍କର ଭାଷାଜନିତ ପ୍ରଜ୍ଞାର ପ୍ରକାଶକୁ ଲକ୍ଷ୍ୟ କରିହୁଏ । ଚନ୍ଦ୍ରଶେଖର ଥିଲେ ଚିଡ୍ରୋପ୍‌ଳା ନୀରପାୟୀ । ତାଙ୍କର କାସର ସେବିତ କାସାର ରୂପକ ଦରବାରରେ ଉପସ୍ଥିତ କବିଙ୍କୁ ମୂହ୍ୟମାନ କରିଛି । ସଲିଳ ନ ସିଞ୍ଚି ଖାଲି ଦଣ୍ଡବତରେ ଲୋକଦେଖାଣିଆ ସ୍ୱଭାବକୁ ନିନ୍ଦା କରାଯାଇଛି । ତୁଳସୀ ଶ୍ମଶାନରେ ଉଠିଲେ ଯେପରି ଅବହେଳିତ ହୁଏ, ପୂଜା ପାଏନା; ଠିକ୍ ସେହିପରି ଉତ୍କଳ ଭୂମିରେ ଚନ୍ଦ୍ରଶେଖରଙ୍କ ସ୍ଥିତି ବୋଲି କୁହାଯାଇଛି । ଫଳରେ ଭାଷା ହୋଇଉଠିଛି ଶାଣିତ ଓ ଋଜୁ । ଭାଷାର ବ୍ୟଞ୍ଜନାବୃତ୍ତି ଏଠାରେ ସ୍ପଷ୍ଟ ।

ତେବେ ଏଠାରେ ସ୍ୱୀକାର କରିବାକୁ ହେବ ଯେ, ସ୍ଥଳବିଶେଷରେ ରାଧାନାଥ ରୀତିଯୁଗୀୟ ଶବ୍ଦପ୍ରବଣତାକୁ ଛାଡ଼ି ପାରିନାହାନ୍ତି । ଯଥା-

କାମ-କାଳ-କୂଟ-କାଳିମା, ପୂର୍ବର ଦକ୍ଷିଣାମୁଖୀ, ଦର୍ପଣ-ଦର୍ପକ କପୋଳ ଫଳକ, ଶରବନଭବ, ବିରାଜନ୍ତି ଚନ୍ଦ୍ରଚୂଡ଼-ଚୂଡ଼ାମଣି ।

କିନ୍ତୁ ରାଧାନାଥଙ୍କ କାବ୍ୟ ଭାଷାର ଏହା ପ୍ରକୃତ ପରିଚୟ ନୁହେଁ । ସ୍ଥଳ ବିଶେଷରେ ରୀତି ଅନୁସୃତ ଭାଷାର ପ୍ରୟୋଗରେ ରାଧାନାଥଙ୍କ ଭାଷା-ତିଳୋତ୍ତମା ଅନନ୍ୟା ଓ ଅନୁପମା । ତାର ସ୍ୱକୀୟ ଦୀପ୍ତି ଓ ଦ୍ୟୁତି ରହିଛି । ତାହା ଆଧୁନିକ ଚେତନାକ୍ଷମ ଏପରି ବ୍ୟଙ୍ଗବିଦ୍ରୂପାତ୍ମକ କାବ୍ୟିକ ଭାଷା ହେବାକୁ ସହାୟତା କରିଛି । ଫଳତଃ ସେ ଦରବାର ପରି ନୂତନ ସ୍ୱାଦର କବିତା ଲେଖିଛନ୍ତି ।

ରସ୍କିନ୍‌ଙ୍କ 'Modern Painter' ଗ୍ରନ୍ଥରେ 'Open Sky' ଶୀର୍ଷକ ଲେଖାଟିଏ ସ୍ଥାନ ପାଇଛି । ତାହା ଚିତ୍ରଶିଳ୍ପୀ ଟର୍ନରଙ୍କ ଚିତ୍ର ସମୀକ୍ଷା ସଂପର୍କିତ । ସେଥିରେ କୁହାଯାଇଛି ''ବଡ଼ ଆଶ୍ଚର୍ଯ୍ୟର କଥା, ଜନସାଧାରଣ ଆକାଶ ସଂପର୍କରେ ଖୁବ୍‌କମ୍ କଥା ଜାଣନ୍ତି; ଏହା ସୃଷ୍ଟିର ଏକ ମହନୀୟ ଅଂଶ । ଏହାଦ୍ୱାରା ପ୍ରକୃତି ମନୁଷ୍ୟକୁ ଆନନ୍ଦ ବିତରଣ କରେ । ଏହା ସହାଯ୍ୟରେ ସେ ମଣିଷ ସହିତ ଆଳାପ କରେ ଓ

ତାକୁ ଶିକ୍ଷାଦିଏ'' । ଟର୍ନରଙ୍କ ଚିତ୍ରିତ ଆକାଶ ପୋଥି ଏ କଥା କହିଛି । ସେ କଥା ସୂଚେଇ ଦେବାକୁ ରସ୍କିନ୍‌ଙ୍କର ଏ ମନ୍ତବ୍ୟ ।

ଆମ କବିତାର ଆକାଶ ସେମିତିପରି ନିତ୍ୟ ବର୍ଣ୍ଣୋତ୍ସବରେ, ନିତ୍ୟ ଶବ୍ଦବିନ୍ୟାସର ଲୀଳାସ୍ଥଳି । ଏଣୁ ରାଧାନାଥଙ୍କ କାବ୍ୟାକାଶ ହଠାତ୍ ଅର୍ଦ୍ଧାଙ୍ଗ ଈଶ୍ୱର, ଅର୍ଦ୍ଧାଙ୍ଗ ପାର୍ବତୀ ପରି ଦିଶିଯିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଋତୁ ବଦଳାଇବା ଆକାଶର ଧର୍ମ । ହଠାତ୍ ଋତୁ ବଦଳେ ନାହିଁ । ଋତୁ ମେଘ, ଋତୁ ଖରା ମଣିଷକୁ ବିହ୍ୱଳ କରେ । ଡାହାଣିଆ ଖରା, ବିଲୁଆ ନନାର ବାହାଘରିଆ ଖରା ତ ଏକ ନୁହେଁ । ରାଧାନାଥଙ୍କ କାବ୍ୟ ଚୌହୁଦୀରେ ବି ଭାଷାର ବୈଭିନ୍ୟ ଫୁଟେ; ଫୁଟିବା ସ୍ୱାଭାବିକ । ତେବେ ରାଧାନାଥ ଆଧୁନିକ ଯୁଗଚେତନାର ପ୍ରସ୍ତୁତି କାଳରେ ଦ୍ରୋଣର ଭୂମିକାନେଇ ଠିଆ ହୁଅନ୍ତି । ତାଙ୍କର ଶିଷ୍ୟ ପ୍ରଶିଷ୍ୟ ବର୍ଗ ଆଧୁନିକ କାବ୍ୟ-ଦ୍ରୌପଦୀର ସାନ୍ନିଧ୍ୟ ଲାଭପାଇଁ ପ୍ରଚେଷ୍ଟ ହେବା ସ୍ୱାଭାବିକ ।

ରାଧାନାଥଙ୍କ କାବ୍ୟାକାଶର ବିସ୍ତୃତି ଅନ୍ୟୂନ ପାଞ୍ଚୋଟି ଦଶନ୍ଧିଯାଏ ପରିବ୍ୟାପ୍ତ । ଏଣୁ ରାଧାନାଥଯୁଗୀୟ କାବ୍ୟଚେତନାରେ ବହୁ କବିଙ୍କ ସମବେତ ବୈତାଳିକ ଶୁଭେ । ସେମାନେ ସ୍ଥଳବିଶେଷରେ ସ୍ୱକୀୟଶୈଳୀ ଓ କାବ୍ୟଭାଷା ପ୍ରୟୋଗ କଲେହେଁ କାଳ ପରିପ୍ରେକ୍ଷୀରେ ରାଧାନାଥକାଳୀନ ସାରସ୍ୱତଶିଳ୍ପୀ ଭାବେ ଅଭିହିତ ।

ରାଧାନାଥ ଯୁଗର କବିଭାବେ ମଧୁସୂଦନ ରାଓ, ଫକୀରମୋହନ ସେନାପତି, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ଚିନ୍ତାମଣି ମହାନ୍ତିଙ୍କ ପରି କବିମାନଙ୍କୁ ଗ୍ରହଣ କରାଯାଇଥାଏ । ସତ୍ୟବାଦୀ କବିକୁଳ କାବ୍ୟଭାଷା ଓ ଭାବାଦର୍ଶ ଦୃଷ୍ଟିରୁ ରାଧାନାଥ ସାରସ୍ୱତ ଚେତନାର ନିକଟବର୍ତ୍ତୀ । ବସ୍ତୁତଃ ରାଧାନାଥଙ୍କ କାବ୍ୟଭାଷାର ଚର୍ଚ୍ଚା କଲାବେଳେ ତାଙ୍କର ସମକାଳୀନ କବିଙ୍କ କାବ୍ୟଭାଷାର ପ୍ରଶ୍ନ ଉଠିବା ସ୍ୱାଭାବିକ ।

ଏହି ପରିପ୍ରେକ୍ଷୀରେ ମଧୁସୂଦନ ପ୍ରଥମେ ମନେପଡ଼ନ୍ତି । ଆଧୁନିକ ଯୁଗର ପଥପ୍ରସ୍ତୁତି ପାଇଁ ସତେଅବା ସେ ଦ୍ରୋଣଙ୍କର ମନ୍ତ୍ରଶିଷ୍ୟ ଅର୍ଜୁନର ଭୂମିକା ନେଇଛନ୍ତି । ସେ ଥିଲେ ରାଧାନାଥଙ୍କ ସହଯୋଗୀ କବି । ଉଭୟଙ୍କର ପ୍ରଚେଷ୍ଟାରେ କବିତାବଳୀ (୧୮୭୬) ପ୍ରକାଶପାଇ ପ୍ରଚଳିତ ଓଡ଼ିଆ କାବ୍ୟଧାରାକୁ ନୂତନମାର୍ଗ ପ୍ରଦାନ କରିଥିଲା । କିନ୍ତୁ ଉଭୟଙ୍କ କାବ୍ୟଭାଷାରେ ପାର୍ଥକ୍ୟ ନିହିତ । ଏହା ଯେପରି ମିଳିନ୍ଦ ପଞ୍ଞା (ମିଳିନ୍ଦଙ୍କ ପ୍ରଶ୍ନ) ଗ୍ରନ୍ଥର ନାଗସେନ ଓ ମିଳିନ୍ଦଙ୍କ ଉକ୍ତି ପ୍ରତ୍ୟୁକ୍ତି ପରି । ଦିନେ ରାଜା ମିଳିନ୍ଦ ପ୍ରଶ୍ନକଲେ— 'ପୁନର୍ଜନ୍ମ ଅଛି କି ? ତାର ଉତ୍ତରରେ ନାଗସେନ କହିଥିଲେ— ଦେଖୁଛ ଏହା କଣ ? ଉତ୍ତର ମିଳିଥିଲା— ଏହା ଏକ

ଆମ୍ବ । ଏ ଆମ୍ବ ଖାଇଲେ ଯାହା, ଏହାର ଟାକୁଆ ପଡ଼ି ଝିଅ ଗଛଟିରୁ ଉତ୍ପନ୍ନ ଆମ୍ବ ତାହା ନୁହେଁ । ଅଥଚ ସେମାନେ ଏକ ନୁହନ୍ତି କିନ୍ତୁ ଭିନ୍ନ ବି ନୁହଁନ୍ତି । ମଧୁସୂଦନ ଓ ରାଧାନାଥଙ୍କ କାବ୍ୟଭାଷା ଏକ ନୁହେଁ; ଭିନ୍ନ ବି ନୁହେଁ । ଉଭୟ ତତ୍‌ସମ ତଦ୍‌ଭବ ବହୁଳ ଅଥଚ ଉଭୟଭାଷାରେ ଭିନ୍ନତା ରହିଛି ।

ମଧୁସୂଦନଙ୍କ କାବ୍ୟଭାଷାରେ ଏକ ମାନ୍ତ୍ରିକ ସମ୍ମୋହନକ୍ଷମ ଶକ୍ତି ନିହିତ ତାହା ବୈଦିକ ସୂକ୍ତପରି ଉଦାତ୍ତ । ତାହା ପରିଚ୍ଛନ୍ନ ହୋଇ ମଧ ବହୁସମୟରେ ବୌଦ୍ଧିକ । ତାଙ୍କୁ ପ୍ରଜ୍ଞାର କବି ବୋଲାଯାଇପାରେ । ତାଙ୍କର କାବ୍ୟଭାଷା ମନ୍ତ୍ରଧ୍ୱନି ପରି । ବାଇବେଲର ଭାଷା, ଭାଗବତର ଭାଷା ତୁଲ୍ୟ ତାହା ବ୍ୟକ୍ତିକୁ ଅତୀନ୍ଦ୍ରିୟ ରାଜ୍ୟକୁ ନେଇଯାଏ ।

ଯଥା- ‘ନୁହେଁ ସେ ଧରାର ଦୃଶ୍ୟ, ଧରାର ଶବଦ
ସେ ଭାବ ନୁହଇ କ୍ଷୁଦ୍ର ଧରାର ସଂପଦ ।
ମହୀୟାନ ମହିମାର ଚିନ୍ମୟ ବିଭବ
ଦେଖରେ ଜଗତ ଆଜି ଦୃଶ୍ୟ ଅଭିନବ,
ଦେଖରେ ଦେଖରେ ଆଜି ଅପରୂପ ଛବି,
ଚିତ୍ରୁଛନ୍ତି ମହା-ଆଦି-ଚିତ୍ରକର କବି ।’

ଋଷିପ୍ରାଣେ ଦେବାବତରଣର ଏ ଭାଷା ତଦ୍‌ଭବ ଓ ତତ୍‌ସମ ଶବ୍ଦ ବହୁଳ । ଏ କାବ୍ୟଭାଷା ଋଷିଜନସୁଲଭ । ତାଙ୍କର କାବ୍ୟଭାଷାରେ କ୍ୱଚିତ ଦେଶଜ ଶବ୍ଦର ସମବାୟ ଲକ୍ଷିତ ହୁଏ । ଏହା ମନ୍ତ୍ରିତ ବାଣୀପରି ସମ୍ମୋହିତ କରିଥାଏ ।

ମଧୁସୂଦନଙ୍କ କାବ୍ୟଭାଷା ସଂପର୍କରେ ନନ୍ଦକିଶୋର ବଳ ମନ୍ତବ୍ୟ ଦେଇ କହିଥିଲେ— ‘ତାଙ୍କର ଗୁରୁଗମ୍ଭୀର ରଚନାବଳୀ ବହୁ ଯତ୍ନର ଫଳ । ସେ ଥରେ କହୁଥିଲେ— ‘I have to the honour to state’ ଏହି ଛାଞ୍ଚରେ ଅନର୍ଗଳ, ଅବାରିତ କବିତା ଲେଖିବାକୁ ମୁଁ ଅସମର୍ଥ । ସୁକବିତା ରଚନା ପାଇଁ ଅନୁକୂଳ ଅବସ୍ଥା ଲୋଡ଼ା । × × କବି ବାଇରନ କହୁଥିଲେ— ବ୍ୟାଘ୍ର ପହିଲ ଦଫା ଝାମ୍ପ ମାରେ । ଯାହା ପଡ଼ିଲା ତାହା । ମୁଁ ସେହିପରି ପ୍ରଥମେ ଯାହା ଲେଖେ, ତାହା ବଦଳାଇବା ମୋର କର୍ମ ନୁହେଁ । କବି ମଧୁସୂଦନ କବି ରାଧାନାଥଙ୍କ ପରି ଏ ଶ୍ରେଣୀର ଲେଖକ ନଥିଲେ । ସେମାନେ ଲେଖାକୁ ମାଠୁ ଥିଲେ ।’’ ଏଣୁ ରାଧାନାଥ ଓ ମଧୁସୂଦନ ଥିଲେ ଭିକ୍ଟୋରିଆ ଶାସିତ ଭାରତର କବି । ଭିକ୍ଟୋରୀୟ କବି ଲର୍ଡ଼ ଟେନିସନ କବିତାକୁ ବାରମ୍ବାର ପୁନର୍ଲିଖନ କରୁଥିଲେ । ଏହାଥିଲା ସେ କାଳର ଏକ ଢ଼ଙ୍ଗ । ଏ ରୀତିକୁ ରାଧାନାଥ ଓ ମଧୁସୂଦନ ଉଭୟ ଅନୁସରଣ କରୁଥିଲେ ।

ମଧୁସୂଦନଙ୍କ ଲିଖନରୀତି ସଂପର୍କରେ ସମସାମୟିକ କବି ନନ୍ଦକିଶୋରଙ୍କ ମନ୍ତବ୍ୟରୁ ସୂଚିତ ହୁଏ ଯେ ସେ ଥିଲେ ସଚେତନ କାବ୍ୟଶିଳ୍ପୀ । ବସ୍ତୁତଃ ମଧୁସୂଦନଙ୍କ କବିତା ମନରୁ ଝରେନା । ଏହା ଏକ କବି କର୍ମ । ଏହା ମନନତାର ଅପେକ୍ଷା ରଖେ ।

ମଧୁସୂଦନଙ୍କ କାବ୍ୟଭାଷା ସ୍ୱଚ୍ଛ ଅଥଚ ସ୍ୱଚ୍ଛନ୍ଦ ନୁହେଁ; ତାହା ଗିରିଝରପରି ଅବାରିତ ନୁହେଁ । ଶବ୍ଦ ନିବାଚନରେ ସେ ରାଧାନାଥଙ୍କ ତୁଲ୍ୟ ସାବଧାନତା ଅବଲମ୍ବନ କରିଯାଇଛନ୍ତି । କବିଙ୍କ କବିତାରୁ କେତୋଟି ଦୃଷ୍ଟାନ୍ତ ନିଆଯାଇପାରେ—

୧ - ‘କଳା ଭ୍ରମରକୁ ଜିଣି ନୀଳିମାରେ ଦିଶେ ମୃଗ ତୃଷ୍ଣାଜଳ
ଧାମନ୍ତେ ପଥିକ ଅଦୃଶ୍ୟ ହୁଅଇ ପଥିକ ଆଶା କେବଳ’ ।
(ଗ୍ରୀଷ୍ମ)

୨ - ‘ସୁନୀଳ ଅପରାଜିତା ଫୁଟିଅଛି ବନେ
ବଧୁଲି କୁସୁମରଙ୍ଗ ତୋଷଇ ଲୋଚନେ ।
ଧରିଛି ଅଗସ୍ତିଦ୍ରୁମ କୁସୁମ ମଞ୍ଜରୀ,
ବଙ୍କିମ ଦିଶଇ ଯାହା ବାଳଇନ୍ଦୁ ପରି ।’
(ଶରତ)

୩- ‘ସ୍ୱର୍ଣ୍ଣକାନ୍ତି ଜିଣା ସୋରିଷ ଶତବର୍ଗ କୁସୁମେ
ଚଉଦିଗ ଅତି ଶୋଭିତ ମନନୟନ ରମେ
କିବା ମନୋହର ସେ ଶୋଭା କାହିଁ ତା’ପଟାନ୍ତର,
ଧରଣୀ ରାଣୀକି ପିନ୍ଧିଛି ଚାରୁ ପୀତ ଅମ୍ବର ।’
(ଶିଶିର)

ଏସବୁ କିଶୋର କବିତା ଲେଖିଲାବେଳେ ମଧ କବିଙ୍କର ଭାଷାଚୟନର ଦିଗନ୍ତକୁ ଦେଖିହୁଏ । ଏଥିରେ ତତ୍‌ସମ ଓ ତଦ୍‌ଭବ ଶବ୍ଦର ଗୁମ୍ଫନ ହିଁ ରହିଛି । ଭାଷା ଭାବବ୍ୟଞ୍ଜକ ଯଦିଓ ସରଳ କିନ୍ତୁ କଥିତ ନୁହେଁ ।

କବିଙ୍କର ଭାଷା ଅନୁପ୍ରାସ ବହୁଳ । କବି ମୁଖ୍ୟତଃ ଶାନ୍ତ ଓ କରୁଣ ରସପ୍ରତି ଆଗ୍ରହୀ । ତାଙ୍କର କବିତାଗୁଡ଼ିକରେ ପ୍ରାଚୀନ ରାଗରାଗିଣୀ ବିଶେଷତଃ ଭାଗବତବୃତ୍ତ ପରି ଲୋକପ୍ରିୟ ବୃତ୍ତର ବ୍ୟବହାର କରାଯାଇଛି ।

ଶିଶୁକବିତା ‘ସୁନ୍ଦର ସଂସାର’ରେ ବି ଭାଗବତ ବୃତ୍ତ ବ୍ୟବହୃତ ।

୧ - ‘ଆକାଶ ଦିଶେ କି ସୁନ୍ଦର,
ତାହାକୁ ରଚିଲେ ଈଶ୍ୱର ।’

୨- 'କ୍ରମେ ଅନ୍ଧକାର ଆସଇ ଘୋଟି
ଉଇଁଲେଣି ତାରା ଗୋଟିକି ଗୋଟି ।' (ସଂଧ୍ୟା)

'ସଂଧ୍ୟା'ରେ ଚକ୍ରକେଳି ବୃତ୍ତର ବ୍ୟବହାର କରାଯାଇଛି । ସେହିପରି 'ବସନ୍ତ'ରେ ଚକ୍ରକେଳି, 'ଗ୍ରୀଷ୍ମ'ରେ ବଙ୍ଗଳାଶ୍ରୀ, 'ବର୍ଷା'ରେ କଳହଂସ କେଦାର, 'ଶରତ'ରେ ମଙ୍ଗଳ, 'ହେମନ୍ତ'ରେ ରାମକେରୀ ଓ 'ଶିଶିର'ରେ ରାମକେରୀ ପରି ଛନ୍ଦର ବ୍ୟବହାର ଲକ୍ଷିତ ହୁଏ । ଅନ୍ୟାନ୍ୟ କୃତିରେ ନାନା ପ୍ରାଚୀନ ରାଗରାଗିଣୀର ପ୍ରୟୋଗ ଦେଖିବାକୁ ମିଳେ ।

ପୁଣି ଆଉ ଗୋଟିଏ କଥା । ମଧୁସୂଦନ ଆଧୁନିକ କାବ୍ୟକଳାକୁ ପ୍ରଚାର ଓ ପ୍ରସାର କରିବା ପାଇଁ 'ବର୍ଣ୍ଣବୋଧ'ରେ ତାଲିମ ଦେବାକୁ ସଚେଷ୍ଟ ହୋଇଛନ୍ତି । ଏହା ଯେ କେହି ଅନୁଭବ କରି ପାରିବ ।

ରାଧାନାଥଙ୍କ ପ୍ରବର୍ତ୍ତିତ ଉପଧାର ବ୍ୟବହାରକୁ ରୀତିସିଦ୍ଧ କରିବାକୁ ମଧୁସୂଦନଙ୍କ ପ୍ରଚେଷ୍ଟାର ଶେଷ ନାହିଁ । ସେ ବର୍ଣ୍ଣବୋଧର ଶବ୍ଦଚୟନରେ ମଧ୍ୟ ଉପଧା ରୀତିରେ ବ୍ୟବହାର କରିଛନ୍ତି ।

ସଙ୍ଗୀତମୟ ଭାଷା ସଂଯୋଜନା ମଧୁସୂଦନଙ୍କ କବିତାର ଅନ୍ୟତମ ଅବଦାନ । ସେ ଅର୍ଥହୀନ କବିତା ଲେଖିଲାବେଳେ ସଂଗୀତଧର୍ମୀ ଭାଷା ସଂଯୋଜନାପ୍ରତି ଦୃଷ୍ଟି ଦେଇଛନ୍ତି । ଏଠି ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ "He is a man speaking to men." ସର୍ତ୍ତଟି ପାଳିତ ହୋଇଛି ।

(କ) 'ଝୁଲରେ ହାତୀ ଝୁଲ
ବା ପାଣି ଖାଇ ଫୁଲ
ବା ପାଣି ଖାଇ ଝୁଲ ।'

(ଖ) 'ଡାମରା କାଉରେ ଡାମରା କାଉ
ପର୍ବତେ ପର୍ବତେ ବୋବାଉ ଥାଉ ।'

(ଗ) 'ଚକା ଚକା ଭଉଁରୀ
ମାମୁଁଘର ଚଉଁରୀ ।''

(ଘ) 'ଆରେ ଜହ୍ନ ମାମୁଁ ଶରଦଶଶୀ
ମୋ କାହ୍ନୁ ହାତରେ ପଡ଼ରେ ଖସି ।'

...ଭାବ ସୁଲଭ ଭାଷା (Innate language) । ତାକୁ କବିତାରେ ସ୍ଥାନ ଦେଇ ନ ଥିଲେ ସେ... ଶିଶୁକୁ ଭାଷା ଶିକ୍ଷା ଦେବା କ୍ଷେତ୍ରରେ ବିନିଯୋଗ କରିଛନ୍ତି ।

ମଧୁସୂଦନ ମୁଖ୍ୟତଃ ଆଧ୍ୟାତ୍ମିକ ଭାବାପନ୍ନ କବି । ତାଙ୍କ କବିତାରେ ମେଟାଫିଜିକସ୍ କାବ୍ୟସ୍ୱର ବଡ ତୀବ୍ର । ତାଙ୍କର କାବ୍ୟଭାଷା ପ୍ରଥମ କବିତା 'ନିଶୀଥଚିନ୍ତା'ରେ ଯାହା ବିଶିଷ୍ଟ ଶେଷକୃତି । 'ହିମାଚଳେ ଉଦୟ ଉତ୍ସବ'ରେ ମଧ ତାହା । ସେ ସତେକି କାବ୍ୟଭାଷାରେ ଋଷିର ଭାବାବର୍ତ୍ତକୁ ହିଁ ଦେଖନ୍ତି—'ଗାୟତ୍ରୀ ଓଁକାରମୟୀ ଧ୍ୱନିତରଙ୍ଗସେ'ର ସ୍ୱର ହିଁ ତାଙ୍କର କାବ୍ୟସ୍ୱର ।

ଯଦିଓ ମଧୁସୂଦନ 'ବସନ୍ତଗାଥା' ପରି କବିତା ସଂକଳନରେ ଓଡ଼ିଆରେ ସଂବୋଧ କାବ୍ୟ (ଓଡ୍) ପରମ୍ପରା, ଶୋକ ଶ୍ଳୋକରେ ଶୋକଗୀତି (ଏଲିଜି), ସ୍ତବ ଓ ସ୍ତୋତ୍ରରେ ପ୍ରାର୍ଥନା ଓ ସ୍ତୋତ୍ର (Hymn) ଧାରାର ପ୍ରବର୍ତ୍ତନ କରିଛନ୍ତି । ସବୁଠି ସେହି ନିର୍ବାଚିତ ଶବ୍ଦସମ୍ଭାରର ସମାବେଶ ଲକ୍ଷିତ ହୁଏ । କବିଙ୍କର ଉପମା ଓ ରୂପକ ପ୍ରୟୋଗରେ ବୈଚିତ୍ର୍ୟ ନାହିଁ । ରାଧାନାଥ ଓ ମଧୁସୂଦନଙ୍କ ଭାଷାର ତାରତମ୍ୟ ନିରୂପଣ କରି ନନ୍ଦକିଶୋର କହିଥିଲେ— 'ରାଧାନାଥବାବୁଙ୍କ ଭାରତୀ ଗୃହିଣୀ । ଦୋଷଗୁଣ, ଗୂଢ଼ତା, କୋମଳତା, ସଙ୍ଗରେ ଘେନି ଘରକରଣା କରନ୍ତି ଓ କବିଙ୍କ ସଙ୍ଗରେ କେତେବେଳେ ଅଟ୍ଟହାସ୍ୟ, କେତେବେଳେ ବିଳାପ କରନ୍ତି । ପ୍ରକ୍ଷାନ୍ତରେ ମଧୁବାବୁଙ୍କ ଭାରତୀ ସଙ୍କୁଚିତା, ଈଷତ୍ ଲଜ୍ଜିତା ଓ ମୃଦୁଭାବ ସଂପନ୍ନା । ସେ ସୁଖରେ ଈଷତ୍ ମୃଦୁହାସ୍ୟ ଏବଂ ଦୁଃଖତାପରେ ବିଷଣ୍ଣ, ମୁଖଭଙ୍ଗୀରେ ସଂଯତ ଭାବରେ ସ୍ୱୀୟମନୋଭାବ ପ୍ରକଶ କରନ୍ତି ।'' ଅନ୍ୟଭାବେ କହିଲେ ରାଧାନାଥ କାବ୍ୟଭାଷାକୁ ''ଚିରସଧବା ପୂର୍ଣ୍ଣଯୌବନା ନାରୀରୂପେ ଦେଖନ୍ତି, ମଧୁବାବୁ ତାହାକୁ ଚିର କୁମାରୀ ଭାବରେ ଦେଖନ୍ତି ।''

ଏ ବକ୍ତବ୍ୟରୁ ମଧୁସୂଦନଙ୍କ କାବ୍ୟଭାଷା ଓ ରାଧାନାଥଙ୍କ କାବ୍ୟଭାଷାର ପାର୍ଥକ୍ୟ ସ୍ପଷ୍ଟ ହୋଇ ଉଠେ । ରାଧାନାଥ କାବ୍ୟଭାଷାରେ ଯୌବନ ଦୀପ୍ତତା ପ୍ରକଟିତ ହେଲାବେଳେ ମଧୁସୂଦନଙ୍କ କାବ୍ୟଭାଷାରେ କେବଳ ଶିଶୁସୁଲଭ ସାରଲ୍ୟ ଓ ଋଷିଜନସୁଲଭ ସଂଯମର ପରିପ୍ରକାଶ ଘଟିଛି । ମଧୁସୂଦନ ନୀତି ଓ ରୁଚିର ଉଦ୍‌ଗାତା । ତାଙ୍କ କାବ୍ୟଭାଷା ସଂଯମ ଓ ମିତଭାଷଣର ନମୁନା ।

ଫକୀର ମୋହନ ରାଧାନାଥ କାଳର ଅନ୍ୟତମ କାବ୍ୟପୁରୁଷ । ତାଙ୍କର କାବ୍ୟଭାଷା କଥ୍ୟଭାଷାର ନିକଟବର୍ତ୍ତୀ । ସେଥିରେ ଆଟୋପ ନାହିଁ, କାବ୍ୟିକ ଛଟାନାହିଁ । ରହିଛି ଭାଷାର ଅସଜଡ଼ା ବିନ୍ୟାସ । ସେ ସଂସ୍କାରକାମୀ ମଣିଷଭାବେ କହନ୍ତି—

'ଦେଖି ଲାଗିଲାଣି ତାଟକା ମୋତେ
ଦେଶୀ ବିଦେଶୀରେ ପ୍ରଭେଦ ଏତେ ।'' (ହାଟବାହୁଡ଼ା)

କିନ୍ତୁ ଦେଶୀ ବିଦେଶୀ ଉଭୟ କାବ୍ୟଭାଷା ଓ କାବ୍ୟରୂପକୁ ସେ ଆତ୍ମୀକରଣ କରିଛନ୍ତି । ତାଙ୍କପାଇଁ ଚନ୍ଦ୍ର ହୋଇଯାଏ ଚାନ୍ଦମଣି । ତାର ଅଙ୍ଗା (ଜାମା) ତିଆରିବାକୁ ମାଆଙ୍କ ମନ । ସେ ନିତି ବଢ଼ି ବଢ଼ି ଯାଏ କିମ୍ବା ଛିଡ଼ି ଛିଡ଼ି ଆସେ । ତେଣୁ ତା'ର ଅଙ୍ଗା ତିଆରି ହୋଇପାରେ ନା । ଚାନ୍ଦମଣିର ଅଙ୍ଗାକୁ ନେଇ ସୁନ୍ଦର କବିତା ଲେଖାଯାଏ କିମ୍ବା ତାଙ୍କର 'ମୋ. ଗାଁ ମଲ୍ଲୀକାଶ ପୁର' ପରି କବିତାରେ କଥିତ ଭାଷାର ପ୍ରୟୋଗକୁ ଲକ୍ଷ୍ୟ କରାଯାଇ ପାରେ ।

ତାଙ୍କ ଚେତନାରେ ଉପେନ୍ଦ୍ର ଭଞ୍ଜ ବି ସ୍ୱପ୍ନ ଦେଖି ପାରନ୍ତି । ତା'ର ପରିଣତି ହୁଏ 'ଉପେନ୍ଦ୍ର ଭଞ୍ଜଙ୍କ ସ୍ୱପ୍ନଦର୍ଶନ' କବିତା ।

'ଚାହିଁଦେଖ କି ହୋଇଛି ତୋର ମାତୃଭାଷା
କେବଳ କରିଛି ପୁତ୍ର ତୋତେ ମୁହିଁ ଆଶା'

ଏଥିରେ ନା ଅଛି କବିତ୍ୱ କଳା, ନା ଅଛି ବିନ୍ୟାସ ରୀତି, ସବୁଠି ଅସଜଡ଼ା ଭାଷା । ଜାଙ୍ଗଲିକ ଭାଷା ସୁଷମାର ବିଚିତ୍ର ବିନ୍ୟାସ । ତାଙ୍କର 'ଅବସର ବାସରେ', 'ଧୂଳି', 'ପୁଷ୍ପମାଳା', 'ଉପହାର' ପରି କବିତାଗ୍ରନ୍ଥରେ ଭାଷାର ଅବିନ୍ୟସ୍ତଶ୍ରୀ ଲକ୍ଷିତ ହୁଏ । ଏଣୁ ତାଙ୍କର କାବ୍ୟଭାଷାରେ ଓଡ଼ିଆ ସରସ୍ୱତୀଙ୍କର ସର୍କସ ବାଳିକା ହେବାର ଅଭିଧା ଆଉ ନାହିଁ । ସେ ହଠାତ୍ ଗାଁଗହଳିର ଚଷାଝିଅ ପାଲଟି ଯାଇଛି । ନାହିଁ ତାର କେଶବିନ୍ୟାସର ଆଟୋପ, ନାହିଁ ମହାର୍ଘ ବସନ ଭୂଷଣ, ଅଛି କେବଳ ଅସଜଡ଼ା ନୈସର୍ଗିକ ହଳଦୀ ଗରଗର ରୂପ । ଖିଲି ଖିଲି ହସର ମୋହନ ଲୀଳା । କିନ୍ତୁ ବୌଦ୍ଧାବତାର କାବ୍ୟ ଲେଖିଲାବେଳେ ରାଧାନାଥଙ୍କ ଭାଷାର ଯାଦୁକରୀ ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇ ପଡ଼ିଛନ୍ତି ।

ଗଙ୍ଗାଧର ରାଧାନାଥ ଯୁଗାକାଶର ଅନ୍ୟତମ ଜ୍ୟୋତିଷ୍କ । ତାଙ୍କ ଦୃଷ୍ଟିରେ ରାଧାନାଥ ହୋଇଯା'ନ୍ତି କାବ୍ୟ (ଶୁକ୍ରାଚାର୍ଯ୍ୟ) । 'କାବ୍ୟ ହିଁ ଗଲେଣି କାବ୍ୟ ରଚିବାକୁ ରାଧାନାଥ ନାମ ବହି'– ଉତ୍କଳ ଲକ୍ଷ୍ମୀ । ଏଣୁ ରାଧାନାଥ ତାଙ୍କର କବି ଗୁରୁ । ରାଧାନାଥଙ୍କ କାବ୍ୟଭାଷାର ପ୍ରଭାବ ଗଙ୍ଗାଧର କୃତିରେ ବହୁଭାବେ ପଡ଼ିଥିବାର ଦେଖିବାକୁ ମିଳେ ।

(କ) 'ଉତ୍କଳ କମଳା-ବିଳାସ-ଦୀର୍ଘିକା
ମରାଳ ମାଳିନୀ ନୀଳାମ୍ବୁ ଚିଲିକା' (ଚିଲିକା)

ତୁଳନୀୟ— 'ବିରାଟ ନଗରୀ ମହୀ ମଧ୍ୟେ ମନୋହର
ବିଶ୍ୱେ ମନୋରମା ରମାଦେବୀ କେଳିଘର ।' (କୀଚକବଧ)

ଏଠି ଚିଲିକା'ର ପ୍ରଥମପଦ ସହ 'କୀଚକବଧ'ର ପ୍ରଥମ ପଦର ସଂରଚନା ରୀତି ଓ ଶବ୍ଦ ବସାଣକୁ ଲକ୍ଷ୍ୟ କରାଯାଇପାରେ ।

ଗଙ୍ଗାଧର ପ୍ରଥମ ପର୍ଯ୍ୟାୟରେ ରସ ରତ୍ନାକର ଓ ଅହଲ୍ୟାସ୍ତବ ପରି କାବ୍ୟ ଲେଖି ରୀତିକାବ୍ୟର ଶଗଡ଼ ଗୁଳାରେ ଯାତ୍ରା କରିବା ଜଣାଶୁଣା ବ୍ୟାପାର । କବି ରାଧାନାଥ ହିଁ ତାଙ୍କୁ ନବ୍ୟରୀତିରେ 'ଇନ୍ଦୁମତୀ' ଲେଖିବାକୁ ପ୍ରବର୍ତ୍ତାଇ ଥିଲେ । ଏହି ଦୀକ୍ଷାଦାତା ଗୁରୁ କାବ୍ୟଧାରାକୁ ସେ ବା ଅସ୍ୱୀକାର କରିବେ କିପରି ?

ଗଙ୍ଗାଧର ରାଧାନାଥଙ୍କ ଦୀର୍ଘ ସମାସଯୁକ୍ତ ପଦ ପ୍ରୟୋଗ ବିଧିକୁ ବହୁସ୍ଥଳରେ ମେହେର ଅନୁସରଣ କରିଛନ୍ତି ।

ଦୃଷ୍ଟାନ୍ତ—

'କଳୁଷିତ-ବାରି-କଳୁଷ-ହାରକ
କାସାରେ-କୁମୁଦ-ହାସ-ପ୍ରକାଶକ ।
ଦକ୍ଷିଣାଶା-ବଧୂ-ଅବତଂଶ ମୋତି
ମହୋଜ୍ଜ୍ୱଳ-କୁମ୍ଭ ସମୁଦ୍ଭବ ଜ୍ୟୋତି
ଉଇଁଲେ ଆକାଶେ, ଆସି ଦଳେ ଦଳେ
ପୂରନ୍ତି ଜଳ ଏ କଳ କୋଳାହଳେ । (ଚିଲିକା)

ଏପରି ଦୀର୍ଘ ସମାସଯୁକ୍ତ ପଦର ବ୍ୟବହାର ଗଙ୍ଗାଧର କବିତାରେ ଅଭାବ ନାହିଁ ।

କିଏ ଗୋ ତୁ ଜ୍ୟୋତିର୍ମୟୀ ଶୁଦ୍ଧ ଶୁଭ୍ର ବେଶା
ଇନ୍ଦ୍ର-ନୀଳ-ଦ୍ୟୁତି-ଜିତ ମନୋହର କେଶା
ଅଥବା
ଲତା-ଲୁତ-ତନ୍ତୁ ରୂପ ନିୟତି ବନ୍ଧନ ।

ତେବେ ଏଠାରେ ସ୍ମରଣ କରାଯାଇ ପାରେ ଯେ ଗଙ୍ଗାଧରଙ୍କ କାବ୍ୟଭାଷା ମାଧୁର୍ଯ୍ୟ ଗୁଣଯୁକ୍ତ ଓ ବୈଦର୍ଭୀ ରୀତି ସଂପନ୍ନ । ଭାଷାରେ ଚିତ୍ରଧର୍ମିତାର ସ୍ୱରୂପ ତପସ୍ୱିନୀର ଆଶ୍ରମ ବର୍ଣ୍ଣନା ଛନ୍ଦରେ ଖୋଜାଯାଇ ପାରେ । ସଙ୍ଗୀତଧର୍ମିତା ଗଙ୍ଗାଧର କାବ୍ୟର ଭୂଷଣ । ତାଙ୍କର କବିତାରେ ବୁଦ୍ଧିଦୀପ୍ତତାର ଦୃଷ୍ଟାନ୍ତ ବି ରହିଛି । କାନ୍ତ କାନ୍ତା ସଂପନ୍ନ ସମୁଦ୍ର ସରିତର ସଂପୃକ୍ତିରେ 'ଜୁହାର' ଶବ୍ଦରୁ 'ଜୁଆର' ଶବ୍ଦର ବ୍ୟୁତ୍ପନ୍ନ କହିବାରେ ଶ୍ଳେଷାତ୍ମକ ଭଙ୍ଗୀ ପ୍ରତିଫଳିତ । ଅଥବା ଚତୁରୀ ଚପଳାର ଦୈତ୍ୟ ପର୍ଯ୍ୟାୟର ବର୍ଣ୍ଣନା ପ୍ରସଙ୍ଗରେ ଚାତୁର୍ଯ୍ୟକୁ ଲକ୍ଷ୍ୟକରାଯାଇ ପାରେ—

''କିନ୍ତୁ ଏ ପ୍ରସଙ୍ଗ ଲବ ମାତ୍ର ଜାଣି
ନ ପାରିବେ ସାଆନ୍ତାଣୀ
ତାଙ୍କ କର୍ଣ୍ଣେ ଏହା ପଡ଼ିଲେ ମୋହର
ଉଠିଥିବ ଦାନାପାଣି ।'

ଏଠାରେ କଥ୍ୟରୀତି ଓ ଗ୍ରାମ୍ୟ ଭାଷାର ସମନ୍ୱୟ ସଂପାଦିତ । ଏ ଧାରା ତ ରାଧାନାଥଙ୍କ ପ୍ରବର୍ତ୍ତିତ କାବ୍ୟଶୈଳୀ ।

ପୁଣି ମଧୁସୂଦନଙ୍କ ମନ୍ତ୍ରିତ କବିତାର ପ୍ରଭାବ ଗଙ୍ଗାଧରଙ୍କ କବିତାରେ ରହିଛି । 'ଭକ୍ତି'ରେ 'ଆତ୍ମ ସମର୍ପଣ'ର, 'ମଧୁମୟ', ଅମୃତ ମୟରେ 'ଏ ସୃଷ୍ଟି ଅମୃତମୟ ହେ'ର ପ୍ରଭାବ ଦେଖିବାକୁ ମିଳେ । ଭାବ, ଭାଷା ଓ ବାଚନ ରୀତିରେ ସର୍ବତ୍ର ମଧୁସୂଦନଙ୍କ କବିତାର ସ୍ପର୍ଶ ରହିଛି ।

ବସ୍ତୁତଃ ଗଙ୍ଗାଧରଙ୍କର କାବ୍ୟଭାଷାରେ ରାଧାନାଥଙ୍କ କାବ୍ୟଭାଷାର ସ୍ୱର ଓ ସ୍ୱାକ୍ଷର ଦେଖାଯାଏ । ତେବେ ଏଠାରେ ସ୍ମରଣୀୟ ଯେ ଗଙ୍ଗାଧର ହେଉଛନ୍ତି ମୁଖ୍ୟତଃ ପ୍ରଭାତର ଗାଥାକାର; ମଧ୍ୟାହ୍ନର ଖରତାପ ଜାଳ ତାଙ୍କ କବିତାରେ ନାହିଁ । ତାଙ୍କର ଭାଷା ନୀତି ଓ ରୁଚିର ଭାଷା । ତହିଁରେ ସଂଘର୍ଷ ପୀଡ଼ିତମନ ଓ ମନନର ବିକ୍ଷିପ୍ତ ବିନ୍ୟାସ ରୂପ ପାଏ ନାହିଁ । ତାଙ୍କ କାବ୍ୟଭାଷାରେ ରୀତି ସିଦ୍ଧ ଭାଷା ଓ ରାଧାନାଥ କାବ୍ୟ ଭାଷାରେ ଯୁକ୍ତବେଣୀ ପ୍ରବାହିତ । ଏଣୁ ରାଧାନାଥଙ୍କ ନିର୍ଦ୍ଦେଶରେ ଗଙ୍ଗାଧର ସ୍ୱତନ୍ତ୍ର କାବ୍ୟ ସରଣୀ ପାଇଥିଲେ ହେଁ ତାଙ୍କର କାବ୍ୟଭାଷାଥିଲା ସମନ୍ୱୟଧର୍ମୀ । ମେହେରଙ୍କ କାବ୍ୟଭାଷା ବହୁସମୟରେ ଋଷିର ଭାଷାପରି ଶୁଭେ । ସେଥିରେ କାନ୍ତ ସମ୍ମିତ ଚେତନାସହ ପ୍ରଭୁସମ୍ମିତ ଚେତନାର ମିଶ୍ରରାଗ ଲକ୍ଷିତ ହୁଏ ।

ପୂର୍ବରୁ କୁହାଯାଇଛି ଯେ ସର୍କସ ବାଳିକାକୁ ଚିରଚଞ୍ଚଳା ତରୁଣୀ ଭାବରେ ଠିଆ କରାଇବାର ପ୍ରଚେଷ୍ଟା ରାଧାନାଥ ଆରମ୍ଭ କରିଥିଲେ । ଫକୀରମୋହନଙ୍କ କବିତା ଭାଷାକୁ ହସକୁରୀ କଲା ।, ମଧୁସୂଦନଙ୍କ ଲେଖନୀ ସରଳା କିଶୋରୀରେ ପରିଣତ କରିଦେଲା, ଧ୍ୟାନଶୀଳା କଲା । ଗଙ୍ଗାଧର ଲେଖନୀ ତାକୁ ଗମ୍ଭୀର ତପସ୍ୱିନୀ କରି ଠିଆ କରାଇଦେଲା । କାବ୍ୟସୁନ୍ଦରୀ ବିଦଗ୍ଧା ହେଲେ; ସ୍ୱଭାବ ସୁଲଭ ରକ୍ତମାଂସଧାରିଣୀ ପ୍ରତିମା ହେବାକୁ ସେ ଅପେକ୍ଷା କରୁଥିଲେ ଏକ କାବ୍ୟଶିଳ୍ପୀଙ୍କୁ ଯେ କି ତାକୁ ଚିର ଚଞ୍ଚଳ କରିବ, ବିଦଗ୍ଧା ଅଭିଧାରୁ ମୁକ୍ତି ଦେବ ।

ନନ୍ଦକିଶୋରଙ୍କ ଶୁଭାଗମନ ରାଧାନାଥଯୁଗୀୟ ଏ ଅଭାବକୁ ପୂରଣ କଲା । ତାଙ୍କୁ କାବ୍ୟଧର୍ମରେ ଦୀକ୍ଷିତ କରିଥିଲେ ମଧୁସୂଦନ ।

(କ) "ଛାଡ଼ି ବନ୍ଧୁ ନଗର ଚହଳ
ଯିବାଚାଲ ଯେଉଁସ୍ଥାନେ ଗୋପାଳ, କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ମୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶ ସର୍ବଦା ଉଜ୍ଜ୍ୱଳ ।"

ଏହି ପଲ୍ଲୀମୁଖୀନ ଆହ୍ୱାନକୁ ନନ୍ଦକିଶୋରହିଁ ଗ୍ରହଣ କରିଥିଲେ । ସେ ଅଭିମନ୍ୟୁପରି ଦ୍ରୌଣପ୍ରଭ ରାଧାନାଥଙ୍କ କାବ୍ୟ ବ୍ୟୂହକୁ ଭେଦ କରିବାକୁ ସମର୍ଥ

ହୋଇଥିଲେ । ବସ୍ତୁତଃ କାବ୍ୟଭାଷା ନୂଆଚେତନାରେ ଉନ୍ମେଷିତ ହେଲା । ତାର ଫଳଶ୍ରୁତି ନନ୍ଦକିଶୋରଙ୍କ ଉତ୍କଳର ପଲ୍ଲୀଚିତ୍ର । ଏଥିରେ ୱାର୍ଡ଼ସୱାର୍ଥଙ୍କ କାବ୍ୟସୂତ୍ର— କାବ୍ୟଭାଷା ନିତିଦିନିଆ ମଣିଷର ଭାଷା ହେବା କଥାଟି ସ୍ପଷ୍ଟ ହୋଇ ପାରିଲା ।

ତାଙ୍କର କାବ୍ୟଭାଷାରେ ପାଉଣ୍ଡ ପରିକଳ୍ପିତ ତିନୋଟି ଲକ୍ଷଣ ଦେଖୁ । ତା ସହ ତାଙ୍କ କାବ୍ୟଭାଷା ସ୍ୱଭାବସୁଲଭ ଭାଷା (Innatetone) ଓ ପରିବର୍ତ୍ତିତ ସ୍ୱାଭାବିକ ଭାଷା (Vulgartone) ତୁଲ୍ୟ ଦୁଇଟି ସ୍ୱତନ୍ତ୍ର ଭାଷା ବୈଶିଷ୍ଟ୍ୟ ଦେଇ ଫୁଟି ଉଠିଲା ।

ଓଡ଼ିଆରେ ପ୍ରଥମେ ସ୍ୱଭାବସୁଲଭ ଭାଷା ଶିକ୍ଷା ଦିଆଗଲା ବର୍ଣ୍ଣବୋଧରେ ତାର କାବ୍ୟିକ ପରିପ୍ରକାଶ ଓ ପ୍ରସାରଣ ଘଟିଛି ନନ୍ଦକିଶୋରଙ୍କଠାରେ । ବଳ କବିଙ୍କର ବହୁ କବିତାରେ ଏହି କାବ୍ୟଭାଷାକୁ ଦିଗଦର୍ଶକ ଭାବେ ନିଆଯାଇଛି । କେତୋଟି ନମୁନା ଦିଆଗଲେ କଥାଟି ସ୍ପଷ୍ଟ ହୋଇପାରିବ ।

(୧) କବିତା ଆରମ୍ଭରେ ଅର୍ଥହୀନ ପଙ୍କ୍ତିର ବ୍ୟବହାର, କିନ୍ତୁ ତାହା ସ୍ୱଭାବସୁଲଭ ଭାଷା—

ଡାମରା କାଉରେ ଡାମରା କାଉ
ଉଞ୍ଚ ପରବତେ ବୋବାଉ ଥାଉ
ଉଞ୍ଚ ପରବତ କୁଞ୍ଜି କୁଞ୍ଜିକା
ତହିଁରେ ବସିଛି ତିନି ମଞ୍ଜିକା ।
ତିନି ତିନି ପଣ ଅଠର ପଣ
ଭାଇଙ୍କି ଡକାଇ କଉଡିଗଣ ।
କଉଡ଼ି ଗଣାରେ ପାହିଲା ରାତି
ଚୋର ନେଇଗଲା କଜଳ ପାତି ।
ଷାଠିଏ ଟଙ୍କାର ବଳଦ ମଲା
ଏକା କାଳୀଗାଈ ମଥାନ କଲା ।
ଆସ ଗୋ ସଙ୍ଗାତ ଗାଧୋଇଯିବା
କାଇଞ୍ଚ କାକୁଡ଼ି ତୋଳି ଆଣିବା
କାଇଞ୍ଚ କାକୁଡ଼ି ମଣ୍ଡରେ ପିତା
ଛଅ ବୋହୂଙ୍କର ଛଅ ଦୁହିତା ।
କାଳେ ଛଅକନ୍ୟା ଯୁବତୀ ହେଲେ
ଛଅବର ଆସି ତାହାଙ୍କୁ ନେଲେ ।
କାନ୍ଦନ୍ତି ବିକଳେ କହିଣ ମାତା
ନିଷ୍ଠୁର ଅଟଇ ତୋ ବିଧି ଧାତା ।

ଡାମରା କାଉରେ ଡାମରା କାଉ ।
ଜନନୀ ନିକଟେ କି ଗୀତ ଗାଉ ।' (କାକବାରତା)

ଏଥିରେ ତିନୋଟି କାବ୍ୟିକ ସ୍ଥିତି ବା ଆବର୍ତ୍ତ(turn) ରହିଛି । କାକବାରତାର ଗୁରୁଗମ୍ଭୀର ତାନ ସହ ଏହାର କୌଣସି ସଂପୃକ୍ତି ନାହିଁ । କେବଳ କନ୍ୟା-ବିଦାୟ ଜନିତ ଶୋକ ହିଁ ଶେଷରେ ସୂଚିତ । କାକ ଏଠି ହୁଏ ସତ୍ୟବାକ୍ । ସେ ନିଷ୍ଠୁର ଜୀବନବାଣୀର ବାର୍ତ୍ତାବହ ।

(୨) କବିତାର ଶେଷରେ ଆପାତତଃ ଅର୍ଥହୀନ ପଙ୍କ୍ତିର ବ୍ୟବହାର—

'ମେଘ ବରଷିଲା ଟପରଟପର
କେଶୁର ମାଇଲା ଗଜା
କେଉଁ ରାଇଜରେ ରହିଲେ ମୋ' ରଜା
ତେଲିଙ୍ଗି ବାଇଦ ବଜା ।' (ବର୍ଷାଭାବନା)

ଏଥିରେ ବର୍ଷାଗମରେ କେଶୁର ଗଜା ମାରିବା ସହିତ ଏ ଦେଶର କିମ୍ବଦନ୍ତୀ ନିହିତ କୌଣସି ନିଖୋଜ ରାଜପୁରୁଷ ପାଇଁ ହୁଏତ ସାମୂହିକ ଅନ୍ୱେଷାର ସ୍ୱର ବ୍ୟଞ୍ଜିତ । ତଥାପି ଏହା ଅର୍ଥସଂବାହୀ ନୁହେଁ । ପ୍ରକୃତ ଅର୍ଥ ସଂହତି ମିଳେନା ।

(୩) ଲୋକଗୀତିକୁ କାବ୍ୟ ଉପାଦାନରେ ପ୍ରୟୋଗ—

'ଚମ୍ପାଫୁଲଟିଏ ପାଇଲି ବନ ହଳଦୀପ୍ରାୟେ
ଶିବ ଉପାସନା କରିବି କାନ୍ତ ଆସିବା ଯାଏ;
ଚମ୍ପାବତୀ ରାଜ କୁମାରୀ ସେ ଯେ ନବ ତରୁଣୀ
ଗୀତଗାଏ ନିଜ ନବରେ ନିଜ ମନରେ ଗୁଣି ।
ସଖୀ ମେଳେ ଖେଳୁଥିଲେହେଁ ମହାହରଷଭରେ
ଜନକ-ଜନନୀ ସେନେହେ ଭାସି ନିଶି ବାସରେ ।
(ଚମ୍ପାବତୀ ରାଜକନ୍ୟାର ସ୍ୱପ୍ନ)

ଏଥିରେ ଚମ୍ପାବତୀ ରାଜକନ୍ୟାର ସ୍ୱପ୍ନକୁ ବଡ଼ ଜୀବନ୍ତ ଭାବରେ ଉପସ୍ଥାପନ କରାଯାଇଛି । ଶୈଳୀ ଓ ବାଚନ ଭଙ୍ଗୀରେ ଲୋକଠାଣି ରହଛି । ଲୋକଗାଥାକୁ ଉପାଦାନ ଭାବେ ନେଇ ନାରୀ ମାନସିକତା ଏଠି ପ୍ରକାଶିତ ।

(୪) ପରିବର୍ତ୍ତିତ ସ୍ୱାଭାବିକ ଭାଷା—

ନନ୍ଦକିଶୋର ଏହି କାବ୍ୟଶୈଳୀଟି ବହୁସ୍ଥଳରେ ପ୍ରୟୋଗ କରିଛନ୍ତି । ଏହାକୁ ପରିବର୍ତ୍ତିତ ଲୋକ ଭାଷାରେ କବିତା ବୋଲାଯାଇ ପାରେ ।

'ଟିକି ଟିକି ଧାନ ଶହେ ଭରଣ
ବାପାଙ୍କ ଅଣ୍ଡାରେ ସୁନା ଲେଖନ

ଭାଇଙ୍କ ହାତରେ ସୁନା ଲେଖନୀ
ଭାଉଜଙ୍କ ଅଙ୍ଗେ ଝୀନ ପଟନୀ ।
ଏକ ଭଉଣୀ ମୁଁ ସାତ ଭାଇରେ
ମୋ'ପରି ଅଲ୍ୟଳ କିଏ ମହୀରେ ।
ଶୁଣ ତଅପୋଇ ନ କର ଗର୍ବ
ଗାଳି ସହନ୍ତି, ନ ସହନ୍ତି ସର୍ବ ।' (ତଅପୋଇ)

ଲୋକ ପ୍ରଚଳିତ ଭାଷା ଓ ଗୀତକୁ କବି ନିଜର ଚେତନାରେ ପରିବର୍ତ୍ତନ କରି ଦେଇଛନ୍ତି । ଏ କଥାଟି ଅଧିକ ସ୍ୱଷ୍ଟ ହୋଇ ଉଠିଛି 'ଜେମାଦେଈ' କବିତାରେ—

'ଉଡ଼ିଗଲା ଗେଣ୍ଡାଳିଆ ଛାଡ଼ି ଦେଲେ ପଖି
ଜେମାଦେଈ କାନ୍ଦୁଛନ୍ତି ବୁଢ଼ାବର ଦେଖି ।
ବାପା ବୋଇଲେ ଝିଅ ମୋର ବାରବରଷର
ମା' ବୋଇଲେ ଝିଅମୋର କୋଠାକୁ ସୁନ୍ଦର ।
ଭାଇ ବୋଇଲେ ଭଉଣୀ ମୋର କତିପାଶେ ଥାଉ
ହିଂସିକି ଭାଉଜ କହେ ଦୂର ଦେଶେ ଯାଉ ।'

ଏହି ଲୋକଗୀତିର ପଙ୍କ୍ତିଟି ପରବର୍ତ୍ତୀପଦରେ ବଦଳିଯାଏ । କବିତାର ଭାଷା ଓ ଭାବ ଅଧିକ ଚାକ୍ଷୁଷ ହୁଏ । ଚେତନା ଅଧିକ ସ୍ୱଷ୍ଟ ହୋଇଯାଏ ।

ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର
ଜେମାଦେଈଙ୍କର ବର ଅଶୀ ବରଷର
ଝାଡ଼ି ଦେଲେ ପର ଉଡ଼ିଗଲେ ଗେଣ୍ଡାଳିଆ
ଜେମାଦେଈଙ୍କର ବର କୋଇଲି କାଳିଆ ।
ଜଗନ୍ନାଥଙ୍କର ସିନା ଅଟଇ ବଡ଼ାଇ
କାହାକୁ ଦିଅନ୍ତି ପାଟ କାହାକୁଗଡ଼ାଇ ।''

ମୂଳ ଲୋକଗୀତିର ଭାଷା ଏଠି ପରିବର୍ତ୍ତିତ । କବିତା କିନ୍ତୁ ଅଧିକ ଭାବସମ୍ପନ୍ନ ।

ନନ୍ଦକିଶୋରଙ୍କ 'ନାନା ବାୟାଗୀତ'ରେ ଏହିପରି ବହୁ ଦୃଷ୍ଟାନ୍ତ ରହିଛି । ସେ ନିର୍ବାସିତ ଶବ୍ଦଗୁଡ଼ିକ ଆବିଷ୍କାର କରିଛନ୍ତି, କାବ୍ୟାୟିତ କରି ଭାଷା ତିଳୋତ୍ତମାକୁ ଠିଆ କରାଇ ଦେଇଛନ୍ତି ।

(୫) 'ଧ୍ୱନିବାହୀ ଶବ୍ଦସମ୍ଭାର ସୃଷ୍ଟି—

(କ) 'ବିଲେଇ ନାନୀରେ ବିଲେଇ ନାନୀ
ମୂଷା ଧରିଖାଉ ପତଳା କାନୀ ।'

(ଖ) 'ଆସ ଆସ ପାରାଯୋଡ଼ିକ ମୋ ପିଣ୍ଡାରେ ବସ
ଖାଇବାକୁ ଦେବି ତୁମକୁ ମୁଁ ନଡ଼ିଆର ରସ ।
ପିଇବାକୁ ଦେବି ତୁମକୁ ମୁଁ ବେଣ୍ଟପୋଖରୀ ପାଣି
ଶୋଇବାକୁ ଦେବି ଖଟୁଲି ମାଳୀ ଘରୁ ଆଣି ।'

ଏଠାରେ ପତଳାକାନୀ, ବେଣ୍ଟ ପୋଖରୀ ପାଣି, ମାଳୀଘର ଖଟୁଲି ଆଦିରେ ବ୍ୟଞ୍ଜନା ଫୁଟିଛି ।

(୬) ଲୋକ ପ୍ରଥାରେ ନୂଆ ଚେତନାଦୀପ୍ତ ଶବ୍ଦ—

(କ) 'ଖରା କରୁଅଛି ମେଘ ବରଷୁଛି
ବିଲୁଆ ପୁଅର ବାହା ।' (ଅଦିନ ମେଘ)

ବିଲୁଆ ପୁଅର ବାହାରରେ ସୋରା ସୋରା ବର୍ଷା ଓ ମେଘାଭ ଖରାର କଥା ସୂଚିତ ।

(ଖ) 'ଟୁଣୁଟୁଣି ପାଚି ବାସନାଧାନ ଗୋ
ନାଲି ଗୁଲୁ ଦିଶେ
ଥାଳି ଚାଳି ଦେଲେ ଗୋଟିଏ ପାଖରୁ
ବୁଲିଣ ଆସିବ କିସେ ?'
(ହୋଓରେ ବାଇଆ ହୋ)

ଏପରି ନୂଆ ମେଟାଫର୍ ତ ଆଗରୁ ନଥିଲା ।

(୭) ନୂଆ ଭାବଧର୍ମୀ ଶବ୍ଦ ଚୟନ—

(କ) 'ରଣୀଫୁଲପରି ପଡ଼ିଥାଏ ଜହ୍ନ
ପଦା ପାହା ଭାଗେ ବସି
ପଲ୍ଲୀ ସୀମନ୍ତିନୀ ଚାନ୍ଦିନୀ ରାତିରେ
କରନ୍ତି ଆଳାପ ହସି ।'

'ରଣୀଫୁଲ ପରି ଜହ୍ନ' ଓଡ଼ିଆ କବିତା ରାଜ୍ୟରେ ନୂଆ ଶବ୍ଦ ସମ୍ଭାର । ତୋଫା ଜହ୍ନକୁ ନୂଆ ଉପମା ଦେଇ ବ୍ୟକ୍ତ କରାଗଲା । ଏଠି ଜହ୍ନ ହୋଇଗଲା ରଣୀଫୁଲ । ହସ ହୋଇଗଲା ଜହ୍ନ ।

(ଖ) 'କେଣେ ଭାସିଯାଉ ଆରେ ଜହ୍ନ ମାମୁଁ
ମୋ ଧନ ଘରକୁ ଆ ଆ
ପାଟ ଲୁଗା ପିନ୍ଧି ମୋ ଧନ ସଙ୍ଗତେ
ଖିରିପିଠା ଖାଇଯାଆ ।

ଉଇଁ ଆସୁଥିବା ଜହ୍ନ ଏଠି ପାଟ୍‌ଲୁଗାପିନ୍ଧା ଜହ୍ନ ପାଲଟି ଯାଇଛି ।

(ଗ) କବି ସ୍ଥଳ ବିଶେଷରେ ମୁହଁ ଅନ୍ଧାରକୁ ଲୋମଲୁଚା ଅନ୍ଧାର ରୂପେ ବର୍ଣ୍ଣନା କରନ୍ତି ।

(ଘ) 'ଘୋର ବର୍ଷାଦିନେ ଉଚ୍ଚ ଆକାଶରେ
ଗଜା ବଉଦର ଶୋଭା
ପର୍ବତ ଶିଖରେ ଧୂଆଁଳିଆ ମେଘ
ଦିଶେ ଅତି ମନ ଲୋଭା ।'

ଗଜା ବଉଦର ଶୋଭା, ଧୂମାଳିଆମେଘ, କଳାହାଣ୍ଡିଆମେଘ ପରି ବହୁ ରସବାହୀ ଶବ୍ଦର ସଂଧାନ ନନ୍ଦକିଶୋର କରିଛନ୍ତି । ବହୁନିର୍ବାସିତ ଶବ୍ଦକୁ ସେ କାବ୍ୟ ଦରବାରରେ ଉପସ୍ଥାପନ କରିଛନ୍ତି । ସେ ରାଧାନାଥୀ କାବ୍ୟ ପରିଧି ଭାଙ୍ଗି ନୂତନ ଦିଗନ୍ତ ଖୋଜୁ ଖୋଜୁ ପୁଣି ଫକୀରମୋହନଙ୍କ ପରି ରାଧାନାଥଙ୍କ ଶବ୍ଦର ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇ ପଡ଼ିଥିଲେ । ତାର ଫଳଶ୍ରୁତି ଶର୍ମିଷ୍ଠା । ଏଥିରେ ରାଧାନାଥୀ କାବ୍ୟଭାଷାର ପ୍ରବାହକୁ ଲକ୍ଷ୍ୟ କରିହୁଏ । ନନ୍ଦକିଶୋରଙ୍କ ଉତ୍କଳର ପଲ୍ଲୀଚିତ୍ର, ନାନାବାୟାଗୀତ, ନିର୍ଝରିଣୀର ଫଳଶ୍ରୁତି ଏଠି ପାଣି ଫାଟିଯାଏ ।

ଚିନ୍ତାମଣି ମହାନ୍ତିଙ୍କ କାବ୍ୟ ସଂସାରରେ ରାଧାନାଥଙ୍କ କାବ୍ୟଭାଷା ଆଚ୍ଛନ୍ନ କରିରଖିଛି । ତାଙ୍କୁ ଅନେକ ରାଧାନାଥ କାବ୍ୟର ଉପଗ୍ରହଭାବେ ଚିତ୍ରଣ କରିବସନ୍ତି । ତାଙ୍କର ଘୁମୁଷର, ମେଘାସନ, ବିକ୍ରମାଦିତ୍ୟାଦି କାବ୍ୟରେ ରାଧାନାଥଙ୍କ ଭାବ ଓ ଭାଷାର ପ୍ରଭାବ ବଡ଼ ଗଭୀର । ବହୁ ସମୟରେ ଚିନ୍ତାମଣି ନିଜର କାବ୍ୟମାର୍ଗ ପାଇ ନାହାନ୍ତି; କେବଳ ରାଧାନାଥଙ୍କ କାବ୍ୟଭାଷାରେ ଆଲୋକିତ ହୋଇଛନ୍ତି ।

ସତ୍ୟବାଦୀର କବି ଏକଦା କହୁଥିଲେ— 'କବିଙ୍କି ସୁମରି ବିରାଗେ ମୁଖ ଫେରାଅ ପଛେ- ନୀଳକଣ୍ଠଙ୍କ ଏ ଉଗ୍ର ମନ୍ତବ୍ୟଟି ବି ରାଧାନାଥଙ୍କ ଶବ୍ଦବସାଣ ପାଖରେ ହାର ମାନିଛି । ରାମଚଣ୍ଡୀରେ ରାତି ଓ ସକାଳରେ ନୀଳକଣ୍ଠ ଯେଉଁ ପ୍ରତିଶ୍ରୁତି ଶୁଣାଇଥିଲେ, ମାୟାଦେବୀରେ ରହିଲା ନାହିଁ । ସେ ଉପଧା ପରିହାର କଲେ ମଧ୍ୟ ମାୟାଦେବୀର ଶବ୍ଦଗୁମ୍ଫନ ପଦ୍ଧତିରେ ରାଧାନାଥୀୟ ବିନ୍ୟାସରୀତି, ସମାଜ ବହୁଳ ଶବ୍ଦ ଚୟନରେ ତତ୍‌ସମ, ତଦ୍‌ଭବର ବାହୁଲ୍ୟ ପ୍ରଦର୍ଶନ କଲେ । ଗୋପବଂଧୁ ଓ ଗୋଦାବରୀଶ ରାଧାନାଥୀ କାବ୍ୟଭାଷା ଓ ଶବ୍ଦ ବିନ୍ୟାସ ରୀତିକି ଛାଡ଼ି ପାରିଲେ ନାହିଁ । କେତୋଟି ଦୃଷ୍ଟାନ୍ତ—

(୧) କବାଟ ଫାଁକରେ ଚାହିଁଲେ ବାଙ୍କରେ
ଥରେ ଥରେ ଆସେ ଚୋରାପବନ
ସେକି ଗୁପ୍ତଚର ବାହାର ଖବର
ଦେଇ ଚାଲିଯାଏ ପୁଣି ବହନ'

(ବନ୍ଦୀର ସ୍ୱଦେଶ ଚିନ୍ତା—ଗୋପବଂଧୁ)

(୨) "ଥିରି ଥିରି ନାଆ ବାହାରେ ନାଉରୀ
ଝିଅକୁ ମାଡୁଛି ଡ଼ର
ଗଡ଼େ ଗଡ଼ଲୋକ ଚାହିଁ ବସିଥିବେ
ଝିଅ ଯିବ ଶାଶୁଘର ।"

(କାଳିଜାଇ– ଗୋଦାବରୀଶ)

ନୀଳକଣ୍ଠ ଯେଉଁ ଉପଧା ମିଳନକୁ ବିରୋଧ କରୁଥିଲେ, ଗୋପବଂଧୁ ଓ ଗୋଦାବରୀଶ ବହୁସ୍ଥଳରେ ତାକୁ ଛାଡ଼ି ପାରିନାହାନ୍ତି । ଏଣୁ ରାଧାନାଥୀ କାବ୍ୟଭାଷା ଦୀର୍ଘ ପଚାଶବର୍ଷଧରି ଓଡ଼ିଆ କାବ୍ୟ ସରସ୍ୱତୀଙ୍କର ଭାଷା ହୋଇଛି ।

ରାଧାନାଥ କାବ୍ୟ ଭାରତୀଙ୍କ ଆକାଶ ବିଚିତ୍ରବର୍ଣ୍ଣା । ତାହା ତାଙ୍କର ଉତ୍ତରକାଳର ବହୁ ସାରସ୍ୱତ ସାଧକଙ୍କୁ ସମ୍ମୋହିତ କରିଛି । ତାଙ୍କର ଭାଷା ବିଭା ଅନେକଙ୍କ କାବ୍ୟ କବିତାରେ ଫୁଟି ଉଠିଛି । ପ୍ରଥମରୁ କୁହାଯାଇଛି-କବିତା ତ ଉର୍ବଶୀ ପରି । ସେ ସ୍ୱୈରିଣୀ; କୁଟୁମ୍ବିନୀ ନୁହେଁ । ପୁଣି ଦ୍ରୌପଦୀ ପରି ବହୁ ବସ୍ତ୍ରାନ୍ୱିତା । ପାଞ୍ଚାଳୀର ବସ୍ତ୍ରହରଣର ପ୍ରଚେଷ୍ଟା ସିନା କରାଯାଏ କିନ୍ତୁ ରାଧାନାଥୀ କାବ୍ୟ ଦ୍ରୌପଦୀର ବସ୍ତ୍ର ଉନ୍ମୋଚନ ସହଜରେ ଶେଷ ହୁଏନା ।

ଅଧିକନ୍ତୁ ରାଧାନାଥୀୟ କାବ୍ୟ ପରିଧିରେ ବହୁ କବିଙ୍କର ବୈତାଳିକ ଗାନ । ଅନେକଙ୍କ ମୂର୍ଚ୍ଛନା ଭିତରେ ରାଧାନାଥ ବାଣୀର ସ୍ପଷ୍ଟ ଅଥବା ଅସ୍ପଷ୍ଟ ସଂକେତ ଶୁଭେ । ପାଠକେ ପୁରୁରବାର କା ନେଇ ଉଭାହେଲେ । କାବ୍ୟ-ଉର୍ବଶୀଙ୍କ ଭିତରେ ରାଧାନାଥୀୟ ନିକ୍ୱଣ ଅବଶ୍ୟ ଶୁଣିବାକୁ ପାଇବେ । ସତ୍ ପାଠକକୁ ପୁରୁରବା ଭଳି କାବ୍ୟ-ଉର୍ବଶୀପାଇଁ ହୁଏତ ତପସ୍ୟା କରିବାକୁ ପଡ଼ିବ । ଏହା ହିଁ ହୁଏତ ସେମାନଙ୍କର ନିୟତି ।



# ରାଧାନାଥଙ୍କ କାବ୍ୟ-କବିତାରେ ରୋମାଣ୍ଟିକ୍ ଚେତନା

ଡଃ କୃଷ୍ଣଚନ୍ଦ୍ର ପ୍ରଧାନ

ଓଡ଼ିଆ ସାହିତ୍ୟର କେତେକ ଆଲୋଚକ ମଧ୍ୟଯୁଗର ବିଶିଷ୍ଟ କବି ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟିରେ ରୋମାଣ୍ଟିକ ଭାବଚେତନାକୁ ଲକ୍ଷ୍ୟ କରିଥିଲେ ହେଁ, ରୋମାଣ୍ଟିକ୍ ସାହିତ୍ୟ ଦୃଷ୍ଟିରୁ ବିଚାର କଲେ ରାଧାନାଥ ରାୟ ହେଉଛନ୍ତି ବାସ୍ତବରେ ପ୍ରଥମ ଓଡ଼ିଆ ରୋମାଣ୍ଟିକ୍ କବି । ପାଶ୍ଚାତ୍ୟ ସାହିତ୍ୟରୁ ହିଁ ଓଡ଼ିଆ ସାହିତ୍ୟକୁ ରୋମାଣ୍ଟିକ ଭାବପ୍ରବାହ ଗଡ଼ିଆସିଛି ଓ ରାଧାନାଥଙ୍କ ସୃଷ୍ଟିରେ ତାହା ପରିପକ୍ୱତା ଲାଭ କରିଛି । ରାଧାନାଥଙ୍କ ସୃଷ୍ଟି ପର୍ଯ୍ୟାଲୋଚନା ପୂର୍ବରୁ ରୋମାଣ୍ଟିକ୍ ଶବ୍ଦର ଅର୍ଥ ଓ ତାର ଲକ୍ଷଣ ସମ୍ବନ୍ଧରେ ସାମାନ୍ୟ ଆଲୋକପାତ କରିବା ପ୍ରାସଙ୍ଗିକ ହେବ ।

ରୋମାଣ୍ଟିକ୍ ଚେତନା ସ୍ରଷ୍ଟାର ଏକ ମାନସିକ ଚିତ୍ତବୃତ୍ତି । ଏହାର ଦୃଷ୍ଟିଭୂମିରୁ ଭୂମା, ପରିଚିତ ମାଟିରୁ ଅପରିଚିତ ଆକାଶକୁ । ସୌନ୍ଦର୍ଯ୍ୟ, ପ୍ରେମ, ରହସ୍ୟାତ୍ମକ ଆନନ୍ଦାନୁଭୂତି ଏହା ମଧ୍ୟରେ ଦ୍ୟୋତିତ । ସୃଷ୍ଟିଶୀଳତା ସହିତ ଏହାର ସଂପର୍କ ଅତୀବ ନିବିଡ଼ । ସୌନ୍ଦର୍ଯ୍ୟବୋଧ ପ୍ରତି ଥିବା ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ହିଁ ରୋମାଣ୍ଟିକ୍ ଚେତନା । ଏହି ଦୃଷ୍ଟିଭଙ୍ଗୀ ସୃଷ୍ଟି ହୋଇଥାଏ ସ୍ରଷ୍ଟାର ଜୀବନ ଓ ଜଗତର ଅବୋଧ ତଥା କଳ୍ପନା ଶକ୍ତିରୁ । ପ୍ରେମାବେଗ ଏବଂ ସୌନ୍ଦର୍ଯ୍ୟାନୁଭୂତି ଦ୍ୱାରା ଏହା ପରିପୁଷ୍ଟିଲାଭକରେ । ସେଥିପାଇଁ କାର୍ଲାଇଲ୍ କହିଥିଲେ—"Romanticism is the star that weeps, it is the wind that wails, it is the night that shudders, the bird that flies and the flower that breathes perfume, it is the Sudden gush, ecstasy grown faint, the cistern beneath, the pamls, rosy hopes with her thousand loves, the angel and the pearl, the white robe of the willows (willous). It is the infinite and the stary." ବିଭିନ୍ନତା ଓ ବୈଚିତ୍ର୍ୟ ଏହାର ପ୍ରାଣସ୍ୱରୂପ । ଧରାବନ୍ଧା ଗତାନୁଗତିକ ପଦ୍ଧତି ପ୍ରତି ପରାଙ୍‌ମୁଖ । ବୈୟକ୍ତିକତାର ପ୍ରାଧାନ୍ୟ, ଇନ୍ଦ୍ରିୟଗ୍ରାହ୍ୟ ଚାକ୍ଷୁଷ ସୌନ୍ଦର୍ଯ୍ୟ ପ୍ରତି ଅଧିକ ଧ୍ୟାନ, ସାହସିକତାର ଆକର୍ଷଣ, ବୀରତ୍ୱ, ବିସ୍ମୟ ଉଦ୍ଦୀପକ କାର୍ଯ୍ୟ, ଅଲୌକିକତା, ସ୍ୱପ୍ନ ଓ ଅବଚେତନର ରୂପାୟନରେ ବ୍ୟଗ୍ରତା,

ପ୍ରକୃତିର ବିପୁଳ ବୈଚିତ୍ର୍ୟ ପ୍ରଦର୍ଶନରେ ନିପୁଣତା, ମାନବିକତା ପ୍ରତି ଗୁରୁତ୍ୱଆରୋପ, ଚିତ୍ତର ମୁକ୍ତି ଓ ଚିନ୍ତାରୁ ନିଷ୍କୃତି, ଆଧ୍ୟାତ୍ମିକତା, କୌତୂହଳତା, କ୍ଷୁବ୍‌ଧତା, ଦୁଃସାହସିକତା, ଚମକ ଓ ଉତ୍ତେଜନା ରୋମାଣ୍ଟିକ୍ ସାହିତ୍ୟର ବିଶିଷ୍ଟ ଗୁଣ ।[୧] ଜୀବନକୁ କଳ୍ପନାଦ୍ୱାରା କବିତ୍ୱମୟୀ ଭାଷାରେ ସରଳରୂପେ ବର୍ଣ୍ଣନା କରିବା ହିଁ ରୋମାଣ୍ଟିସିଜିମ୍‌ର ଲକ୍ଷ୍ୟ ।[୨] ରୋମାଣ୍ଟିକ୍ ସାହିତ୍ୟର ଲକ୍ଷଣ ରୂପେ ଯେଉଁ କେତେକ ବୈଶିଷ୍ଟ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ ତନ୍ମଧ୍ୟରେ ମୁଖ୍ୟ ହେଉଛି- କଳ୍ପନା ପ୍ରବଣତା, ପ୍ରକୃତିଚେତନା, ଅଲୌକିକତା, ପ୍ରେମ ଓ ସୌନ୍ଦର୍ଯ୍ୟବୋଧ, ଅତୀତ ପ୍ରବଣତା, ବ୍ୟକ୍ତିକତା, ବିଷାଦବାଦ, ରୂପକଳ୍ପ, ରହସ୍ୟବୋଧ ଓ ସାଙ୍ଗୀତିକତା ଆଦି ମୁଖ୍ୟ । ରାଧାନାଥଙ୍କ ସୃଷ୍ଟି ସଂପଦରେ ଉପରୋକ୍ତ ବୈଶିଷ୍ଟ୍ୟଗୁଡ଼ିକ କିପରି ରୂପଲାଭ କରିଛି, ନିମ୍ନ ଆଲୋଚନାରୁ ତାହା ପ୍ରତିପାଦିତ ହୋଇପାରିବ ।

**କଳ୍ପନା ପ୍ରବଣତା :**

କଳ୍ପନା ହିଁ ରୋମାଣ୍ଟିକ୍ କବିମାନଙ୍କର ମୌଳିକ ଉପାଦନ । କଳ୍ପଲୋକ ସହିତ ଦୃଶ୍ୟମାନ ଜଗତର, ଅସୀମ ସହିତ ସସୀମର ଯୋଗସୂତ୍ର ସ୍ଥାପନ କ୍ଷେତ୍ରରେ କଳ୍ପନାହିଁ କବିଙ୍କୁ ସହାୟତା କରିଥାଏ । କଳ୍ପନା ବ୍ୟତିରେକେ ସାହିତ୍ୟ ସୃଷ୍ଟି ଅସମ୍ଭବ । ସେଇଥିପାଇଁ ଇଂରାଜୀ ଆଲୋଚକ ହେଜ୍‌ଲିଟ୍ କହିଛନ୍ତି । 'Poetry is the language of imagination and passion.' ସ୍ରଷ୍ଟାର ବ୍ୟକ୍ତି ସତ୍ତା ସହିତ ଏହାର ନିଗୂଢ଼ ସମ୍ବନ୍ଧ ବିଦ୍ୟମାନ । ରୋମାଣ୍ଟିକ୍ କବିଗଣ କଳ୍ପଲୋକ ଜଗତକୁ ବାସ୍ତବ ଜଗତ ରୂପେ ଗ୍ରହଣ କରନ୍ତି । କବି ବ୍ଲେକ୍ କଳ୍ପନା ଶକ୍ତି ଓ ଈଶ୍ୱରଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖିନାହାନ୍ତି । କଳ୍ପନା ଶକ୍ତି ଦ୍ୱାରା କବି ଚିହ୍ନା ସହିତ ଅଚିହ୍ନାର, ସାଧାରଣ ଜଗତ ସହିତ ଅସାଧାରଣ ଜଗତର ସଂପର୍କ ସ୍ଥାପନ କରନ୍ତି । ବ୍ଲେକ୍‌ଙ୍କ ସ୍ୱୀକାରୋକ୍ତି ଏ କ୍ଷେତ୍ରରେ ପ୍ରଣିଧାନଯୋଗ୍ୟ । 'The world of imagination is the world of Eternity, it is the divine bosom into which we shall all go after the death of the vegitated body. This world

---

୧- ଧର୍ମ, ସାହିତ୍ୟ ଓ ସାହିତ୍ୟତତ୍ତ୍ୱ— ଡଃ କୃଷ୍ଣଚନ୍ଦ୍ର ପ୍ରଧାନ । ପୃ-୧୮୬ ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ । ୧ମ ସଂ. - ୧୯୯୮

୨- Romanticism is simple the expression of life as seen by imagination rather than by prosaic common sense
History of English Literature vol-II (1798-1966) W.R. Goodman, P-20, 2nd revised Edition, Doaba House, 1688, Naisarak, Delhi

of imagination is infinite and Eternal, whereas the world of Generation or vegetation is Finite and Temporal' ।[ୗ] କଲେରିଜ୍, କୀଟ୍ସ୍, ଶେଲୀ, ୱାର୍ଡ୍ସୱାର୍ଥ ଆଦି ପ୍ରସିଦ୍ଧ କବିଗଣ କଳ୍ପନା ଶକ୍ତି ଉପରେ ଗୁରୁତ୍ୱ ଆରୋପ କରିଥାନ୍ତି । ଶେଲୀ କବିତାକୁ କଳ୍ପନାଶକ୍ତିର ପରିପ୍ରକାଶ ବୋଲି ମତବ୍ୟକ୍ତ କରିଛନ୍ତି । କବି କୀଟ୍ସଙ୍କ ସୌନ୍ଦର୍ଯ୍ୟାନୁଭୂତି ମୂଳରେ ଏହି କଳ୍ପନାଶକ୍ତିର ଗୁରୁତ୍ୱ ହିଁ ବିଦ୍ୟମାନ । ଉଚ୍ଚତର କଳାକୁଶଳତା ଏବଂ ହୃଦୟଗଭୀର ଆଲୋଡ଼ନ କଳ୍ପନା ଦ୍ୱାରା ହିଁ ଭାଷାରେ ପ୍ରକାଶ ଲାଭକରି କବିତାର ରୂପ ଗ୍ରହଣ କରିଥାଏ । ଏହି କାରଣରୁ ରୋମାଣ୍ଟିକ୍ କବିଗଣ କଳ୍ପନା ବିଳାସୀ ।

ଓଡ଼ିଆ କବି ରାଧାନାଥ ଏହି କଳ୍ପନା ଚକ୍ଷୁବଳରେ ଦୃଶ୍ୟ ଜଗତ ସହିତ ଅଦୃଶ୍ୟ ଜଗତର, ଇନ୍ଦ୍ରିୟଜଗତ ସହିତ ଅତୀନ୍ଦ୍ରିୟ ଜଗତର ସମନ୍ୱୟ ସ୍ଥାପନ କରିଛନ୍ତି । ପାଶ୍ଚାତ୍ୟ କାହାଣୀ ସହିତ ପ୍ରାଚ୍ୟ ଜଗତର ପୁରାଣ, ଇତିହାସ, କିମ୍ବଦନ୍ତୀ ଓ ଭୂଗୋଳକୁ ସମ୍ମିଶ୍ରିତ କରି ସ୍ୱ-କଳ୍ପନା ବିଳାସର ଯଥାର୍ଥ ନିଦର୍ଶନ ପ୍ରତିପାଦନ କରିଛନ୍ତି । ନାରୀରୂପ ବର୍ଣ୍ଣନା, ପ୍ରକୃତିର ଅପରୂପ ଆଲେଖ୍ୟ, ଭୌଗୋଳିକ ବିବରଣୀ ପ୍ରଦାନ ଅବକାଶରେ ଏହି କଳ୍ପନା ଶକ୍ତିର ଯଥାର୍ଥ ବିନିଯୋଗ ହୋଇଛି । 'ଚନ୍ଦ୍ରଭାଗା' କାବ୍ୟରେ ଚନ୍ଦ୍ରଭାଗାର ନୀଳସାଗର ଗର୍ଭରେ ମିଶିଯିବାକୁ କବି କଳ୍ପନା ବଳରେ ଆତ୍ମାର ପରମାତ୍ମା ସହିତ ମିଳନକୁ ସୂଚାଇଛନ୍ତି—

"ମିଶିଯାଏ ଯଥା ପ୍ରଭାତୀ ତାରା ରବି କିରଣେ ।
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱଆତ୍ମା ଚରଣେ ।
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ ।
ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ ।"

ଚିଲିକା ପରି ସାମାନ୍ୟ ହ୍ରଦଟିଏ କବି କଳ୍ପନା ବଳରେ ଚିରନ୍ତନ ରୂପ ଲାଭ କରିଛି । ତେଣୁ ଚିଲିକା ଏକ ହ୍ରଦ ନ ହୋଇ କାବ୍ୟ ନାୟିକାରେ ପରିଣତ ହୋଇଛି । ପୁନରାୟ ହିମାଦ୍ରିର ତୁଷାରାଚ୍ଛଦିତ ରୂପ ମଧ୍ୟରେ କବି ମହାଦେବଙ୍କ ରୂପର ଯେଉଁ ସାମ୍ୟ ପ୍ରଦର୍ଶନ କରିଛନ୍ତି, ତାହା ତାଙ୍କ କଳ୍ପନା ଶକ୍ତିର ଦ୍ୟୋତକ—

"ନିସ୍ତବ୍ଧ ନୀରବ ସେ ମହାବିଜନେ ।
ସନାତନ ଶ୍ୱେତ ତୁଷାର ଆସନେ
ବ୍ୟୋମକେଶ ମୂର୍ତ୍ତି ଦେଖିଲି ଚମକି ।
ପଡ଼ିଲା ସେ ରୂପେ ଚିତ୍ତବୃତ୍ତି ଥକି ।"

ୗ- Romantic Imagination— C.M. Bowra. p-3 Oxford University press London-1961

ନାରୀରୂପ ବର୍ଣ୍ଣନା କ୍ଷେତ୍ରରେ କବି କଳ୍ପନା ଆକାଶ ସ୍ପର୍ଶ କରିଛି । ଚନ୍ଦ୍ରଭାଗା ଲଲାଟର ସିନ୍ଦୂର ବିନ୍ଦୁକୁ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି—

"ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର ବିନ୍ଦୁ ରମଇ ଆଖି ।
ନୁହଇଁ ସିନ୍ଦୂର ରହିଛି ସ୍ମର ହୃଦୟ ଲାଖି ।

ସେହିପରି 'ଉଷାର' ନୟନଭଙ୍ଗୀର ଶୋଭା ବର୍ଣ୍ଣନା କରି ରାଧାନାଥ ଲେଖିଛନ୍ତି—

"ବୃଥା ହାଣୁଥିଲା ମୃଗୀ ଅଙ୍ଗେ ବାଣ ସିନା ସୁନ୍ଦରୀ ।
ଚାହାଣୀ ଭଙ୍ଗୀରୁ ଥିଲେ ସେହି ଯେଣୁ ଆଗହୁଁ ମରି ।"

**ପ୍ରକୃତି ଚେତନା—**

ସରଳ ଓ ପ୍ରାକୃତିକ ଜୀବନଯାପନ ପ୍ରତି ରୋମାଣ୍ଟିକ୍ କବିମାନେ ଅଧିକ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ପଲ୍ଲୀପ୍ରାଣତା ଓ ପ୍ରକୃତି ପ୍ରାଣତା ରୋମାଣ୍ଟିକ୍ କବିତାଗୁଡ଼ିକର ଅନ୍ୟତମ ବିଶେଷତ୍ୱ । ସହର ଜୀବନର ଚଳଚଞ୍ଚଳତା ଓ ଆବର୍ଜନାରୁ ମୁକ୍ତିଲାଭ କରି ପ୍ରକୃତିର ଶାନ୍ତସ୍ନିଗ୍ଧ କୋଳରେ ଆଶ୍ରୟ ନେବାକୁ ଏମାନେ ବିଶେଷ ଆଗ୍ରହୀ । ଶିଳ୍ପ ବିପ୍ଳବ ପରେ ନଗର ସଭ୍ୟତାର ବିକାଶ ଦ୍ୱାରା ମଣିଷ କ୍ରମଶଃ ଆତ୍ମକୈନ୍ଦ୍ରିକ ହୋଇ ପଡ଼ିଲା । ଜୀବିକାଉଦ୍ଦେଶ୍ୟରେ ଗ୍ରାମର ସରଳ ମଣିଷ ସହରାଭିମୁଖୀ ହେଲା । ପଲ୍ଲୀର ଜୀବନଯାତ୍ରା ଧୀରେ ଧୀରେ ଫିକା ପଡ଼ିବାକୁ ଆରମ୍ଭକଲା । ବ୍ୟକ୍ତିକୈନ୍ଦ୍ରିକ ମଣିଷମାନଙ୍କର ଏହି ସ୍ୱାର୍ଥ ପ୍ରବଣତାକୁ ଲକ୍ଷ୍ୟ କରି ରଷୋ ଘୋଷଣା କଲେ, "ପ୍ରକୃତି କୋଳକୁ ପ୍ରତ୍ୟାବର୍ତ୍ତନ ପାଇଁ (Return to nature) ରୋମାଣ୍ଟିକ୍ ସାହିତ୍ୟ ସ୍ରଷ୍ଟା ଏହି ଆହ୍ୱାନକୁ ଗ୍ରହଣ କରି ପ୍ରକୃତି ସହିତ ନିବିଡ଼ ସମ୍ବନ୍ଧ ସ୍ଥାପନ କଲେ । ପ୍ରକୃତି କେବଳ ଏକ ଜଡ଼ବସ୍ତୁ ହୋଇ ରହିଲା ନାହିଁ । ସେଥିରେ ଜୀବନୀଶକ୍ତିର ଆରୋପ କରାଗଲା । ସେ ପରିଚିତ ହେଲା ଏକ ଗତିଶୀଳ ଅସ୍ତିତ୍ୱ ରୂପେ । ୱାର୍ଡ଼ସ୍‌ୱାର୍ଥ, କୀଟ୍‌ସ୍ ଆଦିଙ୍କ କବିତାରେ ପ୍ରକୃତି ଅଦ୍ଭୁତ ଓ ବୈଚିତ୍ର୍ୟମଣ୍ଡିତ ରୂପ ପରିଗ୍ରହ କଲା । ନଦୀ, ପର୍ବତ, ଉପବନ, ନିର୍ଝରିଣୀ, ବୃକ୍ଷଲତା-ସମସ୍ତେ ଯେପରି ବ୍ୟକ୍ତିତ୍ୱମଣ୍ଡିତ ହୋଇ ଉଠିଲେ । ପ୍ରକୃତି ଏକାଧାରରେ ଗ୍ରହଣ କଲା ଶିକ୍ଷକ, ସାଥୀ, ଉପଦେଶକ ଓ ନିର୍ଦ୍ଦେଶକର ଭୂମିକା । ୱାର୍ଡ଼ସ୍‌ୱାର୍ଥ ପ୍ରକୃତି ମଧ୍ୟରେ ଅନୁଭବ କଲେ ଅତିମାନବିକ ବସ୍ତୁର ପ୍ରତ୍ୟକ୍ଷ ଆବେଦନକୁ । ଏଡ଼ୱାର୍ଡ଼ ଆଲବର୍ଟ ତାଙ୍କ ସମ୍ପର୍କରେ ତେଣୁ କହିଛନ୍ତି— To Wordsworth nature is not only a procession of seasons and seasonal fruitation, it is the eye of all thing of all things, natural and super-natural, into which the observant soul can peer and behold the spirit that inhabits all

things.[୪] ୱାର୍ଡ଼୍ସୱାର୍ଥଙ୍କ Lines written in Early Spring ରୁ ଏହି ପ୍ରସଙ୍ଗରେ ଏକ ପଦ ଉଦ୍ଧାର କରାଯାଇପାରେ—

"To her fair works did nature link,
The human soul that through me ran,
And much it grieved my heart to think
What man has made of man."

ଓଡ଼ିଆ ସାହିତ୍ୟରେ ରାଧାନାଥ ପ୍ରକୃତିର ନବରୂପକାର ପ୍ରକୃତି ପୁରୋଧା । ପ୍ରକୃତି ମଧ୍ୟରେ ସେ ପ୍ରଥମ କରି ଜୀବନସତ୍ତାର ଉପଲବ୍ଧି କଲେ । ପ୍ରକୃତିର ନିସର୍ଗ ଚିତ୍ର ପ୍ରଦାନ ସଙ୍ଗେ ସଙ୍ଗେ ସେଥିରେ ସେ ବ୍ୟକ୍ତିତ୍ୱର ଆରୋପ କଲେ ଏବଂ ପ୍ରକୃତି ସହିତ ଆତ୍ମୀୟତା ସ୍ଥାପନ କଲେ । 'ଚିଲିକା' ଖଣ୍ଡକାବ୍ୟର ନାୟିକା ସ୍ୱୟଂ ପ୍ରକୃତି । ସେ ପୁଣି ତାଙ୍କର ଅନ୍ତରଙ୍ଗା ବାନ୍ଧବୀ, ସୁଖଦୁଃଖର ସାଥୀ । 'ଚିଲିକା'କୁ ସମ୍ବୋଧନ କରି ତେଣୁ ସେ ଲେଖିଛନ୍ତି—

ଗୁରୁପ୍ରାୟେ ତାଙ୍କୁ ଦୂରୁ କରି ଭୀତି । ସଖି ପ୍ରାୟେ ତୋତେ ସ୍ମରୁଥିଲି ନିତି ।

ଚିଲିକାର ରୂପ ତାଙ୍କ ପ୍ରାଣରେ ଦ୍ୱୈତଭାବର ଉଦ୍ରେକ କରିଛି । ତାର ମନୋହର ରୂପରେ ସେ ହୋଇଛନ୍ତି ମୁଗ୍ଧ ଚକିତ । ସତେ ଯେପରି ପ୍ରକୃତିର ସମସ୍ତ ଇନ୍ଦ୍ରିୟଗ୍ରାହ୍ୟ ରୂପ ଭଣ୍ଡାର ତାଙ୍କ ସମ୍ମୁଖରେ ଉନ୍ମୁକ୍ତ ହୋଇଯାଇଛି । ଆକୁଳ ଆବେଗରେ ରାଧାନାଥ ଗାଇଛନ୍ତି—

ସ୍ନିଗ୍ଧ ରୂପ ତୋର ଚିତ୍ତ ଉଲ୍ଲାସକ । ସୁମଧୁର ଦ୍ୱୈତଭାବର ଦ୍ୟୋତକ ।

ପ୍ରକୃତିର ରୂପ ଶୋଭା ଓ ଆତ୍ମୀୟତା ତାଙ୍କ ନିରାଶ ପ୍ରାଣରେ ସରସତା ଭରି ଦେଇଛି । ପ୍ରକୃତି ଓ ତାଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । କବିଙ୍କ ସ୍ୱୀକାରୋକ୍ତି—

''ତୃଷାତୁରରୋଗୀ ଗୃହେ ଯଥା ବସି । ସ୍ମରେ କମଳିନୀ ହରିତ ସରସୀ ।
ସେହି ରୁକ୍ଷ ଦୃଶ୍ୟେ ସ୍ନିଗ୍ଧ ଛବି ତୋର । ନେତ୍ରାତିଥି ସ୍ମୃତି କରୁଥିଲା ମୋର ।''

—ଚିଲିକା

କେବଳ ଓଡ଼ିଶା ନୁହେଁ, ଭାରତୀୟ ପ୍ରକୃତିର ବିଭିନ୍ନ ଦୃଶ୍ୟ ବିଭବ ସଜୀବ ରୂପନେଇ ଚିଲିକା ଓ ମହାଯାତ୍ରାରେ ଆତ୍ମପ୍ରକାଶ କରିଛି । ଓଡ଼ିଶା ଓ ଭାରତର ଭୌଗୋଳିକ ଚିତ୍ର ଜୀବନ ଲାଭ କରିଛି ତାଙ୍କ ବର୍ଣ୍ଣନାରେ । ପ୍ରକୃତିର ଶୋଭା ଓ

୪- A History of English Literature— Edward Albert, 4th Edition, P-290

ଘଟଣାରେ କବି ମାନବୋଚିତ ବହୁ ଉପଲବ୍ଧି ଅନୁଭବ କରିଛନ୍ତି । ନୀଳାଚଳର ଦୋଳମହୋତ୍ସବର ବର୍ଣ୍ଣନା ଅବକାଶରେ ବାସନ୍ତୀ ପ୍ରକୃତିର ବର୍ଣ୍ଣନା ବେଶ୍ ଜୀବନ୍ତ ଓ ସମ୍ବେଦନଶୀଳ—

"ସମଗରାପାଟେ · ହଂସୀ ହସି ପଦ୍ମ
ପରାଗେ ଶରୀର ବୋଳି
କରୁଛନ୍ତି କଳ- ନାଦେ ପ୍ରେମାଳାପ
ଲହରୀ ଦୋଳାରେ ଦୋଳି
ଲଙ୍କା ଆମ୍ରକୁଞ୍ଜେ ବିହରନ୍ତି ମୃଗୀ-
କୃଷ୍ଣସାର ପ୍ରେମ ଭୋଳେ,
ପ୍ରଭୁ ଲୋକନାଥ- ଅଧିଷ୍ଠିତ ଶୁଭ୍ର-
ବାଲିସ୍ତୂପାବଳୀ ଖୋଲେ,
କପୋତ ଦଂପତି ପ୍ରେମ କି ସଂପତ୍ତି
ରଟୁଛନ୍ତି ତାଳବନୁ
ଉଲ୍ଲାସେ କଂପାଇ ବସନ୍ତ ରଚିତ
ଗଳେ ନବ ଇନ୍ଦ୍ରଧନୁ ।

'ଉଷା' କାବ୍ୟରେ ମାନବର ମନ ସହିତ ପ୍ରକୃତିର ଏକ ଧର୍ମକୁ ସମନ୍ୱୟ କରି ମଣିଷ ଓ ପ୍ରକୃତି ମଧ୍ୟରେ ଯୋଗସୂତ୍ର ସ୍ଥାପନ କରିଛନ୍ତି—

"ମାତ୍ର ନିମ୍ନମୁଖ ପୟଃ ପୁଣି· ଦୃଢ଼ ପ୍ରତିଜ୍ଞ ମନ
ଯେତେ ବାରିଲେ ହେଁ ମାନନ୍ତି ନାହିଁ ସେ କେବେ ବାରଣ ।"

'ନନ୍ଦିକେଶ୍ୱରୀ' କାବ୍ୟରେ ଉତ୍କଳର ବିଭିନ୍ନ ଅଞ୍ଚଳର ପ୍ରାକୃତିକ ବୈଶିଷ୍ଟ୍ୟ ପ୍ରଦାନ ଅବକାଶରେ କବିଙ୍କର ସୂକ୍ଷ୍ମ ବିଚାରବୋଧ ଓ ଚିନ୍ତାଧାରାର ପରିପ୍ରକଶ ଘଟିଛି । ଏଠାରେ ମଧ୍ୟ ପ୍ରକୃତି ଜୀବନ୍ତ ଓ ମାନବ ପରି କର୍ମପ୍ରବଣ ।

ନିଆଳୀ ଯା କୁଞ୍ଜେ ପାଟଳି ପ୍ରସୂନ । କାମିଙ୍କି କରନ୍ତେ ଯେହ୍ନେ କାମତୂଣ ।
କୋଠଦେଶ ମଞ୍ଜୁ ପୁନ୍ନାଗ-କେଶରେ । ମଠେ ଗତି ଯହିଁ କୁଶଭଦ୍ରା କରେ ।
କୋଠାରଙ୍ଗ ଯହିଁ ବଦନ ବିଜନେ । ଧଉଳି ଦେଖଇ ଦୟା ଦରପଣେ ।
ରାହାଙ୍ଗ ରଚନ୍ତି ଯହିଁ କେଳି କଳା । ଇଜ୍ଜ୍ୱଳେ ନିକୁଞ୍ଜେ କଲ୍ଲୋଳ କୁନ୍ତଳା ।
ଅନ୍ଧାରି ସିକତା କୁହେ ତରଙ୍ଗିତ । ସୁନ୍ଦର ରଙ୍ଗଣେ ସଦା ସିନ୍ଦୂରିତ ।

ଇଂରାଜୀ ରୋମାଣ୍ଟିକ୍ କବିମାନଙ୍କ ପରି ରାଧାନାଥ ପ୍ରକୃତିର ବିଭିନ୍ନ ବିଭାଗକୁ ନିବିଡ଼ ଭାବରେ ଭଲପାଉଥିଲେ ଓ ତା' ମଧ୍ୟରେ ମାନବିକ ସମସ୍ତ ଗୁଣର ଆରୋପ କରି ତାକୁ ଏକ ଚିରନ୍ତନ ମର୍ଯ୍ୟାଦା ପ୍ରଦାନ କରିଥିଲେ ।

**ଅଲୌକିକତା :**

ଅଲୌକିକ ବିଷୟବସ୍ତୁର ବର୍ଣ୍ଣନା ପ୍ରତି ରୋମାଣ୍ଟିକ୍ କବିମାନଙ୍କ ମନରେ ଦୁର୍ବଳତା ଭରି ରହିଥିଲା । କଲେରିଜ୍ଙ୍କ କେତେକ ସୃଷ୍ଟିରେ ଏହି ଅଲୌକିକ ଉପାଦାନର ପ୍ରଚୁଳତା ଲକ୍ଷ୍ୟ କରାଯାଇଥାଏ । ରାଧାନାଥଙ୍କ ସୃଷ୍ଟି ସମୂହରେ ମଧ୍ୟ ଅଲୌକିକ ଉପାଦାନର ଗୁରୁତ୍ୱ ସର୍ବାଧିକ ଉପଲବ୍ଧି ହୋଇଥାଏ । 'ଉଷା' କାବ୍ୟରେ ରାଜମହିଷୀ କନ୍ୟାଲାଭ ନିମିତ୍ତ ଅଦ୍ଭୁତ ସ୍ୱପ୍ନ ଦେଖିଛନ୍ତି—

ଦିନେ ନିଶିଯୋଗେ ଦେଖିଲେ ମହିଷୀ ସ୍ୱପ୍ନ ଅଦ୍ଭୁତ
ଉଲ୍କାରେ ଉଡ଼ି ଆସିଲା ଗଗନେ ଜ୍ୟୋତି ବହୁତ ।

କାର୍ତ୍ତିକେୟଙ୍କ ଦ୍ୱାରା ଜୟନ୍ତର ତିନୋଟି ସୁବର୍ଣ୍ଣ ପଦ୍ମ ପ୍ରାପ୍ତି, ଉଷା ଏବଂ ଜୟନ୍ତଙ୍କର ବିବାହବେଦୀ ଉପରେ ହସ୍ତଗ୍ରନ୍ଥି ସମୟରେ ପରଲୋକପ୍ରାପ୍ତି ଏବଂ ଶୋକାଭିଭୂତ ରାଜା ନୁରୁଙ୍କୁ କାଳୀଙ୍କର ସେମାନଙ୍କ ପୂର୍ବଜନ୍ମ ବୃତ୍ତାନ୍ତ କଥନ, 'ଯଯାତିକେଶରୀ' କାବ୍ୟରେ ଉତ୍କଳର ରାଜାଙ୍କୁ ଦେବୀ ଦୁର୍ଗାଙ୍କର ସ୍ୱପ୍ନରେ ପରିଚୟ ପ୍ରଦାନ ଏବଂ ଶୂନ୍ୟବାଣୀ, 'ନନ୍ଦିକେଶ୍ୱରୀ ' କାବ୍ୟରେ ନିରୁତ୍ସାହିତ ଚୋଳଗଙ୍ଗଙ୍କ ସମ୍ମୁଖରେ ଦେବୀ ଗଙ୍ଗାଙ୍କର ଆବିର୍ଭାବ, ସୁବର୍ଣ୍ଣ କେଶରୀଙ୍କ ଜୈତ୍ରମଣି ପ୍ରସଙ୍ଗ, 'କେଦାରଗୌରୀ' କାବ୍ୟରେ ରାଜା ଲଲାଟକେଶରୀଙ୍କୁ ସ୍ୱପ୍ନାଦେଶ ଓ କେଦାରଗୌରୀ ମନ୍ଦିର ନିର୍ମାଣ, 'ପାର୍ବତୀ' କାବ୍ୟରେ କୌଶଲ୍ୟାର ପ୍ରେତାତ୍ମାର ଆବିର୍ଭାବ ଏବଂ ସମସ୍ତ ଘଟଣା ବର୍ଣ୍ଣନ, 'ମହାଯାତ୍ରା'ରେ ଅଗ୍ନିଙ୍କର ସମୁଦ୍ର ଗର୍ଭରୁ ଆବିର୍ଭାବ, ପାଣ୍ଡବମାନଙ୍କ ସହିତ ସହ୍ୟାଦ୍ରି ଶିଖରକୁ ଗମନ ଏବଂ ଯୁଧିଷ୍ଠିରଙ୍କୁ ଦିବ୍ୟାଞ୍ଜନ ପ୍ରଦାନ ପୂର୍ବକ ଭବିଷ୍ୟତ ଭାରତବର୍ଷର ବିପର୍ଯ୍ୟୟ ସନ୍ଦର୍ଶନ ଆଦି ଘଟଣା ଏହି ଅଲୌକିକତାକୁ ସୂଚାଇଥାଏ ।

**ପ୍ରେମ ଓ ସୌନ୍ଦର୍ଯ୍ୟବୋଧ :**

ରୋମାଣ୍ଟିକ୍ କବି ପ୍ରେମ, ପ୍ରଣୟ ଓ ସୌନ୍ଦର୍ଯ୍ୟର ଉପାସକ । ପ୍ରେମ ମଣିଷକୁ କରେ ମହାନ୍ । ତାର ଚିତ୍ତରାଜ୍ୟକୁ କରେ ବିସ୍ତୃତ । ରାଧାନାଥଙ୍କ ଅଧିକାଂଶ କାବ୍ୟ ଏହି ପ୍ରେମ ଉପରେ ହିଁ ପ୍ରତିଷ୍ଠିତ । 'କେଦାରଗୌରୀ' କାବ୍ୟରେ ପ୍ରେମ ପାଇଁ କେଦାର ଏବଂ ଗୌରୀଙ୍କର ଆତ୍ମତ୍ୟାଗ ଦ୍ୱାରା ପ୍ରେମ ହୋଇଛି ଶୁଦ୍ଧ ସୁବର୍ଣ୍ଣ ପରି ଜାଜ୍ଜ୍ୱଲ୍ୟମାନ । ନନ୍ଦିକା ସାମାନ୍ୟ ଅବଳା ହେଲେହେଁ, ଚୋଳଗଙ୍ଗଙ୍କ ପ୍ରେମ ପ୍ରାପ୍ତି ପାଇଁ ସେ ଅସାଧ୍ୟ ସାଧନ କରିବା ପାଇଁ ପଶ୍ଚାତ୍‌ପଦ ହୋଇ ନାହିଁ । ରାଧାନାଥଙ୍କ ଭାଷାରେ—

ମହାବଳୀ ପ୍ରେମ ଅଟଇ ମହୀର । ପ୍ରେମସିନା କରେ ଅବଳାକୁ ବୀର ।
ପ୍ରେମ ଦିଏ ବୁଦ୍ଧି ଉଦ୍‌ଯୋଗ ସାହସ । ପ୍ରେମ କରିପାରେ ଅବଶକୁ ବଶ ।

'ଉଷା' କାବ୍ୟରେ ପ୍ରେମର ଏକ ସ୍ୱଚ୍ଛ ଓ ପବିତ୍ର ରୂପ ପରିଲକ୍ଷିତ । ଉଷାର ପ୍ରେମ ଲାଭ ପାଇଁ ଜୟନ୍ତ ମୃତ୍ୟୁ ବରଣ କରିବାକୁ କୁଣ୍ଠିତ ହୋଇ ନାହିଁ । ଯେଉଁ ଉଷା ଦୌଡ଼ ପ୍ରତିଯୋଗିତାରେ ପୁରୁଷକୁ ପରାଜିତ କରି ଅପାର ଆନନ୍ଦ ଲାଭକରେ, ଜୟନ୍ତଠାରୁ ପରାଜିତ ହୋଇ ସେ ଅଧିକ ଆନନ୍ଦିତା ହୋଇଛି । ଏହାର କାରଣ ନିର୍ଦ୍ଦେଶ କରି ରାଧାନାଥ ଲେଖିଛନ୍ତି—

ଜୟଠାରୁ ଆଜି ପରାଜୟ ତାର ପ୍ରିୟ ଅଧିକ
ଘଟାଇ ନପାରେ କିବା ପୁଣି ପ୍ରେମ ଐନ୍ଦ୍ରଜାଲିକ ।

କେବଳ ପ୍ରେମ କ୍ଷେତ୍ରରେ ହିଁ ପରାଜୟର ଆନନ୍ଦ ରହିଛି । ଯଦିଓ ରାଧାନାଥଙ୍କ ସୃଷ୍ଟିରେ ବହୁ ଆଲୋଚକ କାମଜ ପ୍ରେମର ଗନ୍ଧକୁ ଆବିଷ୍କାର କରିଛନ୍ତି, ଏହା ସତ୍ତ୍ୱେ ଦେହ ମଧ୍ୟରେ ଦେହାତୀତ ରାଜ୍ୟକୁ ଗମନ କରିବାରେ ତାଙ୍କ ପ୍ରେମ ସୃଷ୍ଟିରେ ଉପାଦାନର ଅଭାବ ନାହିଁ ।

ରୋମାଣ୍ଟିକ୍ କବି ରାଧାନାଥ ସୌନ୍ଦର୍ଯ୍ୟର ଉପାସକ । ରୋମାଣ୍ଟିକ୍ ମାନେ ହିଁ ସୌନ୍ଦର୍ଯ୍ୟ ପ୍ରିୟ । ପ୍ରକୃତିର ଚାରୁ ଆଲେଖ୍ୟ, ନାରୀର ବିଭିନ୍ନ ଅଙ୍ଗ ବର୍ଣ୍ଣନାରେ ତାଙ୍କ ସୌନ୍ଦର୍ଯ୍ୟ ଘନ ମନର ପରିଚୟ ମିଳିଥାଏ । ରୂପ ସହିତ ଭାବର ସମ୍ପର୍କ ଅଚ୍ଛେଦ୍ୟ । ଏକକୁ ଛାଡ଼ି ଅନ୍ୟର ସ୍ଥିତି କାହିଁ ? ସେଥିପାଇଁ ଦାଦୂ କହିଥିଲେ—

"ରୂପ କହେ ହମ୍ ଭାବ୍‌କୋ, ପାଉ ଭାବ୍ କହେ ହମ୍ ରୂପ
ଆପସ୍ ମେଁ ଦଉ ପୂଜନ୍ ଚାହେ ପୂଜା ଅଗାଧ ଅନୂପ ।"

ରୂପ ମଧ୍ୟରେ ସୌନ୍ଦର୍ଯ୍ୟର ସତ୍ତା ନିହିତ । ବୋଧହୁଏ ସେହି କାରଣରୁ ରାଧାନାଥ କହିଥିଲେ—"ରୂପ ଆକର୍ଷଣ ପ୍ରବଳ କିବା ନରେ ଅମରେ ।" ନାରୀର କେବଳ ଅଙ୍ଗ ନୁହେଁ, ତାର ଅପାଙ୍ଗରେ ମଧ୍ୟ ସୌନ୍ଦର୍ଯ୍ୟ ଭରପୂର । କନ୍ଦୁକ କ୍ରୀଡ଼ା ନିମଗ୍ନା ଚନ୍ଦ୍ରଭାଗାର ପ୍ରତି ଅଙ୍ଗଭଙ୍ଗୀରେ ନବଶୋଭାର ଉଚ୍ଛୁଳ ପ୍ଲାବନ । ତାର ପ୍ରତିଟି ଚାହାଣିରେ ଫୁଲର ବର୍ଷା ଝରିପଡୁଛି ବାଲୁକାରାଶି ଉପରେ—

"ଅସମ୍ଭାଳେ ଫିଟି କୁନ୍ତଳ ଭୂମିଯାଏ ପରଶି
ଯେଣେ ଅନାଉଛି ଲଳନା ଫୁଲଯାଏ ବରଷି ।"

ନାରୀର ଲାବଣ୍ୟମୟ ଅଙ୍ଗ ବର୍ଣ୍ଣନାରେ କବି କଳ୍ପନା ସୌନ୍ଦର୍ଯ୍ୟର ଶିଖରରେ ପହଞ୍ଚିଛି । ପଦ୍ମାବତୀଙ୍କ ମ୍ଳାନ ମୁଖକୁ ଲଜ୍ଜାନତ ଭୂଲତା ସହିତ ତୁଳନା ଅତୀବ ଚମତ୍କାର—

ମ୍ଳାନ ମୁଖ ଛବି ବିଷାଦ ରେଖାରେ
ଭୂଲତା ଅଙ୍କା କି ଲଜ୍ଜା ତୁଳିକାରେ —ଚିଲିକା

ନାରୀର ରୂପଶୋଭା ଅତୁଳନୀୟ । ପ୍ରଭାତୀ ତାରା ସଦୃଶ ସ୍ମୃତିନଭରେ ସେ ଚିର ଜାଜ୍ଜ୍ୱଲ୍ୟମାନ—

ଥରେ ପଡ଼ିଗଲେ ସେ ନୟନେ ଜଗତ ନୟନକାରା
ହେଉଥାଇ ରୂପବତୀ ସ୍ମୃତି ନଭେ ପ୍ରଭାତୀ ତାରା । —ଉଷା

ସୌନ୍ଦର୍ଯ୍ୟ ହିଁ ସତ୍ୟ ଓ ସତ୍ୟ ହିଁ ସୌନ୍ଦର୍ଯ୍ୟ । ଜନ୍‌କୀଟ୍‌ସଙ୍କ ଭାଷାରେ—A thing of beauty is a joy for ever. ସେହିକଥା ରାଧାନାଥ ମଧ୍ୟ କହିଛନ୍ତି—

ସୁନ୍ଦରେ ତୃପ୍ତିର ଅବସାଦ ନାହିଁ । ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।''

ରାଧାନାଥଙ୍କ ରୂପଚେତନା ସୌନ୍ଦର୍ଯ୍ୟକୁ ଆଶ୍ରୟ କରି ଗଢ଼ି ଉଠିଛି ଓ ଏହି ସୌନ୍ଦର୍ଯ୍ୟର ସାକାରରୂପ ପ୍ରେମ ଉପରେ ହିଁ ପ୍ରତିଷ୍ଠିତ ।

**ଅତୀତ ପ୍ରବଣତା ଓ ଜାତୀୟତା :**

ଅତୀତର ଜୀବନଧାରା ଏବଂ କିମ୍ବଦନ୍ତୀ ଓ ଇତିହାସ ପ୍ରତି ରୋମାଣ୍ଟିକ କବିମାନଙ୍କର ବିଶେଷ ମୋହ ରହିଥିଲା । ଅତୀତରେ କଳା, ସଂସ୍କୃତି ଏପରିକି ପ୍ରାଚୀନ ଗୌରବାବହ ଐତିହ୍ୟ ଓ ନୈତିକତାଦ୍ୱାରା ସେମାନେ ବହୁ ପରିମାଣରେ ଅନୁପ୍ରାଣିତ ହୋଇଥିଲେ । ସ୍କଟ୍ ଏବଂ କୀଟ୍‌ସ୍‌ଙ୍କ କବିତାରେ ଏହି ପ୍ରବଣତା ବିଶେଷ ଉପଲବ୍ଧ ହୋଇଥାଏ । ସମାଜ, ଇତିହାସ ଏବଂ କିମ୍ବଦନ୍ତୀରୁ ଉପାଦାନ ସଂଗ୍ରହ କରି ରୋମାଣ୍ଟିକ୍ କବିଗଣ ବହୁ ଗାଥା କବିତା ରଚନା କରିଥିଲେ । ଜାତୀୟତାର ଭାବଧାରା ଦ୍ୱାରା ଜନସମାଜକୁ ଅନୁପ୍ରାଣିତ କରିବାକୁ ଏମାନେ ସର୍ବଦା ସଚେଷ୍ଟ ଥିଲେ । ରାଧାନାଥ ରାୟଙ୍କ କାବ୍ୟ କବିତାରେ ଅତୀତ ଜୀବନର ଚିତ୍ର, ଇତିହାସ, କିମ୍ବଦନ୍ତୀ ଆଦିର ଉପାଦାନ ଅପ୍ରତୁଳ ନୁହେଁ । ଓଡ଼ିଶା ଓ ଭାରତର ଅତୀତ ଗୌରବ ପ୍ରଖ୍ୟାପନ କରିବାକୁ ଯାଇ ସେ ଇତିହାସ ଏବଂ କିମ୍ବଦନ୍ତୀର ଆଶ୍ରୟ ନେଇଛନ୍ତି । 'ପାର୍ବତୀ' କାବ୍ୟରେ ଏହାର ବହୁ ସୂଚନା ରହିଛି—

× × × ×

ପୁଣ୍ୟଶ୍ଳୋକ ଐର ନରପତି ହେଲେ
କାଳତୁଣ୍ଡେ କବଳିତ
କାହିଁ ଗଲେ ଇନ୍ଦ୍ରଦ୍ୟୁମ୍ନ ମହୀପତି
ଉତ୍କଳ ଗୌରବ ରବି × ×

ପରାଧୀନ ଉତ୍କଳୀୟ ଦୁର୍ବଳତା ଓ ହୀନ ଆଚରଣକୁ ସେ ବ୍ୟଙ୍ଗ କରି ଅତୀତ ଉତ୍କଳର ମହାନ୍ ଗୌରବମୟ ଇତିହାସକୁ ପର୍ଯ୍ୟାଲୋଚନା କରିଛନ୍ତି 'ଦରବାର'ରେ —

ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପି । କୀର୍ତ୍ତିମାଳା ଯା'ର ବିରାଜେ ଅଦ୍ୟାପି ।
ଏକାମ୍ରେ କୋଣାର୍କେ ଯା' କୀର୍ତ୍ତି ଭାସ୍ୱର। ଯୋଗ୍ୟପୁତ୍ର ତୁମ୍ଭେ ସେହି ଉତ୍କଳର ।
ମାତ୍ର କାଳ ମୁଖେ ସେ କୀର୍ତ୍ତି ବିମଳ। ଦେଇ ନିଜ ମୁଖେ ଏବେ ଯେ ଉତ୍କଳ ।
ବୋଲି ଦେଇଅଛି ଅଜ୍ଞାନର ମସୀ । × × × ×

ରାଧାନାଥଙ୍କ ଦେଶାତ୍ମବୋଧ କେବଳ ଓଡ଼ିଶାର ସୀମିତ ଭୂଖଣ୍ଡରେ ଆବଦ୍ଧ ନଥିଲା; ସର୍ବଭାରତୀୟ ସ୍ତରକୁ ତାହା ପ୍ରସାର ଲାଭ କରି ଯାଇଥିଲା । 'ଶିବାଜୀଙ୍କ ଉତ୍ସାହ ବାକ୍ୟ'ରେ ଏ ଦେଶର ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ ସେ କହିଛନ୍ତି—

ଯାବତ ଦେହରେ ବହେ ପ୍ରାଣ ବାୟୁ
ଶୂରେ ! ନ ବିମୁଖ ହୁଅ ସମରେ
ମାର ଅବା ମର ଏଥୁଁ ଅନ୍ୟ ଆଉ
ନ ଘଟୁ ଯେମନ୍ତେ ତୁମ୍ଭ ଭାଗ୍ୟରେ ।

ଦେଶ ଓ ଦେଶବାସୀଙ୍କ ଅଧୋପତନରେ ମ୍ରିୟମାଣ କବି କ୍ଷୋଭ ପ୍ରକାଶ କରିଛନ୍ତି । 'ମହାଯାତ୍ରା'ରେ—

ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟି କି ଆର୍ଯ୍ୟନାମ ଦାୟାଦ ଜଗତେ
ବିନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର ତାଙ୍କରି ଶୋଣିତ
ବହେଟି କି ଆହେ ଯୋଦ୍ଧେ ତୁମ୍ଭ ଧମନୀରେ

ଏତଦ୍‌ବ୍ୟତୀତ ଅତୀତ ଗୌରବର ଦୃଷ୍ଟାନ୍ତ, ବର୍ତ୍ତମାନ ଦେଶର ଅଧଃପତନ, ଓଡ଼ିଶା ତଥା ଭାରତର ବିଭିନ୍ନ ସ୍ଥାନ,ପାହାଡ଼ ପର୍ବତ, ନଦ-ନଦୀ, ଆଦିର ବର୍ଣ୍ଣନା ପ୍ରସଙ୍ଗରେ କବି ନିଜର ଜାତୀୟ ଚେତନା ଓ ଅତୀତ ପ୍ରତି ରହିଥିବା ପ୍ରବଣତାକୁ ପ୍ରକାଶ କରିଛନ୍ତି ।

**ବୟକ୍ତିକତା :**

ରୋମାଣ୍ଟିକ୍ କବିଗଣ ସେମାନଙ୍କ କବିତାରେ ବ୍ୟକ୍ତିଗତ ଅନୁଭୂତି ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥାନ୍ତି । ପ୍ରଚଳିତ ସାମାଜିକ ବ୍ୟବସ୍ଥା ପ୍ରତି ସେମାନେ ବୀତସ୍ପୃହ ହୋଇ ପଡ଼ିଥିବାରୁ, ସେମାନଙ୍କ ସୃଷ୍ଟିରେ ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାଧାରା

ମୁଖ୍ୟସ୍ଥାନ ଗ୍ରହଣ କରିଛି । ବ୍ୟକ୍ତିଗତ ଅନୁଭୂତି ଓ କବିର ହୃଦୟ ହିଁ ତାଙ୍କର ଏକମାତ୍ର ଭାବଜଗତ । ଜଣଙ୍କର ଅନୁଭୂତି ଅନ୍ୟଠାରୁ ଭିନ୍ନ ହୋଇଥିବାରୁ ବ୍ୟକ୍ତିକତାର ପ୍ରାଧାନ୍ୟ ପରିଲକ୍ଷିତ ହେବା ସ୍ୱାଭାବିକ । ସେଇଥିପାଇଁ ରୁଷୋ କହିଥିଲେ— I am not made like any one I have seen; I dare believe that I am not made like any one in existence. If I am not better, at least I am different. ରୋମାଣ୍ଟିକ୍ ସ୍ରଷ୍ଟାମାନେ ବିଶ୍ୱାସ କରନ୍ତି, ସ୍ରଷ୍ଟା ସର୍ବଦା ତାର ହୃଦୟ ଓ ଆତ୍ମାଦ୍ୱାରା ଅନୁପ୍ରେରିତ ହେବା ଆବଶ୍ୟକ । ୱାର୍ଡ଼ସ୍‌ୱାର୍ଥ କହିଥିଲେ—'କବିତା ହେଉଛି ଶକ୍ତିଶାଳୀ ଭାବାବେଗର ସ୍ୱତଃସ୍ଫୂର୍ତ୍ତ ଉଚ୍ଛ୍ୱାସ' । ଏହି ସ୍ୱତଃସ୍ଫୂର୍ତ୍ତତା ସ୍ୱାଭାବିକତାକୁ ଆଶ୍ରୟ କରିବା ଉଚିତ୍ । ଜନ୍ କୀଟ୍‌ସ ଟେଲରଙ୍କ ନିକଟକୁ ତାଙ୍କର ଏକପତ୍ରରେ କବିତାର ଏହି ସ୍ୱାଭାବିକ ଭାବପ୍ରକାଶ ସମ୍ପର୍କରେ ଲେଖିଥିଲେ— That, if poetry comes not as naturally as the leaves to a tree, it had better not come at all. ଏହି ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ ସ୍ୱତନ୍ତ୍ରତା ସହଜରେ ବାରି ହୋଇପଡ଼େ । ତାଙ୍କର ପ୍ରତିଟି ସୃଷ୍ଟିରେ ହୃଦୟର ଆବେଗ ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି ରୂପେ ପ୍ରକାଶଲାଭ କରିଛି । ପ୍ରକୃତିଚେତନା, ପ୍ରେମବୋଧ, ଜାତୀୟତା ତଥା ଦେଶାତ୍ମବୋଧ ଆଦି ସମ୍ପର୍କରେ ବର୍ଣ୍ଣନା କରିବା ସମୟରେ ତାଙ୍କର ସ୍ୱାତନ୍ତ୍ର୍ୟ ଓ ସ୍ୱକୀୟ ଦୃଷ୍ଟିଭଙ୍ଗୀ ସହଜରେ ଜଣା ପଡ଼ିଯାଇଥାଏ । ଅତୀତ ସାହିତ୍ୟର ଅନୁସରଣ ଅପେକ୍ଷା ବରଂ ନିଜପାଇଁ ଏକ ସ୍ୱତନ୍ତ୍ର ପରିଧି ସୃଷ୍ଟି କରିବା କ୍ଷେତ୍ରରେ ସେ ବହୁ ପରିମାଣରେ ସଫଳ ହୋଇଛନ୍ତି । ସେଥିପାଇଁ ପ୍ରକୃତି ଚିତ୍ରଣରେ ତାଙ୍କର ଯେପରି ମୌଳିକତା ଲକ୍ଷ୍ୟ କରାଯାଇଥାଏ, ଜାତୀୟତା କ୍ଷେତ୍ରରେ ମଧ୍ୟ ତାଙ୍କ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥାଏ ।

**ବିଷାଦବାଦ :**

ବିଷାଦବାଦ ରୋମାଣ୍ଟିକ୍ ସାହିତ୍ୟର ଅନ୍ୟତମ ବିଶିଷ୍ଟ ବିଭାବ । ରୁଷୋ କହିଥିଲେ— Man is born free but every where he is in chains. ସାମାଜିକ କଟକଣା ଏହି ସ୍ରଷ୍ଟାମାନଙ୍କୁ ଅଣନିଃଶ୍ୱାସୀ କରିଦେଇଥିଲା । ପାରମ୍ପରିକ ସାମାଜିକ ବ୍ୟବସ୍ଥା ଦ୍ୱାରା ଏମାନେ ବିଷାଦଗ୍ରସ୍ତ ହୋଇ ପଡ଼ିଥିଲେ । ଏଥିରୁ ମୁକ୍ତି ପାଇଁ ଅନେକ କ୍ଷେତ୍ରରେ ସେମାନେ ପଳାୟନପନ୍ଥୀ ସାଜିଛନ୍ତି । ରାଧାନାଥ ତାଙ୍କ ଜୀବନର ଅନେକ କ୍ଷେତ୍ରରେ ଏହି ପ୍ରତିକୂଳ ବାତାବରଣ ମଧ୍ୟ ଦେଇ ଗତି କରିଛନ୍ତି । ରୁଗ୍‌ଣ ସ୍ୱାସ୍ଥ୍ୟ, ତାଙ୍କର ଯଶ ଓ ଖ୍ୟାତିକୁ ନେଇ ଶତ୍ରୁତାବୃଦ୍ଧି, ଅନ୍ୟାନ୍ୟ କେତେକ ଅପ୍ରାପ୍ତିଜନକ ହତାଶବୋଧ ଯୋଗୁଁ ସେ

ବିଷାଦଗ୍ରସ୍ତ ହୋଇ ପଡ଼ିଥିଲେ । ଶେଲି କହିଥିଲେ— I fall upon the thorns of life, I bleed. "ଆଶାତୀତର ଚିରନ୍ତନ ପ୍ରତ୍ୟାଶା ଓ ଅନାତ୍ମୀୟର ନିୟତ ଆତ୍ମୀୟକରଣ, ରୋମାଣ୍ଟିକ୍ କାବ୍ୟ ସାଧନାର ମୂଳଲକ୍ଷ୍ୟ ହୋଇଥିବାରୁ ପ୍ରାଣରେ ଦୁଃଖାନୁଭୂତି ବରଣ କରିବା କବି ପକ୍ଷରେ ସ୍ୱାଭାବିକ । ତେଣୁ ରୋମାଣ୍ଟିକ୍ କବି ଭାବରେ ଦୁଃଖାନ୍ଧକାରର ରହସ୍ୟ ଉଦ୍‌ଘାଟନ କରିବାକୁ ରାଧାନାଥଙ୍କର ରୋମାଣ୍ଟିକ୍ ଶିଳ୍ପମାନସ ଉନ୍ମୁଖ ହୋଇଉଠିଥିବା କିଛି ଅସ୍ୱାଭାବିକ ନୁହେଁ ।[୫] ପ୍ରତ୍ୟେକ ମଣିଷ ଶାନ୍ତି ଆଶାୟୀ । ଆଶା ଫଳବତୀ ନ ହେଲେ ବିଷାଦିତ ହେବା ସ୍ୱାଭାବିକ । ରାଧାନାଥ ତାଙ୍କ ୧୦ । ୩ । ୧୮୯୬ ପତ୍ରରେ ଏ ସମ୍ପର୍କରେ ସୂଚନା ଦେଇ ଲେଖିଛନ୍ତି—" Peace at any price is however my motto. X X I am really tired of this world." କୋଳାହଳପୂର୍ଣ୍ଣ ସାଂସାରିକ ଜୀବନରୁ ଦୂରରେ ରହି ଶାନ୍ତିରେ କିଛିକ୍ଷଣ ବିତାଇବାକୁ ସେ କିପରି ଉତ୍କଣ୍ଠିତ ହୋଇଉଠିଥିଲେ ତାହା ତାଙ୍କ ୬ । ୫ । ୧୮୯୬ରିଖ ପତ୍ରରୁ ଦେଖିବାକୁ ମିଳେ—"I am therefore disposed to prefer solitude to company however pleasant." ରାଧାନାଥଙ୍କ ଏହି ବିଷାଦବାଦ ଦଶରଥ ବିୟୋଗ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ, ଶ୍ମଶାନ ଦୃଶ୍ୟ ଆଦି କବିତା ଏବଂ ମହାଯାତ୍ରା, ଚିଲିକା, ଦରବାର, ଉଷା, ପାର୍ବତୀ ଆଦି କାବ୍ୟରେ ଦେଖିବାକୁ ମିଳେ । ରାଧାନାଥଙ୍କ ବିଷାଦବାଦ ସମ୍ପର୍କରେ ମତପ୍ରଦାନ କରିବାକୁ ଯାଇ ଅଧ୍ୟାପକ ସର୍ବେଶ୍ୱର ଦାସ କହନ୍ତି—"କାହାରି କାହରି ଧାରଣା ଜୀବନର ଦୁଃଖାନ୍ତକ କଳ୍ପନା (Tragic conception of life) ସେ ପାଶ୍ଚାତ୍ୟ ସାହିତ୍ୟରୁ ଗ୍ରହଣ କରିଛନ୍ତି । ନାନା ବୈଜ୍ଞାନିକ ଆବିଷ୍କ୍ରିୟା ଫଳରେ ଏକ ସର୍ବନିୟନ୍ତା ଅତିମାନବୀୟ ଶକ୍ତିର ଶିବତ୍ୱରେ ଅବିଶ୍ୱାସ, ଫରାସୀ ବିପ୍ଲବର ବ୍ୟର୍ଥତା, ଶିଳ୍ପ ବିପ୍ଲବ ଜନିତ ସାଧାରଣ ମାନବର ଦୁରବସ୍ଥା, ଜର୍ମାନ୍ ଦାର୍ଶନିକ ସୋପେନ୍‌ହାର୍‌ଙ୍କ ପ୍ରଚାରିତ ନୈରାଶ୍ୟବାଦର ପ୍ରସାର ପ୍ରଭୃତିର ସମ୍ମିଳିତ ପ୍ରତିକ୍ରିୟାରୁ ପାଶ୍ଚାତ୍ୟ ରୋମାଣ୍ଟିକ୍ ସାହିତ୍ୟରେ ଦୁଃଖ ଓ ନୈରାଶ୍ୟବାଦର ଜନ୍ମ । ପ୍ରାଚ୍ୟ ତଥା ପାଶ୍ଚାତ୍ୟ ସାହିତ୍ୟରେ ଧୂରୀଣ ରାଧାନାଥଙ୍କ ସମ୍ବେଦନଶୀଳ କବି ପ୍ରାଣ ରୋମାଣ୍ଟିକ୍ ଯୁଗର ସାହିତ୍ୟ ପ୍ରତି ପ୍ରଧାବିତ ହେବା ସ୍ୱାଭାବିକ ।[୬] ସଂସାରରେ କୂଟକପଟତା ଯୋଗୁଁ ସଂସାର ତାଙ୍କୁ ଏକ କାରାଗାର ସଦୃଶ ପ୍ରତୀୟମାନ ହୋଇଛି—

୫- ରୂପପ୍ରାଣ ରାଧାନାଥ ରାଧାନାଥ ପରିଚିତି— ଅଧ୍ୟାପକ ଚିନ୍ତାମଣି ବେହେରା, ପୃ-୨୭, ପ୍ରକାଶକ-ରାଧାନାଥ ପାଠାଗାର, ସୋର-୧ମପ୍ର.୧୯୬୦

୬- ଦୁଃଖବାଦ ଓ କବିବର ରାଧନାଥ- ରାଧାନାଥ ପରିଚିତି, ଅଧ୍ୟାପକ ସର୍ବେଶ୍ୱର ଦାସ, ପୃ-୫୩

ଛାର ଭାଗ୍ୟ ମୋର ପିହିତ ପାଷାଣେ । ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।
ଚିର ହାହାମୟ ଏ ଛାର ଜୀବନ । ଜୀବନ ନୁହଁଇ ଜୀବନ୍ତ ମରଣ ।
ପ୍ରତିଦିନ ଦୁଃଖ ପ୍ରହାରେ ଜର୍ଜର । ପଟ୍ଟଶିଷ୍ୟ ମୁହିଁ ଦୁଃଖ ଗୁରୁଙ୍କର ।
ଦୁଃଖଦତ୍ତ ଜ୍ଞାନ ଚକ୍ଷୁରେ ଜଗତ । ଦେଖିବାରେ ମୁହିଁ ଅଭ୍ୟସ୍ତ ସତତ ।

—ଚିଲିକା

ସଂସାରରେ ଥାଇ ମଧ୍ୟ ସେ ସଂସାର ପ୍ରତି ଉଦାସୀନ । ସାମୟିକ ସୁଖ ପାଇଁ ସେ ଚିଲିକାର ପ୍ରାକୃତିକ ସୁଷମାରେ ହଜିଯିବାକୁ ଚାହିଁଛନ୍ତି । ଅଥଚ ତାହା ମଧ୍ୟ ତାଙ୍କ ଭାଗ୍ୟରେ ସମ୍ଭବ ହୋଇପାରି ନାହିଁ ।

ଚିଲିକା ତୋହର ଏହି ଶୋଭାବନ । ବର୍ଣ୍ଣୋତ୍ସବମୟ ଦୃଶ୍ୟ ସାୟନ୍ତନ ।
ଅଟେ ସର୍ବଶୋଭା ସୀମନ୍ତର ଟୀକା । ପ୍ରକୃତିର ଚାରୁ ଆଲେଖ୍ୟ ଶାଳିକା ।
ଏ ସୁଖର ମୁହିଁ ନୁହଁଇ ଭାଜନ । ମୋ ଭାଗ୍ୟେ ସିନା ଏ ଭଙ୍ଗୁର ସ୍ୱପନ ।

କ୍ଷଣିକ ସୁଖରେ ସେ ଆତ୍ମହରା ହୋଇ ନାହାନ୍ତି, ବରଂ ହୋଇଛନ୍ତି ଅଧିକ ଦୁଃଖିତ । ସେ ଜାଣନ୍ତି "ସୁଖରୂପେ ଯାହା ଜନ ନେତ୍ରେ ଦିଶେ, ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ ।" ମଣିଷର କ୍ଷଣଭଙ୍ଗୁର ଜୀବନ ପ୍ରତି ସେ ବୀତସ୍ପୃହ । ଦୁଃଖ ଯେ ଜୀବନର ଚିରନ୍ତନ ସାଥୀ, ଏହା ସେ କେବେ ଭୁଲିପାରି ନାହାନ୍ତି । ଯେଉଁ ଜଗତକୁ ମଣିଷ ମହାସୁଖ ବୋଲି ଭାବନ୍ତି, ପ୍ରକୃତରେ ତାହା ଦୁଃଖ ବିଜଡ଼ିତ ।

ଦୁଃଖମୟ ଭବସିନା ମହାସୁଖ ବୋଲି
ବୋଲନ୍ତି ଜଗତେ ଯାକୁ, ଜଡ଼ିତ ସେ ସଦା ଦୁଃଖେ । —ମହାଯାତ୍ରା

ସମସାମୟିକ ସାମାଜିକ ଅବସ୍ଥା, କୂଟକାପଟ୍ୟ, ଛଳନା, ବ୍ୟକ୍ତି ସ୍ୱାର୍ଥ ଲକ୍ଷ୍ୟ କରି ସେ ମଧ୍ୟ ହୋଇଛନ୍ତି ବିଷାଦିତ । ସଂସାରର ଦଦରା ବୋଇତର ଯାତ୍ରୀ ଭାବେ ଜୀବନର ବାସ୍ତବ ସତ୍ୟ ଉପଲବ୍ଧି କରି ସେ ଆତଙ୍କିତ ହୋଇଛନ୍ତି ଏବଂ ଅନ୍ୟମାନଙ୍କୁ ମଧ୍ୟ ଏ କ୍ଷେତ୍ରରେ ସତର୍କ କରାଇ ଦେଇଛନ୍ତି—

ପାସୋରି ନାହିଁ ମୁଁ ସ୍ୱପ୍ନେ କଦାଚିତୋ_ ସର୍ବେଅଛୁ ଏକ ଦଦରା ବୋଇତେ ।
ଆଗେ ପଛେ ତୋଳି ଭବ ଉର୍ମିମାନ । ଭବ ଜଳଧିରେ ଗର୍ଜଇ ତୋଫାନ ।
ଯେଣେ ମନ ତେଣେ ରହୁଅଛି ନାହା । ନାହିଁ କଡୁଆଳ ଦେଖାଇବ ରାହା ।
କାହୁଁ ଅଇଲା ଏ କାହିଁ ଯିବ ବାହି । କହିବାକୁ ଏହା ନାବେ କେହି ନାହିଁ ।

—ଦରବାର

ମୁଖ୍ୟତଃ ପ୍ରକୃତିର ରୂପଶୋଭା ଉପଭୋଗରୁ ବଞ୍ଚିତ, ସାଂସାରିକ ଜୀବନର ଛଳନା, ବ୍ୟକ୍ତିଗତ ଜୀବନର ହତାଶ ଓ ରୁଗଣ୍‌ତା ଆଦି କାରଣରୁ ରାଧାନାଥଙ୍କ ବିଷାଦବାଦର ସୃଷ୍ଟି ।

ରୂପକଳ୍ପ :

ଅଷ୍ଟାଦଶ ଶତକବେଳକୁ ବିଶ୍ୱ ସାହିତ୍ୟରେ ରୂପକଳ୍ପର ଭୂମିକା ଥିଲା ଅତ୍ୟନ୍ତ ଗୌଣ । ମାତ୍ର ରୋମାଣ୍ଟିକ୍ ଆନ୍ଦୋଳନ ସମୟରେ ଏହା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲା । ଅନ୍ତଃ ବିଶ୍ୱ ସହିତ ବହିଃ ପରିବେଶର ସଂଯୋଗ କ୍ଷେତ୍ରରେ ରୂପକଳ୍ପ ଏକ ସେତୁର ଭୂମିକା ଗ୍ରହଣ କରିଥାଏ । ବିଶ୍ୱ ସତ୍ୟ ଓ ସୌନ୍ଦର୍ଯ୍ୟ ମୂର୍ତ୍ତିମାନ ରୂପ ଗ୍ରହଣକରେ ରୂପକଳ୍ପରେ । ଯେଉଁ ଅନ୍ତର୍ମୁଖୀ ଚେତନା କବିଙ୍କୁ ଅନୁସନ୍ଧିତ୍ସୁ ଓ ଆବିଷ୍କାରପ୍ରବଣ କରି ଗଢ଼ିତୋଳେ, ତା ମୂଳରେ ଥାଏ ରୂପକଳ୍ପର ଅପୂର୍ବ ଉପାଦାନ । ସେଥିପାଇଁ ଟି. ବି. ବର୍ଣ୍ଣ କହିଛନ୍ତି— "The poetic image act as a bridge between the inner world and that of our external environment at though it some unrealised truth about ourselves is able to shoulder up from its shadowy hinterland into our waking conscious." ରୋମାଣ୍ଟିକ୍ କବିଗଣ ରୂପକଳ୍ପ ମାଧମରେ ନିଜର ଚିନ୍ତା ଓ ଚେତନାକୁ ପରିଦୃଶ୍ୟମାନ ଜଗତର ବିଭିନ୍ନ ଉପାଦାନ ସହିତ ଆକାର ଦେଇ ପ୍ରକାଶ କରିବାକୁ ଚେଷ୍ଟା କରିଛନ୍ତି । ୱାର୍ଡ଼ସ୍‌ୱାର୍ଥ, ବ୍ଲେକ୍ ଆଦି କବିଗଣ ଏକ୍ଷେତ୍ରରେ ବେଶ୍ ସିଦ୍ଧହସ୍ତତାର ପରିଚୟ ପ୍ରଦାନ କରିଛନ୍ତି ।

ରାଧାନାଥଙ୍କ ସୃଷ୍ଟିରେ ରୂପକଳ୍ପଗୁଡ଼ିକ ବେଶ୍ ଭାବଧର୍ମୀ । ମାନବୀୟ ଭାବନା ତଥା ଚିନ୍ତା ଏବଂ ଚେତନାକୁ ପ୍ରକାଶ କରିବା କ୍ଷେତ୍ରରେ ଏହା ସମ୍ପୂର୍ଣ୍ଣ ଅନୁକୂଳ । 'ମହାଯାତ୍ରା'ରେ ନୈମିଷାରଣ୍ୟ ବର୍ଣ୍ଣନା ଅବକାଶରେ ଏହି ରୂପକଳ୍ପର ଚମତ୍କାର ଭାବପ୍ରବାହକୁ ଅନୁଭବ କରିହୁଏ—

ଯତୀନ୍ଦ୍ରେ ଅଧ୍ୟାତ୍ମବାଦୀ ଅବିରତେ ରତ
ଯହିଁ ଆଧ୍ୟାତ୍ମିକ ଯାଗେ ହୃଦବେଦୀ ଯହିଁ
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀ ସ୍ୱରୂପିଣୀ
ତପବହ୍ନି, କାମ ଆଜ, କ୍ରୋଧ ଯଜ୍ଞ ପଶୁ
ଧୈର୍ଯ୍ୟ ଯୂପ, ତ୍ୟାଗ ହୋତା, ବଚନ ଉଦ୍‌ଗାତା
ସୋମରସ ସୁମଧୁର ଭକ୍ତି ଅଧୋକ୍ଷଯେ ।

ସେହିପରି 'ଚିଲିକା' ଖଣ୍ଡକାବ୍ୟରେ ମାଛଶିକାରୀ ନାବିକମାନଙ୍କର ପୋତରେ ମାଛମାନଙ୍କର ଲମ୍ଫ ପ୍ରଦାନକୁ ପାପଗର୍ଭରେ ଅଜ୍ଞାନମାନଙ୍କର ନିପତନ ସହିତ ତୁଳନା

କରି ଚମତ୍କାର ରୂପକଙ୍କ ପ୍ରକାଶ କରିଛନ୍ତି—

ମୀନ ଆକର୍ଷଣ ଆଶେ ପୋତମାଳ । ତରଣୀରେ ଜାଳି ଦେଲାଣି ମଶାଲ ।
ଭବେ ପାପମୂର୍ତ୍ତି ପରି ଅଟଇ ସେ । ସ୍ୱର୍ଣ୍ଣେମାରାତ୍ମକ, ରୂପେ ରମ୍ୟଦିଶେ ।
ପାପ ଗର୍ତ୍ତେ ଯେହ୍ନେ ପଡ଼ଇ ଅଜ୍ଞାନ । ତୀରଗର୍ଭେ ମୀନେ ଡେଇଁ ଦେବେ ପ୍ରାଣ ।

ଏତଦ୍‌ବ୍ୟତୀତ ରହସ୍ୟବାଦୀ ଦୃଷ୍ଟିଭଙ୍ଗୀ ରୋମାଣ୍ଟିକ୍ କବିମାନଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ଜଗତ ଓ ଜୀବନ ସମ୍ପର୍କରେ ଥିବା ବିସ୍ମୟବୋଧରୁ ଏହାର ସୃଷ୍ଟି । ଏହାଦ୍ୱାରା ବସ୍ତୁଜଗତ ବ୍ୟତିରେକେ ସୂକ୍ଷ୍ମଜଗତର ରହସ୍ୟ ଉପଲବ୍ଧି ହୋଇଥାଏ । ରାଧାନାଥଙ୍କ ଦରବାର, ଚିଲିକା, ମହାଯାତ୍ରା ଆଦି ସୃଷ୍ଟିରେ କବିଙ୍କର ଏହି ରହସ୍ୟବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ଦେଖିବାକୁ ମିଳେ । ସାଙ୍ଗୀତିକତା ରୋମାଣ୍ଟିକ୍ କବିତାର ଅନ୍ୟତମ ଲକ୍ଷ୍ୟଣୀୟ ବୈଶିଷ୍ଟ୍ୟ । ଭାବର ସ୍ୱାଧୀନ ପ୍ରକାଶ ସାଙ୍ଗୀତିକ ପ୍ରକାଶକୁ ଅପେକ୍ଷା ରଖୁଥିବାରୁ ରୋମାଣ୍ଟିକ୍ କବିଗଣ ଏହା ଉପରେ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ବିଶିଷ୍ଟ କବି ଶେଲୀଙ୍କ କବିତାର ଏହି ସାଙ୍ଗୀତିକ ଗୁଣ ଯୋଗୁଁ ତାହା ସତେଜ ଓ ଚିତ୍ତ ବିମୋହକ ହୋଇ ପାରିଥିଲା । ଏହାଛଡ଼ା ଭାବର ସହଜ ସରଳ ପ୍ରକାଶ, ସରଳ ଭାଷାର ପ୍ରୟୋଗ ଓ ଲୋକକଥିତ ଭାଷା ଉପରେ ରୋମାଣ୍ଟିକ୍ କବିଗଣ ଗୁରୁତ୍ୱ ଦେଇଛନ୍ତି । ରାଧାନାଥଙ୍କ ଯେକୌଣସି କାବ୍ୟ ପାଠ କଲେ ସାଙ୍ଗୀତିକତାର ମଧୁରତା ବେଶ୍ ଅନୁଭବ କରିହୋଇଥାଏ । ମହାଯାତ୍ରା ବ୍ୟତିରେକେ ତାଙ୍କର ଅନ୍ୟାନ୍ୟ କାବ୍ୟରେ ଭାଷାର ସହଜ ସରଳ ପ୍ରବାହ ଯେକୌଣସି ପାଠକ ଲକ୍ଷ୍ୟ କରିପାରିବେ । ମଧ୍ୟଯୁଗୀୟ କ୍ଲିଷ୍ଟ କାବ୍ୟର ନିଗୂଢ଼ବନ୍ଧନରୁ ମୁକ୍ତକରି ଓଡ଼ିଆ କାବ୍ୟକୁ ସେ ପ୍ରଥମଥର ପାଇଁ ଲୋକଭାଷାରେ ବିସ୍ତୃତ ଭୂମିଉପରେ ବିଚରଣ କରିବାକୁ ଛାଡ଼ିଦେଲେ । ସାହିତ୍ୟର ସମସ୍ତ ଲକ୍ଷଣ ରାଧାନାଥଙ୍କ ସୃଷ୍ଟିରେ ଯେକୌଣସି ପାଠକ ଲକ୍ଷ୍ୟ କରିପାରିବେ । ଏହି ଦୃଷ୍ଟିରୁ କହିବାକୁ ଗଲେ, ରାଧାନାଥ ହେଉଛନ୍ତି ଓଡ଼ିଶାର ପ୍ରଥମ ଶ୍ରେଷ୍ଠ ରୋମାଣ୍ଟିକ୍ କବି ।



# ରାଧାନାଥଙ୍କ ଜାତୀୟତାବୋଧ

ଡଃ ମନୋରଞ୍ଜନ ପ୍ରଧାନ

ଆମ ଦେଶରେ ଜାତୀୟଭାବ-ଚେତନା ବହୁ ପ୍ରାଚୀନ ହେଲେ ହେଁ ଊନବିଂଶ ଶତାବ୍ଦୀର ଶେଷଭାଗରେ ଏହାର ଏକ ବିକଶିତ ରୂପ ଦେଖିବାକୁ ମିଳିଲା । ବହୁ ମନୀଷୀ ଆଧାତ୍ମିକତା ଓ ସମାଜ-ସଂସ୍କାର ଚିନ୍ତାରେ ମଗ୍ନ ରହି ଦେଶ ମାତୃକାର ସେବାରେ ବ୍ରତୀ ହେଲେ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ରାଜା ରାମମୋହନ ରାୟ (୧୭୭୪-୧୮୩୩)ଙ୍କ ଭଳି ସଂସ୍କାରବାଦୀ ଓ ଦେଶପ୍ରେମୀଙ୍କ ଦ୍ୱାରା ଏହାର ଭିତ୍ତିସ୍ଥାପନ ହୋଇଥିଲେ ହେଁ ରାଧାନାଥଙ୍କ (୧୮୪୮-୧୯୦୮) ଠାରେ ଏକାବେଳକେ ଭାରତୀୟ ଓ ଉତ୍କଳୀୟ ଜାତୀୟତାର ପ୍ରାଣବନ୍ତ ପ୍ରଚେଷ୍ଟା ଦେଖିବାକୁ ମିଳିଲା । ରାଧାନାଥଙ୍କ ସାହିତ୍ୟ ଜାତୀୟ ଜୀବନକୁ ପ୍ରଭାବିତ କରିବା ସହିତ ଫରାସୀ ରାଷ୍ଟ୍ରବିପ୍ଳବ (୧୭୮୯) ଫଳରେ ଇଂରେଜୀ ରୋମାଣ୍ଟିକ୍ କବିମାନଙ୍କ ଦୃଷ୍ଟିକୋଣରେ ଘଟିଥିବା ପରିବର୍ତ୍ତନକୁ ମନେ ପକାଇଦେଲା । ଭାରତୀୟ ରାଜନୀତିର ଉତ୍‌ଥାନ ବେଳେ ଉତ୍କଳୀୟ ମାନସରେ ନବଚେତନା ପ୍ରତି ଥିବା ସଚେତନତାକୁ ସ୍ମରଣ କରି ରାଧାନାଥ ସାହିତ୍ୟରେ ଜାତୀୟ-ଭାବଚେତନାକୁ ଗୁରୁତ୍ୱ ଦେଲେ ।

ରାଧାନାଥଙ୍କ ଜାତୀୟତାବୋଧ ତାଙ୍କ ସାହିତ୍ୟରେ ହିଁ ପ୍ରତିଫଳିତ । ମାତ୍ର ଏହାର ବିସ୍ତୃତିକୁ ତିନୋଟି ପର୍ଯ୍ୟାୟରେ ଭାଗ କରାଯାଇପାରେ । ସେଗୁଡ଼ିକ ଯଥାକ୍ରମେ; ଉତ୍କଳ ପ୍ରୀତି, ଭାରତ ଭାବନା ଓ ବିଦେଶୀ ଅନୁକରଣକୁ ଶ୍ଳେଷାତ୍ମକ ଦୃଷ୍ଟି । ରାଧାନାଥଙ୍କ ପ୍ରମୁଖ ସାହିତ୍ୟିକ କାଳ ୧୮୮୫-୯୫ ବୋଲି ଗ୍ରହଣ କରାଯାଇଥାଏ । ମାତ୍ର ଆଶ୍ଚର୍ଯ୍ୟର କଥା ଯେ, ଏଇ ୧୦ବର୍ଷ ମଧ୍ୟରୁ ଦ୍ୱିତୀୟ ପାଞ୍ଚ ବର୍ଷରେ ସେ ଯେଉଁ କେତୋଟି ଉତ୍କୃଷ୍ଟ ସାହିତ୍ୟ ରଚିଲେ ତହିଁରେ ଜାତୀୟତା ହିଁ ପ୍ରାଧାନ୍ୟ ଲାଭ କରିଛି । ଚିଲିକା (୧୮୯୧), ମହାଯାତ୍ରା (୧୮୯୨) ଓ ଦରବାର (୧୮୯୪) ଏହାର ଉଦାହରଣ । ଭାରତ ଗୀତିକା (୧୯୦୩) ଏ ସବୁର ଶେଷ ଓ ସର୍ବଶ୍ରେଷ୍ଠ ନିଦର୍ଶନ ।

ବୋଲିବା ବାହୁଲ୍ୟ, ରାଧାନାଥଙ୍କ ପୂର୍ବରୁ ଯେ ଓଡ଼ିଆ ସାହିତ୍ୟରେ ଉତ୍କଳପ୍ରୀତି ନଥିଲା ତାହା ନୁହେଁ । ସାରଳା ଦାସଙ୍କ ଠାରୁ ଉପେନ୍ଦ୍ରଙ୍କ ପର୍ଯ୍ୟନ୍ତ ବହୁ କବି ନିଜ

ନିଜ କଳ୍ପନା-ଚାତୁରୀରେ ଉତ୍କଳର ମହତ୍ତ୍ୱ ବର୍ଣ୍ଣନା କରିଥିଲେ ହେଁ ଅଷ୍ଟାଦଶ ଶତକର କବି ବ୍ରଜନାଥ ବଡ଼ଜେନାଙ୍କ ପୂର୍ବରୁ ସ୍ୱଦେଶ ପ୍ରୀତିର ରାଜନୈତିକ ରୂପ ଦେଖିବାକୁ ମିଳିନାହିଁ । ଆଧୁନିକ ଯୁଗରେ ରାଧାନାଥ ହିଁ ଓଡ଼ିଶାର ପ୍ରକୃତିରେ ବିମୁଗ୍ଧ ହୋଇ ଜାତୀୟତାର ମହାମନ୍ତ୍ର ପାଠକରିଛନ୍ତି ।

ଆଦ୍ୟ ଯୌବନରେ ରାଧାନାଥଙ୍କ ଓଡ଼ିଆ-ଭାଷା-ବିରୋଧୀ ଆନ୍ଦୋଳନ ତତ୍‌କାଳୀନ ଶିକ୍ଷିତ ଓଡ଼ିଆ ଯୁବକଙ୍କୁ ବ୍ୟଥିତ କରିଥିଲା । ଏହାର ପ୍ରତିକ୍ରିୟା ମଧ୍ୟ ସେତେବେଳେ ଓଡ଼ିଶାକୁ ଚହଲାଇ ଦେଇଥିଲା । ପରବର୍ତ୍ତୀ ସମୟରେ ରାଧାନାଥଙ୍କ ଅନୁତପ୍ତ ପ୍ରାଣ ମଧ୍ୟ ଏଥିରେ ହୋଇଥିଲା ମ୍ରିୟମାଣ । ସୁତରାଂ ଓଡ଼ିଶାକୁ ଗୁରୁତ୍ୱଦେଇ ୧୮୯୦ ପର୍ଯ୍ୟନ୍ତ ସେ ଯେଉଁସବୁ କାବ୍ୟ ଲେଖିଲେ ସେଥିରେ ଓଡ଼ିଶାର ଚିତ୍ରଥିଲା, ମାତ୍ର ଐତିହ୍ୟମଣ୍ଡିତ, ଗରିମାମୟ, ମହିମାମୟ ଓ ଗୌରବମୟ ଓଡ଼ିଶାକୁ ଦେଖିବାକୁ ମିଳିନଥିଲା । ଏଥିପାଇଁ କବି ରାଧାନାଥ ସମାଲୋଚିତ ହୋଇଥିଲେ । ସମାଲୋଚକ ଗୌରୀ କୁମାର ବ୍ରହ୍ମାଙ୍କ ମତରେ "ରାଧାନାଥ ତେଣୁ ସମାଲୋଚକମାନଙ୍କୁ ନୀରବ ଉତ୍ତର ଦେଇ ନିଜ ଉତ୍କଳ ପ୍ରୀତିର ଜୀବନ୍ତ ପ୍ରମାଣ ସ୍ୱରୂପ ଚିଲିକା (୧୮୯୧) କାବ୍ୟ ପ୍ରଣୟନ କଲେ । ତାହାପରେ, ମାହାଯାତ୍ରା ମହାକାବ୍ୟ (ଅପୂର୍ଣ୍ଣ) ରଚନା କରି ସ୍ୱୀୟ ମହାଭାରତ ପ୍ରୀତିର ଉଚ୍ଛଳ ଧାରାରେ ଦେଶବାସୀଙ୍କୁ ପ୍ଲାବିତ କରିଦେଲେ । ତାଙ୍କର ଏହି ଜାତୀୟ ଆଭିମୁଖ୍ୟ ସମଧିକ ପ୍ରାଞ୍ଜଳତା, ବିସ୍ତୃତି ଏବଂ ଉଗ୍ରତାର ସଂକେତ ବହନକରି ଫକୀରମୋହନ, ମଧୁସୂଦନ, ଗଂଗାଧର, ନନ୍ଦକିଶୋର, ଗୋପବଂଧୁ, କୁନ୍ତଳାକୁମାରୀ ପ୍ରମୁଖ କବିମାନଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ପ୍ରଭାବିତ କରିଥିଲା ।" (ରାଧାନାଥଙ୍କ ଭାଷା, ୧୯୬୯, ପୃ-୩୯-୪୦)

ରାଧାନାଥଙ୍କ ଜାତୀୟତାବୋଧର ଆଦ୍ୟାଭାସ 'ଶିବାଜୀଙ୍କର ଉତ୍ସାହ ବାକ୍ୟ'ରେ ଦେଖିବାକୁ ମିଳେ । ଯଦିଓ କେତେକ ଏହାକୁ 'ହିନ୍ଦୁ ଜାତୀୟତା' ବୋଲି କହିଥାନ୍ତି ତଥାପି ଏହା ଆର୍ଯ୍ୟସଂସ୍କୃତି, ହିନ୍ଦୁ ସଂସ୍କୃତି ଓ ଭାରତୀୟ ସଂସ୍କୃତିର ଉଚ୍ଚାରଣ ବୋଲି ମାନିବାକୁ ହେବ । ହିନ୍ଦୁ ସଂସ୍କୃତିର ଆଲୋଚନାରେ ରାଧାନାଥ ଖୁବ୍ ଉଦାରପନ୍ଥୀ । ତାଙ୍କ ମତରେ ଜାତି ଧର୍ମବର୍ଣ୍ଣ ନିର୍ବିଶେଷର ଯେଉଁମାନେ ଭାରତଭୂମିକୁ ସର୍ବାନ୍ତଃକରଣରେ ନିଜ ଦେଶ ବୋଲି ମନେକରନ୍ତି ସେମାନେ ଭାରତୀୟ ଐତିହ୍ୟ ଓ ସଂସ୍କୃତିକୁ ନିଜସ୍ୱ ବୋଲି ଗ୍ରହଣ କରିନେବାକୁ କୁଣ୍ଠା କରନ୍ତି ନାହିଁ । ଭାରତୀୟ ସଂସ୍କୃତି ମଧ୍ୟ ଅନାଦି କାଳରୁ ଏହିପରି ସମସ୍ତଙ୍କ ପାଇଁ ଦ୍ୱାର ଉନ୍ମୁକ୍ତ ରଖିଆସିଛି । ମାତ୍ର ଯେଉଁମାନେ ଏହାକୁ ଲୁଣ୍ଠିଛନ୍ତି ସେମାନେ ଶତ୍ରୁଭାବରେ ଗଣ୍ୟ ହୋଇ ଭାରତୀୟଙ୍କ ଘୃଣ୍ୟ ଦୃଷ୍ଟିରେ ରହିଆସିଛନ୍ତି । ରାଧାନାଥ ଯବନମାନଙ୍କୁ

ଏହିପରି ଶତ୍ରୁଗୋଷ୍ଠୀ ଭାବି ଶିବାଜୀଙ୍କୁ ଏମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ପ୍ରେରଣା ଯୋଗାଇଛନ୍ତି । କବିଙ୍କ ମତରେ ଭାରତବର୍ଷର ସମସ୍ତ ଗୌରବ ମୁସଲମାନଙ୍କ ଆକ୍ରମଣ ଓ ବିଜୟ ଫଳରେ ଲୋପ ପାଇ ଯାଇଛି । ଏଣୁ ସମଗ୍ର ହିନ୍ଦୁ ଜାତିର ପ୍ରତୀକ ରୂପେ ଶିବାଜୀ ହିଁ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ଉଚିତ । ରାଧାନାଥଙ୍କ ଏଇ ହିନ୍ଦୁଭାବ ପ୍ରେରିତ ଜାତୀୟତାବାଦର ଆଦର୍ଶ ଥିଲା ଭାରତର ଉନ୍ନତି କାମନା । ଶିଳ୍ପ, ଭାସ୍କର୍ଯ୍ୟ, ଦର୍ଶନ ଓ ଜ୍ଞାନ ବିଜ୍ଞାନର ଚରମ ଉନ୍ନତି ସ୍ୱାଧୀନ ହିନ୍ଦୁ ଭାରତରେ ହିଁ ସଂଭବ । 'ଶିବାଜୀଙ୍କର ଉତ୍ସାହବାଣୀ ବାକ୍ୟ' କବିତାରେ ରାଧାନାଥ ସ୍ପଷ୍ଟ ଭାଷାରେ କହିଛନ୍ତି—

ଏ ଦେଶ କୀରତି, ଏଦେଶ ଗୌରବ
ଏ ଦେଶ ବିଭବ ଏ ରବିତଳେ
ଆଉ କାହିଁ ନାହିଁ ସମସ୍ତ ନିଷ୍ପ୍ରଭ
ହେଲାଟି ମନୁଷ୍ୟ କରମଫଳେ

× × × × ×

ଦୁରନ୍ତ ଯବନ ହେଲା ଏକେଶ୍ୱର
କ୍ଷତ୍ରିୟ ପ୍ରଭବ ହେଲା ଅଳୀକ,
ଆମ୍ଭର ସ୍ୱଦେଶ ନୁହେଁ ଏ ଆମ୍ଭର
ଧିକ୍ ଧିକ୍ ଆମ୍ଭ ବାହୁକୁ ଧିକ୍ ।

ରାଧାନାଥଙ୍କ ଉତ୍କଳପ୍ରୀତିର ନିଦର୍ଶନ 'ଉଷା' କାବ୍ୟରେ ପ୍ରଥମେ ଦେଖିବାକୁ ମିଳେ । ଏଥିରେ ଉତ୍କଳର ଜଣେ ବୀରବାଳା ବହୁ ପୁରୁଷଙ୍କୁ ପରାଜିତ କରିବାରେ ଓ ପୁରୁଷସୁଲଭ ଶୌର୍ଯ୍ୟ ଦେଖାଇବାରେ କବିଙ୍କର ଜନ୍ମଭୂମି-ପ୍ରୀତି ହିଁ ଫୁଟିଉଠିଛି । ଭାରତର ଅନ୍ୟାନ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟ ତୁଳନାରେ କବି ଚିଲିକାକୁ ସର୍ବଶ୍ରେଷ୍ଠ ଆସନ ପ୍ରଦାନ କରି, ଯୁକ୍ତି ସହକାରେ ଚିଲିକାକୁ ମହାତୀର୍ଥ ରୂପେ ପ୍ରତିପାଦିତ କରିଛନ୍ତି । କାଞ୍ଚୀ ଅଭିଯାନ-ବର୍ଣ୍ଣନାରେ ଓଡ଼ିଆ ଜାତିର ଭକ୍ତି, ଆତ୍ମ-ସମ୍ମାନ ଓ ସମର ନୈପୁଣ୍ୟର ଚିତ୍ରାଙ୍କନରେ ଉତ୍କଳର ଗୌରବ ଗାରିମା ଯେତିକି ଫୁଟାଇଛନ୍ତି, ସେତିକି ଦୁଃଖ କରିଛନ୍ତି ଓଡ଼ିଶାର ଯଥାଯୋଗ୍ୟ ଖ୍ୟାତି ଭାରତରେ ପ୍ରଚାରିତ ନ ହେବାରୁ । ଓଡ଼ିଆ ସାହିତ୍ୟର ଭାବୀ-ଉନ୍ନତିର ପ୍ରବଳ କାମନା ପୋଷଣକରି ସ୍ୱଦେଶ ବାତ୍ସଲ୍ୟର ପରିଚୟ ଦେଇଛନ୍ତି କବି ରାଧାନାଥ ।

ଉତ୍କଳ ପ୍ରେମୀ ରାଧାନାଥ ଚିଲିକା କାବ୍ୟରେ ମୁଖ୍ୟତଃ ଏହାର କେତୋଟି ପ୍ରତିନିଧି ସ୍ଥାନୀୟ ଐତିହାସିକ ଘଟଣା ପ୍ରଦାନ କରିବା ସହିତ ଅଗଣିତ ଗୌରବାବହ ଘଟଣା ମଧ୍ୟରୁ ଗୋଟିଏ ଦୁଇଟିକୁ ସୁନିର୍ବାଚିତ କରି ଯଥାସ୍ଥାନରେ ସମାବେଶିତ

କରିଛନ୍ତି । ପୁରୁଷୋତ୍ତମଙ୍କ କାଞ୍ଚି ଅଭିଯାନ ଓ ରକ୍ତବାହୁର ଆକ୍ରମଣର ଐତିହାସିକ ଗୁରୁତ୍ୱ ଉତ୍କଳ ପାଇଁ ଅବିସ୍ମରଣୀୟ ହୋଇ ରହିଛି । 'ମାଣିକୀ ଗଉଡୁଣୀ' ଠାରୁ ଜଗନ୍ନାଥ ଓ ବଳଭଦ୍ରଙ୍କ ଦହି ଲବଣୀ ଖିଆ ଓଡ଼ିଆ ଜାତିର ଭାକ୍ତିକତାକୁ ଚିହ୍ନାଇଥାଏ । ପୁଣି ଓଡ଼ିଆ ଜାତିର ସମ୍ମାନ ରକ୍ଷାପାଇଁ ଜଗନ୍ନାଥ ଓ ବଳଭଦ୍ରଙ୍କ କାଞ୍ଚି ଅଭିଯାନ ଓଡ଼ିଶାର ରାଜା ଓ ଠାକୁର ରାଜାଙ୍କ ମୈତ୍ରୀବଂଧନକୁ ସୂଚାଇଥାଏ । ଏଣୁ ଓଡ଼ିଶାରେ ହିଁ କେବଳ ଭକ୍ତ ଓ ଭଗବାନଙ୍କର ଅଭେଦ୍ୟ ପ୍ରୀତି ରହିଆସିଛି । ଚିଲିକାକାବ୍ୟ ପ୍ରସଙ୍ଗରେ କବିଙ୍କର ଅତୀତ ସ୍ମୃତିଚାରଣ ଏକାନ୍ତ ବ୍ୟକ୍ତିଗତ ନୁହେଁ ଏହା ତାଙ୍କ ଜାତି ପ୍ରୀତିର ପରିଚାୟକ । ପୁରୁଷୋତ୍ତମ ଦେବଙ୍କର ଏ ଅଭିଯାନ ପ୍ରସଂଗରେ କବି କେବଳ ଓଡ଼ିଆର ଭକ୍ତିପ୍ରାଣତା ଓ ବୀରତ୍ୱକୁ ବର୍ଣ୍ଣନା କରି ନାହାନ୍ତି— ଏଥି ସହିତ ଓଡ଼ିଶାର ନୌବାଣିଜ୍ୟ, ସାମରିକ ସଂଗଠନ ଓ ବିବିଧ ବିଭବର ସୂଚନା ପ୍ରଦାନ କରିଛନ୍ତି—

ଦେଖିଲି ଦୃଶ୍ୟ ମୁଁ ବସି ତୋର ତଟେ
ଲାଖି ରହିଛି ଯା ସଦା ସ୍ମୃତିପଟେ
ସମୀରେ ଅଞ୍ଚଳ ମାଳା ସ୍ଫୀତ କରି
ଦକ୍ଷିଣୁ ଆସିଲା ଶତ ଶତ 'ତରୀ' ।
× × × × ×
ମଧ୍ୟେ ଶୋହେ ତରୀ ଅତି ମନୋହର
ଗଜଦନ୍ତେ ଗଢ଼ା ଯାର କଳେବର
× × × × ×
ତୀରେ ଦୁର୍ଗ ଶିରେ ଶସ୍ତ୍ର କରେ ଧରି
ଦେଖୁଥିଲେ ଦୃଶ୍ୟ ସମ୍ଭ୍ରମେ ପ୍ରହରୀ ।

ରକ୍ତବାହୁର ମୃତ୍ୟୁପାଇଁ 'ଚିଲିକା'ର ଅବଦାନ ଅନସ୍ୱୀକାର୍ଯ୍ୟ । ଗର୍ବିତ ରକ୍ତବାହୁ ଉତ୍କଳକୁ ଭସ୍ମୀଭୂତ କରି ପ୍ରତ୍ୟାଗମନ କରୁଥିବାବେଳେ ଚିଲିକା ନିଜ ରୁଦ୍ରମୂର୍ତ୍ତି ବଳରେ ତାକୁ ବିନାଶ କରିଥିଲା । ରାଧାନାଥଙ୍କର ଏ ଦୃଢ଼ୋକ୍ତି ଚିଲିକା କାବ୍ୟର 'ରୁଦ୍ରମୂର୍ତ୍ତି ତୋର ରଖୁ ତୁ ଘୋଡ଼ାଇ' ଠାରୁ 'ପ୍ରକୃତିର ସେହି କରାଳ ଆରତି' ମଧ୍ୟରେ ପ୍ରକାଶିତ । (ରାଧାନାଥ ଗ୍ରନ୍ଥାବଳୀ ପୃ-୧୫୭, ୧୯୫୧) ।

ଚିଲିକା କାବ୍ୟର ଉପସଂହାରରେ ଓଡ଼ିଆ ଭାଷାର ଉନ୍ନତି କାମନା ପୋଷଣ କରିବା ରାଧାନାଥଙ୍କ ଜାତୀୟତାବୋଧର ଅନ୍ୟତମ ବଳିଷ୍ଠ ନିଦର୍ଶନ । କବି ଯୌବନରେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଯାହା ଶୁଣିଥିଲେ ତାର ଉନ୍ନତିର ସଂକେତ ଲକ୍ଷ୍ୟ କରି ଆଶାବାଦୀ ହୋଇଉଠିଛନ୍ତି—

'ପାହିଲାଣି ଘୋର ତାମସୀ ଯାମିନୀ
ଫୁଟିବ ଉତ୍କଳ-ଭାଷା-କମଳିନୀ'

କବିଙ୍କର ଦୃଷ୍ଟିରେ ବାମଣ୍ଡା ଓ ମୟୁରଭଂଜ ରାଜବଂଶର ସାହିତ୍ୟ-ପ୍ରୀତି ହିଁ ଉତ୍କଳ ସାହିତ୍ୟର ଶ୍ରୀବୃଦ୍ଧି ଘଟାଇବାରେ ନିଶ୍ଚୟ ସହାୟକ ହେବ । ସାହିତ୍ୟର ଉନ୍ନତି କାମନା କରୁଥିବା ବ୍ୟକ୍ତି ହିଁ ପୃଥିବୀ ଇତିହାସରରେ ଜଣେ ଜଣେ ସଚ୍ଚା ଜାତୀୟତା ପ୍ରେମୀ ଲେଖକ ଭାବରେ ପରିଗଣିତ ହେଇଛନ୍ତି । ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନରେ ପଠିତ ମନ୍ତବ୍ୟରେ ରାଧାନାଥ ଏହା ହିଁ କହିଥିଲେ । ୧୮୯୯ ଖ୍ରୀଷ୍ଟାବ୍ଦରେ ମଧ ରାଧାନାଥ କବି ଗଂଗାଧରଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ— 'ରାଜନୈତିକ କାରଣରୁ ରାଜପୁରୁଷମାନେ ଦେଶୀୟ ସାହିତ୍ୟ ଉନ୍ନତିର ଅନୁକୂଳ ନୁହନ୍ତି । ସାହିତ୍ୟୋନ୍ନତି ଜାତୀୟତା ଓ ସ୍ୱଦେଶ ହିତୈଷିତାର ପରିପୋଷକ, ରାଜ ପୁରୁଷଙ୍କ ଚକ୍ଷୁରେ ଏହା ନିରାପଦ ନୁହେଁ ।' (କବିଲିପି, ସଂ.ଦେବୀପ୍ରସନ୍ନ ପଟ୍ଟନାୟକ-ପୃ.-୮୮)

କବିବର ରାଧାନାଥଙ୍କ ଉତ୍କଳପ୍ରୀତିର ଅନ୍ୟତମ ନମୁନା 'କେତୋଟି ଉପଦେଶ ବାକ୍ୟ' କବିତାରେ ଆହୁରି ସ୍ପଷ୍ଟ । ଉତ୍କଳ ସନ୍ତାନଙ୍କ ପକ୍ଷରେ ମାତୃପୂଜା ଓ ମାତାଙ୍କ ପୂଜା ଏକାନ୍ତ ପାଳନୀୟ ବୋଲି କବି ଜାତୀୟ ଉତ୍ସବରେ ଉଦ୍‌ଘୋଷଣା କରିଯାଇଛନ୍ତି । ଉତ୍କଳବାସୀ ଯଦି ସ୍ୱାର୍ଥଠାରୁ ଦୂରେଇ ରହି ଉତ୍କଳଦେଶ ହିତରେ ଆତ୍ମବଳି ଦେବେ ତେବେ ଉତ୍କଳର ଉନ୍ନତି ହେବା ସହିତ ଭାରତ ମଧ ଗର୍ବ ଅନୁଭବ କରିବ । କବି ବାରଂବାର କହିଛନ୍ତି—

ଦିଅ ହେ ସରବେ ଉତ୍କଳୀ
ଦେଶ ହିତରେ ଆତ୍ମବଳୀ
× × ×
ଉତ୍କଳ ହିତେ ନିଜ ହିତ
ଲୋଡ଼ ହୋଇଣ ଏକଚିତ୍ତ
× × ×
ସ୍ୱଦେଶ ଦ୍ରୋହୀ ସ୍ୱାର୍ଥରଂକ
ଉତ୍କଳ ଦେଶେ ସେ କଳଙ୍କ— ଇତ୍ୟାଦି ଇତ୍ୟାଦି ।

'ମହାଯାତ୍ରା'ରେ ରାଧାନାଥଙ୍କ ମହାଭାରତୀୟ ଜାତୀୟତାବୋଧ ସ୍ପଷ୍ଟ । ମହାଯାତ୍ରା ମହାଭାରତ ପୁରାଣର ପୃଷ୍ଠଭୂମିରେ ରଚିତ ହେଲେ ହେଁ ଇତିହାସ ହେଉଛି ଏହାର ଆତ୍ମା । ଅତଏବ ପୁରାଣର ଆଢୁଆଳରେ ଏଥିରେ ପ୍ରକାଶ ପାଇଛି ଊନବିଂଶ ଶତାବ୍ଦୀର ଜାତୀୟ-ଭାବଚେତନା । ଇଂରେଜମାନଙ୍କ ଅତ୍ୟାଚାରରେ

ଅତ୍ୟାଚାରିତ ଭାରତବର୍ଷ ମୁକ୍ତି ପାଇଁ ବ୍ୟାକୁଳଥିବାବେଳେ କବିଙ୍କ ଇଂରେଜ ବିରୋଧୀ ଅଭିଳାଷ ପରୋକ୍ଷରେ ଏଥିରେ ପ୍ରତିଫଳିତ । ମହାଯାତ୍ରାର 'ସପ୍ତମ ସର୍ଗର ଅମର୍ଷୀଙ୍କ ଉଦ୍‌ବୋଧନ ଭିତରେ ସତେ ଯେପରି ଜାତୀୟତାବାଦୀ କବି ରାଧାନାଥ ଉଦ୍‌ବୋଧନ ଦେଇଛନ୍ତି ଏହି ପରାଧୀନଗ୍ରସ୍ତ ଭାରତୀୟମାନଙ୍କୁ । ସମକାଳୀନ ଭାରତୀୟଙ୍କୁ ତାଙ୍କ ପ୍ରାଚୀନ ପରଂପରା ସଂପର୍କରେ ସଚେତନ କରିଦେବାକୁ ଅମର୍ଷୀଙ୍କୁ ରୁଦ୍ରରୂପ ଧରାଇଛନ୍ତି । ଏଣୁ ଯଥାର୍ଥରେ ସମାଲୋଚକ ଡଃ. ଦାଶରଥି ଦାସ ଲେଖିଛନ୍ତି ''ଜାତୀୟ ମୁକ୍ତି ସଂଗ୍ରାମରେ ଭାରତୀୟମାନଙ୍କ ମୁଖ ଆଖିରେ ଉତ୍ସାହର ବିଭା ନଦେଖି ସେ ବିସ୍ମୟ ଓ ବିଷାଦରେ ଯଥେଷ୍ଟ କ୍ଷୁଣ୍ଣ ହୋଇଛନ୍ତି, ତେଣୁ ତାଙ୍କ ପ୍ରାଣର ସବୁ ଉଚ୍ଛ୍ୱାସ, ଆବେଗ ଓ ଉନ୍ମାଦନା ଅମର୍ଷୀବାଣୀରେ ଉଦ୍‌ବେଳ ହୋଇ ଉଠିଛି । ଅତୀତ ମୁକ୍ତି ସଂଗ୍ରାମର ଚିତ୍ର ମଧ୍ୟରେ ସେ ଶୂନ୍ୟ ଆଖିରେ ଭବିଷ୍ୟତ ମୁକ୍ତି ଯୁଦ୍ଧକୁ ଖୋଜିଛନ୍ତି । ନୈରାଶ୍ୟାନ୍ଧକାରରେ ବିଦ୍ୟୁତସ୍ଫୁରଣର ପ୍ରତ୍ୟାଶା ପୋଷିଛନ୍ତି, ସେହି ଅମର୍ଷୀବାଣୀ ପରଂପରାରେ ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ତାଙ୍କ ପ୍ରତିକ୍ରିୟା ଓ ଅଭିଯୋଗ ଯେପରି ଫୁଟିଛି ଠିକ୍ ସେପରି ତୀବ୍ରତର ହୋଇ ପରାଧୀନତାର ତିକ୍ତ ବିସ୍ୱାଦକର ଅନୁଭୂତି ବି ପ୍ରକଟିତ । ସେଥିରେ ଭୟାତୁର ପ୍ରାଣରଂକ ସଂଗ୍ରାମ ବିମୁଖ ନିଜ ଜାତି ପ୍ରତି ତାଙ୍କ ଘୃଣା ଅନାଦର ଓ ତାଚ୍ଛଲ୍ୟର ମଧ୍ୟ ସୀମାନାହିଁ । ତାହାର ପ୍ରତିଟି ପଙ୍‌କ୍ତିକୁ ଜାତୀୟ-ଭାବଚେତନା ଶକ୍ତି ଓ ଜୀବନ ଯୋଗାଇଛି ।'' (କାବ୍ୟସଂବାଦ, ୧୯୮୩-ପୃ-୩୦୦) ପ୍ରକୃତରେ ଜାତିକୁ ଆତ୍ମ ପ୍ରବୃଦ୍ଧ କରିବାକୁ କବି ଚାହାନ୍ତି । ଅଧୋଗତି ଦିଗକୁ ନ ଯାଇ ଉର୍ଦ୍ଧ୍ୱଗତି ଆଡ଼କୁ ଆମର ଯାତ୍ରା ଅବ୍ୟାହତ ରହୁବୋଲି ସେ ପ୍ରବର୍ତ୍ତାଇଛନ୍ତି ।

''ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟିକି ଆର୍ଯ୍ୟନାମ ଦାୟାଦ ଜଗତେ
ବିନାଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର ତାଙ୍କରି ଶୋଣିତ
ବହେଟିକି ଆହେ ଯୋଧେ, ତୁମ୍ଭ ଧମନୀରେ
× × × × ×
ଦିଗବିଜୟୀ ଆର୍ଯ୍ୟସିଂହ ଔରସେ ଜନମି
ହେଲ କି ଅକ୍ଷମ, ଆହା ନିଜସ୍ୱ ରକ୍ଷଣେ !''

ରାଧାନାଥଙ୍କ ଅମର୍ଷୀ କେବଳ ବାକ୍‌ପ୍ରେରଣା ଦେଇନାହାନ୍ତି, ଯୋଗାଇଛନ୍ତି କର୍ମପ୍ରେରଣା ମଧ୍ୟ । ଯୁଦ୍ଧ କ୍ଷେତ୍ରରୁ ଯେଉଁମାନେ ପ୍ରାଣ ଭୟରେ ପଳାୟନ କରିବାକୁ ଚାହିଁଛନ୍ତି ଅମର୍ଷୀ ସେମାନଙ୍କୁ ଧିକ୍‌କାର କରିଛନ୍ତି । ବାରଂବାର କହୁଛନ୍ତି ଭୀରୁତା

ହେଉଛି ବୀରର ମୃତ୍ୟୁ ସଦୃଶ । ସତେଯେପରି ନିଜେ କବି ଅମର୍ଷୀ ଭାବରେ ଏକଥାକୁ ଓଜସ୍ୱିନୀ ଭାଷାରେ ପ୍ରକାଶ କରିଛନ୍ତି—

ଭୀରୁତା ଯେ, ସେହି ସିନା ବୀରଙ୍କ ମରଣ
ଭୀରୁଭାବ ବହି ତୁମ୍ଭ ମୃତ ଏ ଜଗତେ
ଲୋଡ଼ଇକି କେହି କେବେ ମୃତ୍ୟୁର ମନ୍ତ୍ରଣା ?

କବିଙ୍କ ଉଗ୍ରଜାତୀୟତାବୋଧ ଏଥିରେ ପ୍ରକାଶ ପାଇଥିଲେ ହେଁ ଏହା ସାଂପ୍ରଦାୟିକ ନୁହେଁ କି ଜାତିଗତ ନୁହେଁ, ସର୍ବାଙ୍ଗରେ ଏକାନ୍ତ ଭାରତୀୟ ଯାହା ଭାରତର ପୁରାଣ ସଂସ୍କୃତି ଭିତ୍ତି ଉପରେ ଦୃଢ଼ ପ୍ରତିଷ୍ଠିତ । ପ୍ରତ୍ୟେକ ଦେଶ ଓ ଜାତି ଏହିପରି ପ୍ରାଚୀନ ଜାତୀୟ ଭାବଚିନ୍ତାର ଆଦର୍ଶ ଉଦ୍‌ବୋଧନ କରି ଆତ୍ମ ପ୍ରବୁଦ୍ଧ ହୋଇଥାନ୍ତି, ଏକତାବଦ୍ଧ ହୋଇଥାନ୍ତି ।

ମହାଯାତ୍ରାରେ କବି ରାମଚନ୍ଦ୍ର, ପାଣ୍ଡବ, କୌରବ, ଶ୍ରୀକୃଷ୍ଣ, ପୃଥ୍ୱୀରାଜ ପ୍ରମୁଖ ବହୁ ଐତିହାସିକ ବୀରପୁରୁଷଙ୍କ ସଂଗ୍ରାମ ଓ ଆତ୍ମୋତ୍ସର୍ଗର କାହାଣୀ ଶୁଣାଇ ଶୁଣାଇ ସ୍ୱଦେଶ ମୁକ୍ତିକାମୀ ଯୋଦ୍ଧାମାନଙ୍କ ପ୍ରାଣରେ ଜୀବନ୍ତ ପ୍ରେରଣା ଢାଳିଦେବାକୁ ସମର୍ଥ ହେଇଛନ୍ତି । ଉକ୍ତ ପୁରୁଷଗଣ ଏକାନ୍ତଭାବରେ ଭାରତୀୟ ସଂସ୍କୃତିର ସ୍ମୃତିଧାରୀ ଓ ଏମାନଙ୍କ ସଂସ୍କୃତି ଚେତନା ଯେମିତି ସମଗ୍ର ଆର୍ଯ୍ୟଭୂଖଣ୍ଡକୁ ଏକତା ସୂତ୍ରରେ ବାନ୍ଧିରଖିଥିଲା କବି ତାର ବିସ୍ତୃତ ଆଲୋଚନା ମହାଯାତ୍ରାରେ କରିଛନ୍ତି ।

'ଭାରତଗୀତିକା' ଉତ୍କଳ ସମ୍ମିଳନୀରେ ଗୀତ ହେବା ନିମିତ୍ତ ଏକ ଗୀତିକା । ସଂସ୍କୃତରେ ରଚିତ ଏହି ଗୀତିକାଟିରେ କବି ଭାରତବର୍ଷର ସଂସ୍କୃତିକୁ ପ୍ରତ୍ୟେକ ଭାରତୀୟ ବଜାୟ ରଖିବା ଉଚିତ ବୋଲି ଚାହିଁଛନ୍ତି । ଭାରତବର୍ଷ ସବୁଜାତି, ଧର୍ମ ଓ ସଂପ୍ରଦାୟର ଲୋକଙ୍କର ଜନନୀ । ଏହା ଭଳି ପୁଣ୍ୟ ସ୍ଥାନ ଆଉ ଜଗତରେ ନାହିଁ ବୋଲି କହିବା ସହିତ ଏହାର ବନ୍ଦନା କରିବା ପାଇଁ ଉଦ୍‌ବୁଦ୍ଧ କରିଛନ୍ତି ।

'ଦରବାର' କାବ୍ୟରେ ତତ୍‌କାଳୀନ ଆଧୁନିକ ଶିକ୍ଷାଧାରୀଙ୍କୁ ରାଧାନାଥ ଶ୍ଳେଷପୂର୍ଣ୍ଣ ଦୃଷ୍ଟିରେ କଟୂକ୍ତି ପ୍ରକାଶ କରିଛନ୍ତି । ଯେଉଁମାନେ ଏ ଦେଶରେ ପ୍ରଥମେ ଆଧୁନିକ ଶିକ୍ଷା ପାଇଲେ, ସେମାନେ ପ୍ରତ୍ୟେକ କ୍ଷେତ୍ରରେ ବିଦେଶୀ ଜିନିଷର ଅନୁକରଣ କରିବାରେ ପ୍ରୟାସୀ ହେଲେ । ସେତେବେଳେ ବିଦେଶୀ ବସ୍ତୁ ପ୍ରତି ସାଧାରଣ ମଣିଷର ମଧ୍ୟ ସୃଷ୍ଟି ହେଇଥିଲା ଅନାବିଳ ଆଗ୍ରହ । ଆଧୁନିକ ସଭ୍ୟତା ନାମରେ ସେ ସମୟରେ ଯେଉଁ ପ୍ରକାର ଭଣ୍ଡ ଅନୁକରଣ ଚାଲିଥିଲା ରାଧାନାଥଙ୍କ ସଦୃଶ ଦେଶପ୍ରେମୀ କବିମାନେ ତାହାକୁ ସ୍ୱୀକାର କରିନପାରି ତାର ନିନ୍ଦାଗାନ କରିଛନ୍ତି । ତତ୍‌କାଳୀନ ସମୟରେ କବି ନିଜେ ଆଧୁନିକ ଶିକ୍ଷାର ଶିକ୍ଷିତ ହେଲେହେଁ

ଆଧୁନିକତା ନାଁରେ ଅଯଥା ପ୍ରଚାରକୁ ସେ ସମର୍ଥନ କରିପାରିନାହାନ୍ତି । କବିଙ୍କ ଭାଷାରେ—

ସାହେବୀ ପୋଷାକ କେହୁ ଅବା ପିନ୍ଧି
ସସ୍ମିତେ କହଇ ବଙ୍କା ବଙ୍କା ହିନ୍ଦୀ,
ଥରେ ଥରେ କାଶି ସାହେବୀ ଠାଣିରେ
ପୋଛଇ ବଦନ ରୋମାଲ-କାନିରେ,
ପ୍ରକଟାଇ ପୂରା ସାହେବୀ-ପଣିଆ
ଫରକଟା ଗୋଡ଼େ ହୁଏ ପୁଣି ଠିଆ ।
ମିଶି ଘଷିଥିବା ବିସିନୀ ଯେସନ
କରୁଥାଇ ଦନ୍ତ୍ୟ ବର୍ଣ୍ଣ ଉଚ୍ଚାରଣ;
କୁଣ୍ଡଳ ଦେଖାଇ ହେବା ଅଭିପ୍ରାୟେ
କୁଣ୍ଡଳୀ ଯେସନେ ମୁଣ୍ଡକୁ ହଲାଏ,
ସମୟ ଜାଣିବା ମିଛ ବାହାନାରେ
ଘଡ଼ି କାଢ଼ି କେହି ଦେଖାଏ ବାହାରେ ।

ପୁନରାୟ ଦରବାରକୁ ମଧ୍ୟ ତୋଷାମୋଦକାରୀଙ୍କ ବିରୁଦ୍ଧରେ ପ୍ରଚାରିତ ଏକ ପୁସ୍ତିକା ଭାବରେ ଗ୍ରହଣ କରାଯାଇପାରେ । ସ୍ୱଳ୍ପ ଇଂରାଜୀ ଶିକ୍ଷିତ ଯୁବକଗଣ ଉଚ୍ଚ ଆସନ ଓ ପଦ ପ୍ରାପ୍ତି ନିମନ୍ତେ ଉପରସ୍ତରର ହାକିମ ମାନଙ୍କୁ ଯେପରି ତୋଷାମଦ କରି ସେମାନଙ୍କ ପୁଷ୍ଟି ବିଧାନ ନିମନ୍ତେ ନିମ୍ନସ୍ଥ ଜନସାଧାରଣଙ୍କୁ ନିର୍ମମଭାବରେ ଲୁଣ୍ଠନ କରି ଖୁସି ହେଉଥିଲେ ଏହା ସଂଭବତ ଅନ୍ୟ ଦେଶରେ ସଚରାଚର ବିରଳ ବୋଲି କବି ମନେକରିଛନ୍ତି । ଦରବାର କାବ୍ୟରେ ରାଧାନାଥଙ୍କ ପ୍ରଦତ୍ତ ଉପଦେଶଗୁଡ଼ିକ ହିଁ ତାଙ୍କ ଯଥାର୍ଥ ଜାତୀୟତାବୋଧର ପରିଚାୟକ । ଜାତିର ନୈତିକ ଅଧଃପତନରେ ସେ ବିଚଳିତ ହୋଇ ଉଚ୍ଚ ନୀତି ଓ ଆଦର୍ଶ ଘେନି ଉପଦେଶବାଣୀ ରଚନା କରିଛନ୍ତି—

"ଦେଖ ସାବଧାନେ ଜ୍ଞାନନେତ୍ର ଫେଇ,
ତୁମ୍ଭ ମଧ୍ୟେ ସାନ ବଡ଼ ନାହିଁ କେହି;
ସାନବଡ଼ ଜ୍ଞାନ ଭେକର ଭିଆଣ,
ଭେକ ତଳେ କେହି ନାହିଁ ସାନବଡ଼ ।"

ରାଧାନାଥ ଏ ଉପଦେଶ ଗୁଡ଼ିକ ନିତାନ୍ତ ଶିକ୍ଷଣୀୟ ହୋଇ ଦେଶ ଓ ଜାତିର ଉନ୍ନତି କରିପାରିଛି ।

ପରିଶେଷରେ ରାଧାନାଥଙ୍କ ଜାତୀୟତାବୋଧ ସଂପର୍କରେ ଅଧିକ କିଛି ନକହି

କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ କବିଙ୍କ ଜାତୀୟତାବୋଧ ତାଙ୍କ ଜୀବନର ଏକ ଆଦର୍ଶ ଥିଲା । ମାତ୍ର ଉପଯୁକ୍ତ ପରିବେଶ ଅଭାବରୁ ତାହା ତାଙ୍କ ପ୍ରାରମ୍ଭିକ ଯୌବନରେ ଅଙ୍କୁରିତ ହୋଇନପାରି ଯଥାଯଥ ସମୟରେ ଉତ୍କଳ ଓ ଭାରତ ପାଇଁ ଉଚ୍ଚାଦର୍ଶ ପ୍ରଦାନ କରିବାରେ ସହାୟ ହୋଇପାରିଛି । ଏକମାତ୍ର ସାହିତ୍ୟକୁ ସମ୍ମୁଖରେ ରଖି ଜନସାଧାରଣରେ ଜାତୀୟତା ଭାବଧାରା ପ୍ରତିଷ୍ଠା ସ୍ଥାପନର ପ୍ରୟାସ, ଜାତୀୟ ଜୀବନ, ଜାତୀୟ ଉନ୍ନତିର ଅବସ୍ଥା ସ୍ଥିର କରାଯାଇପାରେ । ରାଧାନାଥ ସାହିତ୍ୟ ମାଧ୍ୟମରେ ଅବିକଳ ଏହାହିଁ କରିଛନ୍ତି । ମୁଖ୍ୟତଃ, ଜାତୀୟତାର ଆଦ୍ୟ ଅଭ୍ୟୁଦୟ କାଳରେ ଜାତୀୟ ଭାବର ଉଦ୍‌ବୋଧନ ପାଇଁ ସେ କାବ୍ୟ ସାଧନା କରି ଜାତୀୟତାବୋଧ ବିକାଶଯୁଗର ଆଦ୍ୟ ପ୍ରବର୍ତ୍ତକ ଭାବେ ପରିଗଣିତ ହୋଇପାରିଛନ୍ତି ।



# ଇତାଲୀୟ ଯୁବା : କବି ଆତ୍ମାର ସ୍ପନ୍ଦନ

ଡଃ ରେଖା ମହାନ୍ତି

ଆଧୁନିକ କାବ୍ୟ ସାହିତ୍ୟର ଅପ୍ରତିଦ୍ୱନ୍ଦୀ ସ୍ରଷ୍ଟା ଯୁଗଜ୍ୟୋତି ରାଧାନାଥଙ୍କ କବିଦୃଷ୍ଟି ଥିଲା ବୈଚିତ୍ର୍ୟ ସଂଧାନୀ, ସେ ଥିଲେ ରୂପ ଓ ସୌନ୍ଦର୍ଯ୍ୟର ଉପାସକ । ରାଧାନାଥଙ୍କ ବ୍ୟକ୍ତିତ୍ୱର ସ୍ୱାଭାବିକ ଧର୍ମ ଥିଲା ପ୍ରକୃତି ଆରାଧନା; ପ୍ରକୃତି ପ୍ରତି ଥିଲା ନିବିଡ଼ ଆକର୍ଷଣ । ରାଧାନାଥୀ ପ୍ରତିଭାର ଏଇ ବୈଶିଷ୍ଟ୍ୟ ତାଙ୍କୁ ମଣିଷ ପ୍ରକୃତିର ଅନ୍ତର୍ନିହିତ ରହସ୍ୟ ଉଦ୍‌ଘାଟନରେ ମଧ ଅଭିମନ୍ତ୍ରିତ କରିଥିଲା । କବିମନର ଏଇ ଉଦ୍ଦୀପନାରୁ ଜନ୍ମ ନେଇଥିଲା 'ବିବେକୀ' ପ୍ରବନ୍ଧ ୧୮୭୩ରେ 'ଉତ୍କଳ ଦର୍ପଣ'ରେ ରାଧାନାଥଙ୍କ ଗଦ୍ୟ ସୃଷ୍ଟିର ପ୍ରଥମ ନମୁନା । ତାପରେ ୧୮୭୪ ରେ 'ଇତାଲୀୟ ଯୁବା' ନାମରେ କ୍ଷୁଦ୍ର ନବନ୍ୟାସ ରଚନା କରି 'ଉତ୍କଳ ଦର୍ପଣ'ରେ ପ୍ରକାଶ କରିଥିଲେ । ଏହି ଗଦ୍ୟ ରଚନା ସମୟରେ ରାଧାନାଥଙ୍କ ଜ୍ଞାନର ଦୀପ୍ତି, ଅଧ୍ୟୟନର ବ୍ୟାପକତା, ଜୀବନ ଅନୁଭୂତିର ତୀକ୍ଷ୍ଣ ଏକ ସମୃଦ୍ଧ ଚେତନାରେ ସଂପ୍ରସାରିତ । 'ଇତାଲୀୟଯୁବା'କୁ ନବନ୍ୟାସ କୁହାଯିବାରେ ଯଥାର୍ଥତା ରହିଛି । ଏହା ପ୍ରବନ୍ଧର ଶୈଳୀ, ଗଳ୍ପର କାହାଣୀ ଧର୍ମିତା ଓ ଉପନ୍ୟାସର ବାସ୍ତବଧର୍ମୀ ବିଷୟବିନ୍ୟାସର ଏକ ବିଚିତ୍ର ସମନ୍ୱୟ । ଏ ସମ୍ବନ୍ଧରେ ବ୍ୟାସ କବି ଫକୀରମୋହନଙ୍କ ବକ୍ତବ୍ୟ ପ୍ରଣିଧାନଯୋଗ୍ୟ । "ଦିନେ ଗଡ଼ଗଡ଼ିଆଠାରେ ରାଧାନାଥ କହିଲେ, ମୁଁ ଇତାଲୀୟ ଯୁବା ବୋଲି ଗୋଟିଏ ଗଳ୍ପ ଇଂରାଜୀରେ ପଢ଼ିଅଛି, ତାହାକୁ ଲେଖିବି ବୋଲି ମନେ କରୁଅଛି । ଏହା କହି ସେ ତାହା ପ୍ରବନ୍ଧାକାରରେ ଲେଖିଲେ ଏବଂ ମୋତେ ସମସ୍ତ ଶୁଣାଇଲେ । ତାହା 'ଉତ୍କଳ ଦର୍ପଣ'ରେ କ୍ରମଶଃ ପ୍ରକାଶିତ ହେଲା ।" ଗଳ୍ପଟିକୁ ଫକୀରମୋହନ ପ୍ରବନ୍ଧ କହିବାର ତାତ୍ପର୍ଯ୍ୟ ହେଲା ଏହାର ଆରମ୍ଭ ଉପକ୍ରମଣିକାରେ ଓ ପରିସମାପ୍ତି ଉପସଂହାରରେ ଠିକ୍ ପ୍ରବନ୍ଧ ଶୈଳୀରେ । କିନ୍ତୁ ସମଗ୍ର ବିଷୟଟି ଗଳ୍ପାକାରରେ ବର୍ଣ୍ଣିତ ।

ଗଳ୍ପର ନାୟକ ସଦ୍‌ବଂଶଜାତ, ସଦଗୁଣଭୂଷିତ ଓ ସ୍ୱାଭିମାନୀ । ଶୈଶବରେ ମାତୃ ବିୟୋଗ ଓ ପିତାଙ୍କର ଅନାଦର ହେତୁ ସୁନ୍ଦର ସୁସ୍ଥ, ସତେଜ ମନଟି ଧୀରେ ଧୀରେ ମଉଳି ଗଲା । ପିତୃବ୍ୟଙ୍କ ମଠରେ ସନ୍ନ୍ୟାସୀମାନଙ୍କ ସହିତ ଏକ ଭୀତିପ୍ରଦ ସଂକୁଚିତ ଜୀବନ ଯାପନ ପ୍ରାଣର ଉତ୍‌ଫୁଲ୍ଲତାକୁ ତିକ୍ତ ବିଷାକ୍ତ କରିଦେଲା । ସେହି ବଦ୍ଧ ଜୀବନରୁ ମୁକ୍ତିଲାଭ ପାଇଁ ଅନେକ ଦୁଃଖ ଯାତନା ସହ୍ୟ କରି ଜେନୋୟା ନଗରୀରେ ଜଣେ ଚିତ୍ରକରଙ୍କ ଅଭାବନୀୟ ସ୍ନେହ ସାହଚର୍ଯ୍ୟରେ କବି ପ୍ରାଣରେ

ଦେଖାଦେଲା ନବୀନ ଉନ୍ମାଦନା । ପୁଣି ଅନିନ୍ଦ୍ୟ ସୁନ୍ଦରୀ ଲରାର ସଂସ୍ପର୍ଶ ଲାଭ କରି ନାୟକ ଜୀବନର ପ୍ରକୃତ ମର୍ମ ଉପଲବ୍ଧି କଲା ।

ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ ।

ନାୟିକା ଲରାର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ରାଧାନାଥ ଅବିକଳ ଏଇ ଭାବକୁ ଗଦ୍ୟରେ ବର୍ଣ୍ଣନା କରିଛନ୍ତି— "ଆମ୍ଭେ ସତୃଷ୍ଣ ହୋଇ ସେହି କାମିନୀର ମୁଖ କମଳ ଦେଖିଲୁ, ବାରମ୍ବାର ଦେଖିଲେହେଁ ତୃପ୍ତି ହେଲା ନାହିଁ ।" ଇତାଲୀୟ ଯୁବା ରାଧାନାଥଙ୍କ କବିମନର ଅନୁପମ ଆଲେଖ୍ୟ । ରାଧାନାଥଙ୍କ ଗଦ୍ୟର ଭାଷା ତାଙ୍କ କାବ୍ୟର ( ' ପରି ସୁବୋଧ ଭାବ ବିଳାସ, ପ୍ରକାଶ ଭଂଗୀର ସ୍ୱଚ୍ଛନ୍ଦତା ଓ ସାବଲୀଳତାର ପ୍ରବୀଣ ନମୁନା ନୁହେଁ, କିନ୍ତୁ ପ୍ରଥମ କାଳର ଗଦ୍ୟ ଭାବରେ ପାଠକ ମନରେ ଏକ ଶ୍ରଦ୍ଧାଶୀଳ ମୁଗ୍ଧ ଚେତନା ସଞ୍ଚାର କରେ । ଯେ କୌଣସି ବିଷୟକୁ ଶୃଙ୍ଖଳିତ, ସାବଲୀଳ ଭାବରେ ପରିବେଷଣ କରିବା ଥିଲା ତାଙ୍କର ସହଜାତ ଅଭ୍ୟାସ, ମୌଳିକ ଲକ୍ଷ୍ୟ, ସେ ଗଦ୍ୟ ହେଉ ବା ପଦ୍ୟ ହେଉ । ତାଙ୍କର ଗଦ୍ୟ ସୁବୋଧ, ସରଳ, ମନଗ୍ରାହୀ । ଭାଷା ଭାବର ପୋଷାକ ମାତ୍ର । ଭାଷା ଯଦି ମୁଖ୍ୟ ହୁଏ, ତେବେ ଭାବ ହେଇଯାଏ ନିର୍ଜୀବ, ନୀରସ । ରାଧାନାଥ ଯତ୍ପରୋନାସ୍ତି ଭାଷାକୁ ଭାବମୁଖୀ କରିବାକୁ ପ୍ରୟାସୀ ହୋଇଛନ୍ତି । ଅବଶ୍ୟ କ୍ୱଚିତ ସ୍ଥଳରେ ଭାଷାର ସ୍ୱଚ୍ଛନ୍ଦତା ରକ୍ଷା କରାଯାଇ ପାରିନାହିଁ । ତଥାପି ତାଙ୍କ ଗଦ୍ୟ ରଚନା ଯେ ଉନ୍ନତ ଏଥିରେ ମତଦ୍ୱୈଧର ଅବକାଶ ନାହିଁ ।

'ଇତାଲୀୟ ଯୁବା'ରେ ବିଷାଦବାଦୀ ରାଧାନାଥଙ୍କ ଜୀବନଦର୍ଶନ ଏକ ବିଷଣ୍ଣ କରୁଣ ପରିବେଶରେ ସ୍ୱତଃ ପରିସ୍ଫୁଟ । 'ଚିଲିକା'ରେ କବି ସଂସାରୀର ସୁଖ ଅସ୍ଥାୟୀ କ୍ଷଣଭଂଗୁର ଓ ଆକାଶ କୁସୁମ ପରି ଅବାସ୍ତବ ବୋଲି ବର୍ଣ୍ଣନା କରିଛନ୍ତି । ଏହି ଗଳ୍ପରେ ଦୁଃଖ ଜର୍ଜରିତ ନୈରାଶ୍ୟ ପୀଡ଼ିତ ଚିତ୍ତର ଅନୁରୂପ ଚିତ୍ର ଉତ୍ତୋଳିତ । ଜୀବନର ଆକାଂକ୍ଷିତ ବସ୍ତୁର । ଏକମାତ୍ର ପ୍ରିୟଜନର ବିଚ୍ଛେଦରେ ସ୍ରଷ୍ଟାଚିତ୍ତର ଗଭୀର ଅନ୍ତର୍ଦାହ, ନୈରାଶ୍ୟ ଓ ଅସହାୟ ମନୋଭାବର ବାସ୍ତବ ଛବି ଯେତିକି ଆକର୍ଷଣୀୟ, ସେଥିପାଇଁ ଯିଏ ଦାୟୀ ତା ପ୍ରତି ତୀବ୍ର ବିଦ୍ୱେଷ, ପ୍ରତିହିଂସାପରାୟଣ ମନୋବୃତ୍ତି ସେତିକି ଭୟଙ୍କର । କିନ୍ତୁ ଏଇଠି ଗଳ୍ପର ପରିସମାପ୍ତି ନୁହେଁ । ନାୟକ ମନରେ କୃତକର୍ମର ପଶ୍ଚାତ୍ତାପ ଓ ପ୍ରାୟଶ୍ଚିତ୍ତ ପାଇଁ ବ୍ୟାକୁଳତା ଏହି ନବନ୍ୟାସ ସୃଷ୍ଟି ପରିକଳ୍ପନାର ବୈଚିତ୍ର୍ୟ ଓ ରସଘନରୂପ । ବିଷୟ ପରିଶୀଳନରେ ନାୟକର ସ୍ୱାଧୀନ ମନୋବୃତ୍ତି, ପ୍ରଗାଢ଼ ପ୍ରେମ ପ୍ରଣୟର ଭାବୋଚ୍ଛଳତା, ଭୀଷଣ ପ୍ରତିଶୋଧପରାୟଣତା, ପରିଶେଷରେ ପାପର ସ୍ୱୀକୃତି ଓ ଶାସ୍ତିରେ ଆତ୍ମସନ୍ତୋଷ,

ଚରମ ପରିଣାମ ପାଇଁ ନିର୍ଭୀକ ପଦକ୍ଷେପ, ମାନବିକ ଗୁଣାବଳୀର ହୃଦୟସ୍ପର୍ଶୀ ଚିତ୍ରଣରେ ଗଳ୍ପର ପରିସମାପ୍ତି— ଏ ସମସ୍ତ ଏକ ନିପୁଣ କଳାକାରର ରସମୟ ଅଭିବ୍ୟକ୍ତି ।

ପିତୃ ସ୍ନେହର ଅଭାବରେ, କଠୋର ଅନୁଶାସନରେ ସନ୍ତାନର ଅନ୍ତଃକରଣରେ ଯେଉଁ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୁଏ, ତାର ଏକ ସ୍ୱଭାବ ସୁନ୍ଦର ଜୀବନ୍ତ ଆଲେଖ୍ୟ ରାଧାନାଥ ଆଙ୍କିଛନ୍ତି, ତାହା ତାଙ୍କ ନିଜ ଜୀବନର ବାଲ୍ୟ ଅନୁଭୂତିର ବିଶ୍ୱସ୍ତ ପ୍ରତିଚ୍ଛବି ମାତ୍ର । ଏହାକୁ ପଢ଼ିଲେ ମନେହୁଏ ଏ ଗଳ୍ପର ନାୟକ ଲେଖକ ସ୍ୱୟଂ । ଏହାର କଥାବସ୍ତୁ ଓ ଗଳ୍ପ ବିନ୍ୟାସରୁ ରାଧାନାଥଙ୍କ କବିତ୍ୱର ପରିଚୟ ମିଳେ । ଅପରିଚିତ ସହିତ ବନ୍ଧୁତ୍ୱ ସ୍ଥାପନର ଅନାବିଳ ବିଶ୍ୱସ୍ତ ଆଗ୍ରହରେ, ଚିତ୍ରଶିଳ୍ପୀ ଭାବରେ ନିଷ୍ଠା ପ୍ରଦର୍ଶନରେ, ଅନୁତପ୍ତ ପିତାଙ୍କୁ ସେବା ଓ ସନ୍ତୋଷ ଦେବାରେ, ଅକୁଣ୍ଠ ଚିତ୍ତରେ ଅକୃପଣ ହସ୍ତରେ ଦାନ ଧର୍ମ କରିବାରେ ଓ ଏକ ମନ ପ୍ରାଣରେ ପ୍ରୀତିର ସ୍ତବକ ରଚନାରେ ନାୟକର ଅନନ୍ୟ ଚାରିତ୍ରିକ ମାଧୁର୍ଯ୍ୟ ପାଠକଙ୍କୁ ମୁଗ୍ଧ ଚକିତ କରେ । ପୁଣି ବିଶ୍ୱାସଘାତକ ବନ୍ଧୁର ପ୍ରବଞ୍ଚନାର ପ୍ରତିଶୋଧରେ ମନ ବିଷଣ୍ଣ ତିକ୍ତ ହୋଇ ଉଠେ । କିନ୍ତୁ ହତ୍ୟାରେ ଗଳ୍ପର ଯବନିକାପାତ ଘଟିନାହିଁ । ନାୟକର ବ୍ୟକ୍ତିସତ୍ତା ସଂପ୍ରସାରିତ ହୋଇଛି ଅନୁତାପରେ । ପାପକୁ ସ୍ୱୀକାର କରି ମୃତ୍ୟୁକୁ କୋଳେଇ ନେବାରେ ଜୀବନ ହେଇଛି ଆନନ୍ଦ ଧନ୍ୟ, ଦୁର୍ଲଭ ଐଶ୍ୱର୍ଯ୍ୟରେ ବିମଣ୍ଡିତ । ରାଧାନାଥ ଥିଲେ ନୂତନ ଭାବ ଅଭ୍ୟୁଦୟର ସାଧକ । ଏ ଗଳ୍ପଟି ତାଙ୍କ ପାଇଁ ଅପରିଚିତ ପରିବର୍ତ୍ତେ ହେଇଛି ଜୀବନର ନିକଟବର୍ତ୍ତୀ, ପରିଚିତ ଓ ଅନ୍ତରଙ୍ଗ । ଗଳ୍ପର ବିଷୟରେ ପ୍ରକୃତି ଓ ମାନବିକ ଅନୁଭୂତି ବିଚିତ୍ର ରୂପାୟନରେ ବିସ୍ତାରିତ । ନେପଲ୍‌ସର ପ୍ରାକୃତିକ ଶୋଭା ଦର୍ଶନରେ ନାୟକର ସତେଜ ମନ ଉପରେ ଯେଉଁ ବିଷଣ୍ଣତାର ମାଳିନ୍ୟ ଜମାଟ ବାନ୍ଧିଥିଲା ତା' ଅଚିରେ ଅପସାରିତ ହେଲା । ମନ ହେଲା ଉତ୍‌ଫୁଲ୍ଲ, ପ୍ରସାରିତ । ସଂକୀର୍ଣ୍ଣ ଚେତନାର ଖୋଳପାରୁ ମୁକ୍ତି ଲାଭ କରି ଜୀବନ ହେଲା ଉନ୍ମୁଖ ବିସ୍ତୃତ । ଏସବୁ ବର୍ଣ୍ଣନା କଲାବେଳେ ରାଧାନାଥଙ୍କ କବିସତ୍ତା ହେଇଛି ସୌନ୍ଦର୍ଯ୍ୟାପ୍ଲୁତ, ଗଦ୍ୟ ହେଇ ଉଠିଛି କାବ୍ୟଧର୍ମୀ ।

ରାଧାନାଥଙ୍କ ଦୃଷ୍ଟି ଜୀବନଧର୍ମୀ ଓ ପ୍ରଗତିଶୀଳ । ସରଳ, ସତ୍‌ଭାବନା ଓ ସଦ୍‌ଗୁଣରେ ବିମଣ୍ଡିତ ଏକ ମହାର୍ଘଜୀବନ କିପରି ପ୍ରତିକୂଳ ପରିବେଶ ଓ ପରିସ୍ଥିତିରେ ଆଲୋକ ଉଜ୍ଜ୍ୱଳ ଜୀବନ ମାର୍ଗରୁ ଅନ୍ଧକାରର ଗଭୀର ଗହ୍ୱର ଭିତରୁକୁ ଲମ୍ଫ ଦେଇ ବିକଳ ବ୍ୟାକୁଳ ହୁଏ, 'ଇତାଲୀୟ ଯୁବା' ତାର ଏକ ବାସ୍ତବ ପ୍ରତିଚ୍ଛବି । ସ୍ରଷ୍ଟାର ଅନ୍ତର୍ଦୃଷ୍ଟି କେତେ ତୀକ୍ଷ୍ଣ, କେତେ ସୂକ୍ଷ୍ମ, କେତେ ଗଭୀର ଭାବଗର୍ଭକ ହେଲେ ଚରିତ୍ରର ଏଇ ଦୁଇଟି ଦିଗ ପ୍ରତି ସମାନ ନ୍ୟାୟ ଦେଇ ପାରିବ, ତାହା ହିଁ

ବିଚାର୍ଯ୍ୟ । ଏହା ସ୍ରଷ୍ଟାର ବୋଧଶକ୍ତି, ପ୍ରଜ୍ଞାଦୃଷ୍ଟି ଓ ସୃଜନଶକ୍ତିର ସଫଳ ପରିପ୍ରକାଶ । ସ୍ନେହ, ମମତା, ପ୍ରୀତିର ଅଭାବରେ ସକଳ ସଦ୍‌ଗୁଣରେ ଅଳଙ୍କୃତ ମଣିଷର ମନ ବିକୃତ ହୁଏ । ବିବେକ ବୁଦ୍ଧି ଲୋପ ପାଏ, ଜୀବନର ସାମ ସଂଗୀତ ପରିବର୍ତ୍ତେ ଶୁଣେ ମୃତ୍ୟୁର ପଦଧ୍ୱନି । ପୁଣି ଉଦାର ମନା, ମହତ୍ ପ୍ରାଣ ବ୍ୟକ୍ତି ସଂସର୍ଗରେ ଆସିଲେ ମନ ହୁଏ ଉଦାର, ପ୍ରଶସ୍ତ, ରସୋଚ୍ଛଳ । ପ୍ରାକୃତିକ ଶୋଭା ଦର୍ଶନରେ ଅନ୍ତର ହୁଏ ରସାବିଷ୍ଟ, ପରିତୃପ୍ତ । ନିସର୍ଗ ଶୋଭାର ପୂଜାରୀ ରାଧାନାଥ ଇତାଲୀୟ ଯୁବାରେ ରାଧାନାଥ ପ୍ରକୃତିର ଅବର୍ଣ୍ଣନୀୟ ସୌନ୍ଦର୍ଯ୍ୟରେ ବିମୋହିତ । ପ୍ରକୃତିର ମୁଗ୍ଧ ସ୍ତାବକ । ପୁଣି ଜୀବନ ପ୍ରତି ବାସ୍ତବ ଦୃଷ୍ଟି ଭଂଗୀ ଓ ଈଶ୍ୱର ବିଶ୍ୱାସର ଅନୁପମ ସମନ୍ୱୟ ଏଥିରେ ସ୍ୱାକ୍ଷରିତ । ଚିନ୍ତନ ଓ କର୍ମ ମଧ୍ୟରେ ଶିଳ୍ପୀ ମନର ଗଭୀର ମୁଦ୍ରା ଏଥିରେ ଚିହ୍ନିତ ।

ଗଳ୍ପର ଉପସଂହାରରେ ଏକ ପକ୍ଷରେ ନାୟକର ମହତ୍ ଚରିତ୍ରର ସୌନ୍ଦର୍ଯ୍ୟ ପ୍ରକଟିତ ହେବା ସଂଗେ ସଂଗେ ଛବିଟିର ଭୟଙ୍କର ରୂପ ଚିତ୍ରକର ମନର ବିକୃତ ବିକଟ ଭାବର ପ୍ରତ୍ୟକ୍ଷ ପ୍ରକାଶ । ମଣିଷ ଭିତରର ଦେବଦୁର୍ଲଭ ରୂପ କେମିତି ପ୍ରତିକୂଳ ପରିସ୍ଥିତିରେ ଭୀଷଣ ନାରକୀୟ ରୂପ ଧାରଣ କରେ, ପୁଣି ଅନୁତାପ ଅନଳରେ ଦଗ୍ଧୀଭୂତ ହେଲେ ବିଶୁଦ୍ଧ ଉଜ୍ଜ୍ୱଳ ମୂର୍ତ୍ତିରେ ପରିବର୍ତ୍ତିତ ହୁଏ, ଇତାଲୀୟ ଯୁବା ତାର ଏକ ସାର୍ବକାଳିକ ସ୍ୱାକ୍ଷର ।



# 'ଚନ୍ଦ୍ରଭାଗା'ର କବି ରାଧାନାଥ

ଡଃ ସଂଘମିତ୍ରା ମିଶ୍ର

କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ ନବଯୁଗର ଆଦ୍ୟ ପ୍ରବର୍ତ୍ତକ ଭାବରେ ସମ୍ମାନିତ । ମଧ୍ୟଯୁଗୀୟ ସାହିତ୍ୟର ପ୍ରବାହରୁ ମୁକ୍ତକରି, ଓଡ଼ିଆ ସାହିତ୍ୟକୁ ଏକ ନୂତନ ଦିଗ୍‌ଦର୍ଶନ ଦେବାରେ ତାଙ୍କର ଅବଦାନ ସର୍ବଥା ସ୍ୱୀକାର୍ଯ୍ୟ । ଭାରତବର୍ଷରେ ନବଜାଗରଣ ସମୟରେ ଯେଉଁ କେତେଜଣ ମୁଷ୍ଟିମେୟ ସାହିତ୍ୟସାଧକ ଓଡ଼ିଶାରେ ସେହି ଜାଗରଣର ବାର୍ତ୍ତା ପ୍ରସାର କରିଥିଲେ ସେମାନେ ହେଲେ କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ ସେନାପତି, ଭକ୍ତକବି ମଧୁସୂଦନ ରାଓ, ବିଚିତ୍ରାନନ୍ଦ ଦାସ, ମଧୁସୂଦନ ଦାସ, ପ୍ୟାରୀମୋହନ ଆଚାର୍ଯ୍ୟ, ବାସୁଦେବ ସୁଢ଼ଳ ଦେବ, କର୍ମବୀର ଗୌରୀଶଙ୍କର ରାୟ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଓ ପଣ୍ଡିତ ଗୋବିନ୍ଦ ରଥ ପ୍ରଭୃତି । ଏମାନେ ସମସ୍ତେ ସମାଜର ବିଭିନ୍ନ ସ୍ତରରେ ସଚେତନ ଭାବରେ ଆଧୁନିକ ଜୀବନବୋଧର ସଂଚାର କରାଇଥିଲେ । ଫକୀରମୋହନ ଓଡ଼ିଶାର ମାଟି ଓ ମାଆ ମୁହଁର ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେଇଥିଲେ । ମଧୁସୂଦନ ରାଓ ଥିଲେ ଶିକ୍ଷକ ତଥା ଭକ୍ତକବି । ଶିଶୁ ପ୍ରାଣକୁ ଆଧ୍ୟାତ୍ମିକତା ଆଡ଼କୁ ଆକର୍ଷିତ କରାଇବା ଦିଗରେ ତାଙ୍କର ସ୍ରଷ୍ଟାପ୍ରାଣ ନିୟୋଜିତ ହୋଇଥିଲା । ପ୍ୟାରୀମୋହନ ଇତିହାସ ରଚନାରେ ମନୋନିବେଶ କରି ଜାତିକୁ ଅତୀତ ସଚେତନ କରିଥିଲେ । ସୁଢ଼ଳ ଦେବଙ୍କର ଜାତି ଓ ଭାଷା ପ୍ରୀତି ଥିଲା ଉଲ୍ଲେଖନୀୟ । ଗୌରୀଶଂକର ଉତ୍କଳଦୀପିକାର ସଂପାଦକ ଭାବରେ ନିଜର ସାମାଜିକ ଦାୟିତ୍ୱ ସଂପାଦନ କରିଥିଲେ । ବିଚ୍ଛନ୍ଦଚରଣ ପ୍ରାଚୀନ ସାହିତ୍ୟର ଲୁପ୍ତ ରତ୍ନରାଜି ଉଦ୍ଧାର ଦିଗରେ ନିଜର ସମସ୍ତ ଶକ୍ତି ବିନିଯୋଗ କରିଥିଲେ । ସାମଜ ସଂସ୍କାର ଦିଗରେ ଗୋବିନ୍ଦ ରଥଙ୍କ ଉଦ୍ୟମ ଉଦାହରଣଯୋଗ୍ୟ ଥିଲା । ଗୋଟିଏ କଥାରେ କହିଲେ ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଜନ୍ମ ଏହି ଯୋଗ୍ୟ ଉତ୍କଳୀୟଗଣ ନିଜ ନିଜ ଶ୍ରୀ ସାଧନା ତଥା ଆନ୍ତରିକତା ବଳରେ ଓଡ଼ିଶାରେ ଏକ ନୂତନ ଜୀବନବୋଧ ସଂଚାର କରାଇ ପାରିଥିଲେ ।

ରାଧାନାଥଙ୍କ ପରିସର ଥିଲା ଏମାନଙ୍କଠାରୁ ପରିବ୍ୟାପ୍ତ । ସେ ସ୍କୁଲ ଇନ୍‌ସପେକ୍ଟର ଥିବା ସମୟରେ ଓଡ଼ିଶାର ପ୍ରାୟ ସମସ୍ତ ଅଞ୍ଚଳ ଗସ୍ତ କରିଥିଲେ । ନିଜ ଜୀବିକାର ସୁଯୋଗ ନେଇ ସେ ଗ୍ରାମ୍ୟ ଓଡ଼ିଶାର ଛବିଳ ପ୍ରକୃତିକୁ ଅବଲୋକନ କରିଥିଲେ ଓ ଜୀବନ ଦେଇ ସେଗୁଡ଼ିକୁ ଜୀବନ୍ତ ଭାବରେ ଲିପିବଦ୍ଧ କରିଥିଲେ । ପାଠ୍ୟପୁସ୍ତକ ଭାବରେ ନିର୍ବାଚିତ ହୋଇ ତାଙ୍କର କାବ୍ୟଗୁଡ଼ିକ ତତ୍‌କାଳୀନ ମୁଷ୍ଟିମେୟ

ଶିକ୍ଷିତ ସମାଜର ସମାଦର ଲାଭ କରିପାରିଥିଲା । ଏଥି ସହିତ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଏହି କବି ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ ଆଗ୍ରହୀ ଥିଲେ । ତେଣୁ ପାଶ୍ଚାତ୍ୟ ସାହିତ୍ୟର ଟ୍ରାଜିକ୍ ଧର୍ମ ସହିତ ସମାଜ-ପ୍ରତିବଦ୍ଧତା ତାଙ୍କୁ ପ୍ରଭାବିତ କରିଥିଲା । ତାଙ୍କ ସାହିତ୍ୟସୃଷ୍ଟିକୁ ଆଲୋଚକମାନେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସୁଷମ ସମନ୍ୱୟ ଭାବରେ ଅଭିହିତ କରିଛନ୍ତି ।

ବଂଗଳାର 'କବିତାବଳି ୧/୨ ଓ 'ଲେଖାବଳୀ' ନାମକ ତିନୋଟି ବଂଗଳା ପୁସ୍ତକ ତାଙ୍କର ପ୍ରାଥମିକ ପର୍ଯ୍ୟାୟର ରଚନା । ପରେ ସେ ବଂଗୀୟ କବି ମାଇକେଲ ମଧୁସୂଦନ ଦତ୍ତଙ୍କର ଅମିତ୍ରାକ୍ଷର ଛନ୍ଦର ଶୈଳୀକୁ ଅନୁସରଣ ମଧ୍ୟ କରିଛନ୍ତି । ଏତଦ୍‌ବ୍ୟତୀତ, ମେଘଦୂତର ଅନୁବାଦ, ଇତାଲୀୟ ଯୁବା ଓ ବିବେକୀ ପ୍ରବନ୍ଧ ରାଧାନାଥୀ ପ୍ରତିଭାର ପ୍ରଥମ ରଶ୍ମି । ପରେ କେଦାରଗୌରୀ, ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା, ଚିଲିକା, ଦରବାର, ମହାଯାତ୍ରା, ଯଯାତିକେଶରୀ, ଉଷା ଭଳି କାବ୍ୟମାନ ରଚନା କରି ସେ ଉତ୍କଳଜନନୀଙ୍କୁ ଉପହାର ଦେଇଛନ୍ତି, 'କେଦାରଗୌରୀ' ସେକ୍ସ୍‌ପିୟରଙ୍କ 'Pyramus & This be' ନାମକ କବିତାର ଅନୁବାଦ । ସେହିପରି ଓଭିଡ୍‌ଙ୍କର 'Metamorphosis' ର ଛାୟା ମଧ୍ୟ କେଦାରଗୌରୀରେ ପଡ଼ିଛି । 'ଚିଲିକା'ରେ Tennysonଙ୍କର The lady of the lakeର ଛାୟା, ଆସ୍କାଇଲସ୍‌ଙ୍କର 'ଆଗାମେମ୍‌ନନ୍' ନାଟକ 'ପାର୍ବତୀ' ରଚନାର ପ୍ରେରକ । 'ଉଷା' ଉଇଲିୟମ ମୋରିସଙ୍କର 'Atlanta's Race'ର ଛାୟାରେ ରଚିତ । 'ଚନ୍ଦ୍ରଭାଗା' କାବ୍ୟରେ ଓଭିଡ୍‌ଙ୍କର Apollo & Daphineର ପ୍ରଣୟ କାହାଣୀ ମୁଖ୍ୟ ପ୍ରେରକ ଉପାଦାନ । ଏସବୁ ଆଲୋଚନା ପୁନଃପୌନିକ ହୋଇଥିଲେ ହେଁ ପାଶ୍ଚାତ୍ୟ ଦର୍ଶନ ଓ ଜୀବନଯାତ୍ରାର ନୂତନମାର୍ଗ ଦର୍ଶକ ଭାବରେ ରାଧାନାଥଙ୍କୁ ପ୍ରତିଷ୍ଠା ଦେବାରେ ସହାୟକ । ପାଶ୍ଚାତ୍ୟ ସାହିତ୍ୟରୁ କଥା କଂକାଳ ଆନୟନ କରି ଏହାକୁ ପ୍ରାଚ୍ୟ ପାଣିପବନରେ ପରିପୁଷ୍ଟ କରିବା ରାଧାନାଥୀ ପ୍ରତିଭାର ଅନ୍ୟ ଏକ ଉଜ୍ଜ୍ୱଳ ଦିଗ । ଓଡ଼ିଶାର ଭୂଗୋଳ ତଥା ଇତିହାସ ସଂପର୍କୀୟ ସମ୍ୟକ୍ ଜ୍ଞାନ ସହିତ ପାଶ୍ଚାତ୍ୟ ସାହିତ୍ୟ ଅବବୋଧ ଏକତ୍ର ହୋଇ ରାଧାନାଥୀ ସାହିତ୍ୟର ଭିତ୍ତିସ୍ଥାପନ କରିଛନ୍ତି । ଭାଷାର ଅଦ୍ଭୁତ ଆକର୍ଷଣୀ ଶକ୍ତି, ପ୍ରକୃତି ବର୍ଣ୍ଣନାର ଅନୁପମ ଲାବଣ୍ୟ ସହିତ କାରୁଣ୍ୟରସର ମହାପ୍ରବାହ ରାଧାନାଥଙ୍କୁ ଯଥାର୍ଥରେ ପ୍ରାଚ୍ୟ ପାଶ୍ଚାତ୍ୟର ସଂଯୋଗ ସେତୁରେ ରୂପାନ୍ତରିତ କରିଛି ।

'ଚନ୍ଦ୍ରଭାଗା' ସଂପର୍କୀୟ ବିଶେଷ ଆଲୋଚନା ସମୟରେ ଆମକୁ ରାଧାନାଥଙ୍କର ସୃଷ୍ଟିସମ୍ଭାରର କିଞ୍ଚିତ ଅନୁଧ୍ୟାନ କରିବାକୁ ପଡ଼ିବ । 'ମେଘଦୂତ' ରଚନା ରାଧାନାଥଙ୍କୁ ଯଥେଷ୍ଟ ଆତ୍ମବିଶ୍ୱାସ ପ୍ରଦାନ କରିଛି । 'କବିତାବଳୀ' ସେହି ଆତ୍ମବିଶ୍ୱାସକୁ ବହୁଗୁଣିତ କରିଛି । କେଦାରଗୌରୀର ଟ୍ରାଜିକ ପ୍ରେମକାହାଣୀ

ଓଡ଼ିଶାର ପାଠକମାନଙ୍କୁ ଅନେକ ଦିନ ଆବିଷ୍ଟ କରି ରଖିଛି । 'ଚନ୍ଦ୍ରଭାଗା'ର ଅସାଧାରଣ ପ୍ରେମ ଭାବନାର ପରିଣତିରେ କୋଣାର୍କର ପତନକୁ ମଧ୍ୟ ପାଠକ ଗ୍ରହଣ କରିନେଇଛି । ଏପରିକି ଉଷାର ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟର ସମନ୍ୱିତ ରୂପ ପାଠକକୁ ବିସ୍ମିତ କରିବାରେ ସଫଳ ହୋଇଛି । କିନ୍ତୁ 'ପାର୍ବତୀ' ରଚନାପରେ ରାଧାନାଥ ପାଠକ ବିମୁଖତାର ଶିକାର ହୋଇଛନ୍ତି ଓ ବାରମ୍ବାର ଉପହସିତ ହୋଇ ମାନସିକ ଆଘାତ ପାଇଛନ୍ତି । ତେଣୁ 'ଚିଲିକା' ରଚନା କରି ସେ ନିଜର ଜାତୀୟତାର ପରିଚୟ ଦେବାକୁ ଚାହିଁଛନ୍ତି । 'ମହାଯାତ୍ରା'ରେ ଏହି ଜାତୀୟତାର ବିଜୟ ବାର୍ତ୍ତା ଉଦ୍‌ଘୋଷିତ ହୋଇଛି । 'ଯଯାତିକେଶରୀ' ରଚନା ବେଳକୁ ରାଧାନାଥୀ ପ୍ରତିଭାର ସାୟାହ୍ନକାଳ ଉପନୀତ ବୋଲି ବୁଝିହୁଏ । ତାପରେ ସେ 'ତୁଳସୀସ୍ତବକ' ରଚନା କରିଛନ୍ତି ଓ 'ଦରବାର'ରେ ସମକାଳୀନ ରାଜନୀତି ତଥା ସମାଜନୀତିକୁ ବ୍ୟଙ୍ଗ କରିଛନ୍ତି । 'ଉର୍ବଶୀ' ଓ 'ଦଶରଥ ବିୟୋଗ' ଏହି ସାୟାହ୍ନର ରଚନା ।

'ଚନ୍ଦ୍ରଭାଗା' ରଚନାରେ ରାଧାନାଥଙ୍କର ପ୍ରକୃତିପ୍ରୀତି, ଜାତୀୟଭାବନା ଓ ସୌନ୍ଦର୍ଯ୍ୟ ଚେତନା ସହିତ ଟ୍ରାଜିକ ମାନସିକତାର ପରିଚୟ ମିଳିଥାଏ । ନାୟିକା ଚନ୍ଦ୍ରଭାଗାର ନାମାନୁସାରେ ଏହି ଖଣ୍ଡକାବ୍ୟ ନାମିତ । ପୌଷପୂର୍ଣ୍ଣମୀରେ ଜଗନ୍ନାଥଙ୍କ ମନ୍ଦିରରେ ଅଭିଷେକୋତ୍ସବ ପାଳିତ ହୁଏ । ଏହି ଅଭିଷେକ ଉତ୍ସବରେ ଜଗନ୍ନାଥଙ୍କୁ ଭେଟିବାପାଇଁ ବିଭିନ୍ନ ସ୍ଥାନରୁ ଦେବଦେବୀମାନେ ଶ୍ରୀକ୍ଷେତ୍ରକୁ ଆଗମନ କରିଛନ୍ତି । ଏମାନଙ୍କ ମଧ୍ୟରେ ଅଛନ୍ତି କୋଣାର୍କ ନିକଟସ୍ଥ ହରଚଣ୍ଡୀ, ବାଣପୁରର ଭଗବତୀ, ଭୁବନେଶ୍ୱରୀ, ରଣପୁରର ମଣିନାଗ, ବାଙ୍କୀର ଚର୍ଚ୍ଚିକା, ଖୋର୍ଦ୍ଧାର ବରୁଣେଇ, ଝଂକଡ଼ର ଶାରଳା, କାକଟପୁରର ମଂଗଳା, ଚିଲିକାର କାଳିଜାଈ ଓ କୋଣାର୍କର ନବଗ୍ରହପୀଠରୁ ସ୍ୱୟଂ ସୂର୍ଯ୍ୟଦେବ । ଏଠାରେ ଲକ୍ଷ୍ୟ କରାଯିବାର କଥା ସୂର୍ଯ୍ୟଦେବ ଏକମାତ୍ର ଶାସ୍ତ୍ରୀୟ ଦେବତା ଯେ କି ବିଭିନ୍ନ ସ୍ଥାନୀୟ ପ୍ରତିନିଧି ଦେବୀମାନଙ୍କ ସହିତ ଅଭିଷେକ ଉତ୍ସବରେ ଯୋଗ ଦେବାପାଇଁ ଶ୍ରୀକ୍ଷେତ୍ରକୁ ଆସିଛନ୍ତି । କନ୍ଦର୍ପ ଓ ତାଙ୍କର ପରମାସୁନ୍ଦରୀ ପତ୍ନୀ ରତି କୌଣସି ସ୍ଥାନୀୟ ଦେବତା ନୁହନ୍ତି ବା ସେ ଅନ୍ୟମାନଙ୍କ ସହିତ ସଂପୃକ୍ତ ମଧ୍ୟ ନୁହନ୍ତି ତେଣୁ ସୂର୍ଯ୍ୟଦେବ ସେମାନଙ୍କର "ପଛେ ଆସି ଆଗେ ପଶିଲେ" ନୀତିକୁ ଗ୍ରହଣ କରି ନପାରି ଅସହିଷ୍ଣୁ ହୋଇଛନ୍ତି ।

ଏଠାରେ ରାଧାନାଥଙ୍କର ଆହରଣ କୌଶଳର କିଞ୍ଚିତ ଆଲୋଚନା କରିବା ଦରକାର । ଗ୍ରୀକ୍ କବି ଓଭିଡ୍‌ଙ୍କର ଆପୋଲୋ ଡାଫନୀ କାହାଣୀ ହିଁ ଚନ୍ଦ୍ରଭାଗାର କଥା କଂକାଳ, ପେନିୟସ୍ ନଦୀର କନ୍ୟା ଡାଫନୀର ସୌନ୍ଦର୍ଯ୍ୟ ହିଁ ଆପୋଲୋ ବା ସୂର୍ଯ୍ୟଦେବତାଙ୍କୁ ବିମୋହିତ କରିଛି । କ୍ୟୁପିଡ୍ (କନ୍ଦର୍ପ) ଏଥିପାଇଁ ଆପୋଲୋଙ୍କୁ ପ୍ରେମର ଶର ନିକ୍ଷେପ କରିଛି । ଆପୋଲୋ ମେଷପାଳକ ରୂପରେ ଡାଫନୀର

ପଶ୍ଚାଧାବନ କରିଛନ୍ତି । ଆତ୍ମରକ୍ଷା ପାଇଁ ଡାଫନୀ ନିଜର ପିତାଙ୍କୁ ପ୍ରାର୍ଥନା କରିଛି ଓ ପରିଶେଷରେ ଏକ ଲରେଲ ବୃକ୍ଷରେ ପରିଣତ ହୋଇଛି । ଚନ୍ଦ୍ରଭାଗାରେ କନ୍ଦର୍ପ ସୂର୍ଯ୍ୟଙ୍କ ବ୍ୟବହାରରେ କ୍ଷୁବଧହୋଇ ପ୍ରତିଶୋଧ ପାଇଁ ସୁଯୋଗ ଖୋଜୁଥିବା ସମୟରେ ଚନ୍ଦ୍ରଭାଗା ଉପରେ ତାଙ୍କର ଦୃଷ୍ଟି ପଡ଼ିଛି । ସୁମନ୍ୟୁ ଋଷିଙ୍କ ଦ୍ୱାରା ପାଳିତା ସାଗର ଅପ୍‌ସରୀର କନ୍ୟା ଚନ୍ଦ୍ରଭାଗା ତରୁଣୀ ହେଲେ ହେଁ ପ୍ରେମ ସଂପର୍କରେ ତାର ଧାରଣା ନାହିଁ । କନ୍ଦର୍ପ ବାଣରେ ଅତିଷ୍ଠ ସୂର୍ଯ୍ୟଦେବ ବ୍ରାହ୍ମଣ ଯୁବକ ବେଶ ଧରି ଚନ୍ଦ୍ରଭାଗାର ଅନୁଧାବନ କରିଛନ୍ତି । ଭୟଭୀତା ଚନ୍ଦ୍ରଭାଗା ନିଜ ଜନନୀଙ୍କୁ ପ୍ରାର୍ଥନାକରି ସମୁଦ୍ରରେ ଝାସ ଦେଇଛି । ଆପୋଲୋ ଡ଼ାଫନୀକୁ ଅନୁଧାବନ କରୁଥିବାର ଦୃଶ୍ୟକୁ ଓଭିଡ଼ ହେଟାବାଘ କବଳରୁ ମେଷଶାବକ, ସିଂହ ନିକଟରୁ ମୃଗ ବା ସଞ୍ଚାଣଠାରୁ କପୋତର ପଳାୟନ ଭାବରେ ବର୍ଣ୍ଣନା କରିଛନ୍ତି । ରାଧାନାଥଙ୍କ ବର୍ଣ୍ଣନାରେ ଏହା ସଞ୍ଚାଣଠାରୁ କପୋତ, ଶ୍ୱାନଠାରୁ ଶଶକ ବା ସିଂହଠାରୁ ମୃଗର ପଳାୟନ ଭାବରେ ଚିତ୍ରିତ ହୋଇଛି । କିନ୍ତୁ କନ୍ଦର୍ପ ସୂର୍ଯ୍ୟଦେବଙ୍କ ଅନୁରାଗ ଓ ଚନ୍ଦ୍ରଭାଗାଙ୍କୁ ବିରାଗ ଶର ନିକ୍ଷେପ କରିବା ଆମ ପରଂପରା ସମନ୍ୱିତ ନୁହେଁ । ଧର୍ମର ଦେବତା ସୂର୍ଯ୍ୟଦେବ ଯେକୌଣସି କାମାନାସିକ୍ତ ଯୁବକ ଭଳି ଜଣେ ତରୁଣୀର ପଶ୍ଚାଧାବନ କରିବା କାଳେ ଆମ ପରଂପରାରେ ଗୃହୀତ ହେବନାହିଁ ସେଭଳି ଆଶଂକାକରି ହୁଏତ ରାଧାନାଥ ସେଥିରେ ପୌରାଣିକତାର ଯୁକ୍ତିଟିଏ ଉପସ୍ଥାପିତ କରିଦେଇଛନ୍ତି ।

''ମନ୍ତ୍ରବଳେ କୁନ୍ତୀ ଆକର୍ଷି ମୋତେ ଆଣିଥିଲା
ଆଣିଲୁ ଲାବଣ୍ୟ ରଜ୍ଜୁରେ ବାନ୍ଧି ତୁହି ଛଇଳା ।''

କୌଣସି ଦୁଃସ୍ଥିତିରେ ପଡ଼ି କନ୍ୟା ନିଜର ପିତାଙ୍କୁ ସ୍ମରଣ କରିବା ଅପେକ୍ଷା ମାତାଙ୍କୁ ସ୍ମରଣ କରିବା ଅଧିକ ମନସ୍ତାତ୍ତ୍ୱିକ ମନେହୁଏ । ନାୟିକା ସମୁଦ୍ରରେ ଝାସ ଦେବା ମଧ୍ୟ ଅଧିକ ମାନବୀୟ । ଏହିଭଳି ବିଚାର ସହିତ ଆଉ ଏକ ରାଧାନାଥୀ ଚିନ୍ତା ପାଠକକୁ ବିସ୍ମିତ କରେ । ତାହା ହେଉଛି ଚନ୍ଦ୍ରଭାଗାର ଆତ୍ମବିସର୍ଜନ ପରେ ଋଷି ସୁମନ୍ୟୁଙ୍କର କ୍ରୋଧ ଓ ଫଳ ସ୍ୱରୂପ ଅନନ୍ୟ କଳାକୃତି କୋଣାର୍କର ପତନ । ଏଠାରେ ରାଧାନାଥୀ ପ୍ରତିଭାର ଦିଗନ୍ତକୁ ଉତ୍କଳୀୟ ସ୍ୱାଭିମାନ ଆହୁରି ଦୀପ୍ତିମନ୍ତ କରିଛି । କୋଣାର୍କ ଭଳି ଅନୁପମ ମନ୍ଦିର ସେହିଭଳି ଦୈବୀ ପ୍ରଭାବରୁ ହିଁ ବିଲୀନ ହୋଇପାରେ ଅନ୍ୟଥା କୋଣାର୍କର ପତନ ଅସମ୍ଭବ । ଏଠାରେ ଓଭିଡ଼ ଲୋଡ଼ା ହୁଅନ୍ତି ନାହିଁ ଓ ଚନ୍ଦ୍ରଭାଗା ତଥା କୋଣାର୍କର ଗୁରୁତ୍ୱ ସ୍ୱୀକୃତ ହୋଇଯାଏ ।

ତେବେ କୋଣାର୍କର ପୃଷ୍ଠଭୂମିରେ ସମୁଦ୍ରତୀରରେ ଅଭିନୀତ ହେଉଥିବା ଏହି ନାଟକଟିରେ ଆମେ ପ୍ରାରମ୍ଭ ଗତି ଓ ଟ୍ରାଜିକ୍ ପରିଣତି ଦେଖିପାରୁ । ସୂର୍ଯ୍ୟଦେବ ନାୟକ ଓ ଚନ୍ଦ୍ରଭାଗା ନାୟିକା । ସହଜ ଭାବରେ ପାରସ୍ପରିକ ପ୍ରେମ ଆରମ୍ଭ

ହେବାପୂର୍ବରୁ ଖଳନାୟକ କନ୍ଦର୍ପର ଶର ସେମାନଙ୍କୁ ବିକ୍ଷିପ୍ତ କରିଦିଏ । ଅଲଭ୍ୟ ନାୟିକା ଲାଭ ଆଶାରେ ସୂର୍ଯ୍ୟଦେବ ଚନ୍ଦ୍ରଭାଗାକୁ ଅନୁଧାବନ କରନ୍ତି । ଚନ୍ଦ୍ରଭାଗାର କାରୁଣ୍ୟ ଓ ଆତ୍ମବିସର୍ଜନରେ ନାଟକ ଶେଷ ହୁଏ । ଚନ୍ଦ୍ରଭାଗାର ରୂପବର୍ଣ୍ଣନାରେ ମଧ୍ୟ ରାଧାନାଥ ଯଥେଷ୍ଟ ଶାଳୀନତା ପ୍ରଦର୍ଶନ କରିଛନ୍ତି ।

"ତୁଟେ ଯୁବା-ଧୈର୍ଯ୍ୟ-କବଚ ପ୍ରତି କଟାକ୍ଷ-ତୀରେ
ଉଠେ ନବଶୋଭା ତରଂଗ ପ୍ରତି ଅଂଗଭଂଗୀରେ
× × ×
ଚୁମ୍ବିଚରଣକୁ ଚିକୁର ରାଜି ଦୋଳେ ଚରମେ
ମଦନ କେତନ ଉଡ଼ଇ କିବା ଶୋଭା ଆଶ୍ରମେ"

ଏତାଦୃଶ କଳ୍ପନା ଭିତରେ ପାଠକ ଆଉ ଗୋଟିଏ ମନସ୍ତାତ୍ତ୍ୱିକ ଦିଗ ଦେଖିପାରେ । ପ୍ରେମ ପ୍ରସଂଗରେ ସର୍ବଦା ଅରୁଚି ଥିବା ନାୟିକାର ଅଯତ୍ନ ବିନ୍ୟସ୍ତ ସୌନ୍ଦର୍ଯ୍ୟ ଦେଖି ସୂର୍ଯ୍ୟଦେବ ମୋହଗ୍ରସ୍ତ ହୁଅନ୍ତି କାରଣ ପ୍ରଥମରେ କନ୍ଦର୍ପର ପ୍ରତିଶୋଧପ୍ରବଣତା କାର୍ଯ୍ୟକାରୀ ହୁଏ ଓ ଦ୍ୱିତୀୟରେ ସୂର୍ଯ୍ୟ ଦେବତା ଏକ ରସିକ ଯୁବକର ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତି । ରସିକର ଗୁଣ ହେଉଛି –

"କିନ୍ତୁ ରୂପଥିଲେ ପ୍ରଚ୍ଛନ୍ନେ କିବା ରସିକ ଛାଡ଼େ
ପୁଷ୍ପେଥିଲେ ମଧୁ ଯତନେ ଖୋଜି ମଧୁପ କାଢ଼େ ।"

ତେଣୁ ରାଧାନାଥଙ୍କର ରୂପାନ୍ୱେଷୀ ଦୃଷ୍ଟି ଚନ୍ଦ୍ରଭାଗାର ରୂପକୁ ଆହୁରି ଜୀବନ୍ତ ତଥା ମନୋଜ୍ଞ କରି ଗଢ଼ିତୋଳିଛି । ଚନ୍ଦ୍ରଭାଗା ନିଜର ଜନନୀଙ୍କ ଶ୍ରଦ୍ଧାରୁ ବଂଚିତା । ସ୍ୱାଭାବିକ ସମାଜ ସ୍ୱୀକୃତ ସଂପର୍କ ବା ଜୀବନ ସଂପର୍କରେ ତାର ଧାରଣା ନାହିଁ । ତେଣୁ ଅସହାୟା ତରୁଣୀ ନିଜକୁ ବଂଚାଇବାକୁ ନିଜ ଜନନୀଙ୍କୁ ପ୍ରାର୍ଥନା କରେ ଓ ଶକ୍ତିହୀନ ରୂପ ଅନେକ ବିପର୍ଯ୍ୟୟର କାରଣ ବୋଲି ସ୍ୱୀକାର କରେ । ସେ ନିଜ ଜନନୀଙ୍କୁ କହେ –

"ଦିବ୍ୟରୂପ ତୋର, ତା ସଂଗେ ଅଛି ଦିବ୍ୟ ଶକତି
ଶକ୍ତିହୀନ ରୂପ କେବଳ ସିନା ଲଭେ ଦୁର୍ଗତି ।"

ଏ କଥାର ତାତ୍ପର୍ଯ୍ୟ ଚିରନ୍ତନ । ନିଜର ରୂପକୁ ନିନ୍ଦା କରିବା ଓ ବାରମ୍ବାର ନିଜକୁ ସେଥିପାଇଁ ଧିକ୍କାର କରିବାର ଚନ୍ତାଧାରା ଆମ ସମାଜରେ ବହୁପ୍ରାଚୀନ । ସୌନ୍ଦର୍ଯ୍ୟ ସହିତ ଶୌର୍ଯ୍ୟର ସହାବସ୍ଥାନ ହିଁ ବ୍ୟକ୍ତିକୁ ପରିପୂର୍ଣ୍ଣତା ଦେଇପାରେ ।

ଚନ୍ଦ୍ରଭାଗା ଏକ ନଦୀ, ଯାହା ବେଲେଶ୍ୱର ନିକଟରେ ସମୁଦ୍ର ସହିତ ମିଶିଯାଇଛି । ଏହି ପ୍ରାକୃତିକ ଚିତ୍ରକୁ କୋଣାର୍କ ସହିତ ଏକୀଭୂତ କରି ମାନବୀୟ ଭାବପ୍ରବଣତାପୂର୍ଣ୍ଣ କାବ୍ୟ ପ୍ରସ୍ତୁତ କରିବାରେ ରାଧାନାଥଙ୍କର କବିତ୍ୱର ସ୍ପର୍ଶ ଅନୁଭବ

କରିହୁଏ । ସୂର୍ଯ୍ୟ ଓ କନ୍ଦର୍ପଙ୍କ କଥୋପକଥନ (dialogue) ଓ ସୂର୍ଯ୍ୟଙ୍କର ଚନ୍ଦ୍ରଭାଗାଙ୍କୁ ପ୍ରେମ ନିବେଦନ ଯେକୌଣସି ନାଟକର ସଂଳାପତୁଲ୍ୟ ଆକର୍ଷଣୀୟ । ସୂର୍ଯ୍ୟ ନିଜର ବୈଶିଷ୍ଟ୍ୟ ସଂପର୍କୀୟ ଯେଉଁ ସବୁ ତଥ୍ୟ ପ୍ରଦାନ କରିଛନ୍ତି ତାହା ସୂର୍ଯ୍ୟଙ୍କର ଶାସ୍ତ୍ରୀୟତାର ପ୍ରମାଣ ଦିଏ । ତାଙ୍କର ଅନ୍ୟନାମ ତ୍ୱିଷାମ୍ପତି, ତପନ, ବିଶ୍ୱଚକ୍ଷୁ । ତାଙ୍କର ତେଜ ସମଗ୍ର ସଂସାରକୁ ବଂଚାଇ ରଖିଛି । ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟ ନିକଟରେ ସୂର୍ଯ୍ୟପତ୍ନୀ ଛାୟାଙ୍କର ସୌନ୍ଦର୍ଯ୍ୟ ମଳିନ ପଡ଼ିଯିବ । ଏଭଳି ଚାଟୁବଚନ ଭିତରେ ସୂର୍ଯ୍ୟଙ୍କର ରସିକ ରୂପଟି ହିଁ ସ୍ପଷ୍ଟ ହୋଇଯାଏ ।

ରାଧାନାଥଙ୍କର ପ୍ରାୟ ସମସ୍ତ କାବ୍ୟ ଟ୍ରାଜିକ୍ ଧର୍ମୀ । ନାୟକ ନାୟିକାଙ୍କର ଔତ୍ସୁକ୍ୟ, ମିଳନ ଓ ବିଚ୍ଛେଦରେ ପ୍ରେମର ନିଷ୍ଠା ପ୍ରତିପାଦନ ରାଧାନାଥୀ କାବ୍ୟଶୈଳୀର ବୈଶିଷ୍ଟ୍ୟ । ପ୍ରାୟ ପ୍ରତ୍ୟେକ କାବ୍ୟରେ ଦୈବୀଶକ୍ତି ନିୟନ୍ତ୍ରକ ଶକ୍ତି ଭାବରେ ପରିକଳ୍ପିତ । ସେହିପରି ଚନ୍ଦ୍ରଭଗା ସାଗର ଅପସରୀଙ୍କ କନ୍ୟା । ସେହି ଅପସରୀଙ୍କ ବାନ୍ଧବୀ ବରୁଣକନ୍ୟା ଲକ୍ଷ୍ମୀ ଚନ୍ଦ୍ରଭାଗା ପାଇଁ ବସ୍ତ୍ର ଭୂଷଣ ଅଳଙ୍କାର ପ୍ରଦାନ କରନ୍ତି । ସୌନ୍ଦର୍ଯ୍ୟରେ ଶକୁନ୍ତଳା ସହିତ ଚନ୍ଦ୍ରଭାଗା ତୁଳନୀୟା । ଦ୍ୱାପର ଯୁଗର କୁନ୍ତୀଦେବୀଙ୍କ ଭଳି ସେ ଶୌର୍ଯ୍ୟର ଦେବତା ସୂର୍ଯ୍ୟଙ୍କୁ ଟାଣି ଆଣି ପାରିଛି । ତେଣୁ ପୂର୍ବ ସଂପର୍କ ସ୍ମରଣ କରାଇ ରାଧାନାଥ ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟ ଓ ନିଷ୍ଠାକୁ ପ୍ରତିପାଦିତ କରିଛନ୍ତି । ମାତାଙ୍କୁ ସାହାଯ୍ୟ ପାଇଁ ନିବେଦନ କରି ଚନ୍ଦ୍ରଭାଗା ସମୁଦ୍ରରେ ଝାସ ଦେଇଛି । ଅନ୍ତ ହୋଇଛି ଗୋଟିଏ ଚରମ ଦୁଃଖାନ୍ତ ନାଟକ । ପ୍ରାୟଶ୍ଚିତ୍ତ ପାଇଁ ନାୟକ ସୂର୍ଯ୍ୟଦେବଙ୍କୁ ମଧ୍ୟ ଅପେକ୍ଷା କରିବାକୁ ପଡ଼ିନାହିଁ । ସେ ଦୈବୀକର୍ତ୍ତୃକ ଦଣ୍ଡ ପାଇଛନ୍ତି । ଏଥିପାଇଁ ସୁମନ୍ୟୁ ଋଷିଙ୍କ ଅଭିଶାପ ପ୍ରେରକ ଭାବରେ କାର୍ଯ୍ୟ କରିଛି । ଟ୍ରାଜେଡ଼ିର ନାୟିକା ସର୍ବଥା ମୃତ୍ୟୁପରେ ମଧ୍ୟ ଅଖଣ୍ଡ ସାଫଲ୍ୟର ଅଧିକାରିଣୀ ହୋଇଥାନ୍ତି । ଭଗ୍ନ କୋଣାର୍କ ଦର୍ଶନରେ ସେହି ଟ୍ରାଜେଡ଼ି ଦର୍ଶକ ଚିତ୍ତକୁ ସଂଚରିଗଲା ଭଳି ମନେହୁଏ ।

ଭାଷା, ଭାବ, ବିଷୟ ବିନ୍ୟାସ, ଉପସ୍ଥାପନ ଶୈଳୀ ତଥା ନାଟକୀୟତା ନେଇ 'ଚନ୍ଦ୍ରଭାଗା' ରାଧାନାଥୀ ସାହିତ୍ୟର ପ୍ରତିଭୂ ପାଲଟିଯାଇଛି । ରୂପପ୍ରାଣ କବି ରାଧାନାଥ ଯେଉଁ ରୂପ ଉପରେ ଦୈବୀ ବା ମାନବୀକୃତ ବିଘାତ ଲକ୍ଷ୍ୟ କରିଛନ୍ତି, ସେଠାରେ ପ୍ରକୃତିଠାରୁ ସମସ୍ୟା ସମାଧାନର ସୂତ୍ର ଖୋଜିପାଇଛନ୍ତି । ସେହିପରି କୋଣାର୍କ, ବେଳେଶ୍ୱର, ସମୁଦ୍ରତୀର ଓ କୋଣାର୍କ ଭିତରେ 'ଚନ୍ଦ୍ରଭାଗା'ର ଜୀବନ ନାଟକର ଯବନିକା ନଇଁ ଆସିଛି । 'ଚନ୍ଦ୍ରଭାଗା' ଓଭିଡ୍‌ଙ୍କ 'ଆପୋଲୋ ଆଣ୍ଡ ଡ଼ାଫନୀ'ର ଅନୁକରଣ ନୁହେଁ ତାହା ରାଧାନାଥୀ ପ୍ରତିଭାର ଯାଦୁକରୀ ସ୍ପର୍ଶରେ ଏକ ଉଚ୍ଚକୋଟୀର ମୌଳିକ ସୃଷ୍ଟି ପାଲଟି ଯାଇଛି ।



# ରାଧାନାଥ ପ୍ରତିଭାର ଆଦ୍ୟ କଲ୍ଲୋଳ : କେଦାରଗୌରୀ

ଡଃ ସବିତା ପ୍ରଧାନ

ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶ ମୂଳରେ ମିଶନାରୀମାନଂକ ପ୍ରବର୍ତ୍ତିତ ଆଧୁନିକ ଶିକ୍ଷାର ରହିଛି ଏକ ବିରାଟ ଭୂମିକା । ଆଧୁନିକ ଶିକ୍ଷା ପ୍ରସାର ପାଇଁ ରଚିତ ହେଲା ଓଡ଼ିଆରେ ଅନେକ ପାଠ୍ୟପୁସ୍ତକ । ପ୍ରଥମତଃ ବଂଗଳାରୁ ଅନୁବାଦ ପରେ ଅନୁସରଣ ଓ ପରିଶେଷରେ ସଂପୂର୍ଣ୍ଣ ମୌଳିକ ରଚନା ଲକ୍ଷ୍ୟ କରାଯାଇଥାଏ । ଏହା କେବଳ ଯେ ପାଠ୍ୟପୁସ୍ତକ ନିମନ୍ତେ ପ୍ରଯୁଜ୍ୟ ଥିଲା, ତା'ନୁହେଁ ସାହିତ୍ୟ ନିମନ୍ତେ ବିଶେଷଭାବେ ଏହା ସତ୍ୟ । ଏ ସଂପର୍କରେ ଜେ. ଲଙ୍ଗ୍‌ଙ୍କର ଉକ୍ତି ଏଠାରେ ଉଲ୍ଲେଖନୀୟ— "In tracing the rise of vernacular literature in Russia, England, France etc. we see that the first process is translation and imitation of foreign models necessarily so, for men must get new ideas before they can mould them the next step is free and adopted translation, and finally Original composition." (ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, ନ. ସାମନ୍ତରାୟ ପୃ-୮)

ପୃଥିବୀର ପ୍ରାୟ ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟ ବିକାଶ ମୂଳରେ ଏହି ତିନୋଟି ପର୍ଯ୍ୟାୟ ଲକ୍ଷ୍ୟ କରାଯାଇପାରେ । ଏହା କେବଳ ଯୁଗ ବା ସାହିତ୍ୟ ନିମନ୍ତେ ନୁହେଁ ବ୍ୟକ୍ତି ପ୍ରତିଭାର ବିକାଶ କ୍ଷେତ୍ରରେ ତତୋପରିମାଣରେ ବାସ୍ତବ ଓ ସତ୍ୟ । ରାଧାନାଥ ପ୍ରତିଭାର ଆଦ୍ୟସ୍ଫୁରଣ ବଂଗଳା ଭାଷାରେ ରଚିତ କବିତାବଳୀ (୧୮୬୮-୧୮୭୨) ରେ ଘଟିଛି । ୧୮୭୩ ରୁ -୭୫ ମଧ୍ୟରେ ବିବେକୀ, ମେଘଦୂତ ଓ ଇତାଲୀୟଯୁବା ପ୍ରକାଶିତ । ୧୮୭୫ ୦ାରୁ ୧୮୮୧ ମଧ୍ୟରେ ବିଶେଷଭାବରେ ସେ ପାଠ୍ୟପୁସ୍ତକ ରଚନାରେ ମନୋନିବେଶ କରିଛନ୍ତି । ସେ ଓଡ଼ିଶା ସ୍କୁଲ ବିଭାଗରେ ଜଏଣ୍ଟ ଇନ୍‌ସ୍‌ପେକ୍ଟର ଥିବା ସମୟରେ ପଶ୍ଚିମବଙ୍ଗ ଓ ବିହାର ଡିଭିଜନ୍‌ର ସ୍କୁଲ ଇନସ୍‌ପେକ୍ଟର ଭୂଦେବ ମୁଖାର୍ଜୀଙ୍କ ସଂସ୍ପର୍ଶରେ ଆସିଥିଲେ । ଏହି ଘନିଷ୍ଠ ସଂପର୍କ ତାଂକୁ ଉତ୍କଳର ଯୁଗ ସ୍ରଷ୍ଟାର ଗୌରବ ଆଣିଦେଇଥିଲା । ଭୂଦେବ ବାବୁଙ୍କ ଉତ୍ସାହ, ପ୍ରେରଣା ସାଂଗକୁ ମୂଲ୍ୟବାନ ପରାମର୍ଶକୁ ପାଥେୟକରି ରାଧାନାଥ ଗଢ଼ିଥିଲେ ତାଂକ କାବ୍ୟକୋଣାର୍କ । ତତ୍‌କାଳୀନ ସାହିତ୍ୟିକ ପରିମଣ୍ଡଳର

ସୂକ୍ଷ୍ମ ପର୍ଯବେକ୍ଷଣ ପୂର୍ବକ ଭୂଦେବବାବୁ ରାଧାନାଥଂକୁ କେତେକ ଦୂରଦୃଷ୍ଟିସମ୍ପନ୍ନ ମତାମତ ଦେଇଥିଲେ । ୧- ପୁରାତନ ବିଷୟରେ ଅଯଥା ନିଜର କବିତ୍ୱ ଅପଚୟ ନକରି କଳ୍ପନାରୁ ନୂଆକିଛି ଗଢ଼ିବା ୨- ଓଡ଼ିଶାର ମନୋହର ପ୍ରକୃତିକୁ କବିତା ଉପଯୋଗୀ କରିବା ୩- ଆଦିରସର ଅନୈତିକ ଅବତାରଣା ପରିହାର୍ଯ୍ୟ । ଉପରୋକ୍ତ ମାର୍ଗ ଦେଖାଇବା ସହିତ ସେ ଗଳ୍ପଛଳରେ ରାଧାନାଥଂକୁ ତାଂକ କାବ୍ୟ କୋଣାର୍କର ମୁଣ୍ଡିମାରିବା କୌଶଳଟିକକ ମଧ୍ୟ ବତାଇ ଦେଇଥିଲେ । ତେଣୁ ରାଧାନାଥଙ୍କ କାବ୍ୟ ପ୍ରତିଭାର ପ୍ରଥମ ସୃଷ୍ଟି 'କେଦାରଗୌରୀ'ଠାରୁ ଆରମ୍ଭ କରି 'ପାର୍ବତୀ' ପର୍ଯ୍ୟନ୍ତ ସମସ୍ତ ରଚନା ବିୟୋଗାନ୍ତକ । ତାଂକରି ପରାମର୍ଶ ଅନୁଯାୟୀ ବଂଗଳା ସାହିତ୍ୟ ଛାଡ଼ି ଓଡ଼ିଆ ରଚନାରେ ବ୍ରତୀ ହେଲେ ରାଧାନାଥ ।

ପ୍ରତ୍ୟେକ ପରିବର୍ତ୍ତନ ପୃଷ୍ଠଭୂମିରେ ଥାଏ ଏକ ବିରୋଧ, ଏକ ସଂଘର୍ଷ । ତାପରେ ଆଗମନ ଘଟେ ନୂତନତାର । କାବ୍ୟଯୁଗର ଦୀର୍ଘ ବୈଚିତ୍ର୍ୟହୀନ ସାହିତ୍ୟର ପରିବର୍ତ୍ତନ ଘଟିଛି ରାଧାନାଥଂକ ସାହିତ୍ୟରେ । ତାଂକ ସମ୍ମୁଖରେ ଥିଲା ସଂସ୍କୃତ ଭାଷା ସାହିତ୍ୟର ବିରାଟ ଐତିହ୍ୟ, ବଂଗଳା ସାହିତ୍ୟର ସଫଳ ଅନୁସୃତି ତଥା ଇଂରାଜୀ ବା ପାଶ୍ଚାତ୍ୟ ସାହିତ୍ୟର ବୈଚିତ୍ର୍ୟମୟ ବର୍ଣ୍ଣବିଭାର ଅପୂର୍ବ ସମ୍ଭାବନା । ନୂତନ ବା ଆଧୁନିକ ସାହିତ୍ୟକୁ ସ୍ୱାଗତ କରିବା ସମୟରେ ରାଧାନାଥ ପୁରାତନ ସାହିତ୍ୟକୁ ଅସ୍ୱୀକାର କରିନାହାନ୍ତି । ସଂସ୍କୃତ ତଥା କାବ୍ୟ ସାହିତ୍ୟର ବିଶାଳ ଐତିହ୍ୟ ବହୁଭାବରେ କବିଙ୍କୁ ଅନୁପ୍ରାଣିତ କରିଛି । କିଂତୁ ଭୂଦେବ ମୁଖାର୍ଜୀଙ୍କ ସୁଚିନ୍ତିତ ମତାମତକୁ ଗ୍ରହଣକରି ନୂତନ କିଛି କଳ୍ପନା କରିବା ଉପରେ ଗୁରୁତ୍ୱ ଦେଇ କବି ଆଧାର କରିଛନ୍ତି ଓଭିଡ୍‌ଙ୍କ 'ମେଟାମରଫ୍‌ସିସ୍' କାବ୍ୟକୁ । ନୂଆ ଘଟଣା ବା କାହାଣୀ କଳ୍ପନାରୁ ସୃଷ୍ଟିକରି ଲେଖିବା ତାଂକ ପକ୍ଷେ ସମ୍ଭବ ନୁହେଁ ବୋଲି ରାଧାନାଥ କହିବାପରେ ଭୂଦେବବାବୁ ଦର୍ପଣ ରାଜ୍ୟ ସଂପର୍କରେ ଏକ ସୁନ୍ଦର କାହାଣୀ ମନରୁ ଗଢ଼ି କହିଥିଲେ, ଯାହା କିମ୍ବଦନ୍ତୀ ଅଥବା ଇତିହାସାଶ୍ରୟୀ ପରି ମନେହୁଏ । ହୁଏତ ଏହି କାହାଣୀ ରାଧାନାଥଂକୁ ଉତ୍ସାହିତ କରିଥିବ ନୂତନକୁ ସ୍ୱାଗତ କରିବାରେ । ତେଣୁ ସଂପୂର୍ଣ୍ଣ କାଳ୍ପନିକ ବା ପୌରାଣିକ ବିଷୟବସ୍ତୁ ପରିବର୍ତ୍ତେ କିମ୍ବଦନ୍ତୀମୂଳକ ବା ଐତିହାସିକ ସତ୍ୟ ବୋଲି ପ୍ରତୀୟମାନ ହେଉଥିବା ବିଷୟବସ୍ତୁ ତାଂକ ମନେହେଇଥିବ ଅଧିକ ରୁଚିକର ।

ବେବିଲନ୍ ଦେଶର ପିରାମସ୍-ଥିସବେ ଗଳ୍ପ ଅବଲମ୍ବନରେ ରୋମୀୟ କବି ଓଭିଡ୍ (ମେଟାମରଫସିସ୍), ଇଂରାଜୀ କବି ଚସର (ଲିଜେଣ୍ଡ ଅଫ୍ ଗୁଡ୍ ଉମେନ୍) ତଥା ସେକ୍‌ସପିୟର୍ (ମିଡ୍ ସମର୍‌ସ୍ ନାଇଟ) ସାହିତ୍ୟ ସୃଷ୍ଟି କରିଛନ୍ତି । ରାଧାନାଥ ଓଭିଡ୍‌ଙ୍କ ସେହି କଥାବସ୍ତୁକୁ ପୂର୍ଣ୍ଣତଃ 'କେଦାରଗୌରୀ'ରେ ଗ୍ରହଣ କରିଛନ୍ତି । ଏହା

କେବଳ ଅନୁସରଣ ନୁହେଁ ଅନେକ ସ୍ଥଳରେ ଅନୁବାଦ ମାତ୍ର । ୧୮୮୫/୮୬ ଖ୍ରୀ.ରେ ବାଲେଶ୍ୱର ଦେ' ପ୍ରେସରୁ 'କେଦାରଗୌରୀ' ପ୍ରକାଶ ପାଇଥିଲା । 'କେଦାରଗୌରୀ'ର କଥାବସ୍ତୁ, କାହାଣୀର ଆରମ୍ଭ, ବିକାଶ ତଥା ଅନ୍ତିମ ପରିଣତିରେ 'ମେଟାମରଫସିସ୍' ସହିତ ରହିଛି ପୂର୍ଣ୍ଣ ସମତା । 'ପିରାମସ୍ ଥିସବେ'ର ଆରମ୍ଭରେ ରାଜ୍ଞୀ ସେମିରାସିସ୍ ଇଟାର ପ୍ରାଚୀର ନିର୍ମାଣ କରାଇ ବେବିଲନ୍ ନଗର ସ୍ଥାପନ କରିଥିବା କଥା ଉଲ୍ଲିଖିତ । ରାଧାନାଥ ଏହିଠାରେ ଆହରଣରେ ନୂତନତ୍ୱ ଆରୋପ କରି ସେମିରାସିସ୍‌ଙ୍କ ପରିବର୍ତ୍ତେ ଲଲାଟକେଶରୀ ଓ ବେବିଲନ ପରିବର୍ତ୍ତେ ଭୁବନେଶ୍ୱର ନଗରର ବର୍ଣ୍ଣନା ଦେଇଛନ୍ତି । ମୂଳ କାହାଣୀ ବର୍ଣ୍ଣିତ ପରିବେଶ, ଚରିତ୍ର ସହିତ ସାମଞ୍ଜସ୍ୟ ଅନୁସନ୍ଧାନ କରି ରାଧାନାଥ କେଦାର, ଗୌରୀ, ଲଲାଟକେଶରୀ ଚରିତ୍ର ତଥା ଭୁବନେଶ୍ୱର ନଗରର ପରିକଳ୍ପନା କରିଛନ୍ତି । ଓଡ଼ିଶୀ ଜଳବାୟୁରେ ବିଦେଶୀ ଚରିତ୍ର ପିରାମସ୍ ଓ ଥିସ୍‌ବେଙ୍କୁ ବିଚରଣ କରାଇବା ତଥା ଜନମାନସରେ ଏମାନଙ୍କୁ ପ୍ରତିଷ୍ଠିତ କରିବାରେ ରାଧାନାଥଙ୍କ ପ୍ରତିଭା ଅତୁଳନୀୟ । ପ୍ରଥମ ଅଂଶରେ ଏହି ଆରୋପଣକୁ ବାଦ୍‌ଦେଲେ ପିରାମସ୍ ଓ ଥିସ୍‌ବେଙ୍କ ପ୍ରଣୟ, ଉଭୟଙ୍କ ପିତାମାତାଙ୍କ ପକ୍ଷରୁ ବାଧା, ବାଧା ଯୋଗୁଁ ପ୍ରାଚୀର ଛିଦ୍ର ମାଧ୍ୟମରେ ଭାବ ବିନିମୟ, ଶେଷରେ ମିଳନ ନିମନ୍ତେ ନଗର ପ୍ରାନ୍ତରେ ଥିବା ଅରଣ୍ୟର ସମାଧିସ୍ଥଳ ନିକଟକୁ ଯିବା, ଅରଣ୍ୟରୁ ସିଂହୀର ଝରଣା ନିକଟକୁ ଆଗମନ, ସିଂହୀକୁ ଦେଖି ଥିସ୍‌ବେର ଗୁମ୍ଫା ମଧ୍ୟରେ ଆତ୍ମଗୋପନ କରିବା, ସିଂହୀ ପଦ ଅଙ୍କିତ ରକ୍ତାକ୍ତ ଉତ୍ତରୀୟ ଦେଖି ଥିସ୍‌ବେଙ୍କୁ ମୃତ ମନେକରି ପିରାମସ୍‌ର ଆତ୍ମଘାତୀ ହେବା ପୁନଶ୍ଚ ପିରାମସ୍‌ର ମୃତ୍ୟୁ ଦେଖି ଶୋକାଭିଭୂତା ଥିସ୍‌ବେ ମଧ୍ୟ ଆତ୍ମହତ୍ୟା କରିବା ଆଦି ଅନୁରୂପଭାବେ ରାଧାନାଥଙ୍କ କାବ୍ୟରେ ସ୍ଥାନିତ । କେବଳ ଓଡ଼ିଆ ଭାଷାରେ ପିରାମସ୍ ଥିସବେ କାବ୍ୟଟି 'କେଦାରଗୌରୀ' ନାମରେ ରୂପାନ୍ତରିତ କହିଲେ ଠିକ୍ ହେବ । ଏ ସମସ୍ତ ଘଟଣାର ଅବିକଳ ବିନ୍ୟାସ 'କେଦାରଗୌରୀ'ରେ ଘଟିଛି । କାବ୍ୟର ଶେଷାଂଶରେ ଥିସ୍‌ବେରେ ମୃତ୍ୟୁକାଳୀନ ଦୁଇଟି କାମନା ପ୍ରେମ ଦେବୀଙ୍କର କୃପାରୁ ପୂର୍ଣ୍ଣ ହୋଇଥିବା ବର୍ଣ୍ଣନା ଓଡ଼ିଆ କାବ୍ୟରେ ପରିବର୍ତ୍ତିତ । ଉତ୍କଳୀୟ ପରିବେଶ 'କେଦାରଗୌରୀ'କୁ ଅଧିକ ଜୀବନ୍ତ ଓ ବିଶ୍ୱାସ୍ୟ କରିବା ନିମନ୍ତେ କବି ମୃତ୍ୟୁମୁଖୀ ଗୌରୀ ମନରେ କୌଣସି ଇଚ୍ଛା ପ୍ରକାଶ କରାଇବା ସ୍ୱାଭାବିକ ମନେ କରିନାହାନ୍ତି । ପ୍ରାଣାଧିକ କେଦାରର ମୃତ୍ୟୁରେ ଶୋକାଭିଭୂତା, ଛୁରୀକା ହାତରେ ଆତ୍ମହତ୍ୟା ପାଇଁ ପ୍ରସ୍ତୁତ ଗୌରୀ ମନରେ ନିଜ ପ୍ରେମକୁ ଅମର କରି ରଖିଯିବାର ଅନ୍ତିମ ବାସନା ବଳବତ୍ତର ହେବା ସ୍ୱାଭାବିକ ନୁହେଁ । ତେଣୁ ଓଭିଡ୍‌ଙ୍କ ପ୍ରେମଦେବୀ ସ୍ଥାନରେ ବନଦେବୀଙ୍କ ସ୍ୱପ୍ନାଦେଶ ବଳରେ

ଲଲାଟକେଶରୀଙ୍କର ଆଗମନ ଘଟିଛି । ତାଂକରି ଆଦେଶରେ କେଦାର ଗୌରୀଙ୍କ ସ୍ମୃତିରେ ମନ୍ଦିର ନିର୍ମାଣ ଓ ପ୍ରତିମା ସ୍ଥାପନ ଅଧିକ ବାସ୍ତବମୁଖୀ । ଉଭୟ କାହାଣୀର ବିଷୟବସ୍ତୁ ସମାନ । ସ୍ଥୂଳତଃ ଏ କାବ୍ୟରେ ମୌଳିକ କଳ୍ପନା ନାହିଁ କହିଲେ ଚଳେ । କାହାଣୀ, ଚରିତ୍ର, ପୃଷ୍ଠଭୂମି, ଭାବ, ଭାଷା ଓ ସଂଳାପର ଧାରା ତଥା ଆଭିମୁଖ୍ୟରେ ଓଭିଡ୍ ପ୍ରତିବିମ୍ବିତ ।

ବହୁ ଆଲୋଚକଙ୍କ ଦୃଷ୍ଟିରେ ଅନୁବାଦ ବା ଅନୁସୃତ ଫଳ ହେଇପାରେ କେଦାରଗୌରୀ, କିଂତୁ ଏକାନ୍ତଭାବେ କବି ରାଧାନାଥଙ୍କ ଆଦ୍ୟ ପ୍ରତିଭାର ପରିଚୟ । ପ୍ରଥମ ପଦପାତ କବିଙ୍କର 'କେଦାରଗୌରୀ'ରେ ଏବଂ ଏହା ସର୍ବାଦୌ ସଫଳ । ୧୮୭୫ ରୁ ୧୮୮୧ ମସିହା ପର୍ଯ୍ୟନ୍ତ ରାଧାନାଥ କ୍ରମାନ୍ୱୟରେ ପାଠ୍ୟପୁସ୍ତକ ରଚନା କରିଛନ୍ତି । ତା'ପୂର୍ବରୁ ବଂଗଳାରେ 'କବିତାବଳୀ' ଓଡ଼ିଆରେ 'କବିତାବଳୀ' ତଥା ଓଡ଼ିଆରେ କିଛି ଗଦ୍ୟ ଚରନା ତାଂକର ଥିଲା । ପାଠ୍ୟ ପୁସ୍ତକ ରଚନା କରିବା ମଧରେ ତାଙ୍କର କବି ପ୍ରତିଭା ଶିଥିଳ ହେଇ ପଡ଼ିବା ସ୍ୱାଭାବିକ । ଦୀର୍ଘକାଳରୁ ସାହିତ୍ୟ, ସଂପୃକ୍ତିହୀନତା ହୁଏତ କବିଙ୍କୁ ବାଧ କରିଥିବ 'ପିରାମସ୍ ଥି ସବେ'ର ପୂର୍ଣ୍ଣ ଅନୁସରଣ ନିମନ୍ତେ । ଯଦି 'କେଦାରଗୌରୀ' ପରିବର୍ତ୍ତେ ପ୍ରଥମେ ସେ ଅନ୍ୟ ଯେକୌଣସି କାବ୍ୟ ରଚନାରେ ହାତ ଦେଇଥାନ୍ତି, ସେଥିରେ ମୌଳିକତା ଅପେକ୍ଷା ଅନୁବାଦ ଓ ଅନୁସରଣ ମଧ ଘଟିଥାନ୍ତା ଅଧିକ । ୧୮୮୬ ରୁ ୧୮୯୪ ମଧରେ ସେ ରଚନା କରିଛନ୍ତି ୯ଟି କାବ୍ୟ, ଯେଉଁ କାବ୍ୟ ରାଧାନାଥଙ୍କୁ କବିର ପ୍ରତିଷ୍ଠା ଓ ଯୁଗସ୍ରଷ୍ଟାର ଗୌରବ ଦେଇଛି । ଏ ପ୍ରତିଷ୍ଠା ଓ ଗୌରବର ପ୍ରଥମ ପଦଧ୍ୱନି ଗୁଂଜିତ ହୋଇଥିଲା 'କେଦାରଗୌରୀ'ରେ । ଏକାନ୍ତ ଭାବେ ମୌଳିକ ନହେବା ମୂଳରେ ଅନେକ କାରଣ ଦର୍ଶାଯାଇପାରେ । ରାଧାନାଥଙ୍କର ଆବିର୍ଭାବ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ । ଏକ ପକ୍ଷରେ ଉନ୍ନତ, ସମୃଦ୍ଧ ପ୍ରାଚୀନ ସାହିତ୍ୟ, ଅନ୍ୟପକ୍ଷରେ ପାଶ୍ଚାତ୍ୟ ସାହିତ୍ୟର ନୂତନତା । ନୂତନତାକୁ ଗ୍ରହଣ କରିନେବାରେ ଓଡ଼ିଆ ସାହିତ୍ୟରେ ସେ ଥିଲେ ଅଗ୍ରଦୂତ । ତାଂକ ଆଗରେ ଓଡ଼ିଆ ସାହିତ୍ୟରେ ପ୍ରତ୍ୟକ୍ଷଭାବରେ ପାଂଶ୍ଚାତ୍ୟ ସାହିତ୍ୟ ବ୍ୟତୀତ ଅନ୍ୟ ନୂତନ ଆଦର୍ଶ ନଥିଲା । ତେଣୁ 'ମେଟାମରଫସିସ୍' କାବ୍ୟ ତାଙ୍କୁ ଅନୁପ୍ରାଣିତ କରିଥିବ । କାହାଣୀର ଆତ୍ମିକ ଓ ଆଙ୍ଗିକ ରୂପବିଭବର ବୈଚିତ୍ର୍ୟରେ ମୋହିତ ରାଧାନାଥ ବିଷୟବସ୍ତୁ ଗ୍ରହଣ କରିଛନ୍ତି । ଯେହେତୁ ରାଧାନାଥଙ୍କ ଏହା ପ୍ରଥମ କାବ୍ୟ ତେଣୁ ଆହରଣରେ ପରିବର୍ତ୍ତନ, ମୌଳିକତା ପ୍ରକାଶରେ ସେ କୁଶଳୀ ହୋଇପାରିନାହାନ୍ତି । ହୁଏତ ପ୍ରୟାସ କରିନାହାନ୍ତି ବା କରିବାର କଳ୍ପନା ମଧ କରିନାହାନ୍ତି । କିନ୍ତୁ କେବଳ ଅନୁବାଦ ବା ଅନୁସରଣ ତାଙ୍କର ଏକମାତ୍ର ଉଦ୍ଦେଶ୍ୟ

ନଥିଲା । ଓଡ଼ିଆ ସାହିତ୍ୟକୁ ଧାରସୂତ୍ରରେ ସେ କେତେକ ବିଦେଶୀ କାହାଣୀ ଦେବାକଥା ଭାବିନାହାନ୍ତି, ତେଣୁ ଚନ୍ଦ୍ରଭାଗାଠାରୁ ଆରମ୍ଭ ହୋଇଛି ତାଙ୍କର କ୍ରାମିକ ବିକାଶ ବା ବିଜୟ । ସେଇ ବିଦେଶୀ କାହାଣୀ ସବୁ ରାଧାନାଥଙ୍କ ଅନ୍ୟ କାବ୍ୟରେ ମୌଳିକତାରେ ସଂପୂର୍ଣ୍ଣ ନୂଆ ରୂପ ଧାରଣ କରିଛି, ନୂତନ ଜନ୍ମ ଲଭିଛି । 'କେଦାରଗୌରୀ'ରେ ଏହି ମୌଳିକତାର ଆଭାସ ସ୍ପଷ୍ଟଭାବେ ଅନୁଭବ୍ୟ । ସ୍ରଷ୍ଟା ନୂତନ କଥାବସ୍ତୁ, ଭାବଧାରା, ସୃଷ୍ଟି ଆଦର୍ଶକୁ ଗ୍ରହଣ କରିବା ସମୟରେ ଆହରଣ ଆରୋପଣ ପ୍ରକ୍ରିୟାରେ ବୈଚିତ୍ର୍ୟ ସମ୍ପାଦନ କରିଥାଏ । କେତେବେଳେ ନୂତନ ପୂର୍ଣ୍ଣ ଭାବରେ ଅନୂଦିତ ହୋଇଥାଏ ତ କେତେବେଳେ ପୁରାତନ ଉପରେ ନୂତନର ଆରୋପଣ ପୁଣି କେତେବେଳେ ଉଭୟର ସୁସମନ୍ୱୟ ଘଟିଥାଏ । 'କେଦାରଗୌରୀ' ତାଙ୍କର ପ୍ରଥମ କାବ୍ୟ ହୋଇଥିବାରୁ ଏଥିରେ ମୌଳିକତା ଅପେକ୍ଷା ଅନୁସରଣ ଅଧିକ । ମାତ୍ର ଯେଉଁ ଯେଉଁ ଅଂଶରେ ଆରୋପଣ ଘଟିଛି ତାହା ତାଂକ ପ୍ରତିଭାର ସୂଚନା ଦିଏ ।

ରାଧାନାଥ କାବ୍ୟଟିକୁ ଓଡ଼ିଶାର ଜନମାନସରେ ଜୀବନ୍ତ କରିବାକୁ ଯାଇ ଯେପରିଭାବେ ଓଡ଼ିଶାର କିମ୍ବଦନ୍ତୀ ଓ ଇତିହାସରୁ ରାଜା ଲଲାଟକେଶରୀ, ଭୁବନେଶ୍ୱର, ଏହା ନିକଟସ୍ଥ ଗୌରୀ କୁଣ୍ଡ ନିର୍ଝର, ଅରଣ୍ୟ ତଥା କେଦାରେଶ୍ୱର ମନ୍ଦିର ଆଦିକୁ ନୂତନ ଜୀବନ୍ୟାସ ଦେଇଛନ୍ତି ସେଥିରେ ବିଦେଶୀ କଥାବସ୍ତୁ ପରିମଣ୍ଡଳ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇ ସ୍ୱଦେଶୀରେ ପରିଣତ ହୋଇଛି । ସ୍ଥାନ ଓ ଚରିତ୍ର ସହିତ କଥାବସ୍ତୁର ଏତେ ବେଶି ସାମଞ୍ଜସ୍ୟ ରହିଛି ଯେ ପାଠକ ଏହାକୁ ସତ୍ୟ ମନେକରେ । ବିଶେଷତଃ ଏହାକୁ ଯେତେବେଳେ ଇତିହାସ, ପୁରାଣ ଆଶ୍ରୟୀ କରିଦେଇଛନ୍ତି ସେତେବେଳେ ଏକ ସତ୍ୟଘଟଣାର ପ୍ରତ୍ୟୟ ସୃଷ୍ଟି ହୋଇଛି ଜନମାନସରେ । ଆରୋପଣ ତଥା ସୁସମନ୍ୱୟରେ ଯେଉଁ କୁଶଳତା 'କେଦାରଗୌରୀ'ରେ ସୂତ୍ରପାତ ହେଲା ତା'ର ବିକାଶକ୍ରମ ଯଥାକ୍ରମେ 'ଚନ୍ଦ୍ରଭାଗା', 'ନନ୍ଦିକେଶ୍ୱରୀ', 'ଉଷା', 'ପାର୍ବତୀ' ଆଦିରେ ପରିଲକ୍ଷିତ । ସେ ତାଂକ ସୃଷ୍ଟିକୁ ଜନମାନସର ନିକଟବର୍ତ୍ତୀ କରିବାକୁ ସତତ ଚେଷ୍ଟିତ ଥିଲେ । ପରିଚିତ ସ୍ଥାନ, ଘଟଣା, ବ୍ୟକ୍ତି ମଧ୍ୟଦେଇ ବିଦେଶୀ କଥାବସ୍ତୁକୁ ଖୁବ୍ ସତର୍କତାର ସହିତ ରୁଚି ଅନୁକୂଳ କରି ପରିବେଷଣ କରିଛନ୍ତି ରାଧାନାଥ । ବିଦେଶୀୟ ଚରିତ୍ରକୁ ସ୍ୱଦେଶୀ କରିବା ନିମନ୍ତେ ସର୍ବଦା ପୁରାଣ, କିମ୍ବଦନ୍ତୀ ଓ ଇତିହାସର ସାହାଯ୍ୟ ନେଇଛନ୍ତି । ଏପରିକି ସ୍ଥାନୀୟ ଭୌଗୋଳିକ ବୈଶିଷ୍ଟ୍ୟ ତଥା କେତେଗୋଟି ପୌରାଣିକ ନାମ ସାହାଯ୍ୟରେ ନୂତନ କିମ୍ବଦନ୍ତୀ ଗଢ଼ିବା ସହିତ ଏହାକୁ ଦେଇପାରିଛନ୍ତି ଶାସ୍ତ୍ରୀୟ ପ୍ରତିଷ୍ଠା । 'କେଦାରଗୌରୀ' କାବ୍ୟ ପଶ୍ଚାତରେ କୌଣସି କିମ୍ବଦନ୍ତୀ, ଇତିହାସ ବା

ପୁରାଣ ନାହିଁ ଅଛି ରାଧାନାଥଙ୍କର ଅପୂର୍ବ କଳାକୁଶଳତା, ନିପୁଣ ବର୍ଣ୍ଣନା ବୈଚିତ୍ର୍ୟ ଓ ନୂତନ ସୃଷ୍ଟି ଆଦର୍ଶର ସଫଳ ରୂପାୟନ । ବିଦେଶୀ କଥାବସ୍ତୁକୁ ଓଡିଶୀ କରିବାପାଇଁ ତାଂକୁ ଅଧିକ ଶ୍ରମସ୍ୱୀକାର କରିବାକୁ ପଡ଼ିଛି । ରାଧାନାଥ କେଉଁଠାରେ ସ୍ୱୀକାର କରିନାହାନ୍ତି କଥାବସ୍ତୁର ଆହରଣ ସଂପର୍କରେ ତେଣୁ ସଂପୂର୍ଣ୍ଣ ନିଜସ୍ୱ ମନେକରେଇବାରେ ମନୋବୃତ୍ତିରୁ ପ୍ରତିଭା ଅଧିକ ଶାଣିତ, ଅଧିକ ମନୋଜ୍ଞ, ବିଶ୍ୱାସ୍ୟ, ରସଘନ ତଥା ସୌନ୍ଦର୍ଯ୍ୟମୟ କରିବା ମଧରେ କାବ୍ୟ ହୋଇଛି ବାସ୍ତବମୁଖୀ, ଚରିତ୍ର ଗୁଡ଼ିକ ହୋଇଛି ମାନବିକ ବୈଶିଷ୍ଟ୍ୟ ଭିତ୍ତିରେ ଦୋଷ ଦୁର୍ବଳତା ପୂର୍ଣ୍ଣ ।

'କେଦାରଗୌରୀ'ର କଥାବସ୍ତୁ ବିଦେଶରୁ ଆହୃତ ହୋଇଥିଲେ ହେଁ ରାଧାନାଥଂକ କାବ୍ୟପ୍ରତିଭାକୁ ଅସ୍ୱୀକାର କରାଯାଇ ନପାରେ । ଆଂଗିକରେ ଏକ ମୁଖୀନତା, ନୂତନତା, ବିଷୟଗତ ଐକ୍ୟ ତଥା ଆତ୍ମିକ ରସବିଭବ ଏ କାବ୍ୟକୁ କରିଛି ସାର୍ଥକ ଓ ମୁଗ୍ଧକର । ପ୍ରକୃତି ବର୍ଣ୍ଣନା ରାଧାନାଥଂକ ପ୍ରତିଭାର ଏକ ବିଶେଷ ଦିଗ । ସୁଯୋଗ ମାତ୍ରକେ ତାଂକ କାବ୍ୟକବିତାରେ ହେଇଉଠେ ଚଳଚଞ୍ଚଳମୟ, ଜୀବନ୍ତ । ସନ୍ଧ୍ୟାର ଅପରୂପ ବର୍ଣ୍ଣନା ଏ କାବ୍ୟକୁ କରିଛି ଅଧିକ ପ୍ରାଣବନ୍ତ ଓ ଉପଭୋଗ୍ୟ ।

''ଅସ୍ତଗାମୀ ରବି -ବିଭା ଝଟକିଲା
ବଡ଼ ଦେଉଳ ତ୍ରିଶୂଳେ ।
ଭାର୍ଗବୀ ପୁଳିନୁଁ ହଂସରାଳୀ ଉଡ଼ି
ଗଲେ-ଖଣ୍ଡଗିରି ଚୂଳେ ।
ବିନ୍ଦୁ ସରୋବରେ ସିନ୍ଦୂର-ଲହରୀ
ଖେଳିଲା ମନ୍ଦ ସମୀରେ
ରଥାଙ୍ଗ ମିଥୁନ ଦୀପଦଣ୍ଡି ଛାଡ଼ି
ଗଲେ ବିପରୀତ ତୀରେ ।''

ଅସ୍ତଗାମୀ ସୂର୍ଯ୍ୟ କିରଣରେ ସିନ୍ଦୂରିତ ବିନ୍ଦୁ ସରୋବର, ତିମିରିତ ରଜନୀ, ତାରାଙ୍କିତ ଆକାଶ, ଭାର୍ଗବୀର ହଂସରାଳୀ, ରଥାଙ୍ଗ ମିଥୁନର ଚିତ୍ର କାବ୍ୟକୁ ମନୋରମ କରିଛି । କବିଙ୍କର କଳ୍ପନା ବିଳାସିତାର ପରିଚୟ ଏଇଠାରୁ ହିଁ ମିଳିଥାଏ । ସଂସ୍କୃତ କାବ୍ୟାଦର୍ଶ ଅନୁସାରେ କାବ୍ୟଟି ସର୍ଗବଦ୍ଧ ନୁହେଁ କିମ୍ବା ଛନ୍ଦର ବ୍ୟାପକ ଓ ବହୁଳ ପ୍ରୟୋଗ ମଧ ନାହିଁ । କାବ୍ୟର ଗୁରୁତ୍ୱ ବୃଦ୍ଧି ନିମନ୍ତେ ଅଳଂକାରର ସାର୍ଥକ ପ୍ରୟୋଗ ଆକର୍ଷଣୀୟ । ଉପମା ଓ ଅଳଙ୍କାର ପ୍ରୟୋଗରେ କବିଙ୍କର ଦକ୍ଷତା ତାଙ୍କର ପରବର୍ତ୍ତୀ କାବ୍ୟଗୁଡ଼ିକରେ ଅଧିକ ସ୍ପଷ୍ଟ । ଏହି କାବ୍ୟଟି

'ବଙ୍ଗଳାଶ୍ରୀ' ରାଗରେ ରଚିତ । ଉପମା ଓ ଅଳଙ୍କାରର ଚମତ୍କାର ପ୍ରୟୋଗ ନିମ୍ନୋକ୍ତ ଉଦାହରଣରୁ ସ୍ପଷ୍ଟ ହୁଏ ।

"ବିନ୍ଦୁ ସରୋବର ଚାରିପାଶେ ସୌଧ
ସୌଧ ଅନ୍ତେ ଘୋର ବନ,
ଇନ୍ଦୁ ଚାରିଦିଗେ ଧଳା ମେଘମାଳା
ନୀଳ ଗଗନେ ଯେସନ ।"

"କୁଟିଳ କେଶୀ କୁଟଜମୂଳେ ବସି
କାନ୍ତକୁ ରହିଲା ଚାହିଁ"

"ଆଦରେ କେଦାର ହୃଦେ ଜଡ଼ାଇଲା
ରୁଧିରେ ଆର୍ଦ୍ର ଓଢ଼ଣା,
ଦରଦର ବାରି ନୟନୁ ଝରିଲା,
ସରିଲା ସର୍ବ ବାସନା ।"

"ରମ୍ଭା ପତ୍ର ପ୍ରାୟେ ଥରିଲା ରମ୍ଭୋରୁ
ସ୍ତମ୍ଭିତେ ହେଲା ସେ ଉଭା ।"

ପୃଥୁଳକାୟ କାବ୍ୟ ପରିବର୍ତ୍ତେ ଏକ କ୍ଷୁଦ୍ର କାବ୍ୟ ରଚନା କରିଛନ୍ତି । ସେଥିରେ ଅନାବଶ୍ୟକ ରାଗରାଗିଣୀ, ଅଳଂକାର ଦୁର୍ବୋଧ ସମାସ ବହୁଳ ଶବ୍ଦ ପ୍ରୟୋଗ ନାହିଁ ବରଂ ସୁନ୍ଦର, ସ୍ୱଭାବ ସୁଲଭ ସରଳ ଶୈଳୀରେ ମନୋଜ୍ଞ । ଗୋଟିଏ ଗୋଟିଏ ଶବ୍ଦର ଏକାଧିକବାର ସଂଯୋଜନା ଅଧିକ ଭାବବ୍ୟଞ୍ଜକ ହେବା ସହିତ କାବ୍ୟଟି ହୋଇଛି ବୈଶିଷ୍ଟ୍ୟମୟ ଓ ରସଘନ । କାବ୍ୟର ଶେଷ ଦୁଇପଦରେ ଚାରିଥର 'ବେନିଙ୍କ' ଶବ୍ଦ ବ୍ୟବହୃତ । ଏହା ଭାବାନ୍ତର ସୃଷ୍ଟିକରେ । ରାଧାନାଥଂକ ଭାଷା ଯେପରି ସରସ, ସୁନ୍ଦର ସେହିପରି ମାର୍ଜିତ ଓ ଶ୍ରବଣ ସୁଖକର । ରସ ଦୃଷ୍ଟିରୁ ଆଲୋଚନା କଲେ ଦେଖାଯାଏ ଯେ ଶୃଙ୍ଗାର ରସ ସମଗ୍ର ସଂସ୍କୃତ ସାହିତ୍ୟ ତଥା ରୀତିଯୁଗୀୟ କାବ୍ୟରେ ଆଧିପତ୍ୟ ବିସ୍ତାର କରିଥିଲା । ରାଧାନାଥ ସେଥିରେ ପରିବର୍ତ୍ତନ ଆଣି ପାଶ୍ଚାତ୍ୟ ସାହିତ୍ୟ ଆଦର୍ଶରେ କରୁଣ ରସକୁ ପ୍ରାଧାନ୍ୟ ଦେଇଛନ୍ତି ।

ରାଧାନାଥଙ୍କ କାବ୍ୟପ୍ରତିଭାର ବିରାଟ ଅବଲମ୍ବନ ଥିଲା ପାଶ୍ଚାତ୍ୟ ସାହିତ୍ୟର କଥାବସ୍ତୁ, ଭୂଦେବ ମୁଖାର୍ଜୀଙ୍କର ସତ୍ୟ ପ୍ରତୀୟମାନ କରିବାର ସୁଚିନ୍ତିତ କୌଶଳ ଏବଂ ଉତ୍କଳର ଭୌଗୋଳିକ ତଥା ପ୍ରାକୃତିକ ବୈଶିଷ୍ଟ୍ୟ । ଭୂଦେବ ମୁଖାର୍ଜୀଙ୍କ ଅମୂଲ୍ୟ, ଅଭିଜ୍ଞ ପରାମର୍ଶ ଅନୁସାରେ ରାଧାନାଥ ପୁରାଣ ପରିବର୍ତ୍ତେ ଇତିହାସ, ଶୃଙ୍ଗାର ପରିବର୍ତ୍ତେ କରୁଣ, ବଂଗଳା ସାହିତ୍ୟ ଛାଡ଼ି ଓଡ଼ିଆ ସାହିତ୍ୟରେ

ମନୋନିବେଶ କରିଛନ୍ତି । ପ୍ରତିଭାଧାରୀ କବି ହିଁ ଆହରଣ କରିପାରେ, ଏ ଆହରଣ ଅନେକ ସମୟରେ ପୂର୍ବକୃତିଠାରୁ ଅଧିକ ସଫଳ ରଚନା ସୃଷ୍ଟକରିପାରେ । ମୌଳିକ ସୃଷ୍ଟିଠାରୁ ଅଧିକ ମନୋଜ୍ଞ ହୋଇଯାଏ ଏ ରଚନା । କାରଣ ପ୍ରତ୍ୟେକ ସ୍ରଷ୍ଟା ନିଜସ୍ୱ ସ୍ପନ୍ଦନ ଓ ଆତ୍ମପରିଚୟ ଅନ୍ୱେଷଣ ତଥା ବ୍ୟକ୍ତିତ୍ୱ ପ୍ରକାଶ କରିବା ନିମନ୍ତେ ବାଧ । ଏ ପ୍ରକ୍ରିୟାଟି ପ୍ରତ୍ୟେକ ପ୍ରତିଭାଧାରୀ ସ୍ରଷ୍ଟାମଧ୍ୟରେ ସ୍ୱତଃସ୍ଫୂର୍ତ୍ତ ଭାବରେ କାର୍ଯ୍ୟ କରିଥାଏ । ତେଣୁ ଅନୁସରଣ ଓ ଆହରଣ ତାଙ୍କ କବି ପ୍ରତିଭାକୁ ସମୃଦ୍ଧଶାଳୀ କରିଛି ନିଃସନ୍ଦେହରେ, ଯେଉଁ ପ୍ରତିଭାର ପ୍ରଥମ ପଦପାତ 'କେଦାରଗୌରୀ'ରେ ମର୍ମରିତ ।



# ପ୍ରତିଭାର ଶେଷରଶ୍ମି : ଦରବାର

ଡଃ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି

ରାଧାନାଥ ଓଡ଼ିଆ ସାହିତ୍ୟର ଜଣେ ପ୍ରମୁଖ ପ୍ରତିଭାଶାଳୀ କବି । ତାଙ୍କ ପ୍ରତିଭାର ଯାଦୁକରୀ ସ୍ପର୍ଶରେ ଉତ୍କଳର କି ବହିଃ ପ୍ରକୃତି କି ଅନ୍ତଃ ପ୍ରକୃତି ସବୁ ଅପରୂପ ସୌନ୍ଦର୍ଯ୍ୟଶ୍ରୀରେ ବିମଣ୍ଡିତା ହୋଇ ପାରିଛନ୍ତି । ଆଗରୁ ଏ ଦେଶର ବନ-ଗିରି-ନଦ-ନଦୀ-ହ୍ରଦ-ଉପତ୍ୟକା-ସମୁଦ୍ର ଉପକୂଳ-ମନ୍ଦିର-ପ୍ରାଚୀର ଓ ଦୁର୍ଗ ପ୍ରଭୃତି ବିଦ୍ୟମାନ ଥିଲା, ମାତ୍ର ତାର ଏପରି କାନ୍ତ-କୋମଳ-ଶାନ୍ତସୁନ୍ଦର-ଶାଶ୍ୱତଲାବଣ୍ୟଶ୍ରୀ ଆମେ ଦେଖିବାକୁ ସମର୍ଥ ହୋଇ ପାରିନଥିଲୁ । ରାଧାନାଥଙ୍କ ଅମୃତସ୍ରାବୀ ଲେଖନୀର ଅମୃତମୟ ସ୍ପର୍ଶରେ ସେ ସବୁ ଅପରୂପ ରୂପସମ୍ଭାରର ପୀଠସ୍ଥଳୀ ରୂପେ ଆଖ୍ୟାତ ହେବାକୁ ଲାଗିଲା । ମହାନାଦୀ-ମହାନଦୀ, ପକ୍ଷୀ-ପୁରୁଷଭରା ଅଖ୍ୟାତ ଚିଲିକା, ସ୍ୱରୂପା ଅଂଶୁପା, ମହେନ୍ଦ୍ରଗିରି ଓ ରତ୍ନଗିରି ପ୍ରଭୃତି ଶହଶହ ଐତିହ୍ୟସମ୍ପନ୍ନ ସ୍ଥାନ, ସାହିତ୍ୟର ମାନଚିତ୍ରରେ ସଗୌରବେ ସର୍ଗବେ ସ୍ଥାନିତ ହେଲେ ।

ସମୟର ସନ୍ଧିକ୍ଷଣରେ ରାଧାନାଥଙ୍କର ଜନ୍ମ । ମୋଗଲ-ଆଫଗାନ-ମରହଟ୍ଟାଶାସିତ ଉତ୍କଳଖଣ୍ଡରେ, ଇଂରେଜମାନଙ୍କ ଆଗମନ ଓଡ଼ିଶାର ସବୁକ୍ଷେତ୍ରରେ ଏକ 'ନୂଆ' ଚିନ୍ତା-ଆଦର୍ଶ-ଦର୍ଶନ ଓ ଶାସନର ପ୍ରତିଷ୍ଠା ପାଇଁ ବ୍ୟାକୁଳ ଆଗ୍ରହ ପ୍ରକାଶ କରୁଥାଏ । ଶାସକ ଓ ଶାସନଦଣ୍ଡଧାରୀ-ମହାପୁରୁଷମାନେ ନୂତନ ସ୍ୱାଦ ଚଖାଇବା ନ୍ୟାୟରେ ଆଧୁନିକତାର ଡିଣ୍ଡିମ ପିଟି ଚାଲିଥାନ୍ତି । ଫଳରେ ଓଡ଼ିଶାର ପ୍ରାଚୀନ-ଧର୍ମ-ପରମ୍ପରା, ରୀତି-ନୀତି ଓ ଚାଲି-ଚଳନ ଉପରେ ଗୋଟିଏ ବଡ଼ ଧରଣର ପରିବର୍ତ୍ତନର 'ଚାପା' ଲଦି ଦିଆଗଲା ।

ଆଧୁନିକ ଶିକ୍ଷାପ୍ରସାର ଏଇ ନୂତନତାର ଏକ ବଳିଷ୍ଠ ପଦକ୍ଷେପ । ୧୮୩୫ ସାଲରେ ଲର୍ଡ଼ମାକଲେଙ୍କ ଶିକ୍ଷାନୀତି ଉଦ୍‌ଘୋଷିତ ହେଲା । ସେଥିରେ ସୂଚିତ ହେଲା "ଇଂଗ୍ରେଜ ଓ ଶାସିତ ଦେଶୀୟ ଲୋକଙ୍କ ଭିତରେ ଯୋଗସୂତ୍ର ସ୍ଥାପନ ପାଇଁ ଏକ ସ୍ୱତନ୍ତ୍ର ଶ୍ରେଣୀର ଲୋକ ସୃଷ୍ଟି କରିବା । ଏଇ ଶ୍ରେଣୀର ଲୋକେ ରକ୍ତ ଓ ବର୍ଣ୍ଣରେ ଭାରତୀୟ ହେଲେ ହେଁ ଅଭିରୁଚି ଓ ଅଭିମତରେ, ନୀତି ଓ ବୁଦ୍ଧି ବିଚାରରେ ଇଂରେଜ ହେବେ । ଏଇ ଦେଶର ଭର୍ଣ୍ଣାକୁଲାର ଭାଷାର ଉନ୍ନତି ପାଇଁ ଏଇମାନଙ୍କ ହାତରେ ଛାଡ଼ି ଦିଆଯିବ । ଏମାନେ ପାଶ୍ଚାତ୍ୟ ଜ୍ଞାନ ବିଜ୍ଞାନରୁ ଉପାଦାନ ସଂଗ୍ରହ କରି ଭାଷାମାନଙ୍କୁ ସମୃଦ୍ଧ କରିବେ ଓ ଏ ଭାଷାମାନଙ୍କୁ ଶିକ୍ଷାର ଉପଯୁକ୍ତ ମାଧ୍ୟମ

ରୂପେ ପ୍ରସ୍ତୁତ କରି ପାରିବେ ।''[୧] ଏଇ ଘୋଷଣାର ଫଳଶ୍ରୁତି ସ୍ୱରୂପ ଆମ ପ୍ରତିବେଶୀରାଜ୍ୟ ତଥା ଆମ ନିଜରାଜ୍ୟରେ ଆଧୁନିକ ଶିକ୍ଷା ପ୍ରତି ପ୍ରବଳ ଆଗ୍ରହ ସୃଷ୍ଟି ହେଲା । ସମସ୍ତେ 'ବିଲାତି' ଭାବବସ୍ତୁ-ଶିକ୍ଷା-ସଭ୍ୟତା ଓ ଦର୍ଶନ ପ୍ରତି କାରଣ/ଅକାରଣ ଆଗ୍ରହ ପ୍ରକାଶ କଲେ । ଫଳତଃ ଆଧୁନିକ ଶିକ୍ଷା—ଆଧୁନିକ ଶିକ୍ଷିତ ଶ୍ରେଣୀ ଓ ଆଧୁନିକ ସାହିତ୍ୟ ଏଇ ତିନୋଟିର ବିଜୟଯାତ୍ରା ଏଇ ମୁହୂର୍ତ୍ତରୁ ହିଁ ଆରମ୍ଭ ହୋଇଗଲା ।[୨] ୧୮୩୭ ମସିହା ଜୁଲାଇ ୩୧ରେ ମାକଲେ ସାହେବ ପୁନଶ୍ଚ ଘୋଷଣା କଲେ—''ଏ ଦେଶର ନିମ୍ନଶ୍ରେଣୀର ଲୋକଙ୍କ ଭିତରେ ପ୍ରତ୍ୟକ୍ଷଭାବେ ଶିକ୍ଷାପ୍ରସାର କରିବା ବର୍ତ୍ତମାନ ଆମ୍ଭମାନଙ୍କ ପକ୍ଷେ ସମ୍ଭବ ନୁହେଁ । ଆମର ଲକ୍ଷ୍ୟ ହେଉଛି ଗୋଟିଏ ଶିକ୍ଷିତ ଶ୍ରେଣୀ ସୃଷ୍ଟି କରିବା । ଆମେ ଆଶା କରୁଛୁ ଦେଶବାସୀଙ୍କ ଜ୍ଞାନବିଜ୍ଞାନ ପରିପ୍ରଚାର ଦିଗରେ ପାଶ୍ଚାତ୍ୟ ଜ୍ଞାନଲାଭ କରିଥିବା ଏଇ ଶ୍ରେଣୀକୁ ଆମେ ବିନିଯୋଗ କରିବୁ । ଏଇ ଯୁବକମାନେ ଲୋକ ଶିକ୍ଷାର ନେତୃତ୍ୱ ନେବେ ।[୩]

୩୫/୪୦ ବର୍ଷ ବ୍ୟବଧାନ ପରେ ମାକଲେଙ୍କ ଏହି ଶିକ୍ଷାନୀତି ପ୍ରଚାର-ପ୍ରସାର-ପ୍ରଭାବ ଓଡ଼ିଶା ରାଜ୍ୟକୁ ବେଶ୍ ପ୍ରଭାବିତ କରିପାରିଛି । ସେଇ ପ୍ରଭାବର ଫଳସ୍ୱରୂପ ଆମର ଶିକ୍ଷା-ସଭ୍ୟତା-ସଂସ୍କୃତି ଓ ସାହିତ୍ୟ ବହୁ ଭାବରେ ପ୍ରଭାବିତ ହୋଇ ଚାଲିଲା । ୧୮୪୫ ପରେ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ଶିକ୍ଷାନୀତି ଜୀବନ ଓ ଜୀବିକା ପ୍ରତି ଏକ ଆହ୍ୱାନ ରୂପେ ଦଣ୍ଡାୟମାନ ହେବାରୁ ଦେଶୀୟ ଆଧୁନିକତା ପ୍ରେମୀ ଅଭିଭାବକମାନେ ନିଜ ନିଜ ପିଲାଙ୍କୁ ଆଧୁନିକ ଇଂରାଜୀ ଶିକ୍ଷା ପାଇଁ ଶିକ୍ଷାୟତନକୁ ପଠାଇଲେ । ଫଳରେ ୧୮୭୦ ବେଳକୁ ଏ ଦେଶରେ ଗୋଟିଏ ନିର୍ଦ୍ଦିଷ୍ଟ 'ଶିକ୍ଷିତଗୋଷ୍ଠୀ' - ରାଜ୍ୟଶାସନ ଓ ଅନ୍ୟାନ୍ୟ କର୍ମ ପାଇଁ ଉପଯୁକ୍ତ ହୋଇ ଉଠିଲେ । ରାଧାନାଥ ଏଇ ସମୟର ଜଣେ ସଫଳ ପ୍ରତିନିଧି । ତାଙ୍କ ଜନ୍ମ ପୂର୍ବ ଦଶବର୍ଷ ଓ ପର ପାଞ୍ଚ ବର୍ଷ ମଧ୍ୟରେ ଓଡ଼ିଶାର ବହୁ ସ୍ମରଣୀୟ ଯୋଗଜନ୍ମା ପୁରୁଷଙ୍କର ଆବିର୍ଭାବ ଘଟିଅଛି । ତନ୍ମଧ୍ୟରେ କର୍ମବୀର ଗୌରୀଶଙ୍କର (୧୮୩୮), ସରସ୍ୱତୀ ଫକୀରମୋହନ (୧୮୪୩), ଉତ୍କଳଗୌରବ ମଧୁସୂଦନ (୧୮୪୮), କବିବର ରାଧାନାଥ (୧୮୪୮), ପଣ୍ଡିତ ଗୋବିନ୍ଦ ରଥ (୧୮୪୮), ସାର ବାସୁଦେବ ସୁଢ଼ଳଦେବ (୧୮୫୦) ଓ ଭକ୍ତକବି ମଧୁସୂଦନ (୧୮୫୩)ଙ୍କ ନାମ ଏଠାରେ ସୂଚନାଯୋଗ୍ୟ । ଏମାନେ ସମସ୍ତେ ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ ଏବଂ

---

୧. ଡଃ ନଟବର ସାମନ୍ତରାୟ—ଓଡ଼ିଆ ସାହିତ୍ୟ ଇତିହାସ (୧ମ ସଂଖ୍ୟା), ପୃ-୧୫୦,
୨. ଡଃ ନଟବର ସାମନ୍ତରାୟ—ଓଡ଼ିଆ ସାହିତ୍ୟ ଇତିହାସ (୧ମ ସଂଖ୍ୟା), ପୃ-୨୫୬
୩. ଡଃ ନଟବର ସାମନ୍ତରାୟ—ଓଡ଼ିଆ ସାହିତ୍ୟ ଇତିହାସ (୧ମ ସଂଖ୍ୟା), ପୃ-୨୫୭

ଦେଶ ଓ ଦେଶବାସୀଙ୍କ ମଙ୍ଗଳକ୍ରମେ ସମସ୍ତ ଜୀବନ ବିନିଯୋଗ କରିଥିବାରୁ ପ୍ରତ୍ୟେକ ଓଡ଼ିଆଙ୍କର ଚିରସ୍ମରଣୀୟ । ଖଣ୍ଡିତ ଉତ୍କଳର ଏକତ୍ରୀକରଣ— ଓଡ଼ିଆଭାଷାର ଉନ୍ନତି ସାଧନ ଓ ଓଡ଼ିଆ ଜାତିର ସ୍ୱାଭିମାନର ସୁରକ୍ଷା ପାଇଁ ଏମାନେ ସମସ୍ତେ ଅଳ୍ପେ ଅଧିକେ ତତ୍ପର ଥିଲେ ।

ଏ ସମସ୍ତଙ୍କ ମଧ୍ୟରେ ରାଧାନାଥ ଥିଲେ ସ୍ୱତନ୍ତ୍ର । ତାଙ୍କର ଏହି ସ୍ୱାତନ୍ତ୍ର୍ୟ ପାଇଁ ମୁଖ୍ୟତଃ ଦୁଇଟି କାରଣକୁ ଗ୍ରହଣ କରାଯାଇପାରେ । ପ୍ରଥମଟି ତାଙ୍କର (କ) ଜୀବନଜୀବିକା ଏବଂ ଦ୍ୱିତୀୟଟି ତାଙ୍କ (ଖ) ଐଶୀଦତ୍ତ କବି ପ୍ରତିଭା ।

(କ) ଜୀବନରେ-ଜୀବିକାର ପ୍ରୟୋଜନ ସର୍ବାଧିକ । ରାଧାନାଥଙ୍କ ପିତୃକୁଳ ଏବଂ ମାତୃକୁଳ ସମସ୍ତେ ଏ ସମ୍ପର୍କରେ ସଚେତନ ଥିଲେ । ପିତା ସୁନ୍ଦରନାରାୟଣଙ୍କ ରାଧାନାଥଙ୍କୁ ଆଧୁନିକ ଶିକ୍ଷାଦାନ ଅନ୍ତରାଳରେ, ପୁତ୍ର ଗୋଟିଏ ଉତ୍କୃଷ୍ଟ 'ଜୀବିକା' ନିର୍ବାହର ପନ୍ଥା ନିର୍ଦ୍ଧାରଣର ଉଦ୍ଦେଶ୍ୟ ଅନ୍ତର୍ନିହିତ ଥିଲା । ରାଧାନାଥ ସେଥିରେ ସମ୍ପୂର୍ଣ୍ଣ ସଫଳ ହେଲେ । ସାଧାରଣ ସରକାରୀ-ସହକାରୀ ଶିକ୍ଷକ ଭାବରେ କାର୍ଯ୍ୟ ଆରମ୍ଭ କରି-ପର୍ଯ୍ୟାୟକ୍ରମେ ନିଜର ଅପୂର୍ବ କର୍ମନିଷ୍ଠା ଯୋଗୁ ସେ ଶିକ୍ଷା ବିଭାଗର ସର୍ବୋଚ୍ଚ ପଦର ଅଧିକାରୀ (ଇନ୍‌ସ୍ପେକ୍ଟର) ହୋଇ ପାରିଥିଲେ । ଏହା ତାଙ୍କ ପରିବାରବର୍ଗ, ଆତ୍ମୀୟ ସ୍ୱଜନ ଓ ହିତୈଷୀମାନଙ୍କ ପାଇଁ ଏକ ଶୁଭ ଘଟଣା । ରାଧାନାଥ ୧୮୬୪ ମସିହା ଜୁନ ମାସରେ ନିଜ କର୍ମମୟ ଜୀବନର ଶୁଭାରମ୍ଭ କରିଥିଲେ । ବାଲେଶ୍ୱର, ପୁରୀ ଓ ବାଙ୍କୁଡ଼ା ସ୍କୁଲରେ ସେ ୧୮୭୨ ମସିହା ପର୍ଯ୍ୟନ୍ତ କାର୍ଯ୍ୟରତ ଥିଲେ । ଏଇ ସମୟ ମଧ୍ୟରେ ସେ ଆନ୍ତରିକତାର ସହ ଆଧୁନିକ ଶିକ୍ଷାକୁ ଚପଳମତି କିଶୋରଙ୍କ ମନଛୁଆଁ ହେଲାଭଳି ଉଦ୍ୟମ ଅବ୍ୟାହତ ରଖିଥିଲେ । ଶିକ୍ଷାର ମାଧ୍ୟମ ପାଇଁ ମାତୃଭାଷାର ବଳିଷ୍ଠ ଉପଯୋଗ କଥା ମଧ୍ୟ ଉପଲବ୍ଧି କରିଥିଲେ । ଏଇ ସମୟ ମଧ୍ୟରେ ଓଡ଼ିଆ ଭାଷା ବିଦ୍ୱେଷ ଆନ୍ଦୋଳନରେ ସେ ଆଦୌ ପକ୍ଷଭୂତ ହୋଇ ନଥିଲେ । ମାତ୍ର ସଂଘର୍ଷର ସତ୍ୟାସତ୍ୟ ଓ ଫଳାଫଳ ପ୍ରତି ସର୍ବଦା ସତର୍କ ଦୃଷ୍ଟି ରଖିଥିଲେ । ୧୮୭୨ ମସିହା ଜୁନ ମାସରେ, ରାଧାନାଥଙ୍କ କର୍ମନିଷ୍ଠା ଏବଂ କର୍ତ୍ତବ୍ୟ ପରାୟଣତାକୁ ଦୃଷ୍ଟିରେ ରଖି ଡେପୁଟି ଇନ୍‌ସ୍ପେକ୍ଟର ପଦବୀକୁ ଉନ୍ନୀତ କରାଗଲା । ଏହି ପଦବୀରେ ସେ ପ୍ରାୟ ୪ ବର୍ଷ ରହିଥିଲେ । ତା'ପରେ ୧୮୭୭ଠାରୁ ନଭେମ୍ବର ୧୮୯୨ ପର୍ଯ୍ୟନ୍ତ ସେ ଜଏଣ୍ଟ ଇନ୍‌ସ୍ପେକ୍ଟର ପଦବୀରେ ଅଭିଷିକ୍ତ ରହିଲେ । ତା'ପରେ ୧୮୯୨ରୁ ୧୯୦୩ ମସିହା ପର୍ଯ୍ୟନ୍ତ ସେ ଇନ୍‌ସ୍ପେକ୍ଟର ହୋଇଥିଲେ । ବସ୍ତୁତଃ ଦୀର୍ଘ ୩୯ ବର୍ଷକାଳ ଶିକ୍ଷା ବିଭାଗରେ ରହି ଏ ଦେଶରେ ଜମାଟ ବାନ୍ଧିଥିବା ଅଜ୍ଞାନ ଅନ୍ଧକାରକୁ ଦୂରୀଭୂତ କରିବା ପାଇଁ ଯତ୍‌ପରୋନାସ୍ତି ଯତ୍ନ କରିଥିଲେ । ଛାତ୍ରମାନଙ୍କ ଶିକ୍ଷାର

ମାନ ନିର୍ଦ୍ଧାରଣ ପାଇଁ ପାଠ୍ୟ ପୁସ୍ତକ ରଚନାଠାରୁ-ପାଠ୍ୟପୁସ୍ତକ ନିର୍ବାଚନ ଏବଂ ପାଠ୍ୟଖସଡ଼ା ପ୍ରଚଳନ କର୍ମ ସେ ସ୍ୱହସ୍ତରେ ସମ୍ପାଦନ କରିଥିଲେ । ତେଣୁ ମାକଲେଙ୍କ କଳ୍ପିତ ଯୋଜନା ଯଥାସମୟରେ ସଫଳ ହୋଇଥିଲା । ପାଶ୍ଚାତ୍ୟ ଜ୍ଞାନ-ବିଜ୍ଞାନରୁ ଉପାଦାନମାନ ସଂଗ୍ରହ କରି ପାଠ୍ୟକ୍ରମମାନ ପ୍ରସ୍ତୁତ ହୋଇଥିଲା । ପାଶ୍ଚାତ୍ୟ ସାହିତ୍ୟରୁ ଉପାଦାନମାନ ସଂଗ୍ରହ କରାଯାଇ ଆମ ସାହିତ୍ୟରେ ଆଧୁନିକତାକୁ ପ୍ରବେଶ ଅଧିକାର ଦିଆଯାଇଥିଲା । ଏ ସମସ୍ତ କର୍ମରେ ରାଧାନାଥ ଜଣେ କୁଶଳୀ କଳାକାରର ଭୂମିକା ନିର୍ବାହ କରିଥିଲେ ।

ଏଇ ସମୟ ସୀମାରେ ଅର୍ଥାତ୍ ୧୮୬୪ଠାରୁ ୧୯୦୩ ମଧ୍ୟରେ ରାଧାନାଥଙ୍କ କବି ପ୍ରତିଭାର କ୍ରମ ବିକାଶ ଘଟି ଚରମ ପର୍ଯ୍ୟାୟରେ ଉପନୀତ ହୋଇଅଛି । ବଙ୍ଗଳା ଲେଖକ ରାଧାନାଥଙ୍କୁ ଓଡ଼ିଆରେ ଲେଖିବା ପାଇଁ ପ୍ରଥମେ ଭୂଦେବବାବୁ ଏବଂ ପରେ ପରେ ମହାତ୍ମା ଜନ୍ ବୀମ୍‌ସ୍ ଅନୁରୋଧ କରିଥିଲେ । ବନ୍ଧୁଗହଣରେ ଅନେକ ବନ୍ଧୁ ଏବଂ ଗୁଣଗ୍ରାହୀ ବ୍ୟକ୍ତି ହୁଏତ ତାଙ୍କ କବି ପ୍ରତିଭାକୁ ସମ୍ମାନ ଜଣାଇ ଓଡ଼ିଆରେ କାବ୍ୟ-କବିତା ଲେଖିବାକୁ ଉପଦେଶ ଦେଇଥିବେ । ଶେଷରେ ଓଡ଼ିଆ ଭାଷା ଆନ୍ଦୋଳନ ପରେ ଏକ ଶାନ୍ତ ପରିବେଶରେ ଓଡ଼ିଆରେ ଲେଖିବା ପାଇଁ ରାଧାନାଥ ଆଗ୍ରହୀ ହୋଇଥିବେ ଏବଂ ଲେଖିଥିବେ ।

(ଖ) କବିଙ୍କର ଐଶୀଦତ୍ତ ପ୍ରତିଭା ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଛି । ବାସ୍ତବରେ ପ୍ରତିଭା ଏକ ସାଧାରଣ ବସ୍ତୁ ନୁହଁ । ଏହା ଈଶ୍ୱରଙ୍କ ଦ୍ୱାରା ପ୍ରଦତ୍ତ । ତା' ନ ହୋଇଥିଲେ ଦସ୍ୟୁ ରତ୍ନାକର—ରାମାୟଣ ଲେଖିପାରି ନଥାନ୍ତେ କି କୈବର୍ତ୍ତକନ୍ୟା ସତ୍ୟବତୀ-ନନ୍ଦନ ବ୍ୟାସଦେବ ମହାଭାରତ ରଚନା କରିପାରି ନଥାନ୍ତେ। ଠିକ୍ ସେହିପରି ମୂର୍ଖ କାଳିଦାସଙ୍କ କଥା । ଏଣୁ ବିଶ୍ୱାସ କରାଯାଏ—ପ୍ରତିଭା ଏପରି ଏକ ଶକ୍ତି ଯାହା ବଳରେ ମୂକ ବାଚାଳ ହୋଇପାରିବ, ପଙ୍ଗୁ ଗିରି ଲଙ୍ଘିପାରିବ । କବି ରାଧାନାଥଙ୍କ ଭାଗ୍ୟଟି ଠିକ୍ ସେଇପରି ଈଶ୍ୱରଙ୍କ ଆଶୀର୍ବାଦରେ ନିୟନ୍ତ୍ରିତ ହୋଇଥିଲା ।

କବି ରାଧାନାଥଙ୍କର ସମସ୍ତ ସାହିତ୍ୟ ସୃଷ୍ଟିକୁ ଗବେଷକ ଡଃ ନଟବର ସାମନ୍ତରାୟ ତିନୋଟି ପର୍ଯ୍ୟାୟରେ ବିଭକ୍ତ କିରଅଛନ୍ତି । ପ୍ରାଥମିକ ପର୍ଯ୍ୟାୟରେ ଲେଖାବଳୀ (ବଙ୍ଗଳା), କବିତାବଳୀ, ମେଘଦୂତ (ଅନୁବାଦ) ବିବେକୀ ଓ ଇତାଲୀୟ ଯୁବା ପ୍ରଭୃତିକୁ ଗ୍ରହଣ କରାଯାଇଛି । ଏ ସବୁର ସୃଷ୍ଟି ୧୮୬୪ରୁ ୧୮୮୦ ମଧ୍ୟରେ ବ୍ୟାପ୍ତ । ଦ୍ୱିତୀୟ ପର୍ଯ୍ୟାୟର ସୃଷ୍ଟି ଭାବରେ କେଦାରଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା ଓ ପାର୍ବତୀକୁ ଗ୍ରହଣ କରାଯାଇଛି । ଏହାର ସମୟସୀମା ୧୮୮୦-୧୮୯୧ । ଶେଷ ପର୍ଯ୍ୟାୟର ସୃଷ୍ଟି ଭାବରେ ଚିଲିକା, ମହାଯାତ୍ରା, ଦରବାର, ଯଯାତିକେଶରୀ ଓ ତୁଳସୀ ସ୍ତବକ ପ୍ରଭୃତିକୁ ନିଆଯାଇଅଛି ।

ଏହାର ସମୟସୀମା ୧୮୯୨ ଠାରୁ କବିଙ୍କ ମୃତ୍ୟୁ ପର୍ଯ୍ୟନ୍ତ । ଏଇ ତିନୋଟି ପର୍ଯ୍ୟାୟରେ କବି ପ୍ରତିଭାର ଉନ୍ମେଷ—ବିସ୍ଫୋରଣ ଏବଂ ଶୀର୍ଷ ବିନ୍ଦୁରେ ଆରୋହଣର ସୂଚନା ସୂଚିତ ହୋଇଛି । ଡକ୍ଟର ସାମନ୍ତରାୟଙ୍କ ଏହି ସିଦ୍ଧାନ୍ତ ସମ୍ପୂର୍ଣ୍ଣ ଯଥାର୍ଥ । ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

ଓଡ଼ିଆ ସାହିତ୍ୟରେ ସବୁଠାରୁ ଅଧିକ ଚର୍ଚ୍ଚାର ପରିସର ମଧ୍ୟକୁ ଯେଉଁ କବି ଆସିଛନ୍ତି ସେ ହେଉଛନ୍ତି ରାଧାନାଥ । ସର୍ବାଧିକ ନିନ୍ଦା ଏବଂ ଅପବାଦର ଶିକାର ଯିଏ ହୋଇଛନ୍ତି ସେ ରାଧାନାଥ । ସର୍ବାଧିକ ପ୍ରଶଂସା ଏବଂ ଗୌରବ ଯିଏ ଲାଭ କରିଛନ୍ତି ସିଏ ହେଉଛନ୍ତି ରାଧାନାଥ । ଏହା ହିଁ ବୈଚିତ୍ର୍ୟ । ଏହା ହିଁ ଆଶ୍ଚର୍ଯ୍ୟ । ମାତ୍ର ଏହା ସତ୍ୟ । ମୃତ୍ୟୁ ପରି ନିଷ୍ଠୁର ସତ୍ୟ ।

ଚାଲନ୍ତି କୂଳ ଲଂଘି ଗିରି ସରିତେ,
ମତ୍ତ ପାମର ଯଥା ଅଳପ ବିତ୍ତେ ।

ପର୍ବତରେ ପ୍ରବଳ ବୃଷ୍ଟିପାତ ହୁଏ । ବୃଷ୍ଟିଜଳ ନିଜର ଧର୍ମପାଳନ ଉଦ୍ଦେଶ୍ୟରେ ନିମ୍ନଗାମୀ ହେବାକୁ ଚେଷ୍ଟାକରନ୍ତି । ସେଥିପାଇଁ ସେମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା—ପ୍ରବଳ ଭିଡ଼ । ସେଥିପାଇଁ ବହି ଯାଉଥିବା ଗିରି ନଦୀ (ଝରଣା) କୂଳ ଲଂଘିଯାଏ । ବାଧା ବନ୍ଧନଗୁଡ଼ିକୁ ମାନେନା । ରାଧାନାଥଙ୍କ ପ୍ରଥମ ପର୍ଯ୍ୟାୟର ସୃଷ୍ଟିଗୁଡ଼ିକ ଠିକ୍ ଏଇପରି ଗୋଟିଏ ଗୋଟିଏ ଗିରିନଦୀ । ପ୍ରବାହତା ପରମଧର୍ମ । ଆନନ୍ଦ ଦେବା ତାର କର୍ମ । କବିତାର ଦ୍ୱିତୀୟ ପାଦ 'ମତ୍ତପାମର ଯଥା ଅଳପ ବିତ୍ତେ'ର ଉପଲକ୍ଷ୍ୟ ଆମେ କବିଙ୍କ ଦ୍ୱିତୀୟ ପର୍ଯ୍ୟାୟର ସୃଷ୍ଟି ସମ୍ପଦ ଆଲୋଚନା କଲେ ପାଇପାରିବା ।

କବିଙ୍କ ଦ୍ୱିତୀୟ ପର୍ଯ୍ୟାୟର ସୃଷ୍ଟି ''ପଞ୍ଚ କାବ୍ୟ'' ପାଇଁ ରାଧାନାଥ ବହୁ ଭାବରେ ନିନ୍ଦିତ । କେଦାରଗୌରୀ-ନନ୍ଦିକେଶ୍ୱରୀ-ଉଷା-ଚନ୍ଦ୍ରଭାଗା ଓ ପାର୍ବତୀର ମୂଳ 'ପଂଜର'ଗୁଡ଼ିକ ରାଧାନାଥ ବିଦେଶୀ ସାହିତ୍ୟରୁ ଆଣିଛନ୍ତି । ଏହା ଯୁଗ ପ୍ରଭାବର ଫଳ । ଯାହା ମୁଁ ପୂର୍ବରୁ ଆଲୋଚନା କ୍ରମରେ କହିସାରିଛି । ବିଲାତି ଆଳୁ, ବିଲାତି ବାଇଗଣ ପରି ସେତେବେଳର ଧର୍ମ ସବୁ ବିଲାତି (ବିଦେଶୀ) ବସ୍ତୁକୁ ପ୍ରାଧାନ୍ୟ ଦେଉଥିଲେ । 'ଦେଶୀ' ଜିନିଷଗୁଡ଼ିକ ଗନ୍ଧରେ ନାକଫଟାଇ ଦିଏ—ବିଦେଶୀ ଜିନିଷ ସବୁ ବାସେ । ଏଇ ଭ୍ରମଧାରଣାକୁ ପାଥେୟ କରି ତତ୍କାଳର ଯୁବଗୋଷ୍ଠୀ ଉଦ୍‌ଭ୍ରାନ୍ତ-ପାଗଳ ହୋଇଥିଲେ । ମଦ୍ୟପାନଠାରୁ ଆରମ୍ଭ କରି ବେଶ୍ୟାଗୃହଗମନ ତାତ୍କାଳିକ ଆଧୁନିକ ବାବୁମାନଙ୍କର ପୁଣ୍ୟକର୍ମ ରୂପେ ଗୃହୀତ ହୋଇଥିଲା । ପାପ ଓ ପୁଣ୍ୟର ବିଚାର ମଧ୍ୟ ସେତେବେଳେ ରହସ୍ୟମୟ ମନେ ହେଉଥିଲା । ଯାହା ଆଖିକୁ ସୁନ୍ଦର—ଯାହା ଇନ୍ଦ୍ରିୟଭୋଗ୍ୟ ତାକୁ ଯେମିତି ସେମିତି ହାସଲ କରିବାକୁ ଯୁବଗୋଷ୍ଠୀଙ୍କ ମଧ୍ୟରେ ଆଗ୍ରହ ଥିଲା । ତେଣୁ ସାହିତ୍ୟ ରାଜ୍ୟରେ ସ୍ୱ-ପ୍ରତିଭା ବଳରେ ଆସନ ଦୃଢ଼ କରିଆସୁଥିବା ରାଧାନାଥ—ଆହୁରି

ଅଧିକ ଦୃଢ଼ ହେବା ଆଶାରେ ସାହିତ୍ୟରେ ଏକ ଚମତ୍କାରିତା ସୃଷ୍ଟି ପାଇଁ ଏଇ ପଞ୍ଚକାବ୍ୟରେ ଉଦ୍ୟମ କରିଛନ୍ତି । କବିଙ୍କର ଲକ୍ଷ୍ୟ ମହତ୍ ଏବଂ ସାଧୁ ହୋଇଥିବାରୁ କାବ୍ୟାମୋଦୀ ପାଠକ ଓ ସମାଲୋଚକ ଏହାକୁ ସାଦରେ ଗ୍ରହଣ କରି ନେଇଛନ୍ତି । ମାତ୍ର ନିରପେକ୍ଷ ଆଲୋଚନା କ୍ରମେ ପ୍ରତିପାଦିତ ହୋଇଛି । "ମତ୍ତପାମର" ପରି ଅନ୍ୟର ବିତ୍ତକୁ ନିଜର ବୋଲି ଡିଣ୍ଡିମ ପିଟି କବି ନିନ୍ଦାର ଶିକାର ହୋଇଛନ୍ତି । ଏ ସମସ୍ତ ଘଟଣା ୧୮୯୦ରୁ ୧୮୯୩ ମଧ୍ୟରେ ସଂଘଟିତ ହୋଇଯାଇଛି । ଇନ୍ଦ୍ରଧନୁ ଓ ବିଜୁଳି ଲଢ଼େଇରେ, ବିଜୁଳି ପଛେଇ ଯାଇଛି ।

ଯା' ପରଠୁଁ କବିଙ୍କର ଆସିଛି ଆତ୍ମସମୀକ୍ଷାର ମୁହୂର୍ତ୍ତ । ସେ ପଛକୁ ଫେରି ଚାହିଁଛନ୍ତି । ପଛର କର୍ମ ପ୍ରବାହକୁ ଲକ୍ଷ୍ୟ କରିଛନ୍ତି—ସେଥିରେ ଥିବା ସତ୍ୟ-ମିଥ୍ୟାର ଯଥାର୍ଥ ଆକଳନ ନିଜ ବିବେକ ତରାଜୁରେ ତଉଲି ସ୍ଥିର କରିଛନ୍ତି । ଠିକ୍ ତା'ପରେ ତାଙ୍କ ପ୍ରତିଭାର ଚରମ ଉତ୍କର୍ଷ ପ୍ରକାଶ ପାଇଛି ତାଙ୍କ ପରବର୍ତ୍ତୀ ତିନୋଟି କାବ୍ୟରେ । ସେ ତିନୋଟି କାବ୍ୟ ହେଲା—ଚିଲିକା, ମହାଯାତ୍ରା ଓ ଦରବାର ।

"× × × × ×

ସହନ୍ତି ଧାରପାତ ଶଇଳଗଣ
ଖଳ ବଚନ ଯଥା ସହେ ସୁଜନ ।
ବା
ଦର୍ଦ୍ଦୁର ରବ ଶୁଣି ନୀରବ ପିକ
ମୂଢ଼ସଭାରେ ମୂକ ଯଥା ଧାର୍ମିକ ।"

ରାଧାନାଥଙ୍କ ବ୍ୟକ୍ତିଗତ ଆନ୍ଦୋଳିତ-ମଥିତ ଚିତ୍ତର ଆର୍ତ୍ତବିଳାପ ଆମେ ଏହି ପଦ ଦୁଇଟିରେ ଲକ୍ଷ୍ୟ କରୁ । ପ୍ରତ୍ୟେକ ମଣିଷ ଗୋଟିଏ ଗୋଟିଏ ଚନ୍ଦ୍ର । ଚନ୍ଦ୍ରର ଦୁଇଟି ପାର୍ଶ୍ୱ-ଆଲୋକ ଓ ଅନ୍ଧାର । 'ଆଲୋକ' ସକଳ ପ୍ରଶଂସାର, ଧନ୍ୟବାଦର ପାତ୍ର । 'ଅନ୍ଧାର'ନିନ୍ଦା, ଅପମାନ ଏବଂ ବିରକ୍ତିର ମୂଳହେତୁ । ଗୁଣଗ୍ରାହୀ ପଣ୍ଡିତ ବ୍ୟକ୍ତିମାନେ ଏଇକଥା ବୁଝିପାରି ଆତ୍ମସନ୍ତୋଷ ଲାଭ କରନ୍ତି । ଖଳବଚନକୁ ଖାତିର କରନ୍ତି ନାହିଁ । ସମୟ ଓ ପରିବେଶର ଦାବିରେ ରାଧାନାଥ ଯେଉଁ ଦୁଷ୍କର୍ମ କରିଥିଲେ ସେଥିପାଇଁ ତାଙ୍କୁ ଖଳବଚନ ଶୁଣିବାକୁ ପଡ଼ିଲା ଏବଂ ନୀରବରେ ସବୁ ନିନ୍ଦା ଅପମାନକୁ ହଜମ କରିବାକୁ ହେଲା । ଆଉ ଯେଉଁ କେତେକ ଆଲୋଚକ ବ୍ୟକ୍ତିଗତ ଅସୂୟା ଯୋଗୁଁ ରାଧାନଥଙ୍କର କୁତ୍ସାରଟନା କରୁଥିଲେ । ଦର୍ଦ୍ଦୁର ରବ ଶୁଣି ପିକ ନୀରବ ରହିଲା ପରି ବା ମୂଢ଼ ସଭାରେ ଧର୍ମପ୍ରାଣ ବ୍ୟକ୍ତିଙ୍କ ପରି ରାଧାନାଥ ନୀରବ ରହି ମଥାପାତି ସେ ସବୁକୁ ସହିଗଲେ । ତାଙ୍କର ଏଇ ମହତପଣିଆ ପାଇଁ ପରବର୍ତ୍ତୀ କାଳରେ ତାଙ୍କର କେତେକ ଶତ୍ରୁ-ମିତ୍ରରେ ପରିଣତ ହୋଇ ପାରିଥିଲେ । ଏହା ହିଁ ବିଧିପ୍ରଦତ୍ତ ପ୍ରତିଭାର ଏକ ଅମୃତମୟ ଅବଦାନ ।

ରାଧାନାଥଙ୍କ ଚିତ୍ତାକାଶରେ ନାନା ଭାବର ଉଦୟ ହୋଇଛି ବହୁ ନୂଆ ନୂଆ ଭାବ । ଯେଉଁ ଭାବର ସ୍ଫୁରଣ ଦେଶ ପାଇଁ, ଜାତି ପାଇଁ ଏକାନ୍ତ ଅପରିହାର୍ଯ୍ୟ ସେଇ ପ୍ରକାର ଭାବ ସେ ସମୟକୁ କଂଗ୍ରେସ (୧୮୮୫) ଜନ୍ମ ନେଇ ସାରିଲାଣି । ନିଜ ଦେଶ ଓ ନିଜ ଜାତିର ଗର୍ବ ଏବଂ ଗୌରବକୁ ବୁଝିବା ପାଇଁ ଜନ ଚିତ୍ତରେ ଆଗ୍ରହର ପ୍ରବଳ ଜୁଆର ଲକ୍ଷ୍ୟ କରାଗଲାଣି । କବି ଚିତ୍ତ ବର୍ତ୍ତମାନ ଏଇ ଦିଗ ପ୍ରତି ଆକୃଷ୍ଟ ହେଲା, ହେବା ଉଚିତ ମଧ୍ୟ । ଏଇ ପ୍ରକାର ମୁହୂର୍ତ୍ତକୁ ସମୟ ଅତି ସତର୍କ ହୋଇ ଜନ୍ମଦିଏ ଏବଂ କାଳଚକ୍ରର ଅଗ୍ରଗତିରେ ସେଇ ମୁହୂର୍ତ୍ତଟି ଚିରଭାସ୍ୱର ହୋଇ ବଞ୍ଚିରହେ ।

ଏକ ପରାଧୀନ ଜାତି ଯେତେବେଳେ ସ୍ୱାଧୀନ ହେବାର ସ୍ୱପ୍ନ ଦେଖେ, ସେ ଆଗ ନିଜକୁ, ନିଜର ସ୍ଥିତିକୁ, ନିଜର ଐଶ୍ୱର୍ଯ୍ୟକୁ, ନିଜର ଶକ୍ତିକୁ, ନିଜର ଶତ୍ରୁଙ୍କୁ ଚିହ୍ନିବାକୁ ଉଦ୍ୟମ କରେ । ତା'ପରେ ତାର ଯୋଜନାବଦ୍ଧ କର୍ମପ୍ରଣାଳୀ ତାକୁ ବିଜୟ ପଥରେ ଆଗେଇନିଏ । ସବୁ ପରାଧୀନ ଜାତିର ସ୍ୱାଧୀନ ଆକାଙ୍‌କ୍ଷା ମୂଳରେ ଏହି ସତ୍ୟଟି ବିଦ୍ୟମାନ । ରାଧାନାଥଙ୍କ ଏଇ ଉପଲବ୍ଧିରୁ 'ଚିଲିକା', 'ମହାଯାତ୍ରା' ଓ ଦରବାରର ଜନ୍ମ । ସାତଶହ ବାଉନ (୭୫୨) ଧାଡ଼ିରେ ଚିଲିକାର ବର୍ଣ୍ଣନା ଆରମ୍ଭ ଓ ଶେଷ । ୯୦୨୪ଟି ଅକ୍ଷର ମଧ୍ୟରେ କବି ଗୋଟିଏ ବିରାଟ ଐତିହ୍ୟସମ୍ପନ୍ନ ଜାତିର, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଚିତ୍ର ଅଙ୍କନ କରିଛନ୍ତି । ସୌନ୍ଦର୍ଯ୍ୟ ପ୍ରେମରୁ, ଦେଶପ୍ରେମ ଓ ଜାତିପ୍ରେମର ଊର୍ମିମାଳାରେ ଚିଲିକାର ପଙ୍‌କ୍ତି ରସାଳ ହୋଇ ଉଠିଛି ।

"ଦେବୀ ବୀଣାପାଣି କେଉଁ ପାପଫଳେ
କରୁଣା ତୋହର ଊଣା ଏ ଉତ୍କଳେ ?
ସ୍ୱଭାବେ ଉତ୍କଳ ଶୋଭାର ନିଧାନ
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ ।
ବିନୁ ସିନା ମାତା ହୋଇଛି ବିବଶା
ଭଜିଛି ଅରଣ୍ୟ ପ୍ରସୂନର ଦଶା
କ୍ଷୁଦ୍ର ଶିପ୍ରାସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ ।
ସ୍ୱରୂପା ଅଂଶୁପା ଲୋକେ ଅଗୋଚର
ପୂଜାସ୍ପଦ ହେଲା ଗୋଷ୍ପଦ ପୁଷ୍କର ।
ତୋର କୃପାବଳେ କ୍ଷୁଦ୍ର ମହୀୟାନ
ତୋ' କୃପାବିହୁନେ ବଡ଼ ହୁଏ ସାନ ।

ଖର୍ବ ଗୋବର୍ଦ୍ଧନ ଗିରୀନ୍ଦ୍ର ବୋଲାଏ
ମହାତୀର୍ଥ ରୂପେ ଲୋକେ ପୂଜା ପାଏ ।
ସ୍ୱଭାବେ ଗିରୀନ୍ଦ୍ର ହୋଇ ମେଘାସନ
ଲଭି ନାହିଁ ଗିରି ସମାଜେ ଆସନ ।''

ଉଦ୍ଧୃତାଂଶଟି ପାଠ କଲେ କବି ହୃଦୟର ଦେଶ ପ୍ରୀତି ଓ ଜାତି ପ୍ରେମର ପ୍ରବଳ ଅନୁରାଗକୁ ବୁଝିହୁଏ । ଏହିପରି ଅନେକ ଦୃଷ୍ଟାନ୍ତ ଚିଲିକାରୁ ଗ୍ରହଣ କରାଯାଇ କବିଙ୍କ ସୌନ୍ଦର୍ଯ୍ୟଲିପ୍ସା ଏବଂ ଦେଶପ୍ରେମର ସୂଚନା ଦିଆଯାଇପାରେ ।

ଅସମାପ୍ତ ହୋଇବି, ମହାଯାତ୍ରା ଆଧୁନିକ ଉତ୍କଳ ସାହିତ୍ୟର ପ୍ରଥମ ମହାକାବ୍ୟ (ଏପିକ୍) । ଏହି ମହାକାବ୍ୟ ସୃଷ୍ଟିର ଅନ୍ତରାଳରେ କବିଙ୍କ ହୃଦୟରେ ଜାଗ୍ରତ ଜାତୀୟଚେତନାର ମୂଳ ଧାରାଟି ଲକ୍ଷଣୀୟ । ସତେ ଯେପରି 'ସମୟ' ଏହିପରି ଏକ ସଂକେତର ଅପେକ୍ଷା ରଖିଥିଲା ଏବଂ ମହାଯାତ୍ରା ରୂପରେ ତାହା ଆତ୍ମପ୍ରକାଶ କଲା । କାବ୍ୟର ସାମଗ୍ରିକ ଆଲୋଚନା ଏଠାରେ ସମ୍ଭବ ନୁହେଁ; ମାତ୍ର ଗୋଟିଏ ଦୃଷ୍ଟାନ୍ତରୁ କବି ଦେଶବାସୀଙ୍କୁ କିପରି ପ୍ରୋତ୍ସାହନ ଯୋଗାଇଛନ୍ତି ତାର ସୂଚନା ପ୍ରଦାନ କରୁଅଛି । 'ଦିଲ୍ଲୀଶ୍ୱର ପୃଥ୍ୱୀରାଜଙ୍କ ସେନାପତି ଅମର୍ଷୀ—ଯୁଦ୍ଧପ୍ରତି ପରାଙ୍ମୁଖ ସୈନ୍ୟମାନଙ୍କୁ ଉଦ୍ଦେଶ୍ୟ କରି ଯାହା କହିଛନ୍ତି, ତାହା ଏହିପରି—

''ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟିକି ଆର୍ଯ୍ୟନାମ ଦାୟାଦ ଜଗତେ ??
ବିନାଯୁଦ୍ଧେ ନ ଦେବାକୁ ସୂଚ୍ୟଗ୍ରମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର ତାଙ୍କରି ଶୋଣିତ
ବହେଟି କି ଆହେ ଯୋଧେ, ତୁମ ଧମନୀରେ ?
ଧିକ୍ ଧିକ୍ ଶତଧିକ୍ ଧିକ୍ ଏ ମନ୍ତ୍ରଣା,
ଏ ହୀନ ମନ୍ତ୍ରଣା ଭୀରୁ-ପାମର ଉଚିତ,
ଉଚ୍ଚାରି ଯା' କଲ ଶୂରେ ଅପବିତ୍ର ଆଜି
ନିଜମୁଖ, ଶ୍ରୋତା କର୍ଣ୍ଣ-ଆର୍ଯ୍ୟ ବଂଶ ଧରେ !
ଅବା ଅଭାଜନ ତୁମେ ଏ ନାମ ଧାରଣେ ?
ଭୀରୁତା ଯେ ସେଇ ସିନା ବୀରର ମରଣ
ଭୀରୁ ଭାବ ବହି ତୁମେ ମୃତ ଏ ଜଗତେ
ଲୋଡ଼ଇ କି କେହି କେବେ ମୃତର ମନ୍ତ୍ରଣା ?
ପଳାଇ ଏ ରଣସ୍ଥଳୁ ରହିବ କି ଜୀଇ
ଚିରଦିନ ଉଠିବ ? ଯେବେ ନାହିଁ ସେ ଦୁରାଶା
ନିଜମୁଖ, ପିତୃ ନାମ-ବୃଥାକଳଙ୍କିତ

କରିବ ଏରୂପେ କିମ୍ବା ପ୍ରାଣରଙ୍କ ମୂଢ଼େ ?
X X X X X
କି ସାହସେ କଲ ତୁମ୍ଭେ ଅପବିତ୍ର ଆସି-
ଏ ତୀର୍ଥ, ଆର୍ଯ୍ୟର ଏହି ଧର୍ମ ଯୁଦ୍ଧସ୍ଥଳୀ ?
X X X X X

ନିଜ ସୈନ୍ୟଙ୍କ ଉଦ୍ଦେଶ୍ୟରେ—

ଆସହେ ସଂଗ୍ରାମ ସିଂହ ଅଜାମିଳ ବୀରେ
ଏ ମହାକଳଙ୍କ ଯାଇ ପଖାଳିବା ଖରେ
ରଣକ୍ଷେତ୍ରେ ରିପୁଲୋହେ ଅବା ନିଜ ଲୋହେ
X X X X X
ଆଣିବା ବିଜୟଲକ୍ଷ୍ମୀ ନ ପାରିଲେ ତାହା
ବୀରଶେଯେ ଆଶ୍ରିବା ତା ନିଜହାତ କଥା
ମନ୍ତ୍ରର ସାଧନ ଅବା ଶରୀରପାତନ
ଆର୍ଯ୍ୟର ଯା ସାରଧର୍ମ ପାଳ ଆର୍ଯ୍ୟବୀରେ ।"

(ରାଧାନାଥ ଗ୍ରନ୍ଥାବଳୀ- ମହାଯାତ୍ରା)

ଜାତୀୟ ଜାଗରଣ ପର୍ବରେ ରାଧାନାଥଙ୍କର ଏହି ଆଗ୍ନେୟ ଆହ୍ୱାନ ବାସ୍ତବରେ ତତ୍‌କାଳର ପ୍ରତ୍ୟେକ ବୁଦ୍ଧିଜୀବୀ ଓ ପାଠକମାନଙ୍କ ପ୍ରାଣରେ ଶିହରଣ ସୃଷ୍ଟି କରିଥିଲା । ୭ଶହ ବର୍ଷ ତଳର ଇତିହାସ ନବଜନ୍ମଲାଭ କରି, ଏକ ଅଧଃପତିତ-ପରାଧୀନ ଜାତିକୁ ପୁନଃଜାଗରଣର ମହାମନ୍ତ୍ରରେ ଅଭିମନ୍ତ୍ରିତ କରିଥିଲା । ଉତ୍କଳଗୌରବ ମଧୁସୂଦନ ଖଣ୍ଡିତ ଉତ୍କଳକୁ ଏକତ୍ରୀକରଣ କରିବା ଉଦ୍ଦେଶ୍ୟରେ ବ୍ୟକ୍ତିସ୍ୱାର୍ଥ, ଭୋଗଲିପ୍‌ସା, ତୋଷାମୋଦିଆ ପ୍ରବୃତ୍ତିକୁ ଜଳାଞ୍ଜଳି ଦେବାପାଇଁ ସଭାମଞ୍ଚରୁ ଯେଉଁପରି ଆଗ୍ନେୟ ଆହ୍ୱାନ ଶୁଣାଉଥିଲେ; ତାର କିଛିକାଳ ପୂର୍ବରୁ ରାଧାନାଥ ଅମର୍ଷୀଙ୍କ ମୁଖରେ ସେଇପ୍ରକାର ତେଜୋଦୀପ୍ତ ବୀରୋଚିତ ଉଦାତ୍ତ-ଓଜସ୍ୱିନୀ ବକ୍ତବ୍ୟ ପ୍ରଦାନ କରିଅଛନ୍ତି ।

ତୋଷାମୋଦକାରୀ, ସ୍ୱାର୍ଥାନ୍ୱେଷୀ ବ୍ୟକ୍ତିମାନଙ୍କର କୁକୁର ପ୍ରକୃତି । ସର୍ବଦା ଅଇଁଠା ପତ୍ରରେ ସେମାନଙ୍କର ଧ୍ୟାନ । ଏହା ତତ୍‌କାଳର ଜନଚିତ୍ତର ଏକ ସାର୍ଥକ ଚିତ୍ର । ଉଭୟେ ଉତ୍କଳ ଗୌରବ ମଧୁସୂଦନ ଓ ରାଧାନାଥ ଏହା ହୃଦୟଙ୍ଗମ କରିଅଛନ୍ତି ।

ଦୀର୍ଘକାଳ ଧରି ଶିକ୍ଷକତା କରି, ଶିକ୍ଷା ବିଭାଗର ନିୟାମକ ହୋଇ ମଧ ରାଧାନାଥ ଶିକ୍ଷିତଗୋଷ୍ଠୀଙ୍କ ମନରୁ ସ୍ୱାର୍ଥପରତା, ଅର୍ଥଲୋଲୁପତା, ତୋଷାମୋଦପ୍ରିୟତା ଆଦି ଦୁର୍ଗୁଣ ଦୂର କରି ପାରି ନଥିଲେ । ଜଣେ ପ୍ରମୁଖ କବି

ଭାବରେ ସେ ତାଙ୍କର କର୍ତ୍ତବ୍ୟ ପାଳନରେ ଏହିଠାରୁ ଅଧିକ ଯତ୍ନବାନ୍ ଏବଂ ସଚେତନ ହେଲେ । ସେ ଲକ୍ଷ୍ୟକଲେ—ଆଧୁନିକ ଶିକ୍ଷା ଏବଂ ଶିକ୍ଷିତଗୋଷ୍ଠୀ ବ୍ୟାପକ ଅର୍ଥରେ ସମାଜର ସାଧାରଣ ବର୍ଗଙ୍କର ବିଶେଷ ଉପକାରରେ ଆସିପାରି ନାହାନ୍ତି । ଭୋଗସର୍ବସ୍ୱ ଚିତ୍ତବୃତ୍ତି, ଅର୍ଥ ସଂଗ୍ରହର ତୀବ୍ର ଲାଳସା ଏବଂ ବ୍ୟକ୍ତିଗତ ସ୍ୱାର୍ଥ ହାସଲ ପାଇଁ ନୀତିଅନୀତିର ଅବମାନନା, ସମାଜରେ ଏକ ମହାକଳଙ୍କ, ବଡ଼ବ୍ୟାଧି । ଶାସକବର୍ଗ କହିଲେ ତତ୍କାଳର ସରକାରୀ କର୍ମଚାରୀଗୋଷ୍ଠୀ ଏବଂ ଦେଶୀୟ ରାଜା ଏବଂ ଜମିଦାରମାନଙ୍କୁ ବୁଝାଯାଉଥିଲା । ଏମାନଙ୍କ ମଧ୍ୟରୁ ଅଧିକାଂଶ ଅର୍ଥଲୁପୀ, ଭୋଗସର୍ବସ୍ୱ, ସ୍ୱାର୍ଥପର ଓ ଅହଙ୍କାରୀ ଥିଲେ । ପ୍ରଜାବର୍ଗଙ୍କୁ ଭିନ୍ନ ଭିନ୍ନ ଉପାୟରେ ଶୋଷଣ କରି, ଉପରିସ୍ଥ ହାକିମମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ, ଏମାନେ ନାନାଦି ହୀନକର୍ମ କରୁଥିଲେ । ରାଧାନାଥ ଏଇସବୁର ଏକ ବାସ୍ତବ ଚିତ୍ର ଦରବାରରେ ପ୍ରଦାନ କରିଛନ୍ତି ।

''ତୁମ୍ଭ ପିତୃକୂଳ ପରମ ଉଦାର
ରାଜ୍ୟ ମଣୁଥିଲେ ଏକ ପରିବାର
କାହିଁ ଗଲା ସେଇ ପ୍ରାଚୀନ ସୁଧାରା
ରାଜା-ପ୍ରଜା ଏବେ ହେଲେ ବାଜପାରା
କାଢ଼ିଦେଲା ରାଜଭୋଗ ଅଭିଳାଷ
ପ୍ରଜାମୁଖୁ ତାଙ୍କ ଶ୍ରମାର୍ଜିତ ଗ୍ରାସ
ଦେଶୀ ହୋଇ ତୁମ୍ଭେ ଆଚରିଲ ନୀତି
ନିର୍ମମ ବିଦେଶୀ-ସର୍ବଶୋଷି-ନୀତି ।
ବାତ୍ସଲ୍ୟେ ନ ବାନ୍ଧି ପ୍ରଜାଙ୍କର ଚିତ୍ତ,
ବିଦେଶୀ ସଙ୍ଗୀନେ କଲ ତାଙ୍କୁ ଭୀତ
ଗନ୍ତାଘର ହେଲା ତୁମ୍ଭର ସର୍ବସ୍ୱ
ସର୍ବସ୍ୱ-ପ୍ରାସାଦ, ଗାଭୀ-ହସ୍ତୀ-ଅଶ୍ୱ ।
ରାଜ ଧର୍ମ ହେଲା ପ୍ରଜାଧନ ବୁହା
ମନ୍ତ୍ରୀ ହେଲେ ଖଳ, ଖଣ୍ଡ କାନକୁହା
ତଣ୍ଡି ଦୁଃଖୀ-ରଙ୍କୀ ଅରକ୍ଷିତ ରାଣ୍ଡ
ବିଦେଶୀଙ୍କୁ ଖୁଆଇଲ କୁକୁଟାଣ୍ଡ ।
ନ ପାଇଲ ଦୁଃଖୀ ପ୍ରଜା ଖୁଦ କୁଣ୍ଡା
ନେଲେ ଘିଅ ଅଟା ସଙ୍ଗେ ଛାଗମୁଣ୍ଡା
କାଣ୍ଡଜ୍ଞାନ ହୀନ କାଣ୍ଡପୃଷ୍ଟ ହୁଣ୍ଡା
ଅଭୀଷ୍ଟ ଦେବତା କଲ ଲୋଭ ପ୍ରେତ

ନ ଚେତିଲ ଖାଇ ବିପଦର ବେତ ।
× × × × ×
ଅର୍ଜୁଅଛ ସିନା କେବଳ ଦୁଷ୍କୃତ
ଘୃଷ୍ଟି ମୁଖେ ଢାଳି ଯଜ୍ଞକୁଣ୍ଡ ଘୃତ
ଏ ଅପ୍ରିୟ ସତ୍ୟେ ଛଳକୁ ନ ଧରି
ନିଜ ଶ୍ରେୟ ଦେଖ ଚିତ୍ତେ ଚିନ୍ତାକରି ।''

ଆମ ଦେଶୀୟ ପରମ୍ପରାରେ ରାଜା ଏବଂ ପ୍ରଜାଙ୍କ ସମ୍ପର୍କ ପିତା ଓ ପୁତ୍ରର ସମ୍ପର୍କ ପରି ଘନିଷ୍ଠ । ପ୍ରଜାଙ୍କୁ ନିଜର ବତ୍ସ ପରି ପାଳନ କରୁଥିବା ରାଜାଙ୍କୁ ପ୍ରଜାବତ୍ସଳ କୁହାଯାଏ । ଏ ପରମ୍ପରା ବହୁ ଆଦିମ କାଳରୁ ଏ ଦେଶରେ ପ୍ରଚଳିତ । ମାତ୍ର ଅତି ଆଶ୍ଚର୍ଯ୍ୟଜନକ ଭାବେ ଏ ଭାବ ଶାସକଗୋଷ୍ଠୀଙ୍କ ହୃଦୟରୁ ଦୂରେଇ ଯାଇଛି । ରାଜା-ପ୍ରଜାର ସମ୍ପର୍କ, ପିତା-ପୁତ୍ର ସମ୍ପର୍କ ନହୋଇ ବାଜପାରାର ସମ୍ପର୍କ ହୋଇ ପଡ଼ିଛି । ରକ୍ଷକ-ଭକ୍ଷକ ହୋଇ ପ୍ରଜାର ସର୍ବସ୍ୱ ଲୁଣ୍ଠନ କରୁଛି । ପ୍ରଜାର ଶ୍ରମାର୍ଜିତ ଧନରେ, ରକ୍ତରେ ରାଜାର ଭୋଗଯଜ୍ଞ ଆହୂତ ହେଉଛି । ବିଦେଶୀମାନଙ୍କ ନିର୍ମମ ସର୍ବଶୋଷାନୀତି ସହିତ ଦେଶୀୟ ରାଜାରାଜୁଡ଼ା, ଜମିଦାର ଏବଂ ବିଦେଶୀ ସରକାର ଅଧୀନସ୍ଥ କର୍ମଚାରୀଙ୍କର ଶୋଷଣକ୍ରିୟା ସମାନ ତାଳରେ ଗତି କରି ଚାଲିଛି । ଗୁଳି ବଂଧୁକର ଧମକ ଦେଇ ପ୍ରଜାମାନଙ୍କୁ ନାନାମତେ ଅତ୍ୟାଚାର କରାଯାଉଛି । ସମାଜର ନିମ୍ନତମ ବର୍ଗ ଦୁଃଖୀ-ରଙ୍କୀ, ଅରକ୍ଷିତ-ବିଧବା-ବୃଦ୍ଧ-ଅସହାୟମାନଙ୍କୁ ମଧ୍ୟ ନାନାବିମତେ ଦୁଃଖ ଓ ଯନ୍ତ୍ରଣା ଦିଆଯାଉଛି । ପ୍ରଜାଙ୍କ ତଣ୍ଟିଚିପି-ବିଦେଶୀ ରାଜାର ପଦଲେହନ କରିଚାଲିଛି । ଏହି ଭୟାବହ ଦୁଷ୍କୃତିରୁ ଯଦି ସେମାନେ ନିଜକୁ ଉଦ୍ଧାର ନ କରନ୍ତି, ତେବେ ନର୍କଭୋଗ ଅବଶ୍ୟମ୍ଭାବୀ ହୋଇ ପଡ଼ିବ । ଏହା ଅପ୍ରିୟ ହେଲେ ମଧ୍ୟ ନିଷ୍ଠୁର ସତ୍ୟ । ଏହି ସତ୍ୟ ତଥ୍ୟ ପ୍ରକାଶରେ କବିର କୁଣ୍ଠା ନାହିଁ । ଭୟ ନାହିଁ । ପ୍ରତିଭାର ଏହା ହିଁ ଚରମ ଉତ୍କର୍ଷ ।

କବି ପୁଣି ଆତ୍ମସଚେତନ ହୋଇ ଉଠିଛନ୍ତି । ସେ ଭାବିଛନ୍ତି, ଶାସକବର୍ଗ ତାଙ୍କର ଏହି ମନ୍ତବ୍ୟ ପାଇଁ ତାଙ୍କରି ଶରରେ ତାଙ୍କୁ କ୍ଷତାକ୍ତ କରିବେ । ସେ ତେଣୁ ଅତି ବିନମ୍ରତାର ସହିତ ବାସ୍ତବ ସତ୍ୟକୁ ପ୍ରକାଶ କରି ଭବିଷ୍ୟତ ବଂଶଧରମାନଙ୍କୁ ଏ ଭୟଙ୍କର ଅଧଃପତନରୁ ରକ୍ଷା ପାଇବା ପାଇଁ ନିବେଦନ ଜଣାଇଛନ୍ତି । ସେ କହନ୍ତି—

ମଣ ନାହିଁ ମୁହିଁ ନେଇଛି ଏସନ
ଜ୍ଞାନ ଦର୍ପେ ଜ୍ଞାନ ଦାତାର ଆସନ
ଥୋଇ ଏ ମୁକୁର, ତୁମ୍ଭ ଆଗେ ଭାଇ,

ନିଜ ମୁଖ ମୁଁ କି ନିଜେ ଦେଖୁ ନାହିଁ ।
ପାସୋରି ନାହିଁ ମୁଁ ହେଇଅଛୁ ବ୍ୟସ୍ତେ
ଏକା ଅନ୍ଧ କୂପେ ଦରାଣ୍ଡି ସମସ୍ତେ
ପାସୋରି ନାହିଁ ମୁଁ ସ୍ୱପ୍ନେ କଦାଚିତେ
ସର୍ବେ ଅଛେ ଏକ ଦଦରା ବୋଇତେ ।
ଆଗେ ପଛେ ଟେକି ଭୀମ ଊର୍ମିମାନ
ଭବ ଜଳଧିରେ ଗର୍ଜଇ ତୋଫାନ
ଯେଣେ ମନ ତେଣେ ଚାଲୁଅଛି ନାହା
ନାହିଁ କଢୁଆଳ ଦେଖାଇବ ରାହା
ଜାଣେ ମୁହିଁ ଏହି ସାଂପ୍ରତିକ ଦଳେ
ହୀନଠାରୁ ହୀନ ମୁହିଁ ଜ୍ଞାନବଳେ
ଅଜ୍ଞାନ ଅଟେ ମୁଁ ଏ ଜ୍ଞାନୁ ବଞ୍ଚିତ
ଭାଳ ନାହିଁ ଭାଇ, ମୋତେ କଦାଚିତ୍ତ ।
× × × ×
ସବୁଠାରୁ ମୁହିଁ କଳୁଛି ଅଧିକ
ସବୁଠାରୁ ଯେଣୁ ହଲୁଛି ଅଧିକ ।
ତେଣୁ ଆର୍ତ୍ତେ ସିନା ପକାଉଛି ହୁରି
ନୋହେ ଏହା ଜ୍ଞାନ-ଗୁମାନ-ଚାତୁରୀ ।''

କବି ଦିବ୍ୟଦ୍ରଷ୍ଟା । ସେ ଧୀର ଚିତ୍ତ, ସ୍ଥିରବୁଦ୍ଧିରେ ସମାଜକୁ ଅନୁଧ୍ୟାନ କରି ଏକ ମହାସଙ୍କଟର ସୂଚନା ଦେଇଛନ୍ତି । ଏହି ମହାସଙ୍କଟ ଆଜି ଏକଶହ ବର୍ଷ ପରେ ବିପୁଳ କାୟା ବିସ୍ତାର କରି ଏଦେଶକୁ, ଦେଶବାସୀଙ୍କୁ ଅଗଣିତ ଶୋଷିତବର୍ଗଙ୍କୁ ନିଃଶେଷ କରିଦେବାକୁ ବସିଛି । କବିଙ୍କର ସତର୍କବାଣୀ ଯଦି ସେଇଦିନ ଲୋକ ଚିତ୍ତକୁ ପ୍ରଭାବିତ କରିଥାନ୍ତା, ତତ୍କାଳର ଶିକ୍ଷିତ ଗୋଷ୍ଠୀ ଏବଂ ଶାସକଗୋଷ୍ଠୀ ସାମାନ୍ୟତମ ଚେତନା ଲାଭ କରିପାରିଥାନ୍ତେ, ତେବେ ଏ ଦେଶର ଭାଗ୍ୟ ଆଜି ଅନ୍ୟପ୍ରକାରର ହୋଇଥାନ୍ତା । ମାତ୍ର ତାହା ସେତେବେଳେ ଏକ ବ୍ୟଙ୍ଗ କାବ୍ୟ ଭାବେ ଗ୍ରହଣ କରାଯାଇଥିଲା । କବି ରାଜା-ରାଜୁଡ଼ାଙ୍କୁ ଆକ୍ଷେପ କରିବା ମୂଳରେ ତାଙ୍କର ବ୍ୟକ୍ତିଗତ 'କ୍ରୋଧ' ବିଶେଷ କାର୍ଯ୍ୟ କରିଥିଲା ବୋଲି କୁହାଯାଉଥିଲା; ମାତ୍ର ବାସ୍ତବରେ ଏକ ମୁମୂର୍ଷୁ ଜାତିର ପୁନର୍ଜୀବନ ପାଇଁ ଏକ ମହାନ ମାନ୍ତ୍ରିକର ଏହା ଥିଲା ମନ୍ତ୍ରପାଠ । ଏହା ହିଁ ଦରବାର କାବ୍ୟର ପ୍ରାଣବାଣୀ ଅସହାୟ-ଅଜ୍ଞାନ ମଣିଷକୁ ମଶାଲ ଦେଖାଇବାର ଚେତାବନୀ ।



# ନୈସର୍ଗିକ ସୌନ୍ଦର୍ଯ୍ୟର ଶ୍ରେଷ୍ଠ ରୂପାୟନ : ଚିଲିକା

ଡଃ ରଞ୍ଜିତା ନାୟକ

"ଆହା ! ଏ ଶୋଭାର କାହିଁ ପଟାନ୍ତର ?
ଥିଲେ ଥିବ ସ୍ୱର୍ଗେ, ମର୍ତ୍ତ୍ୟେ ଅଗୋଚର ।
ପାଶୋରିବ ଦେଖି କହ କେହୁଜନ
ଏ ଶୋକପାସୋରା ଅପ୍‌ସରା ଭୁବନ
ଭାରତୀ ଭକତ କେଉଁ ରୂପବପାୟୀ
ତୃପ୍ତ ହେବ ଏହା ଥରେ ମାତ୍ର ଧାୟୀ ।
ବଚନ ବିଷୟ ନୁହଁଇ ଏ ଛବି
ହୃଦ ସେ କେବଳ ପାରେ ଅନୁଭବି ।" —ଚିଲିକା—

ଚିଲିକାର ନୈସର୍ଗିକ ସୌନ୍ଦର୍ଯ୍ୟରେ କବିବର ରାଧାନାଥ ମୁଗ୍ଧ, ଚକିତ । ରୂପପିପାସୁ କବିଚିତ୍ତ ଆତ୍ମବିଭୋର । କବି ଦୃଷ୍ଟିରେ ଚିଲିକା ଉତ୍କଳ-କମଳାର କେବଳ ବିଳାସର କ୍ଷେତ୍ର ନୁହେଁ, ଚାରୁ ଅଳଙ୍କାର ନୁହେଁ ବା ଶୋଭାର ଭଣ୍ଡାର ନୁହେଁ, ଏହା ହାସ୍ୟମୟୀ, ଲାସ୍ୟମୟୀ ଏକ ରୂପସୀ ତରୁଣୀ । ପ୍ରକୃତିକୁ ସଚଳ ଜୀବନ୍ତ କାବ୍ୟନାୟିକା ଭାବେ ଉପସ୍ଥାପିତ କରିବାକୁ ରାଧାନାଥଙ୍କ ଲେଖନୀ ଯେଭଳି ପ୍ରୟାସ କରିଛି, ତାହା ପାଠକକୁ ଯେତିକି ବିସ୍ମିତ କରେ ସେତିକି ଚମତ୍କୃତ କରେ ।

ଓଡ଼ିଆ ସାହିତ୍ୟରେ ପ୍ରାକ୍‌ସାରଳା ଯୁଗରୁ ଆରମ୍ଭ କରି ସାରଳା, ବଳରାମ, ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ଓ କବିସୂର୍ଯ୍ୟଙ୍କ ଅମର କୃତିମାନଙ୍କରେ ସ୍ଥାନେ ସ୍ଥାନେ ପ୍ରକୃତି ବର୍ଣ୍ଣନା ବିଦ୍ୟମାନ । ସେସବୁ ପ୍ରକୃତି ଚିତ୍ରର ଧାରାବିବରଣୀ ମାତ୍ର । କଳାର ଦୈନ୍ୟ ସେଠି ପରିଲକ୍ଷିତ ହୁଏ । ଏହିସବୁ କାବ୍ୟରେ ନଦନଦୀ, ପାହାଡ଼ପର୍ବତ, ବଣଜଙ୍ଗଲ, ବୃକ୍ଷଲତା, ପଶୁପକ୍ଷୀ, ଚନ୍ଦ୍ରସୂର୍ଯ୍ୟ, ପ୍ରକୃତିର ପ୍ରାୟ ପ୍ରତ୍ୟେକ ବିଭାବର ଚିତ୍ର ଅତି ସୁନ୍ଦର ଭାବେ ଚିତ୍ରିତ ହେଲେ ମଧ୍ୟ ସେସବୁ, ଶୁଷ୍କ, ନୀରସ ଓ ମାଧୁର୍ଯ୍ୟହୀନ । ସେହି କାବ୍ୟକୃତିମାନଙ୍କରେ ପ୍ରକୃତି ଜୀବନ୍ତ ନୁହେଁ ଜଡ଼ । ନାୟକ ନାୟିକାଙ୍କ ମିଳନ ବା ବିବିଧ ଘଟଣାର ସହାୟକ ରୂପେ ପ୍ରକୃତି ସେଠି ଆତ୍ମପ୍ରକାଶ କରେ । ମାତ୍ର ପରବର୍ତ୍ତୀ ସମୟରେ ରାଧାନାଥଙ୍କ ଲେଖନୀ ମୁନରେ ପ୍ରକୃତି ଅନନ୍ୟ ପ୍ରତିଭାରେ ମଣ୍ଡିତ ହୋଇଛି । ପ୍ରକୃତି ଚିତ୍ରରେ କବିଙ୍କର

କଳାନୈପୁଣ୍ୟ ପ୍ରକଟିତ ହେବା ସହିତ ଜନ୍ମଭୂମି ପ୍ରୀତି ପ୍ରକାଶ ପାଇଲା । ଫଳତଃ ସାହିତ୍ୟରେ ପ୍ରକୃତି ଏକ ସ୍ୱତନ୍ତ୍ର ସ୍ଥାନଲାଭ କରିବାକୁ ସକ୍ଷମ ହୋଇଛି ।

ୱାର୍ଡ଼ସ୍‌ୱାର୍ଥଙ୍କ ପରି ରାଧାନାଥଙ୍କ ଲେଖନୀରେ ପ୍ରକୃତି ନବଜନ୍ମ ନେଇଛି । ପ୍ରକୃତି ସେଠି ସ୍ଥାଣୁ ନୁହେଁ, ଅଥର୍ବ ନୁହେଁ—କ୍ରିୟାଶୀଳ । ସେ ଅସରନ୍ତି ପ୍ରେରଣାର ଉତ୍ସ । ସେ ମାନବାୟିତ । ସୁଖ ବୁଝେ, ଦୁଃଖ ବି ବୁଝେ । ସେ ସମ୍ବେଦନଶୀଳ ! କବିଙ୍କ ଅନ୍ତର୍ଦୃଷ୍ଟିରେ ସମଗ୍ର ଜଗତ ଚୈତନ୍ୟମୟ । ଧୂଳି ଗୋଡ଼ି ମାଟିଠାରୁ ପାହାଡ଼, ପର୍ବତ, ଚନ୍ଦ୍ର, ସୂର୍ଯ୍ୟ, ଗଛଲତା, ନଈ, ସମୁଦ୍ର ପର୍ଯ୍ୟନ୍ତ ସଭିଏଁ ଜୀବନ୍ତ । ଏହି ଜୀବନର ଲୀଳାଖେଳା କେଉଁଠି କ୍ଷୀଣ କେଉଁଠି ତୀବ୍ର । ତେବେ ସମୟ, ସ୍ଥାନ ଓ ପାରିପାର୍ଶ୍ୱିକ ବାତାବରଣ ଦ୍ୱାରା ଏସବୁ ନିୟନ୍ତ୍ରିତ ।

ରାଧାନାଥ ବହିଃପ୍ରକୃତିର ସଫଳ ରୂପକାର । ଇନ୍ଦ୍ରିୟଗ୍ରାହୀ ବହିଃପ୍ରକୃତି ପ୍ରତି କବିଚିତ୍ତ ସତତ ଆକୃଷ୍ଟ । କବିଙ୍କ ଭାଷାରେ—“ମୋର ରଚନା ସହିତ ଜୀବନର କୌଣସି ସମ୍ପର୍କ ନାହିଁ, ମୁଁ କେବଳ ବହିଃ ସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଘେନି ବ୍ୟାପୃତ ଥିଲି । ପାର୍ବତୀୟ ପ୍ରଦେଶରେ ପୁନଃ ପୁନଃ ପରିଭ୍ରମଣ ନିବନ୍ଧନ ପ୍ରକୃତି ସହିତ ଆଳାପ ପରିଚୟର ମଧ୍ୟ ଯଥେଷ୍ଟ ସୁବିଧା ପାଇଥିଲି । ମୋର ଓଡ଼ିଆ କାବ୍ୟଗୁଡ଼ିକ ଉତ୍କଳୀୟ ପ୍ରକୃତିର ପ୍ରତିକୃତି କହିଲେ ମଧ୍ୟ ଚଳେ ।” କବିବର ରାଧାନାଥ ପ୍ରକୃତି ମଧ୍ୟରେ କୌଣସି ଗୂଢ଼ ରହସ୍ୟ ବା ତତ୍ତ୍ୱର ସନ୍ଧାନ କରି ନାହାନ୍ତି । କେବଳ ପ୍ରକୃତିର ବହିଃରୂପରେ ସେ ବିମୋହିତ । ଉପଲବ୍ଧିରେ ରସାଣିତ ଭାବକୁ ଆନ୍ତରିକତାର ସ୍ପର୍ଶରେ ସେ ମହିମାମୟ କରିଛନ୍ତି । ଶୁଷ୍କ ରସହୀନ ବସ୍ତୁରେ ମଧ୍ୟ ସେ ସୌନ୍ଦର୍ଯ୍ୟର ସନ୍ଧାନ କରିଛନ୍ତି । କବିଙ୍କ ସୌନ୍ଦର୍ଯ୍ୟପିପାସୁ ଦୃଷ୍ଟି ପ୍ରକୃତିର ସୌନ୍ଦର୍ଯ୍ୟ ନିରୀକ୍ଷଣ କରି କେବେହେଲେ କ୍ଳାନ୍ତ ହୋଇ ନାହିଁ । କବି ହୃଦୟରେ ଗୋଟିଏ ବସ୍ତୁ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଭାବର ସଞ୍ଚାର କରିଛି । ଏହି ଭାବ ପୁଣି ମହାଭାବକୁ ଉନ୍ନୀତ ହୋଇ ସୁନ୍ଦରରୁ ସୁନ୍ଦରତର ହୋଇଛି । ସେଥିପାଇଁ କବି କଣ୍ଠରୁ ନିର୍ଗତ ହୋଇଛି—

“ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।”

ଏହି ଅନୁଭୂତି ଯେତେବେଳେ କବିପ୍ରାଣରେ ଜଡ଼ିତ ହୋଇଛି ସେତେବେଳେ ସେ ଦିବ୍ୟଭାବର ସନ୍ଧାନ ପାଇଛନ୍ତି । ସେ ଆଉ କୌଣସି ତୁଚ୍ଛତାର ଶିକାର ହୋଇ ନାହାନ୍ତି । ଧୂଳିଧୂସରିତ କାଦୁଅ ମାଟିର ପୃଥ୍ୱୀ ତାଙ୍କୁ ସ୍ୱର୍ଗପରି ପ୍ରତୀୟମାନ ହୋଇଛି । ମାନବ ସହିତ ପ୍ରକୃତିର ଆନ୍ତରିକ ସମ୍ପର୍କ ପ୍ରତିଷ୍ଠା ପାଇଁ ସେ ଉଦ୍‌ଗ୍ରୀବ

ହୋଇଛନ୍ତି । ସେଥିପାଇଁ ପ୍ରାକୃତିକ ଶୋଭାରେ ତନ୍ମୟ କବିଙ୍କ ସୃଷ୍ଟି ଈଶ୍ୱରଙ୍କ ସୃଷ୍ଟି ଅପେକ୍ଷା ଅଧିକ ସୁନ୍ଦର ଓ ମନୋରମ ହୋଇ ପାରିଛି ।

କବି ରାଧାନାଥଙ୍କର ପ୍ରକୃତି ପ୍ରତି ଅନୁରାଗ ବାଲ୍ୟାବସ୍ଥାରୁ ସୂଚିତ । ମାତୃହୀନ ରାଧାନାଥଙ୍କ ପାଇଁ କୋଳାହଳମୟ ଜଗତଠାରୁ ଦୂରରେ ଥିବା ପ୍ରାକୃତିକ ପରିବେଶ ଶାନ୍ତିପ୍ରଦ ଥିଲା । ବିଜନତା ପ୍ରତି ତାଙ୍କର ଏହି ମୋହ ତାଙ୍କୁ ଭାବୁକ କରିଛି ଓ ପରବର୍ତ୍ତୀ ସମୟରେ କବିତ୍ୱର ସ୍ଫୁରଣରେ ତାଙ୍କୁ ସାହାଯ୍ୟ କରିଛି । ସମଗ୍ର ଓଡ଼ିଶାକୁ ସେ ବହୁବାର ପ୍ରଦକ୍ଷିଣ କରିଛନ୍ତି । ଦକ୍ଷିଣରେ ମହେନ୍ଦ୍ରଠାରୁ ଉତ୍ତରରେ ମେଘାସନ ପର୍ଯ୍ୟନ୍ତ, ପୂର୍ବରେ ମହୋଦଧିଠାରୁ ଗଡ଼ଜାତ ପର୍ଯ୍ୟନ୍ତ ବହୁ ରାଜ୍ୟ ସେ ଭ୍ରମଣ କରିଥିଲେ । ପରବର୍ତ୍ତୀ ସମୟରେ ନିଜର ସୌନ୍ଦର୍ଯ୍ୟପିପାସା ମେଣ୍ଟାଇବା ପାଇଁ ସେ ହିମାଦ୍ରି, ରାଜସ୍ଥାନର ମରୁସ୍ଥଳୀ, ବିନ୍ଧ୍ୟାଦ୍ରି ଆଦି ଭାରତର ବିଭିନ୍ନ ପ୍ରାକୃତିକ ସ୍ଥାନ ଭ୍ରମଣ କରିଛନ୍ତି ।

ଉତ୍ତରରେ ଅବସ୍ଥିତ ହିମ ଉର୍ଜସ୍ୱଳ ହିମାଦ୍ରିର ଭୀମକାନ୍ତ ରୂପ କବିଙ୍କ ହୃଦୟରେ ଭୀତିର ସଞ୍ଚାର କରିଛି । ହିମାଦ୍ରିର ହିମୋଜ୍ଜ୍ୱଳ ଦୃଶ୍ୟ, ଅଗଣିତ ଶୃଙ୍ଗରାଜି, ସ୍କନ୍ଧଦେଶରେ ଉପବୀତ ପରି ସୁଶୋଭିତ ଭାଗୀରଥୀ, କବି ପ୍ରାଣରେ ଅପୂର୍ବ ଆନନ୍ଦର ସଞ୍ଚାର କରିଛି । ମନେ ହୋଇଛି ସତେ ଯେପରି ହିମାଳୟ ହୀରାର ମୁକୁଟ ପିନ୍ଧି ସମ୍ରାଟ ରୂପେ ହିମସିଂହାସନରେ ଅଧିଷ୍ଠିତ । ସେବକରୂପେ ଶତଶତଶିଖରୀ ରାଜାଙ୍କ ପାଦ ଦେଶରେ ଦଣ୍ଡାୟମାନ । ହିମାଳୟର ଏହି ଦୃଶ୍ୟ ସଂଦର୍ଶନ କରି କବିଚିତ୍ତ ଉଲ୍ଲସିତ ହୋଇଉଠିଛି । ମାତ୍ର ପରବର୍ତ୍ତୀ ସମୟରେ ପ୍ରାଣ ସଂଶୟାଚ୍ଛନ୍ନ ହୋଇଉଠିଛି । ନିସ୍ତବ୍ଧ ନୀରବ ବିଜନତା ମଧ୍ୟରେ ତୁଷାର ଆସନରେ ବ୍ୟୋମକେଶ ମୂର୍ତ୍ତି ଦେଖି ସେ ସ୍ତବ୍ଧ ହୋଇଛନ୍ତି । ଗୁରୁଶିଷ୍ୟର ସମ୍ବନ୍ଧ ତାଙ୍କ ସ୍ମୃତିକୁ ଆଲୋଡ଼ିତ କରିଛି । ସୁତରାଂ ଶିଷ୍ୟପରି ଭୟ ଓ ଭକ୍ତିଭାବ ନେଇ ସେ ହିମାଦ୍ରିକୁ ପ୍ରଣାମ ଜଣାଇ ପ୍ରତ୍ୟାବର୍ତ୍ତନ କରିଛନ୍ତି ।

ରାଜସ୍ଥାନର ଭୀମମରୁସ୍ଥଳୀ ସନ୍ଦର୍ଶନରେ କବିଙ୍କ ମନରେ କେବଳ ଭୟ ନୁହେଁ ବେଦନା ଜାଗ୍ରତ ହୋଇଛି । ବୃକ୍ଷଲତାହୀନ ରୁକ୍ଷ କର୍କଶ ପରିବେଶ ମଧ୍ୟରେ କବିପ୍ରାଣ ବିଚଳିତ ହୋଇଉଠିଛି । ତୃଷାପୀଡ଼ିତ ରୋଗୀ ଜଳପାନ ଆଶାରେ କମଳ ପ୍ରସ୍ଫୁଟିତ ସରୋବରର ଦୃଶ୍ୟକୁ ସ୍ମରଣ କଲାପରି ରାଜସ୍ଥାନର ନୀରସ ଶୁଷ୍କ ପରିବେଶ ମଧ୍ୟରେ କବି ଚିଲିକାର ମନ୍ମୟ ସ୍ନିଗ୍ଧ ଦୃଶ୍ୟକୁ ସ୍ମରଣ କରିଛନ୍ତି ।

ବିନ୍ଧ୍ୟାଦ୍ରି କାନ୍ତାରରେ ଧୂଆଁଧାର ଜଳପ୍ରପାତର ଦୃଶ୍ୟ କବିଙ୍କ ହୃଦୟରେ ଭୀତି ସଞ୍ଚାର କରିଛି । ଜଳର ତାଣ୍ଡବଲୀଳା ଓ ଭୟଙ୍କର ନାଦରେ ସେ ସ୍ତବ୍ଧ ହୋଇଛନ୍ତି । ମାତ୍ର ପ୍ରପାତରୁ ଉର୍ଦ୍ଧ୍ୱାୟିତ ଜଳ ବିନ୍ଦୁରେ ସୃଷ୍ଟ ଇନ୍ଦ୍ରଧନୁର କମନୀୟ

ଶୋଭା କବିଙ୍କୁ ମୁଗ୍‌ଧ କରିଛି । ସେହିପରି ବାତ୍ୟା ଆନ୍ଦୋଳିତ ସାଗରର ଦୃଶ୍ୟରେ କବିଚିତ୍ତରେ ଉଦ୍‌ବେଗ ଓ ଚାଞ୍ଚଲ୍ୟ ସୃଷ୍ଟି ହୋଇଛି । ଉର୍ମି ପରେ ଉର୍ମି ପୋତଗ୍ରାସିବାକୁ ଆଗେଇ ଆସିଲାବେଳେ କବି ଭୟଭୀତ ହୋଇଛନ୍ତି । ଦୂରଚକ୍ରବାଳ ସନ୍ଦର୍ଶନ କରି ସେ ଯେତିକି ପ୍ରୀତ ହୋଇଛନ୍ତି ତରଙ୍ଗମାଳାର ରୁଦ୍ରମୂର୍ତ୍ତିରେ ସେହିଭଳି ସଙ୍କୁଚିତ ହୋଇଛନ୍ତି । ସୁତରାଂ ସୁଉଚ୍ଚ ହିମାଦ୍ରିଠାରୁ ସୁବିସ୍ତୃତ ସମୁଦ୍ର ପ୍ରାକୃତିକ ଦୃଶ୍ୟ ସଂଦର୍ଶନ କବି ନିଜର ଅନୁଭୂତି ପ୍ରକାଶ କରି ଲେଖିଛନ୍ତି—

"ସ୍ତବ୍‌ଧଭାବେ ଏହି ମହାଦୃଶ୍ୟମାନ
ଦେଖିଲି ଭାରତେ ଭ୍ରମି ନାନାସ୍ଥାନ
ଭୀଷଣ, ବିରାଟ, ବିକଟ ଉଦାର
ଦୃଶ୍ୟେ ଖି ହେଲା, ବିସ୍ମୟ ଅପାର
ଚିତ୍ତବୃତ୍ତି ଗଲା ନିଜପଥ ଛୁଡ଼ି
ସତ୍ତାଗଲା ସେହି ମହାଭାବେ ବୁଡ଼ି
ଖର ସୌରକରେ ତାରକା ଯେସନ
ଅସ୍ମିତା ବିସ୍ମୟେ ହେଲା ନିଗମନ ।"

ଭାରତର ବିବିଧ ସ୍ଥାନର ପ୍ରାକୃତିକ ଦୃଶ୍ୟ ସନ୍ଦର୍ଶନ କରିବା ସମୟରେ କବି କେଉଁଠି ହେଲେ ବିମଳ ରୂପର ସନ୍ଧାନ ପାଇ ପାରି ନାହାନ୍ତି । ଭୀଷଣ, ବିରାଟ, ବିକଟ ଦୃଶ୍ୟରାଜି ବିଶୁଦ୍ଧ ଆନନ୍ଦ ପ୍ରଦାନରେ ଅକ୍ଷମ । ସେଥିପାଇଁ ଗୁରୁପରି ସେମାନଙ୍କୁ ଭୟ କରି କବି ସଖୀପ୍ରାୟ ଚିଲିକାକୁ ସ୍ମରଣ କରିଛନ୍ତି । ସେହିସବୁ ଦୃଶ୍ୟକୁ କବି ଚିଲିକା ସହିତ ତୁଳନା କରି ଚିଲିକାର ବୈଶିଷ୍ଟ୍ୟ ପ୍ରତିପାଦନ କରିବାକୁ ଉତ୍‌କଣ୍ଠିତ ହୋଇଛନ୍ତି । ସୂର୍ଯ୍ୟଙ୍କ ପ୍ରଖର କିରଣରେ ପୁଷ୍ପରାଜି ମଳିନ ଦିଶନ୍ତି; ମାତ୍ର କମଳିନୀ ଉତ୍‌ଫୁଲ୍ଲିତ ହୁଏ । ପୁନଶ୍ଚ ସ୍ନିଗ୍‌ଧ ମଧୁର ଚନ୍ଦ୍ରାଲୋକରେ ମଳିନ ପଡ଼ିଥିବା ପୁଷ୍ପସମୂହ ପୀୟୂଷ ସେବନ କରି ଉଲ୍ଲସି ଉଠନ୍ତି । କମଳିନୀ ପକ୍ଷରେ ସୂର୍ଯ୍ୟପରି ହିମାଦ୍ରି ବିନ୍ଧ୍ୟାଦ୍ରି ଆଦି ଦୃଶ୍ୟ ମୁନିଋଷିମାନଙ୍କ ଚିତ୍ତଆହ୍ଲାଦକ ହେଲେ ମଧ୍ୟ ସାଧାରଣ ଦର୍ଶକପାଇଁ ତାହା ଅବସାଦପୂର୍ଣ୍ଣ । ମାତ୍ର ଚିଲିକାର ନୀଳ ଜଳରାଶି ସନ୍ଦର୍ଶନରେ ସାଧାରଣ ଦର୍ଶକ ସ୍ତବ୍‌ଧ ହୁଏ ନାହିଁ କି ଭୀତ ହୁଏ ନାହିଁ । ଚିଲିକାର ଦୃଶ୍ୟପଟ ମନରେ ନିର୍ମଳ ଆନନ୍ଦର ସଞ୍ଚାର କରେ । କବିଙ୍କ ଲେଖନୀରେ—

"ବିରାଟ ନୋହି ତୁ ଯେଣୁ ସୁବୃହତ୍
ସ୍ତବ୍‌ଧ ନୋହି ମନ ହୁଅଇ ଉନ୍ନତ
ଅବସାଦେ ଅବା ଆତ୍ମ ବିସ୍ମୃତିରେ
ବୁଡ଼େ ନାହିଁ ମନ ତୋର ରମ୍ୟତୀରେ

ସ୍ନିଗ୍ଧ ରୂପତୋର ଚିତ୍ତ ଉଲ୍ଲାସକ
ସୁମଧୁର ଦ୍ୱୈତ-ଭାବର ଦ୍ୟୋତକ ।''

ଚିଲିକାର ଅପରୂପ ଶୋଭାବର୍ଣ୍ଣନାରେ କବିଲେଖନୀ ମୁଖର ହୋଇଉଠିଛି । ଚିଲିକା ବିହାରୀ ବିବିଧ ବିହଙ୍ଗ, ଜଳଚର ପ୍ରାଣୀ, ଚିଲିକାର ଶରତକାଳୀନ ଶୋଭା, ଚିଲିକା ତୀରର ବିବିଧ ବୃକ୍ଷଲତା, ଚିଲିକାର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ପଶ୍ଚିମତୀରର ଦୃଶ୍ୟବର୍ଣ୍ଣନା ଆଦି କବିଙ୍କ ଲେଖନୀମୁନରେ ଅତି ବାସ୍ତବ ଓ ଜୀବନ୍ତ ହୋଇଉଠିଛି ।

ଚିଲିକା କାବ୍ୟର ପ୍ରାରମ୍ଭରେ କବିବର ରାଧାନାଥ ଚିଲିକାକୁ ଉତ୍କଳ କମଳାଙ୍କର ବିଳାସସ୍ଥଳୀ ରୂପେ ବର୍ଣ୍ଣନା କରିବାକୁ ଯାଇ ଗାଇଛନ୍ତି—

'ଉତ୍କଳ-କମଳା-ବିଳାସ ଦୀର୍ଘିକା
ମରାଳ-ମାଳିନୀ ନୀଳାମ୍ବୁ ଚିଲିକା'

ଏହାକୁ ପାଠକରିବା ମାତ୍ରେ ପାଠକର କଳ୍ପନା ନେତ୍ରରେ ଚିଲିକାର ଛବି ଭାସିଉଠେ । ତାର ନୀଳ ତରଙ୍ଗରେ ଦଳଦଳ ମରାଳ ସନ୍ତରଣ କରୁଥିବାର ଅପୂର୍ବ ଦୃଶ୍ୟରେ ପାଠକ ବିମୋହିତ ହୁଏ । ଚିଲିକାର ଦିଗନ୍ତବିସ୍ତାରୀ ନିର୍ମଳ ଜଳରାଶି, ନୀଳଅଙ୍ଗରେ ସୁଶୋଭିତ ନଳବନ ଶୈଳ ଓ ଚିତ୍ରପଟ ପରି ଅବସ୍ଥିତ ଦୀପପୁଞ୍ଜ ଆଦି ସନ୍ଦର୍ଶନରେ ପ୍ରାଣ ଉଲ୍ଲସିତ ହୋଇଉଠେ ।  କେବଳ ଚିଲିକା ବକ୍ଷରେ ଶୋଭାରାଶି ନୁହେଁ ଚିଲିକାତୀର ମଧ୍ୟ କବିଙ୍କୁ ଶୋଭାର ଆଶ୍ରମ ଭଳି ପ୍ରତୀୟମାନ ହୋଇଛି । ଶୈଳ, ଟଙ୍କ ଏବଂ ଅରଣ୍ୟ ଭିତରେ ଅବସ୍ଥିତ ମଧୁର ବିଷମ ଗିରିଖୋଲ। ନାସି, କାନ୍ତାର, କନ୍ଦରା, ସୁରମ୍ୟ ତଟିନୀ, ବିକଟ ସଂକଟ ତୁଙ୍ଗ ଶୈଳସାନୁ, ଭଗ୍ନଦୁର୍ଗ, ଜରାଜୀର୍ଣ୍ଣ ଦେବାଳୟ, ଶୈବାଳ ଗୁଳ୍ମ ଆଦିର ସୌନ୍ଦର୍ଯ୍ୟରେ କବି ଆତ୍ମହରା ହୋଇପଡ଼ିଛନ୍ତି । ସେମାନଙ୍କ ସହିତ କବି ଆତ୍ମୀୟତା ପ୍ରତିଷ୍ଠା କରିଛନ୍ତି । ପ୍ରକୃତିର ସେହି ଅନୁପମ ରୂପଲାବଣ୍ୟକୁ ପାଠକ ସମ୍ମୁଖରେ ପରିବେଷଣ କଲାବେଳେ ତାଙ୍କ କଣ୍ଠରୁ ସ୍ୱତଃସ୍ଫୂର୍ତ୍ତ ଭାବେ ଉଚ୍ଚାରିତ ହୋଇଛି—

''ଏତେ ଛବି ଯେଣୁ ଏକାଧାରେ ଠୁଳ
ଛବିଳ ଉତ୍କଳେ ତୋ ଛବି ଅତୁଳ ।''

ସୋପାନ ପରେ ସୋପାନ ଚଢ଼ିଲେ ଦୃଷ୍ଟିରେଖା ପରିବ୍ୟାପ୍ତ ହୁଏ ଓ ସୃଷ୍ଟିର ରହସ୍ୟ ଯେପରି ଖୋଲି ଖୋଲି ଯାଏ, ଠିକ୍ ସେହିପରି ଚିଲିକାର ଗୋଟିଏ ପରେ ଗୋଟିଏ ଦୃଶ୍ୟ ସନ୍ଦର୍ଶନ କରୁକରୁ କବିଚିତ୍ତ ଆନନ୍ଦରେ ବିସ୍ଫାରିତ ହୋଇଉଠିଛି । ଶୁଭ୍ର ପ୍ରାସାଦ ଆକାରର ପକ୍ଷୀଦଳ ତରଙ୍ଗଦୋଳାରେ ଝୁଲିଝୁଲି ଚିଲିକାବକ୍ଷକୁ ସଙ୍ଗୀତ ମୁଖର କରୁଥିବା ଦୃଶ୍ୟ ଅତ୍ୟନ୍ତ ରମଣୀୟ । କଳା, ନୀଳ, ପୀତ ହରିତ ଓ ଲୋହିତ ବର୍ଣ୍ଣ ପକ୍ଷୀମାନଙ୍କର ସମାରୋହ, ବିବିଧ ମତ୍ସ୍ୟଙ୍କର କ୍ରୀଡ଼ାକୌତୁକ,

ଶଙ୍କା ଉପୁଜାଇ ଏଣେତେଣେ ବୁଲୁଥିବା ସାଙ୍କୁଚ ମଗର, ଶିଶୁମାର ଆଦି ଜଳଜୀବଙ୍କର ଛଟକରେ କବି ଏକାବେଳେ ଅଭିଭୂତ ।

ଚିଲିକାର ଶରତ୍‌କାଳୀନ ଶୋଭା କବି ଦୃଷ୍ଟିରେ ଅତି ମଂଜୁଳ ଓ କମନୀୟ । ତାରକିତ ଗଗନର ଅପୂର୍ବ ସୌନ୍ଦର୍ଯ୍ୟପରି ଚିଲିକାର ନୀଳ ଜଳରାଶିରେ କ୍ରୀଡ଼ାରତ ଅସଂଖ୍ୟ ହଂସହଂସରାଳୀ, ଦକ୍ଷିଣ ଦିଗବଧୂର ଉଜ୍ଜ୍ୱଳ ମୋତି ଅଳଙ୍କାର ସ୍ୱରୂପ ଅଗସ୍ତି ନକ୍ଷତ୍ର, ଶଶାଙ୍କ ଧବଳା ନିଶା, କାଶତଣ୍ଡୀ । ସ୍ୱଚ୍ଛନୀରା ତଟିନୀ, ମାଳତୀକୁଞ୍ଜ, କୁମୁଦ ମଣ୍ଡିତ ସରୋବର ଆଦି ଶରତକାଳର ପରିଜନ । ଶୁଭ୍ର ଶରତ୍ ପରି ଏମାନେ ସଭିଏଁ ଶୁଦ୍ଧ ନିର୍ମଳ । ସୌନ୍ଦର୍ଯ୍ୟ ପ୍ରେମୀ କବିଦୃଷ୍ଟି ଚିଲିକାର ଶରତକାଳୀନ ଦୃଶ୍ୟକୁ ଜୀବନ୍ତ ତଥା ରମଣୀୟ ରୂପଦାନ କରିଛି ।

ଚିଲିକାର ତୀରଭୂମିକୁ କବି 'କମଳା-ବିଳାସ-ଭୂମି' ଭାବେ ଚିତ୍ରଣ କରିଛନ୍ତି । ଫଳଫୁଲ ଶସ୍ୟରେ ଭରା ଚିଲିକାର ତୀର ନାରୀକେଳ, ପଣସ, ରସାଳ, ଚମ୍ପା ତମାଳ ଆଦି ବୃକ୍ଷରାଜି ବେଷ୍ଟିତ ଏହି ତୀରଭୂମି ସଦା ସବୁଜ ଶ୍ୟାମଳ । ତୀରବର୍ତ୍ତୀ ଅଞ୍ଚଳର ସ୍ନିଗ୍ଧ ପଲ୍ଲୀ, ଗ୍ରାମଦେବତୀଙ୍କ ମନ୍ଦିର ସଂଲଗ୍ନ ଉଦ୍ୟାନ ବାଟିକାରେ ସିନ୍ଦୂରିତ ଗୋଡ଼ିବାଣ ଓ କନିଅର ପୁଷ୍ପର୍ ସୌନ୍ଦର୍ଯ୍ୟ, ସରୋବର ତୀରର ତାଳଗଛ ବାହୁଙ୍ଗାରେ ଦୋଳାୟମାନ ବାଇଚଢ଼େଇର ବସା, ଗ୍ରାମ ଉପକଣ୍ଠରେ ଦଣ୍ଡାୟମାନ ବିରାଟ ବଟଦ୍ରୁମର ଶାଖାରେ ମଧ୍ୟାହ୍ନରେ ହଳଦୀବସନ୍ତ ଓ ଗୁଣ୍ଡିଚିର କଳହ ଆଦିର ଦୃଶ୍ୟ କବିଙ୍କ ଦୃଷ୍ଟିପଥକୁ ଏଡାଇ ପାରିନାହିଁ । ପୁନଶ୍ଚ ଚିଲିକାର ମୃଦୁସମୀର ପଲ୍ଲୀ ସନ୍ନିକଟ କେତକୀ ପୁଷ୍ପକୁ ଆନ୍ଦୋଳିତ କରିବାର ଦୃଶ୍ୟରେ କବି ବିମୋହିତ । ଏହି ସବୁ ଦୃଶ୍ୟକୁ ଯେତେଥର ଦେଖିଲେ ମଧ୍ୟ କବିଙ୍କ ରୂପତୃଷ୍ଣା ମେଣ୍ଟିନାହିଁ । କବିପ୍ରାଣ ଗାଇଉଠିଛି—

"କେତେଥର ଦେଖିଅଛି ଏହିମାନ
ମାତ୍ର ପ୍ରତିଥର ଦିଶେ ଆନଆନ
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି
ସୁନ୍ଦରପଣର ଚିରନ୍ତନ ରୀତି ।"

ପାଠକ ପଶ୍ଚିମତୀରର ଶୋଭା ପାଠକରିବା ପୂର୍ବରୁ କବି ଗାଇଛନ୍ତି—

"ତୋ ପଶ୍ଚିମତୀର ଶୋଭାର ନିଳୟ
ଦେଖି ନ ରହିବ ଲାଖି କା ହୃଦୟ ।"

ବାସ୍ତବିକ ପଶ୍ଚିମତୀରର ଶୋଭା ଉପଭୋଗର ବସ୍ତୁ । ପଶ୍ଚିମ ତୀରରେ ଅବସ୍ଥିତ ଭାଲେରି, ଘଣ୍ଟଶିଳା, ଜଟିଆନାସି, ଶୋଲରି, ମୈନାକଶିଖର, କରିମୁଣ୍ଡାକୃତି ଖଣ୍ଡାହଣା ଗିରି ଆଦି ପର୍ବତଶ୍ରେଣୀର ଅବସ୍ଥିତି କବିଦୃଷ୍ଟିରେ ନିର୍ଜୀବ

ଶିଳାସ୍ତୂପ ନୁହନ୍ତି, ଏମାନେ ଅତୁଳନୀୟ ସୌନ୍ଦର୍ଯ୍ୟର ଆଧାର । କବି ଚକ୍ଷୁରେ ଏ ଗିରିପଟଳୀ ମୃଗମଦ ପତ୍ରାବଳୀପରି ପ୍ରତୀୟମାନ ହୋଇଛନ୍ତି । ଚିଲିକା ବକ୍ଷରେ ନୌକାଯୋଗେ ପୂର୍ବରୁ ପଶ୍ଚିମକୁ ଗତିକଲେ ଗୋଟିକପରେ ଗୋଟିଏ ପାହାଡ଼ ଦୃଷ୍ଟିପଥାରୂଢ଼ ହୁଅନ୍ତି । କ୍ଷୁଦ୍ର ଦିଶୁଥିବା ଏହି ପାହାଡ଼ କ୍ରମେ କ୍ରମେ ବଡ଼ ଦିଶନ୍ତି । ପୁଣି ପରସ୍ପର ସହିତ ଲାଗିଥିବାପରି ପ୍ରତୀୟମାନ ହେଉଥିବା ଏହି ପାହାଡ଼ପୁଞ୍ଜ ପରସ୍ପରଠାରୁ ଦୂରରେ ଥାଆନ୍ତି । ଏକବର୍ଣ୍ଣ ନାନାବର୍ଣ୍ଣ ଧାରଣକରେ । ଚିଲିକାବକ୍ଷର ଏହି ପାହାଡ଼ ସବୁ ନୀଳ ଗମ୍ବୁଜ ସଦୃଶ ଜଣାଯାଏ । ଇନ୍ଦ୍ରନୀଳକାନ୍ତି ଶୋଭାରିକୁ ଦେଖି କବି ଆତ୍ମହରା ହୋଇଛନ୍ତି । ମନେହୋଇଛି ସତେ ଯେମିତି ଅବନୀକୁ ଭେଦକରି ମୟବିରଚିତ ଯାନରେ ଉପବିଷ୍ଟ ହୋଇ ବୈରୋଚନି ଉର୍ଦ୍ଧ୍ୱକୁ ଉଠିଛନ୍ତି । ପର୍ବତର ଶିଖରରେ ଭାସିବୁଲୁଥିବା ମେଘଖଣ୍ଡ ଉପରେ ସୂର୍ଯ୍ୟକିରଣ ପଡ଼ିବା ଫଳରେ ତାହା ସୁବର୍ଣ୍ଣକାନ୍ତି ଧାରଣ କରିଛି । ରାଜାଙ୍କ ମସ୍ତକ ଉପରେ ଥିବା ସୁନାଛତି ପରି ପାହାଡ଼ର ମସ୍ତକରେ ଏହି ମେଘଖଣ୍ଡ ଶୋଭାପାଆନ୍ତି ଓ ତାର ଛବି ଚିଲିକାଜଳରେ ପ୍ରତିବିମ୍ବିତ ହୋଇ ଅନିର୍ବଚନୀୟ ଶୋଭା ସୃଷ୍ଟିକରିଛି ।

ଚିଲିକାର ପଶ୍ଚିମତୀରରେ ଅବସ୍ଥିତ ସୁଦୀର୍ଘ ଭାଲେରି ପାହାଡ଼ର ପଶ୍ଚାତ୍‌ ସୂର୍ଯ୍ୟ ଅସ୍ତ ହେଉଥିବା ସମୟରେ ଅସ୍ତଗାମୀ ସୂର୍ଯ୍ୟଙ୍କର ସୁନେଲି କିରଣରେ ଭାଲେରିର ଶିଖରଦେଶ ସ୍ୱର୍ଣ୍ଣସିଂହାସନ ସଦୃଶ ପ୍ରତିଭାତ ହୁଏ । ପର୍ବତର ଛି ଅଂଶ ଯାହା ଅଳ୍ପସମୟ ପୂର୍ବେ ହରିତ୍‌ବର୍ଣ୍ଣ ଧାରଣ କରିଥିଲା ଛାୟା ଲମ୍ବିଯିବା ହେତୁ ତାହା ନୀଳବର୍ଣ୍ଣ ଧାରଣ କରିଛି । ଗାଈ, ମଇଁଷି, ଛାଗ, ମେଷ ଆଦି ଗୃହପାଳିତ ପଶୁ ଚରା ସାରି ଘଣ୍ଟିଘାଗୁଡ଼ି ଶବଦରେ ତୀରଭୂମିକୁ ମୁଖରିତ କରି ଗୃହାଭିମୁଖୀ ହୋଇଛନ୍ତି । ଗୋଷ୍ଠର ଧୂମ୍ର କୁଣ୍ଡଳାକୃତିରେ ଆକାଶକୁ ଆଚ୍ଛାଦିତ କରିଛି । ଏରାପକ୍ଷୀ ହ୍ରଦରୁ ଉଠି କଳରବ କରି ନିଜ ନିଜ ନୀଡ଼କୁ ଫେରିଯାଉଛନ୍ତି । ସୂର୍ଯ୍ୟଙ୍କର ସୁନେଲି କରିଣରେ ସେମାନଙ୍କର ପକ୍ଷ ସୁବର୍ଣ୍ଣରଙ୍ଗ ଧାରଣ କରିଛି । ଅସ୍ତଗାମୀ ସୂର୍ଯ୍ୟଙ୍କ କିରଣରେ ଧରାପୃଷ୍ଠ ବିବିଧ ରଙ୍ଗରେ ରଂଜିତ ହୋଇଉଠିଛି । ମନେହେଉଛି ସତେଯେମିତି ବିବିଧ ବର୍ଣ୍ଣରେ ରତ୍ନ ଆକାଶ ବକ୍ଷରୁ ପୃଥିବୀ ଉପରକୁ ଫିଙ୍ଗିଦିଆଯାଇଛି । ମେଘମାଳା ଦେହରେ ସୂର୍ଯ୍ୟରଶ୍ମି ପତିତ ହୋଇ ବିବିଧ ବର୍ଣ୍ଣର ବିପଣୀ ସୃଷ୍ଟିହେବାରୁ ମନେହୋଇଛି ସତେଯେମିତି ନାରୀବେଶରେ କାଦମ୍ବିନୀ ସେହିସବୁ ରତ୍ନକୁ ଠୁଳ କରିଛି ।

ଭାଲେରି ପାହାଡ଼ର ଆରପାଖରେ ସୂର୍ଯ୍ୟ ଅସ୍ତହେଉଥିବାରୁ ଭାଲେରି ପାହାଡ଼ର ଛାଇ ଚିଲିକା ବକ୍ଷରେ ପତିତ ହୁଏ । ତେଣୁ ଚିଲିକାବକ୍ଷରେ ବିଦ୍ୟମାନ ଯେଉଁସବୁ ପାହାଡ଼ର ମସ୍ତକକୁ ଅସ୍ତଗାମୀ ସୂର୍ଯ୍ୟକରିଣ ସ୍ପର୍ଶକିରବା ହେତୁ ସୁବର୍ଣ୍ଣ ବର୍ଣ୍ଣ ଧାରଣ

କରିଥିଲା ସେ ସବୁ କ୍ରମେ କ୍ରମେ ଅପସାରିତ ହୋଇଯାଇଛି ଓ ସେ ସ୍ଥାନ ଛାୟାବୃତ ହୋଇଛି । ଅସ୍ତଗାମୀ ସୂର୍ଯ୍ୟକିରଣ ଚିଲିକାର ନୀଳ ଜଳରେ ପତିତ ହୋଇ ତାହା ବରୁଣଙ୍କ ପ୍ରବାଳ ନିର୍ମିତ ପ୍ରାସାଦପରି ପ୍ରତୀୟମାନ ହୋଇଛି । ଚିଲିକା ବକ୍ଷରେ ଅନ୍ଧକାର କ୍ରମେ ବହଳ ହେବାରୁ ଚକ୍ରବାକ ଚକ୍ରବାକୀଙ୍କର ବିଚ୍ଛେଦ ଘଟିଛି । ଏହି ସମୟରେ ପଶ୍ଚିମ ଗଗନ କ୍ରମେ ବିବିଧ ବର୍ଣ୍ଣରେ ରଂଜିତ ହୋଇ ଅପୂର୍ବ ଦିଶିଛି ।

ପଶ୍ଚିମ ଦିଗରେ ସୂର୍ଯ୍ୟ ଅସ୍ତଗଲାବେଳେ ପୂର୍ବଦିଗରେ ଚନ୍ଦ୍ରର ଉଦୟ ଘଟେ । ପୂର୍ବରେ ଚନ୍ଦ୍ରର ଶୁଭ୍ର ସ୍ନିଗ୍ଧ କିରଣରାଜି ଓ ପଶ୍ଚିମରେ ସୂର୍ଯ୍ୟଙ୍କ ସୁବର୍ଣ୍ଣ କିରଣରେ ଆକାଶ ଶିବଙ୍କର ଅର୍ଦ୍ଧନାରୀଶ୍ୱର ରୂପପରି ପ୍ରତୀୟମାନ ହୁଏ । ଏହି ସମୟରେ ତୀରବାସୀ ଧୀବରମାନେ ସେମାନଙ୍କ ମାଛଧରା ନୌକାରେ ଆଲୁଅ ଜାଳନ୍ତି । ଚିଲିକା ତୀରରୁ ଏହି ଦୃଶ୍ୟ ଅତି ମନୋରମ ଦିଶେ । ଧୀବର କଣ୍ଠର ଛାନ୍ଦ ଓ ଚମ୍ପୂ ପରିବେଶକୁ ଆହୁରି ମନୋମୁଗଧ୍ କରି ତୋଳେ। ଦର୍ଶକ ବିମୋହିତ ହୁଏ । ଚନ୍ଦ୍ରକିରଣ ସଂପାତରେ ତୀରବର୍ତ୍ତୀ ବୃକ୍ଷଲତା ଅପରୂପ ଶୋଭା ଧାରଣ କରେ । ଦର୍ଶକପ୍ରାଣ ପୁଲକିତ ହୋଇଉଠେ । ଚିଲିକାର ସାୟଂକାଳୀନ ଶୋଭା କବିଙ୍କ ମନୋରାଜ୍ୟରେ ଭାବାନ୍ତର ସୃଷ୍ଟିକରିଛି । କବିକଣ୍ଠରୁ ନିର୍ଗତ ହୋଇଛି—

"ଅଟେ ସର୍ବଶୋଭା ସୀମାନ୍ତର ଟୀକା
ପ୍ରକୃତିର ଚାରୁ ଆଲେଖ୍ୟ-ଶାଳିକା ।"

ସବୁକୋଳାହଳ ଚିଲିକା ତୀରରେ ଶାନ୍ତପଡ଼ିଯାଏ ଓ ଭାବୁକର ପରମ ପ୍ରିୟସ୍ଥଳୀ ହୋଇଉଠେ ଚିଲିକା । ରାଧାନାଥ ଚିଲିକାର ଶାନ୍ତସ୍ନିଗ୍ଧ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଚିଲିକା ତୀରରେ ତାଙ୍କ ଶେଷଜୀବନ ଅତିବାହିତ କରିବାକୁ ଆଶାପୋଷଣ କରି ଲେଖିଛନ୍ତି—

"କରିଥିଲି ଆଶା କରିବି ଯାପନ
ତୋ ପଶ୍ଚିମତୀରେ ପଶ୍ଚିମଜୀବନ
କୁଟୀର ବିରଚି ଜଟିଆ ଚରଣେ
କାଟିଥାନ୍ତି ଆୟୁ ଶେଷ ନିକାଞ୍ଚନେ ।"

କବିଙ୍କର ଏହି ଚିନ୍ତାଧାରା କବିଙ୍କ ସୌନ୍ଦର୍ଯ୍ୟଗ୍ରାହକତାର ଶ୍ରେଷ୍ଠ ନିଦର୍ଶନ । କବିଙ୍କର ଗଭୀର ଓ ସୂକ୍ଷ୍ମ ଦୃଷ୍ଟି ପ୍ରକୃତିର ରମଣୀୟ ଉପାଦାନକୁ ନିରୀକ୍ଷଣକରି ଯେଭଳି ଭାବେ ଉପସ୍ଥାପନ କରିଛି ତାହା ବାସ୍ତବିକ ଅଭିନବ ଓ ଏକାନ୍ତ ହୃଦ୍ୟ ।



# ରାଧାନାଥଙ୍କ 'ବିବେକୀ'

ଡଃ ବାଉରୀବଂଧୁ କର

ଯେଉଁମାନେ ରାଧାନାଥଙ୍କୁ ଯୁଗପ୍ରବର୍ତ୍ତକ କବିର ଗୌରବ ଦେଇ ନୀରବ ରହନ୍ତି, ସେମାନେ ସାହିତ୍ୟ ସାଧକ ରାଧାନାଥଙ୍କୁ ଭଲରୂପେ ବୁଝି ପାରନ୍ତି ନାହିଁ । ସେ ଥିଲେ ପ୍ରଥମେ ଗଦ୍ୟଶିଳ୍ପୀ ଓ ପରେ କବି । ସେ ଉତ୍ତମ ଭାବେ ବୁଝିଥିଲେ ଯେ ଗଦ୍ୟ ହେଉଛି କବିତ୍ୱର ପ୍ରଥମ ପରୀକ୍ଷା । ଏ ସକାଶେ ବୋଧହୁଏ ଆଧୁନିକ ଗଦ୍ୟ ରଚନାର ପ୍ରାଥମିକ କାଳରେ ସେ ପ୍ରବନ୍ଧ, ଗଳ୍ପ ଓ ପାଠ୍ୟପୁସ୍ତକ ରଚନାରେ ମନୋନିବେଶ କରିଥିଲେ । ମାତ୍ର ତାଙ୍କ କାବ୍ୟ କବିତାର ଦୀପ୍ତିରେ ତାଙ୍କ ଗଦ୍ୟ ନିଷ୍ପ୍ରଭ ହୋଇପଡ଼ିଛି । ପୁଣି ରାଧାନାଥଙ୍କ ପରି ରୋମାଣ୍ଟିକ୍ କବିଙ୍କ କାବ୍ୟର ରୂପମାଧୁରୀ ନିକଟରେ ତାଙ୍କ ଗଦ୍ୟ ଯେ ଏକାନ୍ତ ନଗଣ୍ୟ ଏକଥା ଅସ୍ୱୀକାର କରାଯାଇନପାରେ । ଏ ସତ୍ତ୍ୱେ ଓଡ଼ିଆ ସାହିତ୍ୟର ପ୍ରଥମ ପ୍ରାବନ୍ଧିକ ଭାବରେ ତାଙ୍କର ଖ୍ୟାତି କିଛି କମ୍ ନୁହେଁ ।

ରାଧାନାଥଙ୍କ 'ବିବେକୀ' ପ୍ରବନ୍ଧଟି ୧୮୭୩ ମସିହାରେ ପ୍ରଥମେ 'ଉତ୍କଳ ଦର୍ପଣ' ପତ୍ରିକାରେ ପ୍ରକାଶିତ । ଏହି ପ୍ରବନ୍ଧଟି ଓଡ଼ିଆ ପ୍ରବନ୍ଧ ସାହିତ୍ୟର ପ୍ରଥମ ପ୍ରବନ୍ଧ ରୂପେ ଅଦ୍ୟାବିଧି ସ୍ୱୀକୃତ । ଏହା ଏକ ଦୀର୍ଘ ପ୍ରବନ୍ଧ । ପ୍ରାବନ୍ଧିକ ଏହି ପ୍ରବନ୍ଧରେ ମାନବଜୀବନରେ ନୀତି, ଆଦର୍ଶ, ମାନସିକ ଚିନ୍ତାଧାରା ଓ ଦର୍ଶନ ସଂପର୍କରେ ଆପଣା ଦୃଷ୍ଟିକୋଣରୁ ବିଶ୍ଳେଷଣ କରିଛନ୍ତି । ଏହି ପ୍ରବନ୍ଧରେ ସେ ଜଣେ ପ୍ରାବନ୍ଧିକ ଅପେକ୍ଷା ନୀତିବାଦୀ (Ethicist) ପରି ମନେହୁଅନ୍ତି । ଏହି ପ୍ରବନ୍ଧଟି ଯେପରି ଦୀର୍ଘ, ଏହାର ଅବତରଣିକା ମଧ୍ୟ ଅନୁରୂପ ଦୀର୍ଘ । ଏହି ପ୍ରବନ୍ଧରେ ମାନବ ଜୀବନ ସଂପର୍କରେ ବହୁ ପ୍ରସଙ୍ଗ ରହିଥିବା ସୂଚନା ଦେଇ ପ୍ରାବନ୍ଧିକ ଲେଖିଛନ୍ତି; " ମନୁଷ୍ୟକୁ କେତେ କଷ୍ଟ, ଶୋକ, ଅଭାବ ସହ୍ୟ କରିବାକୁ ହୁଏ । ତାର କଳନା କିଏ କରିବ ? ମନୁଷ୍ୟକୁ କେତେ ଦୁର୍ଦ୍ଦୈବର ଅଧୀନ ହେବାକୁ ହୁଏ କିଏ କହିବ ? ଏଣୁ ଯେ ପ୍ରବନ୍ଧ ତାହାର ମନର ଆର୍ତ୍ତି ଫେଡ଼ିପାରେ ଏପରି ପ୍ରବନ୍ଧରେ ସମସ୍ତଙ୍କର ଆସ୍ଥା ହେବାର ଦିଶୁଅଛି ।" (୧) ରାଧାନାଥଙ୍କର ଏହି ପ୍ରବନ୍ଧଟି ମାନବ ଜୀବନ ପ୍ରତି ଏକ କରୁଣା ଓ ସହାନୁଭୂତିରୁ ଆରମ୍ଭ ହୋଇଛି ।

---

(୧) ରାଧାନାଥ ଗ୍ରନ୍ଥାବଳୀ— (୧୯୬୬)—ପୃଷ୍ଠା—୩୬୫

ସେ ମାନବର ଦୁଃଖ କଷ୍ଟ ପ୍ରତି ଦରଦ ଭାବ ନେଇ ଏପରି ଏକ ପ୍ରବନ୍ଧର ପରିକଳ୍ପନା କରିଛନ୍ତି । 'ଦୁଃଖଂ ସତ୍ୟମ୍' ଏଇ ଭାବଚେତନାଟି ସେତେବେଳେ ଯୁବକ ରାଧାନାଥଙ୍କୁ ଏପରି ଏକ ପ୍ରବନ୍ଧ ରଚନା ପାଇଁ ପ୍ରେରଣା ଯୋଗାଇ ଥିଲା । ସେ ଜୀବନର ଦୁଃଖ ଦୁର୍ବିପାକକୁ ନେଇ ପ୍ରବନ୍ଧଟିର ଆରମ୍ଭ କରିଥିଲେ ସୁଦ୍ଧା ଜୀବନର ସ୍ୱପ୍ନ, ଆବେଗ ଓ ଆଦର୍ଶକୁ ଏଥିରେ ପ୍ରକାଶ କରିବାକୁ ଭୁଲିନାହାନ୍ତି ।

ରାଧାନାଥଙ୍କ ବିବେକୀ ପ୍ରବନ୍ଧ ପାଠକଲେ, ଇଂରାଜୀ ସାହିତ୍ୟର ବିଶିଷ୍ଟ ପ୍ରାବନ୍ଧିକ ଓ ଦାର୍ଶନିକ ବେକନଙ୍କ ପ୍ରବନ୍ଧଗୁଡ଼ିକ ଦୃଷ୍ଟିକୁ ଆସିଯାଏ । ଏ ଧରଣର ରଚନାକୁ 'Imitation of Christ', ଇଟାଲୀୟ ସାହିତ୍ୟର Marcus Aurelius ଙ୍କ Meditation ଓ ବଙ୍ଗଳା ସାହିତ୍ୟର ଭକ୍ତିଯୋଗର ସମଧର୍ମୀ ସୃଷ୍ଟିରୂପେ ଗ୍ରହଣ କରାଯାଇପାରେ । ସେ ଏସବୁ ପାଠକରି ଏ ପ୍ରକାର ପ୍ରବନ୍ଧ ରଚନାରେ ମନୋନିବେଶ କରିଥିବା ଅସମ୍ଭବ ନୁହେଁ । କାରଣ ଜଣେ ପଚିଶ ବର୍ଷ ଯୁବକ ପକ୍ଷରେ ଅନୁଭୂତି ଅପେକ୍ଷା ଅଧ୍ୟୟନ ଓ ଅନ୍ୱେଷଣ ଅଧିକ ସମ୍ଭବପର ।

ବିବେକୀ ପ୍ରବନ୍ଧର ପ୍ରାରମ୍ଭରେ ରାଧାନାଥ ମାନବ ଜୀବନର ଦୁଃଖ ସଂପର୍କରେ କହିବା ସହିତ ଦୁଃଖକୁ କିପରି ଅତିକ୍ରମ କରିବାକୁ ହେବ ସେ ସମ୍ବନ୍ଧରେ ସୂଚନା ମଧ୍ୟ ଦେଇଛନ୍ତି । ଦୁଃଖରେ ଭାଙ୍ଗି ପଡ଼ିବା ହେଉଛି ଅବିବେକୀର କାର୍ଯ୍ୟ । ଦୁଃଖକୁ ବରଣ କରି ଜୀବନର ସ୍ୱର ସନ୍ଧାନ କରିବା ଯଥାର୍ଥରେ ମାନବିକତାର ବଳିଷ୍ଠ ନିଦର୍ଶନ । ଏ ପ୍ରସଙ୍ଗରେ ପ୍ରାବନ୍ଧିକ କେତେକ ଦୃଷ୍ଟାନ୍ତର ଅବତାରଣା କରିଛନ୍ତି । ସେ ରାଜକର୍ମଚାରୀମାନଙ୍କ ସହନଶୀଳତାକୁ ପ୍ରଶଂସା କରିଛନ୍ତି । ତାଙ୍କ ମତରେ ଦୁଃଖକୁ ମୁକାବିଲା କରିବା ନିମନ୍ତେ ଧୈର୍ଯ୍ୟ, ଜ୍ଞାନ ଓ ବିଚାର ବୁଦ୍ଧି ଆବଶ୍ୟକ । ମାନବ ଦୁଃଖ କଷ୍ଟକୁ ଆପଣାର ସହନଶୀଳତା, ଜ୍ଞାନ ଓ ଉପସ୍ଥିତ ବୁଦ୍ଧି ଦ୍ୱାରା ଏଡ଼ାଇ ଦେଇପାରେ । କର୍ମଠ ମଣିଷ ନିଜର ଆତ୍ମବିକାଶକ୍ଷମ ଶକ୍ତିଦ୍ୱାରା ସଂସାରର ଯାବତୀୟ ଦୁଃଖ ଦୁର୍ବିପାକକୁ ସହ୍ୟ କରି ନିଜ ପଥ ନିଜେ ବାଛିବା ଉଚିତ । ଏଠାରେ ସ୍ମରଣ କରାଯାଇପାରେ ଯେ ଦୁଃଖଦୁର୍ଦ୍ଦଶା ମଧ୍ୟ ଦେଇ ମାନବର ସଦ୍‌ଗୁଣ ହିଁ ପ୍ରକାଶିତ ହୋଇଥାଏ ।

ବିବେକୀ ପ୍ରବନ୍ଧରେ ବିଷୟବସ୍ତୁକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ଅବତରଣିକାରେ ସଂସାରର ଦୁଃଖ କଷ୍ଟ ଓ ଏହାକୁ ସହ୍ୟ କରିବାର ମାର୍ଗ ନିର୍ଦ୍ଦେଶିତ । ଦୁଃଖମୟ ଜୀବନ ଓ ଜୀବନମୟ ଦୁଃଖକୁ ଅତି ପ୍ରାଞ୍ଜଳ ରୂପେ ପ୍ରାବନ୍ଧିକ ଏଥିରେ ଆମକୁ ବୁଝାଇ ଦେଇଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ମାନବର ସୁଭଗମ୍ମନ୍ୟତା ସଂପର୍କରେ ସେ କତେକ ବିଷୟ ପ୍ରକାଶ କରିଛନ୍ତି ।

ମାନବର ସୁଭଗମ୍ମନ୍ୟତା (Superiority Complex) ତାହାର ବହୁ ଦୁଃଖର ହେତୁ ସ୍ୱରୂପ ଅଟେ । ମାନବର ଆତ୍ମପ୍ରଶସ୍ତି ବା ନିଜକୁ ବଡ଼ କରି କହିବା ପ୍ରସଙ୍ଗରେ ଏଥିରେ କେତେକ ସାଧାରଣ କଥା ସେ ପ୍ରକାଶ କରିଛନ୍ତି । ସେ ସ୍ତ୍ରୀମାନଙ୍କର, ଗାୟକ ମାନଙ୍କର, ଧର୍ମ ପ୍ରଚାରକ ମାନଙ୍କର ସୁଭଗମ୍ମନ୍ୟତାକୁ ଆଲୋଚନା କରି ସେମାନଙ୍କ ଆତ୍ମବଡ଼ିମାର ମୁଖା ଖୋଲି ଦେଇଛନ୍ତି । ସେ ତୃତୀୟରେ ମଣିଷର ଅପରିପକ୍ୱତାକୁ ବିଚାର ପରିସରଭୁକ୍ତ କରିଛନ୍ତି । ସେ ଚାରି କିସମର ଅପରିପକ୍ୱତା ସଂପର୍କରେ ଅନୁଶୀଳନ କରିଛନ୍ତି । ତାହା ହେଉଛି; ଶାରୀରିକ, ମାନସିକ, ନୈତିକ ଓ ରଚନାଗତ । ସେ ରଚନାଗତ ଅପରିପକ୍ୱତା ସଂପର୍କରେ କେତେଗୁଡ଼ିଏ ଉପାଦେୟ ଯୁକ୍ତି ଦେଇଛନ୍ତି । ତାଙ୍କ ମତରେ ଅପରିପକ୍ୱ ବୟସରେ ରଚନା, ପ୍ରବୀଣ ବୟସର ରଚନା ଅପେକ୍ଷା ଅନେକ ସ୍ଥଳରେ ମହତ୍ତ୍ୱପୂର୍ଣ୍ଣ । ସେ ସାରସ୍ୱତ କ୍ଷେତ୍ରରେ ପରିପକ୍ୱ ସୃଷ୍ଟି ବା ଅପରିପକ୍ୱ ସୃଷ୍ଟି ଏପରି ଗ୍ରହଣ କରିବାକୁ ଆଦୌ ରାଜି ନୁହନ୍ତି । କାରଣ କୌଣସି ସାହିତ୍ୟିକ ସୃଷ୍ଟିର ବିଚାର ପାଇଁ ଲେଖକର ବୟସ କେବଳ ମାପକାଠି ନୁହେଁ । ଲେଖକର ରୁଚିବୋଧ ଓ ଦୂରଦୃଷ୍ଟି ଏଥିରେ ବଡ଼ କଥା । ରାଧାନାଥ ଏସବୁ ଦୃଷ୍ଟିକୋଣରୁ ସାହିତ୍ୟର ଅନୁଶୀଳନ ସପକ୍ଷରେ ଯୁକ୍ତି ବାଢ଼ିଛନ୍ତି । ଏ ସଂପର୍କରେ ସେ କହନ୍ତି, "ତୁମେ ସଂସାର କ୍ଷେତ୍ରରେ ଅକ୍ଳେଶରେ ବିଚରଣ କରୁଅଛ, ଆପଣା କାର୍ଯ୍ୟ ଉତ୍ତମ ରୂପେ କରି ଯଶୋଭାଜନ ହେଉଅଛ । ଯେଉଁମାନେ ସବୁ ବିଷୟରେ ଅଗ୍ରଗଣ୍ୟ ଅଟନ୍ତି, ସେମାନଙ୍କ ଦଳରେ ଭୁକ୍ତ ହୋଇଅଛ । ଯେଉଁମାନେ ତୁମ୍ଭ ପଛରେ ପଡ଼ିଛନ୍ତି, ସେମାନଙ୍କର ଗୋଡ଼ ଭାଙ୍ଗି ଯାଇଅଛି, ଆଉ ଉଠିବାକୁ ସାମର୍ଥ୍ୟ ନାହିଁ । ସେମାନଙ୍କ ପ୍ରତି ଦୟା ବହି ସେମାନଙ୍କ ଦୁଃଖ ବୁଝ । ଦେଖ, ତୁମ୍ଭ ପଛରେ ଜଣେ ଆସୁଛି, ତାହାର ବୋଝ ବଳରେ ଅତିରିକ୍ତ ଅଧକୋଶ ପଛକୁ ପଡ଼ିଛି । ତାକୁ ଟିକିଏ ଦୟାକର ।" (୨) ଏହି ପ୍ରବନ୍ଧରେ ସେ ଦୁଃଖକୁ ଭୁଲି ଜୀବନ କ୍ଷେତ୍ରରେ ଅଗ୍ରସର ହେବାପାଇଁ ଆମକୁ କେତେକ ମହତ୍‌ବାଣୀ ଶୁଣାଇଛନ୍ତି । ମଣିଷ ସ୍ୱଭାବସୁଲଭ ଢ଼ଙ୍ଗରେ ଦୃଢ଼ମନ ଓ ପ୍ରଫୁଲ୍ଲ ଚିତ୍ତରେ ନିର୍ଭୀକଭାବେ କର୍ମ କରିପାରିଲେ ସେ ଜୀବନର ଜାଳ-ଜଞ୍ଜାଳ ଓ ଦୁଃଖ ଦୁର୍ଦ୍ଦଶାକୁ ଅତିକ୍ରମ କରିପାରିବ ବୋଲି ତାଙ୍କର ବିଶ୍ୱାସ ।

ରାଧାନାଥଙ୍କ ବିବେକୀ ପ୍ରବନ୍ଧ ଅଧ୍ୟୟନ କଲେ ପାଶ୍ଚାତ୍ୟ ସାହିତ୍ୟର ପ୍ରସିଦ୍ଧ ପ୍ରାବନ୍ଧିକ ବେକନ ଓ ଏମର୍ସନଙ୍କ ଚିନ୍ତାଧାରା ସ୍ମରଣକୁ ଆସେ । ବେକନ ଯେପରି ମଣିଷଠାରେ ସମସ୍ତ ମାନବିକ ଗୁଣାବଳୀକୁ ଏକାଠି କରି ତାର କର୍ମଜୀବନର

(୨) ରାଧାନାଥ ଗ୍ରନ୍ଥାବଳୀ— (୧୯୬୬)—ପୃଷ୍ଠା—୩୯୬

ବିଚାର କରୁଥିଲେ, ରାଧାନାଥ ଠିକ୍ ସେହିପରି ବିବେକୀ ପ୍ରବନ୍ଧରେ ସବୁବେଳେ ଆଦର୍ଶ ମଣିଷର କଥା କହିଛନ୍ତି । ବେକନଙ୍କ ପ୍ରବନ୍ଧରେ ଈଶ୍ୱର ଓ ଭାଗ୍ୟର କଥା ରହିଛି ଓ ସେ ସର୍ବଦା ଧର୍ମକୁ ମାନବ କଲ୍ୟାଣାଭିମୁଖୀ କରିବାକୁ ଆମକୁ କହିଛନ୍ତି । ବେକନଙ୍କର ଏଇ ଦର୍ଶନକୁ ଏକ ପ୍ରାକୃତିକ ଓ ପ୍ରୟୋଗବାଦୀ ଦର୍ଶନ (Naturalistic and Practical philosophy) କୁହାଯାଇଛି । ରାଧାନାଥ ବେକନଙ୍କର ଏଇ ଦାର୍ଶନିକ ସୂତ୍ରଟିକୁ ବିବେକୀ ପ୍ରବନ୍ଧରେ ଅନେକାଂଶରେ ଗ୍ରହଣ କରିଛନ୍ତି । ସେ ବିବେକୀ ପ୍ରବନ୍ଧରେ ସଂସାରର ଧର୍ମ, ନୀତି, ସ୍ନେହ, ଦୟା ପ୍ରଭୃତି ଯାବତୀୟ ଜାଗତିକ ବସ୍ତୁର କଥା ଉଲ୍ଲେଖ କରି ମଣିଷକୁ ପ୍ରଚୁର ନୀତିଶିକ୍ଷା ଦେଇଛନ୍ତି । ନୀତିନିଷ୍ଠ ଜୀବନ, ନୀତିନିଷ୍ଠ ଜଗତ ଓ ନୀତିପୂର୍ଣ୍ଣ ଆଚରଣର ସ୍ୱର ଏହି ପ୍ରବନ୍ଧରେ ଆମୂଳାନ୍ତ ଶୁଣିବାକୁ ମିଳେ । ଏହି ପ୍ରବନ୍ଧରେ ତରୁଣ ରାଧନାଥ ମାନବ ଚରିତ୍ର ଅଧ୍ୟୟନ ପୂର୍ବକ ତାହାର କର୍ମକୃତିତ୍ୱକୁ ବିଚାର କରିଛନ୍ତି । ଜୀବନ ଦୃଷ୍ଟିର ପ୍ରଶସ୍ତତା ଓ ନୀତିନିଷ୍ଠ ଭାବନାର ଗଭୀରତା ଏହି ପ୍ରବନ୍ଧକୁ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇଛି ।

ରାଧାନାଥଙ୍କ ବିବେକୀ ପ୍ରବନ୍ଧଟି ଭାବବସ୍ତୁ ଦୃଷ୍ଟିରୁ ଯେପରି ଗୁରୁତ୍ୱପୂର୍ଣ୍ଣ, ଗଦ୍ୟାରୀତି ଦୃଷ୍ଟିରୁ ଏହାର ସ୍ୱତନ୍ତ୍ର ସ୍ଥିତି ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ଅନୁଭୂତ ହୁଏ । ଏହାର ଗଦ୍ୟରୀତି ଆଲୋଚନା ପ୍ରସଙ୍ଗରେ ସମସାମୟିକ ବଂଗଳା ସାହିତ୍ୟର ଗଦ୍ୟ ଶୈଳୀର ଅନୁଶୀଳନ ଅପରିହାର୍ଯ୍ୟ ମନେହୁଏ । ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ଗଦ୍ୟରୀତିର ଏକ ନିର୍ଦ୍ଦିଷ୍ଟ ପରମ୍ପରା ନଥିଲା । ମିଶନାରୀମାନଙ୍କ ଦ୍ୱାରା ବାଇବେଲର ଅନୁବାଦ, କେତେକ ପାଠ୍ୟପୁସ୍ତକ ଓ ସାପ୍ତାହିକ 'ଦୀପିକା' ଓ 'ସମ୍ବାଦ ବାହିକା'ରେ ପ୍ରକାଶିତ ବାର୍ତ୍ତାମୁଖୀ ଆଲୋଚନା ସମୂହ ଥିଲା ତଦାନୀନ୍ତନ ଓଡ଼ିଆ ଗଦ୍ୟର ନମୁନା । ରାଧାନାଥ ଏସବୁ ଗଦ୍ୟକୁ ବିବେକୀରେ ଗ୍ରହଣ କରିନାହାନ୍ତି । ସେ ସମସାମୟିକ ବଙ୍ଗଳା ସାହିତ୍ୟର ଗଦ୍ୟକୁ ବରଂ ଅଧିକ ମାର୍ଜିତ ରୂପେ ଗ୍ରହଣ କରିଛନ୍ତି ତାଙ୍କ ପ୍ରବନ୍ଧରେ । ବଙ୍ଗଳା ସାହିତ୍ୟରେ ଊନବିଂଶ ଶତକରେ ଏକ ସ୍ୱତନ୍ତ୍ର ଗଦ୍ୟରୀତି ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ତାଙ୍କର ରଚନାବଳୀ ମାଧ୍ୟମରେ ପ୍ରବର୍ତ୍ତନ କରିଥିଲେ । ଏ ଗଦ୍ୟ ହେଉଛି ସଂସ୍କୃତ ପ୍ରଭାବିତ ଗଦ୍ୟ । ଏହି ସଂସ୍କୃତ ପ୍ରଭାବିତ ଗଦ୍ୟଭାଷା ବିରୋଧରେ ପ୍ୟାରିଚାନ୍ଦ ମିତ୍ର ବିଦ୍ରୋହ କରିଥିଲେ । ସେ ସଂସ୍କୃତ ଭାଷାରୁ ଦୂରେଇ ଯାଇ ସର୍ବସାଧାରଣ ଭାଷାରେ 'ଆଲାଲେର ଘରେର ଦୁଲାଲ' ନାମରେ ଏକ ପ୍ରସିଦ୍ଧ ପୁସ୍ତକ ଲୋକ ସାଧାରଣ ଭାଷାରେ ପ୍ରକାଶ କରିଥିଲେ । ଏହି ପୁସ୍ତକ ପ୍ରକାଶ ପରେ ସାଧାରଣ ଜନତାର ଭାଷାକୁ ନେଇ ଯେଉଁ ଗଦ୍ୟ ଗଢ଼ି

ଉଠିଲା, ତାକୁ 'ଆଲାଲୀ ଭାଷା' କୁହାଗଲା । ବଙ୍କିମଚନ୍ଦ୍ର ଏହି 'ଆଲାଲୀଭାଷା' ଓ ବିଦ୍ୟାସାଗରୀୟ ଗଦ୍ୟରୀତିକୁ ମିଶାଇ ଏକ ନୂତନ ଧରଣର ମିଶ୍ରଗଦ୍ୟ ତାଙ୍କ ଉପନ୍ୟାସରେ ପ୍ରୟୋଗ କରିଛନ୍ତି । ରାଧାନାଥ ଗଦ୍ୟ ରଚନାରେ ମନୋନିବେଶ କରିବା ସମୟରେ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସର ଲୋକପ୍ରିୟତାକୁ ଲକ୍ଷ୍ୟ କରି ବିବେକୀରେ ଏହି ଧରଣର ଗଦ୍ୟନୀତି ଅବଲମ୍ବନ କରିଛନ୍ତି ।

ବିବେକୀରେ ବିଦ୍ୟାସାଗରୀୟ ଗଦ୍ୟରୀତି ଓ ଆଲାଲୀ ଗଦ୍ୟ ରୀତିର ସମନ୍ୱୟ ସାଧିତ ହୋଇଛି । ଏଥିରେ ଅନେକତ୍ର ପୁନରୁକ୍ତି ଦୋଷ ଓ ବହୁସ୍ଥଳରେ ଶବ୍ଦାଡମ୍ବର ପରିଦୃଷ୍ଟ । ସାଧାରଣ ଜନତାର ଭାଷା ମଧ୍ୟ ଅନେକ ସ୍ଥଳରେ ବ୍ୟବହୃତ । ରାଧାନାଥ ଅନେକ ସ୍ଥଳରେ ଅଳଙ୍କାର ବ୍ୟବହାରରେ କୃତ୍ରିମତା ପ୍ରଦର୍ଶନ କରିଛନ୍ତି । ଯେପରି; ''ବାସ୍ତବରେ ଅପ୍ରିୟ ସତ୍ୟ ଦଶମୂଳ ପାଚନ ପରି ଲାଗେ । ଯେଉଁମାନଙ୍କୁ ମହୁପରି ଲାଗେ ସେମାନେ ମହୀରେ ନାହାନ୍ତି ।''

ଏହି ପ୍ରବନ୍ଧରେ ଲେଖକ କେତେକ ସ୍ଥଳରେ ଇଂରାଜୀ ବାକ୍ୟଗଠନ ରୀତି ଅନୁସରଣ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ;

''ନିଶ୍ଚେ ଜାଣିଥିବ, ସ୍ଥାୟୀ ହିଂସା ସବୁବେଳେ କ୍ରୁମ୍ଭାର ପ୍ରସୂତି ନୁହଇ ।''

''ବାସ୍ତବରେ ଦୁଃଖ ବହୁଦର୍ଶିତାର ଅଟଇ ।''

ବିବେକୀରେ ଅନେକ ସ୍ଥାନରେ କବିକଳ୍ପନା ରହିଛି । ଗଦ୍ୟରେ କବିଙ୍କ ପ୍ରକୃତି ବର୍ଣ୍ଣନା ହୃଦୟସ୍ପର୍ଶୀ । ଏଠାରେ ଏହାର ନମୁନା ଦେଖନ୍ତୁ । ''ମେଘ ଛାଡ଼ିବ ନାହିଁ । ଦିନଯାକ ବର୍ଷା ହେବ । ଏହା ଭାବିଥିଲି । ମାତ୍ର ମେଘ କଟିଗଲା । ସୂର୍ଯ୍ୟ ବାହାରିଲେ । ବୃକ୍ଷ ପତ୍ରାଗ୍ରରେ ଲମ୍ବିତ ଜଳବିନ୍ଦୁରେ ରବି କିରଣ ପତିତ ହୋଇ ଇନ୍ଦ୍ରଧନୁ ପ୍ରଭାପୁଞ୍ଜ ପ୍ରାୟେ ଦିଶିଲା; ଆର୍ତ୍ତି ଏବଂ ଭକ୍ତିର ଏକତ୍ର ସମାବେଶ ପ୍ରାୟ ମନୋହର ଦିଶିଲା ।'' ଏହି ଗଦ୍ୟରୁ ଯେ କେହି ରାଧାନାଥଙ୍କ କବିତ୍ୱ କଳନା କରିପାରିବ ।

ବିବେକୀରେ କେତେକ ସ୍ଥାନରେ ବାକ୍ୟଗଠନଗତ ତ୍ରୁଟି ରହିଛି । ''ଏହା ମଧ୍ୟ ଜାଣିବାର ବିହିତ କି ଯେ, ଅନେକ ଲୋକ ତୁମ୍ଭ ଆଗରେ ବସିଅଛନ୍ତି, ମାତ୍ର ତୁମେ ଯେମନ୍ତ ଜାଣ ନାହିଁ ଏପରି ବ୍ୟାଜ କରିବାର ଅତ୍ୟନ୍ତ ଗର୍ହଣୀୟ ଅଟେ ।''

''ତୁମ୍ଭେ ତାଙ୍କ ପାଖରେ ବସି କଥାବାର୍ତ୍ତା କରୁଅଛ, ହଠାତ୍ କୁଆଡ଼େଙ୍କ ଆଖିଡୋଳା ବୁଲିଲା ।'' ବିବେକୀ ପ୍ରବନ୍ଧରେ କେତେକ ସ୍ଥଳରେ ପ୍ରାଚୀନ ପ୍ରୟୋଗମାନ ଦେଖାଯାଏ । ଯଥା; 'ଚଳମାଡ଼େ', 'ହେତୁକି', 'ଭାଳିଥିଲା' 'ଅମୁକେଇ', 'କୁହାରେ', 'ଭଲା', 'ଏହିତ୍ୟ' ପ୍ରଭୃତିର ବ୍ୟାପକ ପ୍ରୟୋଗ

ଦେଖିବାକୁ ମିଳେ । ଏଥିରେ ଦୀର୍ଘ ସମାସବହୁଳ ଶବ୍ଦର ବ୍ୟବହାର ପାଠକକୁ ବେଳେ ବେଳେ ବିରକ୍ତ କରେ । 'କବିକୀର୍ତ୍ତି -'ଦୁରାଶାଗ୍ରସ୍ତ', ମୁନିସତ୍ତମ', 'ହିତାହିତଜ୍ଞାନାଭିମାନୀ', 'ଅନିଷ୍ଟାଶଙ୍କା', 'ଅନବଧାନ', 'ଲବ୍‌ଧଛିଦ୍ର', ଗଞ୍ଜନାନଳ'— ଏହିପରି ବହୁଶବ୍ଦ ପାଠକକୁ ବରିକ୍ତି ଲାଗେ ।

ରାଧାନାଥ ସ୍ଥାନେ ସ୍ଥାନେ ବିବେକୀ ପ୍ରବନ୍ଧକୁ ସୁଖପାଠ୍ୟ କରିବା ପାଇଁ ବ୍ୟଙ୍ଗୋକ୍ତି (irony) ଓ ବିରୋଧାଭାସ (Antithesis) ପ୍ରଭୃତି ଆଳଙ୍କାରିକ ପ୍ରୟୋଗ କରିଅଛନ୍ତି । ରାଧାନାଥଙ୍କ ଗଦ୍ୟ କେତେକ କ୍ଷେତ୍ରରେ ମଧ ଉଦ୍‌ବୋଧନ ଧର୍ମୀ ହୋଇଛି ।

ଯେଉଁ ସମୟରେ ପ୍ରବନ୍ଧ ସଂପର୍କରେ କେହି କିଛି ଜାଣିନଥିଲେ, ସେତେବେଳେ ରାଧାନାଥ ପ୍ରବନ୍ଧ ରଚନା କରି ଏକ ଦୁଃସାହସିକ ପଦକ୍ଷେପ ଓଡ଼ିଆ ଗଦ୍ୟ ସାହିତ୍ୟରେ ନେଇଥିଲେ । ଏହାର ସଫଳ ଅର୍ଘ୍ୟ 'ବିବେକୀ' । ଏ ପ୍ରବନ୍ଧଟି ପଢ଼ିବାକୁ ଆଦୌ ସୁଖପାଠ୍ୟ ନୁହେଁ କିମ୍ବା ବୁଝିବାକୁ ଏଡ଼େ ସହଜ ନୁହେଁ । ଏ ସତ୍ତ୍ୱେ ଏଥିରେ କବିଭାବ, ତାରୁଣ୍ୟର ଅନ୍ୱେଷା ମନୋବୃତ୍ତି, ତାର୍କିକର ଅକାଟ୍ୟ ଯୁକ୍ତି ଓ ଆଦର୍ଶ ମଣିଷର ନୈତିକ ଦୃଷ୍ଟି ପ୍ରକାଶିତ । 'ବିବେକୀ' ପ୍ରବନ୍ଧଟି ଊନବିଂଶ ଶତକରେ ମଧୁସୂଦନ ଓ ବିଶ୍ୱନାଥ କରଙ୍କ ପରି ପ୍ରାବନ୍ଧିକଙ୍କୁ ମଧ୍ୟ ପ୍ରବନ୍ଧ ରଚନା ପାଇଁ ପ୍ରେରଣା ଦେଇଥିଲା । ଏବେସୁଦ୍ଧା ଏହି ପ୍ରବନ୍ଧଟି ପ୍ରଥମ ଓଡ଼ିଆ ପ୍ରବନ୍ଧ ରୂପେ ଅଗଣିତ ପାଠକର ଶ୍ରଦ୍ଧା ଭାଜନ ହୋଇ ରହିଛି ।



# ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବିତ କବି ରାଧାନାଥ ରାୟ

ଶ୍ରୀ ପଠାଣି ପଟ୍ଟନାୟକ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶା ଭୂଖଣ୍ଡରେ ଇଂରେଜୀଶିକ୍ଷା ପ୍ରଚଳନ ପାଇଁ ଔପନିବେଶିକ ଇଂରେଜ ସରକାର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ସେକାଳରେ ଯେଉଁମାନେ ଏହି ଶିକ୍ଷାନୁଷ୍ଠାନରେ ଇଂରେଜୀ ସାହିତ୍ୟ ଅଧ୍ୟୟନ କରି ଉତ୍ତୀର୍ଣ୍ଣ ହୋଇଥିଲେ, ସେହି ସ୍ୱଳ୍ପସଂଖ୍ୟକ ଶିକ୍ଷିତମାନଙ୍କ ମଧ୍ୟରେ ରାଧାନାଥ ରାୟ ଥିଲେ ଅନ୍ୟତମ । ମୁଦ୍ରାଯନ୍ତ୍ର ଆସିବା ପୂର୍ବରୁ ଓଡ଼ିଆ ସାହିତ୍ୟ ଲିପିବଦ୍ଧ ହେଉଥିଲା ତାଳପତ୍ର ପୋଥିରେ । ସାହିତ୍ୟିକମାନଙ୍କର ପ୍ରେରଣାର ଉତ୍ସ ଥିଲା ସଂସ୍କୃତ ସାହିତ୍ୟ । ଇଂରାଜୀଶିକ୍ଷାର ପ୍ରସାର ଯୋଗୁ ଓଡ଼ିଆ ସାହିତ୍ୟର ପ୍ରେରଣାର କ୍ଷେତ୍ର ବିସ୍ତାରିତ ହୋଇଗଲା । ଇଂରେଜୀ ସାହିତ୍ୟ ମାଧ୍ୟମରେ ଇଉରୋପୀୟ ସାହିତ୍ୟ ଅଧ୍ୟୟନ ପାଇଁ ନୂତନ ମାର୍ଗ ଉଦ୍‌ଘାଟିତ ହେଲା । ମୁଦ୍ରଣଶିଳ୍ପର ପ୍ରସାର ଯୋଗୁ ଭାରତର ପ୍ରାଦେଶିକ ସାହିତ୍ୟ ମଧ୍ୟ ଅଧ୍ୟୟନ କରିବା ପାଇଁ ଅନୁକୂଳ ବାତାବରଣ ସୃଷ୍ଟିହେଲା । ଏହିପରି ସାଂସ୍କୃତିକ ପାଣିପାଗ ମଧ୍ୟରେ ଓଡ଼ିଆ ସାହିତ୍ୟରେ ଲେଖନୀ ଧାରଣ କରିଥିଲେ କବି ରାଧାନାଥ ।

ରାଧାନାଥ ନୈସର୍ଗିକ କବିପ୍ରତିଭାର ଅଧିକାରୀ ହୋଇଥିଲେହେଁ ମୌଳିକ ଗଳ୍ପ ସୃଷ୍ଟି କରିବାପାଇଁ ସେ ଅକ୍ଷମ ଥିଲେ । ତେଣୁ ତାଙ୍କର କାବ୍ୟଗୁଡ଼ିକର କଥାବସ୍ତୁ ବାହ୍ୟତଃ ଓଡ଼ିଶାର ଇତିହାସର ରୂପାୟନ ପରି ମନେ ହେଉଥିଲେହେଁ ସେଗୁଡ଼ିକର କଙ୍କାଳ ସେ ଗ୍ରହଣ କରିଥିଲେ ପାଶ୍ଚାତ୍ୟ ସାହିତ୍ୟରୁ । ରାଧାନାଥଙ୍କର କାବ୍ୟିକ ସୌନ୍ଦର୍ଯ୍ୟକୁ ଅବହେଳା କରି ଏହି ଅକ୍ଷମତା ପାଇଁ କଠୋର ଭାବରେ କେତେକ ଆଲୋଚକ ସମାଲୋଚନା କରିଥିବା ଜଣାଯାଏ । ଉଦାହରଣ ସ୍ୱରୂପ ‘‘ଚତୁରଙ୍ଗ’’ ମାସିକ ସାହିତ୍ୟ ପତ୍ରିକାରେ ପ୍ରତିଥଯଶାକବି ବିନୋଦ ଚନ୍ଦ୍ର ନାୟକ ‘‘ରାଧାନାଥଙ୍କ କେଦାରଗୌରୀ ଓ ଗ୍ରୀକ୍ ଗଳ୍ପ’’ ପ୍ରବନ୍ଧରେ ଲେଖିଥିଲେ— ‘‘ସେ ପ୍ରାଚୀନ ଉତ୍କଳର ଇତିହାସ-ଉପାଖ୍ୟାନ ନାମରେ ଅଳୀକ ଗଳ୍ପ, ଧର୍ମ ନାମରେ କପୋଳକଳ୍ପିତ ପ୍ରବଞ୍ଚନା ଆଣି ଉତ୍କଳର ପରିସ୍ଥିତି ମଧ୍ୟରେ ଉତ୍କଳୀୟ ବେଶଭୂଷା ପରିଧାନ କରାଇ ପ୍ରତିଥଯଶା ଦେଶୀୟ କବିରୂପେ ପରିଚିତ କରାଇ ପାରିଛନ୍ତି ।’’

ସେହି "ଚତୁରଙ୍ଗ" ମାସିକ ସାହିତ୍ୟ ପତ୍ରରେ କବି ବିନୋଦଚନ୍ଦ୍ର ନାୟକ "ରାଧାନାଥଙ୍କ ଉଷା ଓ ଆଟ୍‌ଲାଣ୍ଟାସ୍ ଛେସ୍" ପ୍ରବନ୍ଧରେ ଅତ୍ୟନ୍ତ ଅନୁଦାର ଭାବରେ ଲେଖିଅଛନ୍ତି— "କିନ୍ତୁ ରାଧାନାଥ ବଙ୍ଗସାହିତ୍ୟକୁ ଯାହା ତାଙ୍କର "କବିତାବଳୀ"ରେ ଦେଲେ, ଉତ୍କଳ ସାହିତ୍ୟକୁ ତାହା ଦେଇ ନାହାନ୍ତି । × × × ରାଧାନାଥ ଆମକୁ ଦେଇଯାଇଛନ୍ତି ବୈଦେଶିକ ସାହିତ୍ୟର ରୋମନ୍ଥନ ଉଚ୍ଛିଷ୍ଟ । ଆଜି ସେହି ଉଚ୍ଛିଷ୍ଟ ସାହିତ୍ୟର ରସଗ୍ରହଣ କରି ଉତ୍କଳ ରସପିପାସୁ ନିଜକୁ ଧନ୍ୟବାଦାର୍ହ ମନେ କରେ ଏବଂ ବିଂଶଶତାବ୍ଦୀର ପ୍ରଥମ ଭାଗର ଶ୍ରେଷ୍ଠ କବିରୂପେ ଔପନିବେଶିକ ବଙ୍ଗ ବ୍ୟକ୍ତିଙ୍କ ସ୍ତୁତିଗାନ କରିବୁଲେ ।"

ବିଂଶ ଶତାବ୍ଦୀର ଶେଷଭାଗରେ ମଧ୍ୟ ଏହି ଶତାବ୍ଦୀର ଜଣେ ଶ୍ରେଷ୍ଠ କବି ଭାବରେ ରାଧାନାଥ ସୁପ୍ରତିଷ୍ଠିତ । କବିରାଧାନାଥଙ୍କୁ ଔପନିବେଶିକ କହି ଲେଖକ ଉନ୍ନତ ରୁଚିବୋଧର ପରିଚୟ ପ୍ରଦାନ କରିନାହାନ୍ତି । ରାଧାନାଥଙ୍କ ପୂର୍ବପୁରୁଷ ଯେପରି ଓଡ଼ିଶାକୁ ଆସିଥିଲେ କେବଳ ଓଡ଼ିଶାର ଗିରିଜନମାନଙ୍କୁ ବାଦଦେଲେ ଏ ଅଞ୍ଚଳରେ ଅଧ୍ୟୁଷିତ ଅଧିକାଂଶ ଜାତି ବାହାରୁ ଆସିଥିଲେ ବୋଲି ଜଣାଯାଏ । ପଶ୍ଚିମା ଅଧିବାସୀ ଭୂପତିପଣ୍ଡିତ 'ପ୍ରେମପଞ୍ଚାମୃତ' କାବ୍ୟ ରଚନା କରି ଓଡ଼ିଆ ସାହିତ୍ୟର ବରେଣ୍ୟ କବି ରାଧାନାଥଙ୍କ ପରି ଜଣେ ସ୍ୱାଭିମାନୀ ଓଡ଼ିଶା ପ୍ରେମୀ କବି କ୍ୱଚିତ ଦୃଷ୍ଟିଗୋଚର ହୋଇଥାନ୍ତି । ସେ ଲେଖିଥିଲେ—

"ପୂର୍ଣ୍ଣଦଳେ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଲଳିତ,
ଶ୍ରେଷ୍ଠ ଏ ଉତ୍କଳଭୂମି ଗୁଣେ ଗରିୟସୀ ।"

"ଦେବୀ ବୀଣାପାଣି କେଉଁ ପାପ ଫଳେ
କରୁଣା ତୋହର ଊଣା ଏ ଉତ୍କଳେ ।"

ନିଜ ଘରର ଭାଷା ବଙ୍ଗଳାରେ ରାଧାନାଥ ପ୍ରଥମ ବୟସରେ କବିତା ରଚନା କରିବା ଥିଲା ସ୍ୱାଭାବିକ । ତତ୍କାଳୀନ ଶିକ୍ଷାବିଭାଗର ବରିଷ୍ଠ କର୍ମଚାରୀ ଓ ପ୍ରତିଷ୍ଠିତ ବଙ୍ଗୀୟ ଲେଖକ ଭୂଦେବ ମୁଖୋପାଧ୍ୟାୟଙ୍କୁ ରାଧାନାଥ ନିଜର କବିତାବଳୀର ପାଣ୍ଡୁଲିପି ଦେଖାଇଥିଲେ । "ସେ ମନଯୋଗପୂର୍ବକ ସମସ୍ତ ପାଠ କଲେ ଏବଂ ଅନୁକୂଳ ମତ ପ୍ରକାଶ କରି କହିଲେ, "ପୁରାତନ ବିଷୟ ଘେନି ଶକ୍ତିର ଓ ଶ୍ରମର ବିନିଯୋଗ କର କାହିଁକି ? ତୁମର ପାଣ୍ଡୁଲେଖ୍ୟ ପାଠ କରି ମୁଁ ପ୍ରୀତ ହୋଇଅଛି; ଏହାକୁ ଏଡୁକେଶନ ଗେଜେଟରେ ଛପାଇଦେବି; କିନ୍ତୁ ମୁଁ ଆଶା କରୁଅଛି, ତୁମେ ନୂଆ ଗଢ଼ିବାକୁ ଚେଷ୍ଟା କରିବ । ଦେଖ, × × × ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତ ଧାତ୍ରୀ । ଓଡ଼ିଶାରେ ଯେଉଁଆଡ଼କୁ ଚାହିଁବ, ନୂଆ

ଗଢ଼ିବାର ଉପାଦାନ ଯଥେଷ୍ଟ ରହିଅଛି ।'' ମୁଁ କହିଲି— ''ନୂଆ ଘଟନା କଳ୍ପନାରୁ ଉଦ୍ଭାବନା କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ ।''

(ରାଧାନାଥ ଜୀବନୀ —ଦୁର୍ଗାଚରଣ ରାୟ—୧୯୪୧, ପୃ-୧୦୨)

ଇଂରାଜୀ ସାହିତ୍ୟ ମାଧ୍ୟମରେ ଏ ଦେଶର ଶିକ୍ଷିତଗୋଷ୍ଠୀ ସର୍ବପ୍ରଥମେ ପାଶ୍ଚାତ୍ୟ ସାହିତ୍ୟର ରସାସ୍ୱାଦନ କରିଥିଲେ । ରାଧାନାଥ ଥିଲେ ଏହି ଗୋଷ୍ଠୀର । ସେ ଦେଶୀୟ ସାହିତ୍ୟର ପାରମ୍ପରିକ ଆଦର୍ଶକୁ ଗ୍ରହଣ କରିଥିଲେହେଁ ପାଶ୍ଚାତ୍ୟ ସାହିତ୍ୟ ଐଶ୍ୱର୍ଯ୍ୟକୁ ନିଜ ରଚନାରେ ଆହରଣ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାର ପରିକଳ୍ପନା ଥିଲା ଅତ୍ୟନ୍ତ ସ୍ୱାଭାବିକ । ପୁନଶ୍ଚ ମୌଳିକ କଳ୍ପନାରୁ କଥାବସ୍ତୁ ପ୍ରସ୍ତୁତ କରିବା ଥିଲା ତାଙ୍କ ପାଇଁ ସାଧ୍ୟାତୀତ ବୋଲି ସେ ସ୍ୱୀକାର କରିଛନ୍ତି । ତେଣୁ ରାଧାନାଥଙ୍କ କାବ୍ୟର କଥାବସ୍ତୁ ପାଶ୍ଚାତ୍ୟ ସାହିତ୍ୟରୁ ଇଚ୍ଛାକୃତଭାବରେ ଗ୍ରହଣ କରାଯାଇଅଛି । ସୁସମାଲୋଚକ ଅଧ୍ୟାପକ ନଟବର ସାମନ୍ତରାୟ ଯଥାର୍ଥରେ ଲେଖିଛନ୍ତି—''କେଦାରଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ—ସ୍ଥୂଳ ଦୃଷ୍ଟିରେ ଉପରୋକ୍ତ ପାଞ୍ଚୋଟି କାବ୍ୟ ଅଧ୍ୟୟନ କଲେ ଜଣାଯାଏ, ରାଧାନାଥ ହେଉଛନ୍ତି ରୋମାନ କବି ଓଭିଡ଼ଙ୍କର ଏକ ଓଡ଼ିଆ ସଂସ୍କରଣ ମାତ୍ର'' (ଓଡ଼ିଆ ସାହିତ୍ୟର ଇତିହାସ—୧୯୬୪—ପୃ.୨୭୩)

ଏହି କାବ୍ୟଗୁଡ଼ିକ ପାଠକଲେ ମନେହୁଏ ଯେପରି ଏହି ଆଖ୍ୟାନ ଭାଗଗୁଡ଼ିକର ମୂଳପୀଠ ଓଡ଼ିଶାଭୂଇଁ । ଓଡ଼ିଶାର ଭୌଗୋଳିକ ସମ୍ପଦ ଏବଂ ଐତିହାସିକ ଘଟଣାକୁ ସେ ଏପରି ଭାବରେ ଗୁମ୍ଫିତ କରିଛନ୍ତି ଯେ କବି ସତ୍ୟର ପ୍ରତୀତି ଆଣି ମୂଳ ଆହରଣକୁ ଗୋପନ କରିଥିବା ଜଣାଯାଏ । 'ଚିଲିକା' ଏବଂ 'ମହାଯାତ୍ରା' ଭଳି କାବ୍ୟ ମଧ୍ୟ ଏପରି ପ୍ରଭାବରୁ ମୁକ୍ତ ହୋଇପାରି ନାହାନ୍ତି । ତେବେ ଆମ ସାହିତ୍ୟରେ ନୂତନ ଧାରାର ପ୍ରବର୍ତ୍ତନ ପାଇଁ ଯେ କବି ସଚେତନ ପ୍ରୟାସ କରିଥିଲେ, ଏହା କଣ ଅସ୍ୱୀକାର କରାଯାଇ ପାରିବ ?

ନୈସର୍ଗିକ ପ୍ରକୃତିର ପରମ ଉପାସକ ଭାବରେ ରାଧାନାଥ ସୁପରିଚିତ । ଓଡ଼ିଶାର ପ୍ରକୃତି ତାଙ୍କର କାବ୍ୟ ସଂସାରେ ଜୀବନ୍ତ ଏବଂ ଅପୂର୍ବ ସୁଷମାମଣ୍ଡିତ । ପ୍ରକୃତି ସଂସାରର ଏହି ଅଭିନବ ରୂପାୟନପାଇଁ ରାଧାନାଥ ବହୁ ପରିମାଣରେ ଋଣୀ, ଇଂରେଜୀ ସାହିତ୍ୟର ରୋମାଣ୍ଟିକ କବି ସେଲି, ୱାର୍ଡ଼ସ୍‌ୱର୍ଥ, କିଟସ୍, ବାଇରନଙ୍କ ନିକଟରେ । ଭାରତୀୟ ସାହିତ୍ୟର ଆଭିମୁଖ୍ୟ ହେଉଛି ମିଳନାନ୍ତକ (କମେଡ଼ି) । ରାଧାନାଥ ଓଡ଼ିଆ ସାହିତ୍ୟରେ ପ୍ରଥମ କରି ଟ୍ରାଜିକ୍ ଭାବଧାରା ପ୍ରବର୍ତ୍ତନ କଲେ ଇଂରେଜ କବି ସେକ୍ସପିୟରଙ୍କ ନାଟକ ଓ ଗ୍ରୀକ୍ ସାହିତ୍ୟର ପ୍ରଭାବରେ । ଇଂରେଜ କବି ମିଲ୍ଟନଙ୍କୁ ଅନୁସରଣ କରି ଓଡ଼ିଆ ସାହିତ୍ୟରେ

ଅମିତ୍ରାକ୍ଷର ଛନ୍ଦର ସଫଳ ପରୀକ୍ଷା କରିଥିଲେ ରାଧାନାଥ । ଅବଶ୍ୟ ତତ୍କାଳୀନ ବଙ୍ଗୀୟ କବି ମାଇକେଲ ମଧୁସୂଦନଙ୍କ ଲେଖାରୁ ସେ ପ୍ରେରଣାଲାଭ କରିଥିବା ଅସମ୍ଭବ ନୁହେଁ । କଥାବସ୍ତୁର ଆହରଣ ସତ୍ତ୍ୱେ କବି ତାହାକୁ ମୌଳିକ ସୌନ୍ଦର୍ଯ୍ୟରେ ରୂପାନ୍ତରିତ କରିଦେଇଛନ୍ତି । ''The impact of the west on Oriya literature'' ପ୍ରବନ୍ଧରେ ଡଃ କୁଞ୍ଜବିହାରୀ ଦାସ ଯଥାର୍ଥରେ ଲେଖିଛନ୍ତି—

''The plot of Jajatikeshari was borrowed from Shakespeare's Cymbeline, of Usha from the greek legend Atlanta's Race, of Nandikeshwari from Byrun's Siege of Corinth, of Kedaragauri from Chaucer's Pyramis and Thisbey. Inspite of these borrowings Radhanath has been hailed as an epock maker and the father of modrn Oriya poetry.''

(Indian Literature—Editor—A. Podar— Vol.-16 P. 80, 1972)

କେବଳ କାବ୍ୟ କବିତା ରଚନାରେ ରାଧାନାଥ ପାଶ୍ଚାତ୍ୟ ସାହିତ୍ୟଦ୍ୱାରା ପ୍ରଭାବିତ ନୁହନ୍ତି । ଗଦ୍ୟ ସାହିତ୍ୟର ବିକାଶରେ ମଧ୍ୟ କବିଙ୍କର ପ୍ରେରଣାର କ୍ଷେତ୍ର ହେଉଛି ପାଶ୍ଚାତ୍ୟ ସାହିତ୍ୟ । 'ବିବେକୀ', 'ଇଟାଲୀୟଯୁବା' ଅଥବା ନାନା ଭ୍ରମଣ କାହାଣୀର ପରଂପରା ଦେଶୀୟ ସାହିତ୍ୟରେ ପୂର୍ବରୁ ନଥିଲା । ରାଧାନାଥ ହିଁ ହେଲେ ଏ କ୍ଷେତ୍ରରେ ପଥପ୍ରଦର୍ଶକ । ଚାରିତ୍ରିକ ଆଭିମୁଖ୍ୟ, ଜାତୀୟତାବୋଧ, ବାସ୍ତବବାଦୀ ଅନୁଚିନ୍ତା, ଇତିହାସପ୍ରାଣତା ଏବଂ ଭୌଗୋଳିକ ଐଶ୍ୱର୍ଯ୍ୟ ପ୍ରକଟନ ପ୍ରଭୃତି ଯାହା ରାଧାନାଥଙ୍କ କାବ୍ୟସଂସାରର ବୈଶିଷ୍ଟ୍ୟ, ସେହିସବୁ ବିଭାବ ମଧ୍ୟ ପାଶ୍ଚାତ୍ୟ ସାହିତ୍ୟରୁ ପ୍ରେରଣାର ପ୍ରତିଫଳନ । ରାଧାନାଥଙ୍କର କାବ୍ୟର ନୈସର୍ଗିକ ପ୍ରକୃତି ସଂସାର କେବଳ ଗଛଲତା, ପାଣି ପବନ, ଉପତ୍ୟକା ଅଧିତ୍ୟକାର ବର୍ଣ୍ଣିଳ ସମାହାର ନୁହେଁ । ସେ ସବୁ ଜୀବନ୍ତ, ବ୍ୟକ୍ତିତ୍ୱ ସମ୍ପନ୍ନ ଏବଂ ମଣିଷର ପ୍ରିୟ ବନ୍ଧୁ, ପ୍ରେରଣାଉସ୍ଥଳୀ ଏବଂ ଶିକ୍ଷକ ପରି । ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରେ ଏପରି ଅନୁଚିନ୍ତା ଆମ ସାହିତ୍ୟରେ ସମ୍ପୂର୍ଣ୍ଣ ଅଭିନବ କହିଲେ ଅତ୍ୟୁକ୍ତି ହେବ ନାହିଁ । ନନ୍ଦିକା ମୁଖରେ କବି ଯେତେବେଳେ କୁହାଇଅଛନ୍ତି—

''ସୁତାରେ ପିତାଙ୍କ ପୂର୍ଣ୍ଣ ଅଧିକାର
ଭଣେ ଯେଉଁ ଶାସ୍ତ୍ର ତାକୁ ନମସ୍କାର ।''

ପାଶ୍ଚାତ୍ୟ ସାହିତ୍ୟରେ ଗଣତାନ୍ତ୍ରିକ ଆଭିମୁଖ୍ୟର ଏହା ପଦଧ୍ୱନି ବୋଲି ମନେ ହୋଇଥାଏ ।

ପ୍ରସଙ୍ଗକ୍ରମେ ରାଧାନାଥଙ୍କର କେତୋଟି କାବ୍ୟର କଥାବସ୍ତୁ ଏଠାରେ ଆଲୋଚନା କରାଯାଉଛି । କବିଙ୍କର ପ୍ରଥମ କାବ୍ୟ 'କେଦାରଗୌରୀ' ୧୮୮୫

ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିଲା । ଓଡ଼ିଆ ସାହିତ୍ୟରେ ଏହା ବୋଧହୁଏ ପ୍ରଥମ ବିୟୋଗାନ୍ତକ କାବ୍ୟ । ଗ୍ରୀକ୍ ଗଳ୍ପ ପିରାମସ୍ ଓ ଥିସ୍‌ବିରୁ ଏହାର କଥାବସ୍ତୁ ଗୃହୀତ । ସେକ୍ସପିଅୟରଙ୍କର 'ମିଡ୍‌ସମର ନାଟିସ୍‌ଡ୍ରିମ୍' ନାଟକରେ ଥିସିଅସଙ୍କ ବିଦାୟକାଳରେ ଏଥେନ୍‌ସର କେତେକ ଲୋକ ଏହି ଉପାଖ୍ୟାନକୁ ଅବଲମ୍ବନ କରି ଅଭିନୟ ପ୍ରଦର୍ଶନ କରିଅଛନ୍ତି । ରାଧାନାଥ ଏଥିରୁ ଅବିକଳ ଆହରଣ କରିଯାଇଛନ୍ତି, ଅଥଚ ଆହୃତ ହୋଇଛି ବୋଲି କୌଣସି ସୂଚନା ପ୍ରଦାନ ନ କରି ତାହାକୁ ଓଡ଼ିଶାର ପାଣିପାଗରେ ମିଶାଇ ଦେବାପାଇଁ ଚେଷ୍ଟିତ ହୋଇଛନ୍ତି । ଏହି ପ୍ରଚେଷ୍ଟା ଯୋଗୁ ଓଡ଼ିଶା ଇତିହାସର ଅବମାନନା ହୋଇଥିଲେହେଁ କବିଙ୍କର ସାର୍ଥକ କାବ୍ୟ-କୌଶଳ ଯୋଗୁ ଏହି ବର୍ଣ୍ଣନା ବିଳାସ ଓଡ଼ିଶା ମାଟିରେ ସତ୍ୟର ପ୍ରତୀତି ଆନୟନ କରିଅଛି । ପ୍ରଭାବିତ ବର୍ଣ୍ଣନାବିଳାସର କେତୋଟି ଉଦାହରଣ—

"ପାଖ ପଡ଼ିଶା ସେ ବେନି କାନ୍ଥ ହେଲା
ବେନି ମଧ୍ୟେ ଅନ୍ତରାଳ ।"

"Now is the mural down btween
The two neighbours,
Wall, that wall, which these lovers sunder"
(A mid Summer Night's Dream)

"କହନ୍ତି କାନ୍ଥକୁ ନିଦାରୁଣ ! ଏଥି କେଉଁ ବଡ଼ପଣ ତୋର
ତନୁରୁ ତନୁକୁ ଅନ୍ତର କରି ତୁ ଲଭିବୁ ଦୁଷ୍କୃତି ଘୋର ।
"Oh wicked wall, Through whom I see no bliss
cursed by thy stones for thus, deceiving me."
(A Mid Summer Nights Dream)

"ଏହି ରୂପେ ଝୁରି କିଶୋର କିଶୋରୀ
ମେଲାଣି ନିଅନ୍ତି ଦୁଃଖେ
ଯେ ଯାହା ପାଖରେ ଚୁମ୍ବ ଦେଉଥାନ୍ତି
ପ୍ରେମଭୋଳେ ରନ୍ଧ୍ରମୁଖେ ।
"O Kiss me through the hole of this vile wall,
This - I kiss the wall's hole, not your lips at all."

ମୂଳ କଥାବସ୍ତୁର ସଙ୍କେତସ୍ଥଳ ବେବିଲୋନର ପ୍ରଥମ ରାଜା ନିନସ୍‌ଙ୍କ କବରସ୍ଥଳ । ରାଧାନାଥ କେଦାରଗୌରୀଙ୍କର ମିଳନସ୍ଥଳ କରିଛନ୍ତି ଭୁବନେଶ୍ୱରର ଅରଣ୍ୟ । ରାଧାନାଥଙ୍କ ପରିକଳ୍ପନାକୁ କଟାକ୍ଷ କରି କବି ବିନୋଦଚନ୍ଦ୍ର ନାୟକ

ତାଙ୍କର 'କେଦାରଗୌରୀ' ଆଲୋଚନାରେ ଲେଖିଥିଲେ—"ମୂଳ ପିଣ୍ଡ ଛାଡ଼ିଦେଲେ ବାକି ରାଧାନାଥୀ କୌଶଳ କେଦାରଗୌରୀରେ କିଛି ନାହିଁ । × × × ନୂତନ ଯୁଗର ପଥଦ୍ରଷ୍ଟା କବି ରାଧାନାଥ ଆମ୍ଭମାନଙ୍କୁ କେବଳ ପ୍ରତାରଣା ମାତ୍ର କରିଛନ୍ତି ।"

'କେଦାର ଗୌରୀ'ର ପରବର୍ତ୍ତୀ କାବ୍ୟ 'ଚନ୍ଦ୍ରଭାଗା' । ଏହାର ରଚନାକାଳ ୧୮୮୬ । ଗ୍ରୀକ୍ ଗଳ୍ପ ଆପୋଲ ଏବଂ ଡାଫନିରୁ ଏହା ଗୃହୀତ । ମୂଳ ଗଳ୍ପରେ ପର୍ଣ୍ଣାସସ୍ ପର୍ବତ ନିକଟରେ ଆପୋଲଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାର ସ୍ଥାନ । ଚନ୍ଦ୍ରଭାଗାରେ ସୂର୍ଯ୍ୟଙ୍କଠାରେ ପ୍ରତିଶୋଧ ନେଇଛନ୍ତି କନ୍ଦର୍ପ ବେଲେଶ୍ୱରଠାରେ । ମୂଳ କଥାର ଡାଫନି ହୋଇଛି ଓଡ଼ିଆ କାବ୍ୟରେ ଚନ୍ଦ୍ରଭାଗା । ନଦୀର ଦେବତା ପେନିଅସ୍ ରାଧାନାଥଙ୍କ ସୁମନ୍ୟୁ ଋଷି । ମୂଳ ଗଳ୍ପର ନାୟିକା ପରିଣତିରେ ଲରେଲ ବୃକ୍ଷରେ ରୂପାନ୍ତରିତ । ମାତ୍ର ଓଡ଼ିଆ କାବ୍ୟରେ ଚନ୍ଦ୍ରଭାଗା ମହାସାଗରରେ ଲୀନ ହୋଇଯାଇଛି । ମୂଳ ଗ୍ରନ୍ଥରେ କ୍ୟୁପିଡ୍‌ଙ୍କର ଦୁଇଟି ଶର । ଗୋଟିଏ ଆକର୍ଷଣ କରେ ଏବଂ ଅନ୍ୟଟି କରେ ବିକର୍ଷଣ । ଭାରତୀୟ କାମଦେବଙ୍କର ପାଞ୍ଚଗୋଟି ଶର । ସମସ୍ତେ କେବଳ ଆକର୍ଷଣ କରନ୍ତି । ଚନ୍ଦ୍ରଭାଗା କାବ୍ୟରେ କାବଦେବଙ୍କର ଏହି ଆକର୍ଷଣ ଓ ବିକର୍ଷଣ ଶରର ପରିକଳ୍ପନା ଗ୍ରୀକ୍ କାହାଣୀର ପ୍ରଭାବ ମାତ୍ର ।

ଚନ୍ଦ୍ରଭାଗାର ରୂପବର୍ଣ୍ଣନା କାଳରେ କବି ଲେଖିଛନ୍ତି –

"ଅସମ୍ଭାଳେ ଫିଟି କୁନ୍ତଳ ଭୂମି ଯାଏ ପରଶି
ଯେଣେ ଅନାଉଛି ଲଳନା ଫୁଲ ଯାଏ ବରଷି ।"

କେହି ଆଲୋଚକ ଏଥିରେ ଟେନିସନ୍‌ଙ୍କର 'ମଡ଼ କାବ୍ୟର ପ୍ରଭାବ ଅନୁମାନ କରି କହନ୍ତି –

"I know the way she went
Home with her maiden posy
For her feet have touched the meadows
And left the daisies rosy.

'ମଡ଼' କାବ୍ୟରେ ନାୟିକାର ଚାଲିରେ ଫୁଲ ଫୁଟୁଛି ବୋଲି କଳ୍ପନାଟି 'ଚନ୍ଦ୍ରଭାଗା'ରେ ନାୟିକା ଅନାଇବାରେ ଫୁଲ ଫୁଟିବା କଥାର ଆଭାସ ଦେଖାଯାଉଛି । ମାତ୍ର ଏହି ପ୍ରକାର ବର୍ଣ୍ଣନା ପ୍ରାଚ୍ୟ ସାହିତ୍ୟରେ ମଧ୍ୟ ଦୁର୍ଲ୍ଲଭ ନୁହେଁ । କାରଣ ଉପେନ୍ଦ୍ର ଭଞ୍ଜ ଲେଖିଛନ୍ତି –

"କେତେ ନୀଳ ଇନ୍ଦୀବର ଗଲା ସେ ବିଞ୍ଚି
ଯଶ ପୁଣ୍ୟ ଥିବାରୁ ସେ ହୃଦେ ଘେନିଛି ।"(ସୁଭଦ୍ରା ପରିଣୟ)

ସଂସ୍କୃତ ସାହିତ୍ୟରେ ମଧ୍ୟ ଏହି ପ୍ରକାର କଳ୍ପନା ଦେଖିବାକୁ ମିଳେ ।

"ଯତୋ ଯତୋଽସ୍ୟା ନିପତନ୍ତି ଦୃଷ୍ଟୟଃ
ତତ୍ସ୍ତତଃ ଶ୍ୟାମସରୋଜ-ବୃଷ୍ଟୟଃ
ଯତୋଯଶେଽଙ୍ଗାଦପଯାତି କଞ୍ଚୁକଃ
ତତସ୍ତତଃ ସ୍ୱର୍ଣ୍ଣ-ମରୀଚି ବୀଚୟଃ । (ସୁଭାଷିତ ରତ୍ନଭାଣ୍ଡାଗାରମ୍)

ଅର୍ଥାତ୍ ଏହି ରମଣୀର ଦୃଷ୍ଟି ଯେଉଁ ଆଡ଼କୁ ନିପତିତ ହେଉଛି, ସେଠାରେ ନୀଳପଦ୍ମ ବର୍ଷିତ ହେଉଛି । ଏହିପରି ଭାବରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ରାଧାନାଥ ପ୍ରଭାବିତ ହୋଇଅଛନ୍ତି ।

କବିଙ୍କର 'ଉଷା' କାବ୍ୟର ରଚନାକାଳ ୧୮୮୮ । ଗ୍ରୀକ୍ କାହାଣୀ 'ଆଟ୍‌ଲାଣ୍ଟାରେସ୍'ର ପ୍ରଭାବରେ ଏହା ଲିଖିତ ହୋଇଥିଲେ ହେଁ ବାଲେଶ୍ୱରକୁ କାବ୍ୟର ପୀଠିକା କରି ରାଧାନାଥ ତାହାକୁ ସମ୍ପୂର୍ଣ୍ଣ ଉତ୍କଳୀୟ ଛାଞ୍ଚରେ ପକାଇ ଦେଇଅଛନ୍ତି । ମୂଳଗ୍ରନ୍ଥରେ ପ୍ରେମିକାର ଆତଫଳ ଉଷାରେ ପଦ୍ମଫୁଲର ରୂପ ଗ୍ରହଣ କରିଛି । ପାଶ୍ଚାତ୍ୟ ଗଳ୍ପର ପୀଠସ୍ଥଳୀ ଆର୍କାଡିଆ ହୋଇଛି ଓଡ଼ିଆ କାବ୍ୟର ବାଲେଶ୍ୱର । ନାୟିକା ଆଟଲାଣ୍ଟାର ପିତା ଜାସସ୍ ହୋଇଛନ୍ତି ଓଡ଼ିଆ ନାୟିକା ଉଷାର ପିତା ନୂରୁ ନୃପତି । ମୂଳ ଗଳ୍ପରେ ରାଜା ସୋହିନିଅସ୍ କନ୍ୟା ଜନ୍ମ ହେତୁ ବିରାଗ ବଶତଃ ଆଟଲାଣ୍ଟାକୁ ବଣରେ ପରିତ୍ୟାଗ କରନ୍ତି ଏବଂ ସେ ପାଳିତ ହୁଏ ଭାଲୁଦ୍ୱାରା । ଶିକାରୀ ଦ୍ୱାରା ସେ ଭାଲୁ ଆଶ୍ରୟରୁ ଉଦ୍ଧାର ପାଏ ଏବଂ ବଣ ଦେବତାର ପ୍ରସାଦରେ ହୁଏ ଅତ୍ୟନ୍ତ ଦୁର୍ଦ୍ଧାନ୍ତ । ଯୌବନକାଳରେ ପିତା କନ୍ୟାକୁ ଗ୍ରହଣ କରନ୍ତି । ଏଣେ ଆରଗୋସର ରାଜପୁତ୍ର ମିଲାନିଅନ ବରପ୍ରାପ୍ତ ହୋଇ ପ୍ରତିଯୋଗିତାରେ ଜୟଲାଭ କରେ ଏବଂ ଆଟଲାଣ୍ଟାକୁ ବିବାହ କରେ । ଏଥିରୁ ରାଧାନାଥଙ୍କର ଉଷା-ଜୟନ୍ତ ଉପାଖ୍ୟାନର ପରିକଳ୍ପନା । ତେବେ ରାଧାନାଥ ଭାଗବତ ଦଶମସ୍କନ୍ଧର ବାଣାସୁର କନ୍ୟା ଉଷାର କାହାଣୀ ମଧ୍ୟ ପାଠ କରିଥିଲେ । ବୋଧହୁଏ 'ଉଷା' ନାମର ପରିକଳ୍ପନା ସେହିଠାରୁ । ନଚେତ୍ ସେ କାହିଁକି ଲେଖିଥାଆନ୍ତେ—

"ଭବ-ବନ୍ଧନର କ୍ଳେଶ, ଦେବି ! ମୁହିଁ ଭୋଗିଲି ଥରେ
ଦୁର୍ବାସାଙ୍କ ଶାପେ ବାଣ କନ୍ୟା ରୂପେ ଜନ୍ମି ଦ୍ୱାପରେ ।"

ଉଇଲିୟମ୍ ମରିସ୍‌ଙ୍କ 'ଆଟଲାଣ୍ଟା ରେସ୍'ର ପ୍ରଭାବ କିପରି 'ଉଷା' କାବ୍ୟର ବର୍ଣ୍ଣନାବିଳାସରେ ଗୃହୀତ ହୋଇଛି, ତାହାର କେତୋଟି ଉଦାହରଣ ଏଠାରେ ପ୍ରଦାନ କରାଯାଇପାରେ ।

ମିଲେନିଅନ— Fulfilled delight or death to end my pain.
(Atlantta's Race)

ଜୟନ୍ତ— "ମଣିଲାଭ ହେବ ଅଥବା ପଡ଼ିବ ମୁଣ୍ଡେ ଅଶନି ।" —ଉଷା

ଆଟଲାଣ୍ଟା—She spreads her arms abroad some stay to find
Else must she fall, indeed and fixdeath this,
A strong man's arms about her body twined
Now may she shudder now to feel his kiss,
So wrapped she is in new unbroken bliss,
Made happy that the foe the prize hath won,
She weeps glad tears, for all her glory done.

(Atlanta's Race)

ଉଷା— "ହରାଇ ନ ହେଲା ଜୟନ୍ତର ମନେ ଯେଉଁ ହରଷ
ହାରି ଶତଗୁଣେ ତହୁଁ ହୃଷ୍ଟ ହେଲା ଉଷା-ମାନସ ।
x x x x x x
ଜୟଠାରୁ ତାର ପରାଜୟ ଆଜ ପ୍ରିୟ ଅଧିକ
ଘଟାଇ ନ ପାରେ କିସ ପୁଣି ପ୍ରେମ ଐନ୍ଦ୍ରଜାଲିକ ।" —ଉଷା

ପାଶ୍ଚାତ୍ୟ କଥାବସ୍ତୁର କଙ୍କାଳ ଉପରେ ରାଧାନାଥ ଯେଉଁ କାବ୍ୟସୁନ୍ଦରୀକୁ ନିର୍ମାଣ କଲେ, ତାହା ଅତ୍ୟନ୍ତ ଅଭିନବ ବୋଲି ଅଧ୍ୟାପକ ପ୍ରିୟରଞ୍ଜନ ସେନ "Radhanath Ray, the high priest is in modern Oriya Literature." ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ଏହିପରି— "Neither the hunt nor the race can with any shadow of reality , be associated with a princess of Orissa. The very idea is preposterous but Radhanath in his usual way has created a new legend altogether, giving it a local colouring and associating with local names and tradition so that it seems to be a throughly original poem; for this again, the constructive genious of Radhanath is responsible."

(ରାଧାନାଥ ଜୀବନୀ-ଦୁର୍ଗାଚରଣ ରାୟ, ୧୯୪୧, ପୃ-୧୨୦୫)

ରାଧାନାଥଙ୍କର ନନ୍ଦିକେଶ୍ୱରୀ (୧୮୮୭) କାବ୍ୟର ପ୍ରେରଣାର ଉତ୍ସ ହେଲା ଇଂରେଜ କବି ବାଇରନଙ୍କର "Seige of Corinth" ଏବଂ ରୋମାନ୍ କବି ଓଭିଡ଼ । ଓଡ଼ିଶାର ଇତିହାସ ସହିତ ଏହି କାହାଣୀର କୌଣସି ସମ୍ପର୍କ ନଥିଲେ ମଧ୍ୟ ରାଧାନାଥ ଏଠାରେ କଳ୍ପନାର ବୋଳ ଦେଇ ଇତିହାସର ଭ୍ରାନ୍ତି ସୃଷ୍ଟି କରି ପାରିଛନ୍ତି ।

ନନ୍ଦିକେଶ୍ୱରୀ କାବ୍ୟରେ କାଠଯୋଡ଼ି ତୀରରେ ଶିବିର ସ୍ଥାପନର ବର୍ଣ୍ଣନା ସହିତ "Seige of Corinth" ର ଶିବିର ସ୍ଥାପନର ବର୍ଣ୍ଣନା ସାମ୍ୟ ରହିଅଛି ।

ସେହି କାବ୍ୟରେ ନାୟକ ଆଲାପ୍ ସମୁଦ୍ର ତୀରରେ ଚିନ୍ତାମଗ୍ନ ଥିବା ସ୍ଥଳେ ନନ୍ଦିକେଶ୍ୱରୀରେ ନାୟକ ଚୋଡ଼ଗଙ୍ଗ ହ୍ରଦ କୂଳରେ ଧ୍ୟାନମଗ୍ନ । ମୂଳ କାବ୍ୟର ଫ୍ରାନ୍ସେୟାର ଓଡ଼ିଆ କାବ୍ୟରେ ଗଙ୍ଗାଦେବୀ ରୂପେ ଆବିର୍ଭୂତା । ସେଠାରେ କ୍ରିଟରାଜ୍ୟର ରାଜା ଓଡ଼ିଆ କାବ୍ୟରେ ଚୋଡ଼ଗଙ୍ଗଙ୍କ ଅନୁରୂପ । ସେଥିରେ ମିଗାରା ଅବରୋଧ ହେଲାପରି ବିଡ଼ାନାସୀ ଦୁର୍ଗର ଅବରୋଧର ପରିକଳ୍ପନା ରହିଅଛି । ରାଜା ସୁବର୍ଣ୍ଣକେଶରୀ ହେଉଛନ୍ତି ରାଜା ନିସସ୍‌ଙ୍କ ପ୍ରତିରୂପ ଏବଂ ଆମର ଗଡ଼ଚଣ୍ଡୀ ଦେବୀ ଫେଟ୍‌ସ୍‌ଙ୍କ ସହିତ ତୁଳନୀୟ । ପାଶ୍ଚାତ୍ୟ କାବ୍ୟର ନାୟିକା ସିଲା, ଆମର ନନ୍ଦିକା । ରାଜା ନିସ୍‌ସ୍‌ଙ୍କ ମସ୍ତକର ରକ୍ଷାକବଚ ସ୍ୱର୍ଣ୍ଣାଭ କେଶଗୁଚ୍ଛ ପରି ସୁବର୍ଣ୍ଣକେଶରୀଙ୍କର ଜୈତ୍ରମଣି ବୋଲି ଗ୍ରହଣ କାରାଯାଇପାରେ । ଦୁର୍ଗର ଗମ୍ବୁଜରୁ ନାୟିକା ସିଲା ମିନସ୍‌ଙ୍କ ଶୌର୍ଯ୍ୟ ଦର୍ଶନ କରି ମୁଗ୍ଧ ହେଲାପରି ନନ୍ଦିକା ମଧ୍ୟ ଚୋରଗଙ୍ଗଙ୍କ ବୀରତ୍ୱରେ ମୁଗ୍ଧ ହୋଇଅଛି ।

ସିଲା, ମିନାସ୍‌ଙ୍କୁ ତାଙ୍କ ଶିବିରରେ ପ୍ରାର୍ଥନା କରିଛି—

"And in assurance of my love receive thou here of me,
My father's purple hair : and think I give not unto thee.
A hair, but ever my father's head."

(Ovid Selected Works, 1939, P-269)

ନନ୍ଦିକା ମଧ୍ୟ ଅବିକଳ କହିଛନ୍ତି—

''ଏହି ଜୈତ୍ରମଣି ଅର୍ପୁଛି ଶ୍ରୀକରେ । ବିରାଜୁଥିଲା ଯା ରାଜ ମସ୍ତକରେ ।
ମଣି ନୁହଇ ଏ ରାଜାଙ୍କ ଜୀବନ । ତୁମ୍ଭେ ଯେଣୁ ବିଶ୍ୱ ବିଶ୍ୱାସ ଭାଜନ ।
ନିଶଂକେ ସମର୍ପି ଦେଲି ମୁଁ [illegible]ଳ । ପ୍ରତିଦାନେ ପ୍ରେମ ମାଗୁଛି କେବଳ ।''

— ନନ୍ଦିକେଶ୍ୱରୀ

''ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ-୧୯୭୭'' ପୁସ୍ତକରେ ଡଃ କ୍ଷେତ୍ରବାସୀ ନାୟକ ଆଲୋଚନା କରି ମତ ପ୍ରକାଶ କରିଛନ୍ତି ଯେ, ରାଧାନାଥଙ୍କ ନନ୍ଦିକେଶ୍ୱରୀରେ ବାଇରନ୍‌ଙ୍କର ବିଶେଷ ପ୍ରଭାବ ଦୃଷ୍ଟିଗୋଚର ହୁଏ ନାହିଁ । ''କେବଳ ଚୋରଗଙ୍ଗଙ୍କର କାଠଯୋଡ଼ି ତୀରରେ ସମରସଜ୍ଜାର ବର୍ଣ୍ଣନା, ଆଲପ୍‌ଙ୍କର. ସମର ସଜ୍ଜା ତୁଲ୍ୟ ହୋଇଛି । ଏ କ୍ଷେତ୍ରରେ ରାଧାନାଥଙ୍କର ଆହରଣ ବର୍ଣ୍ଣନା ବୈଚିତ୍ର୍ୟରେ ହିଁ ସୀମାବଦ୍ଧ । କିନ୍ତୁ ଓଭିଡ୍‌ଙ୍କର ପ୍ରଭାବ ନନ୍ଦିକେଶ୍ୱରୀରେ ମୁଖ୍ୟ ଏବଂ ମେଟାମରଫୋସିସ୍‌ରୁ ଆହରଣର ମାତ୍ରା ହିଁ ଅଧିକ ।'' ପୃଷ୍ଠ-୧୧୬ ।

ରାଧାନାଥଙ୍କ 'ପାର୍ବତୀ' କାବ୍ୟ ପ୍ରଥମେ ୧୮୯୦ ଖ୍ରୀଷ୍ଟାବ୍ଦରେ 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ପ୍ରକାଶିତ ହୁଏ । ୧୮୯୧ ସାଲରେ ଏହା ପ୍ରକାଶିତ ହୁଏ

ପୁସ୍ତକ ରୂପରେ ଜଗନ୍ନାଥବଲ୍ଲଭ ପ୍ରେସରୁ । ପାଶ୍ଚାତ୍ୟ ସାହିତ୍ୟର ହୋମରଙ୍କ ଇଲିଅଡ୍, ସେକ୍ସପିୟରଙ୍କ ହାମଲେଟ, ଏସ୍‌କାଇଲସ୍‌ଙ୍କ ଆଗାମେନନ ପ୍ରଭୃତି ଗ୍ରନ୍ଥର ବିଷୟବସ୍ତୁ ଦ୍ୱାରା ପ୍ରଭାବିତ ହୋଇ ରାଧାନାଥ 'ପାର୍ବତୀ' କାବ୍ୟର ପରିକଳ୍ପନା କରିଥିଲେ ହେଁ, 'ମାଦଳାପାଞ୍ଜି'ରେ ଲିଖିତ ଗଙ୍ଗେଶ୍ୱର ଉପାଖ୍ୟାନକୁ ଗ୍ରହଣ କରି ଇତିହାସର ଭ୍ରାନ୍ତି ସୃଷ୍ଟି କରିଛନ୍ତି । ରାଧାନାଥଙ୍କ ସମୟରେ ପ୍ରକୃତ ଇତିହାସ ଲିଖିତ ହୋଇ ନଥିଲା । ତେଣୁ ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ଯେ ସମାନ ବ୍ୟକ୍ତିତ୍ୱ, ଏହା ଜାଣି ନ ପାରି ସେ ସେମାନଙ୍କୁ ଭିନ୍ନ ଭିନ୍ନ ରୂପରେ ନନ୍ଦିକେଶ୍ୱରୀ ଓ ପାର୍ବତୀ କାବ୍ୟରେ ରୂପାୟିତ କରିଛନ୍ତି । ପ୍ରକୃତରେ ଗଙ୍ଗେଶ୍ୱର ହେଉଛନ୍ତି ଏକ ପାଶ୍ଚାତ୍ୟ ଚରିତ୍ର ।

ଆଗାମେନନ୍‌ର କ୍ଲାଇଟାମେନେଷ୍ଟ୍ରାଠାରୁ ରାଣୀ ପାର୍ବତୀ ବହୁ ଗୁଣରେ ସ୍ୱତନ୍ତ୍ର । ସେହିପରି ହାମ୍‌ଲେଟ୍‌ର ରାଣୀ ଗାର୍ଟରୁଡ୍ ମଧ୍ୟ । କ୍ଲାଇଟାମେନେଷ୍ଟ୍ରାଙ୍କ ଉପପତି ଟ୍ରୟଯୁଦ୍ଧ ଫେରନ୍ତା ରାଜାଙ୍କୁ ହତ୍ୟା କରନ୍ତି । ନାଟ୍ୟକାର ସେକ୍ସପିୟର୍ ହାମଲେଟ ନାଟକରେ ରାଣୀ ଗାର୍ଟରୁଡ୍ ଦେବରଙ୍କୁ ଉପପତି ରୂପେ ଗ୍ରହଣ କରି ପତିଙ୍କ ହତ୍ୟାକାଣ୍ଡରେ ଲିପ୍ତ ଅଛନ୍ତି । ରାଣୀ ପାର୍ବତୀ ପତିଙ୍କୁ ହତ୍ୟା କରିଥିଲେ ହେଁ ସେ ଥିଲେ ସତୀନାରୀ । ସେ ଆତ୍ମସୁଖରେ ପତିହତ୍ୟା କରିନାହାନ୍ତି । ପାଶ୍ଚାତ୍ୟର ସୋଫୋକ୍ଲିସଙ୍କ ଓଡ଼ିପୋସ କାବ୍ୟରେ ମାତା ଓ ପୁତ୍ରର ପ୍ରେମ ବର୍ଣ୍ଣନା ରହିଛି । ପାର୍ବତୀରେ ପିତା ଓ ପୁତ୍ରୀର ଯୌନ ସମ୍ପର୍କ ଲକ୍ଷ୍ୟ କରାଯାଏ । ଏସକାଇଲସଙ୍କ କାସେଣ୍ଡ୍ରା, ହାମଲେଟର ଓଫେଲିଆ ଏବଂ ସେ ପାର୍ବତୀର ରତ୍ନପୁର ଜେମା ସହିତ ତୁଳନୀୟ । ଏସ୍‌କାଇଲସ୍‌ର ଇଫିଜିଆ ପାର୍ବତୀରେ କୌଶଲ୍ୟା । ହାମ୍‌ଲେଟ୍‌ରେ ରାଜାଙ୍କୁ ଅଶରୀରୀ ରୂପରେ ବର୍ଣ୍ଣନା କରାଯାଇଛି । ପାର୍ବତୀରେ କୌଶଲ୍ୟା ଅଶରୀରୀ ହୋଇଅଛନ୍ତି । ହାମଲେଟ ଓ ଓପୋଲିଆଙ୍କ ପ୍ରେମ ପରି ପାର୍ବତୀରେ ଉତ୍କଳ ଯୁବରାଜ ଅନ୍ନପୂର୍ଣ୍ଣାଙ୍କ ପ୍ରେମଫାଶରେ ଆବଦ୍ଧ । ଟ୍ରୋଜାନ ଯୁଦ୍ଧର ବିଜୟବାର୍ତ୍ତା ଅଗ୍ନି ଜାଳି ପ୍ରେରଣା କଲାପରି ପାର୍ବତୀରେ ମଧ୍ୟ ରତ୍ନପୁର ଯୁଦ୍ଧ ବାର୍ତ୍ତା ଅଗ୍ନି ଜାଳି ରାଜଧାନୀକୁ ପ୍ରେରଣ କରାଯାଇଛି ।

ବର୍ଣ୍ଣନା ବିଳାସ କାଳରେ ପାର୍ବତୀ କାବ୍ୟରେ ବହୁ ସ୍ଥଳରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଅନୁଭୂତ ହୋଇଥାଏ । ଏଠାରେ ମାତ୍ର ଅଳ୍ପ କେତୋଟି ଉଦାହାରଣ ପ୍ରଦାନ କରାଯାଇପାରେ ।

''ସୁଖ ଆଶେ ଭୋଳ ସରବେ ଏକାଳେ
ସୁଖ ତ ଭବେ କ୍ଷଣିକ
କିଏ ନ ଜାଣଇ ସୁଖଠାରୁ ସୁଖ
ଆଶାରେ ସୁଖ ଅଧିକ ।''

"Heard songs are sweet, but those unheard are sweeter."
—Keats

"କେହି ରହିନାହିଁ ରହିବେ ନାହିଁଟି
ଭବରଙ୍ଗ ଭୂମିତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।"

"The earth has bubbles, as the water has." —Macbeth

"ଆନନ୍ଦେ ଗଦ୍‌ଗଦ୍ ହୋଇ କହେ ବୃଦ୍ଧ
ଧନ୍ୟ ଧନ୍ୟ ଭଗବାନ
ସ୍ୱାଗତ ହେ ବହ୍ନିଶିଖା ତତେ ତୁ ଯା
ଆଣିଲୁ ଶୁଭ ସନ୍ଦେଶ ।"

"Oh ! hail ! thou pamp of light.
Thou that displayest a light,light as the day"—Agamenan

"ହିମ ବିନ୍ଦୁବାହୀ ନିଶାନ୍ତ ସମୀରେ
ଦେହ ହେଲା ଜରଜର ।
ସୌଧ ଚୂଳେ ବସି ସ୍ଥବିର କଞ୍ଚୁକୀ
ଭାବୁଅଛି ହୃଦଗତେ ।
କେତେ କାଳ ମୁହିଁ ସଙ୍କେତକୁ ଚାହିଁ
ବସିଥିବି ଏହି ମତେ ।"

"I pray the Gods to quit me of my toils
To close the watch.
I keep this life long years
For as a watch dog lying not at rest."
—Aeschylus—Agamemun

'ଚିଲିକା' ପରି ଏକ କାବ୍ୟ ଓଡ଼ିଆ ସାହିତ୍ୟରେ ଅନନ୍ୟସାଧାରଣ । ଏଥିରେ ଓଡ଼ିଶାର ପ୍ରକୃତି ଜୀବନ୍ତ ଏବଂ ସୌନ୍ଦର୍ଯ୍ୟର ଗନ୍ତାଘର । ସେଥିରେ ସ୍ଥାନେ ସ୍ଥାନେ ବର୍ଣ୍ଣନା ପ୍ରସଙ୍ଗରେ କବି ପାଶ୍ଚାତ୍ୟ କବିଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ଅନୁମିତ ହୋଇଥାଏ । ଯେପରି—

"ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।"

"And though her body die, her fame survives."—Milton

''ଦୃଷ୍ଟ ପୂର୍ବ ହୋଇ ଅପୂର୍ବ ପ୍ରତୀତି
ସୁନ୍ଦର ପଣର ଚିରନ୍ତନ ରୀତି
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।''

"A thing of beauty is joy for ever
Its loveliness increases
It will never pass into nothingness." —Keats

''ହସି ଖେଳି ସେହୁ ଗମନ୍ତି ସମୟ,
ଜୀବନ ମଣନ୍ତି ମହୋତ୍ସବମୟ
ଛାର ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।''

"Smiling they go and call life pleasure
To me that cup is destined in another measure."—Shelley

''କରିଥିଲି ଆଶା କରିବି ଯାପନ
ତୋ ପଶ୍ଚିମ ତୀରେ ପଶ୍ଚିମ ଜୀବନ
ବିନା ପ୍ରୟାସରେ ସୌନ୍ଦର୍ଯ୍ୟପିପାସା
ମେଣ୍ଟିବାର ଥିଲା ତୋହଠାରେ ଆଶା ।''

"Though life to dwell delighted here
Nor could on earth a spot be found
To nature and to me so dear
Could thy dear eyes in flowing mine
Still sweeten more these banks of Rhine."—Byrun

୧୮୯୭ ମସିହାରେ ମହାଯାତ୍ରା କାବ୍ୟ ପ୍ରକାଶିତ ହୁଏ । ପାଶ୍ଚାତ୍ୟ କବି ମିଲ୍ଟନଙ୍କ ଦ୍ୱାରା କବି ବିଶେଷ ପ୍ରଭାବିତ ହୋଇ ଏହି କାବ୍ୟ ରଚନା କରିଥିଲେ । କବି ଗଡ଼ଜାତର ଦୃଶ୍ୟାବଳୀ, ମହାନଦୀର ଉପତ୍ୟକା, ଯୁଦ୍ଧବର୍ଣ୍ଣନା, କଳି ଆଗମନ ପ୍ରଭୃତିରେ ଇଂରେଜ କବି ସ୍କଟଙ୍କୁ ସ୍ମରଣ କରିଥିବା ମନେହୁଏ । ବାଇରନଙ୍କ "Child's Harold" ର ବର୍ଣ୍ଣନା ମଧ୍ୟ ମହାଯାତ୍ରାକୁ ଅନୁପ୍ରାଣୀତ କରିଅଛି ।

ମହାଯାତ୍ରାରେ ଅଛି—

''ମହାବେଗେ ଆସିଲା ସେ ରତ୍ନାକର କୂଳୁ
ପୂର୍ବ ମୁଖେ ହୀନପ୍ରଭ କରି ଦୀନନାଥେ ।
ବିଶ୍ୱତେଜ ସାରଚକ୍ର ଆଲୋକେ ସେକାଳେ
ଆଲୋକିତ ହେଲାକ୍ଷଣେ ସୃଷ୍ଟି ସୀମା ପାରେ
ଆଦିମ ତମସ ଗର୍ଭ ।

ପାଶ୍ଚାତ୍ୟ କବି ମିଲ୍‌ଟନ୍ ତାଙ୍କର 'ପାରାଡ଼ାଇଜ୍ ଲଷ୍ଟ'ରେ ଏହିପରି ପ୍ରଶ୍ନ କରୁଛନ୍ତି—

"Sing heavenly muse
X X X X
In the beginning how the heaven and the earth
Rose out of choas."

''କଳିକାଳ'ର ଆଗମନ ବିଷୟରେ କହିବା ପାଇଁ ଅଗ୍ନିଦେବ ଯୁଧିଷ୍ଠିରଙ୍କୁ ସହ୍ୟାଦ୍ରି ଶିଖରକୁ ନେଇ ଯାଇଛନ୍ତି—

''ଇଚ୍ଛା ଯେବେ ମୋର ସଙ୍ଗେ ଚାଲ, କୁରୁମଣି
ଏହି ଶୈଳ ଶୃଙ୍ଗେ ବସି ଦେଖିବ କୌତୁକେ
ଭବେ କଳି ଅବତାର ମୋର ଦିବ୍ୟାଲୋକେ
ସତ୍ତ୍ୱଗୁଣୋଜ୍ଜ୍ୱଳ ଏକା ତୁମ୍ଭରି ଲୋଚନ
ସହିବ ସେ ଦିବ୍ୟଜ୍ୟୋତି,ଚାଲ ବେଗ କରି ।''

—ମହାଯାତ୍ରା

'ପାରାଡ଼ାଇଜ୍ ଲଷ୍ଟ'ରେ କବି ମିଲ୍ଟନ୍ ଦେବଦୂତ ମାଇକେଲ ମାନବ ଆଡ଼େମ୍‌ଙ୍କୁ ପର୍ବତ ଶିଖରକୁ ନେଇଯିବାର ବର୍ଣ୍ଣନା—

"Ascend this hill,
Ascend I follow thee,
It was a hill of paradise
The highest from whose top the
hemisphere of earth
In clearest sight."

ରାଧାନାଥ ମହାଯାତ୍ରା କାବ୍ୟରେ ଯୁଧିଷ୍ଠିରଙ୍କ ମୁଖରେ ଭାରତର ଅଧଃପତନର କାହାଣୀ ଯେପରି ବର୍ଣ୍ଣନା କରିଛନ୍ତି, ତାହା ବାଇରନ୍‌ଙ୍କ ଲେଖାରେ ଗ୍ରୀସ୍‌ର ପତନର ଅନୁରୂପ ବୋଲି ଅନୁଭବ କରାଯାଇଥାଏ ।

ରାଧାନାଥ ଥିଲେ ପଣ୍ଡିତ, କବି । ପ୍ରାଚ୍ୟ ଦେଶ ଏବଂ ପାଶ୍ଚାତ୍ୟର ବହୁ ଶାସ୍ତ୍ର ସେ ଅନୁଶୀଳନ କରିଥିଲେ । ଜାତୀୟତାବାଦୀ କବି ଇଚ୍ଛା କରୁଥିଲେ ପାଶ୍ଚାତ୍ୟ ସାହିତ୍ୟର ଐଶ୍ୱର୍ଯ୍ୟ ସହିତ ଆମର ଦେଶବାସୀ ପରିଚିତ ହୁଅନ୍ତୁ । ତେଣୁ ଆହରଣ କାଳରେ କବି ସ୍ୱକୀୟ କବିପ୍ରତିଭା ଦ୍ୱାରା ସେହି ବର୍ଣ୍ଣନା ବିଳାସକୁ ମୌଳିକ ସୌନ୍ଦର୍ଯ୍ୟରେ ଉଦ୍‌ଭାସିତ କରିଦେଇଅଛନ୍ତି । ଓଡ଼ିଆ ସାହିତ୍ୟରେ ପୂର୍ବ ଓ ପଶ୍ଚିମ ଜଗତର ମିଳନାନ୍ତକ ଦୃଶ୍ୟର ଅପୂର୍ବ ଯାଦୁକର ହେଉଛନ୍ତି ଯୁଗସ୍ରଷ୍ଟା କବି ରାଧାନାଥ ରାୟ ।

●

# କବି ରାଧାନାଥ ଓ ଊନବିଂଶ ଶତାବ୍ଦୀର ଆଧୁନିକ ଓଡ଼ିଆ କାବ୍ୟଚିନ୍ତା

ଡଃ ଦାଶରଥି ଦାସ

ଟମାସ୍ ବ୍ୟାବିଂଟନ୍ ମେକେଲଙ୍କ ସୁପ୍ରସିଦ୍ଧ ମିନିଟ (୨, ଫେବୃୟାରୀ, ୧୮୩୫) ରୁ ଆ'ରମ୍ଭ କରାଯାଉ । ଇଂରାଜୀ ଶିକ୍ଷାର ପକ୍ଷପାତିତ୍ୱ ଓ ଭାରତବାସୀଙ୍କ ପକ୍ଷରେ ପରିଶୀଳିତ ଇଂରାଜୀ ଭାଷାଶିକ୍ଷଣର ଅନିବାର୍ଯ୍ୟ ଗୁରୁତ୍ୱ ସଂପର୍କରେ ସେ ସେଦିନ ଏକ ଐତିହାସିକ ସତ୍ୟ ଉଦ୍‌ଘୋଷଣା କରିଛନ୍ତି, ''What the Greek ad Latin were to the contemporaries of (Thomas) More ad (Roger) Ascham, our tongue is to the people of India. The literature of England is now more valuable than that of classical antiquity" (H.Sharp, Selection from Educational Records, part I, page III)''ଇଂରାଜୀ ଭାଷାଚର୍ଚ୍ଚା ମାଧ୍ୟମରେ ମୂଳତଃ ଇଉରୋପର ସମୃଦ୍ଧତର ସାହିତ୍ୟସଂସ୍କୃତି ସହିତ ଭାରତୀୟଙ୍କର ପରିଚୟ ଘଟେ । ସେଦିନ ଇଂଲଣ୍ଡର ଟମାସ୍ ମୋର (1478-1535) ଓ ରୋଗର୍ ଅସ୍କାମ (1515-1568) ପ୍ରଭୃତି ଯେପରି ଷୋଡ଼ଶ ଶତାବ୍ଦୀର ଗ୍ରୀକ୍ ଲାଟିନ୍ ଭାଷା ଶିକ୍ଷାରୁ ଇଂରାଜୀ ସାହିତ୍ୟରେ ଓ ସଂସ୍କୃତିରେ ନୂତନ ଜାଗରଣର ପଟ୍ଟଭୂମି ନିର୍ମାଣ କରିଥିଲେ, ଭାରତୀୟ ବିଦ୍ୱାନମାନେ ଗତ ଶତାବ୍ଦୀରେ ସେପରି ଇଂରାଜୀ ଭାଷା ସାହିତ୍ୟ ଶିକ୍ଷା ଫଳରୁ, ନୂତନତର ବିଦ୍ୟାର ସଂଶ୍ରୟ ଓ ସାଯୁଜ୍ୟରୁ ଭାରତର ସାମାଜିକ ଓ ସାଂସ୍କୃତିକ କର୍ମକାଣ୍ଡର ଇତିବୃତ୍ତରେ ବୈପ୍ଳବିକ ପ୍ରସାର, ପ୍ରସ୍ଫୁରଣ ଓ ସୌଷ୍ଠବ ସୃଷ୍ଟି କରିଦେଲେ । କାର୍ଯ୍ୟତଃ ଆମ ଦେଶରେ ନୂଆ ଏକ ସାହିତ୍ୟିକ ପଟଭୂମି ଗଢ଼ି ଉଠିଲା । ନୂଆ କାବ୍ୟଚିନ୍ତା ଭୂମିଷ୍ଠ ହେଲା ।

ଗତ ଶତାବ୍ଦୀରେ ଭାରତୀୟ ସାହିତ୍ୟରେ ସର୍ବତ୍ର ଆଧୁନିକତା ସମାନ୍ତରାଳ ଭାବରେ ଦେଖା ଦେଇନାହିଁ; ୧୮୦୦ ରୁ ୧୯୧୦—ପ୍ରାୟ ୧୧୦ ବର୍ଷ ଲାଗିଛି ଆଧୁନିକତାକୁ ସର୍ବତ୍ର ବ୍ୟାପିବାକୁ । ପ୍ରଥମେ ଏହା ଦେଖାଦେଇଛି ବଙ୍ଗ ସାହିତ୍ୟରେ, ଆଉ ଶେଷରେ ସିନ୍ଧୀ ଓ ପଞ୍ଜାବୀ ସାହିତ୍ୟରେ । କାଶ୍ମୀରୀ ସାହିତ୍ୟ ଆହୁରି ପଛରେ; ଆଧୁନିକ ସାହିତ୍ୟ ସହିତ ମୁଦ୍ରଣଶିଳ୍ପର ଅବିଚ୍ଛେଦ୍ୟ ସମ୍ବନ୍ଧ ଦୃଷ୍ଟିରୁ ଏପରି ମନ୍ତବ୍ୟର ଗୁରୁତ୍ୱ ବୁଝିହେବ । କାଶ୍ମୀରରେ ଯଥାଯଥ ଭାବରେ 'ବେଶନାଥ ପ୍ରେସ' ପ୍ରତିଷ୍ଠିତ ହୁଏ ମାତ୍ର ୧୯୧୦ ରେ । ଓଡ଼ିଶାରେ ୧୮୩୭ରେ । ଉଦାହର

କଥା । କିନ୍ତୁ ବଙ୍ଗଳା ସାହିତ୍ୟ ସହିତ ତୁଳନା କଲେ ବିଶେଷ ଉତ୍ସାହିତ ହେବାର କିଛି ନାହିଁ । ଆଧୁନିକ ବଙ୍ଗଳା ସାହିତ୍ୟ ଇତିହାସର ପ୍ରାୟ ୭୫ବର୍ଷ ପରେ ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଲକ୍ଷ୍ୟ କରାଯାଏ । ଆଉ ୮୫ ବର୍ଷ ପରେ କବି ରାଧାନାଥ 'କେଦାର ଗୌରୀ' ରଚନା କରନ୍ତି । ପାଶ୍ଚାତ୍ୟ ପ୍ରଭାବ କଥା ଉଠିଲେ ମନେରଖିବାକୁ ହେବ ଯେ, ଓଡ଼ିଆ ସାହିତ୍ୟ ସିଧା ଇଂରାଜୀ ସାହିତ୍ୟ ସହିତ ସେଦିନ ସମ୍ପର୍କ ସ୍ଥାପନ କରିନାହିଁ । ଓଡ଼ିଶାକୁ ଇଂରାଜୀ ସାହିତ୍ୟର ପ୍ରଭାବ ଆଧୁନିକ ବଙ୍ଗ ସାହିତ୍ୟ ମାଧ୍ୟମରେ । ହିନ୍ଦୀ, କନ୍ନଡ଼ ଓ ଅସମୀୟା ସାହିତ୍ୟ ବି ସମଦଶାପନ୍ନ । ଇଂରାଜୀ ସାହିତ୍ୟର ପୁନରୁଜ୍ଜୀବନ ପାଇଁ ଯେପରି ଗ୍ରୀକ୍ ଓ ଲାଟିନ୍ ସାହିତ୍ୟରେ ପ୍ରେରଣା ଥିଲା ବଙ୍ଗ ସାହିତ୍ୟର ପୁନରୁଜ୍ଜୀବନ ପାଇଁ ସେପରି ଇଂରାଜୀ ସାହିତ୍ୟର ସଂସ୍ପର୍ଶ ଅନିବାର୍ଯ୍ୟ ଥିଲା । ଗତ ଶତାବ୍ଦୀରେ ଓଡ଼ିଆ ସାହିତ୍ୟର ପୁନରୁଜ୍ଜୀବନ ପାଇଁ ସେହି ଆଧୁନିକ ବଙ୍ଗଳା ସାହିତ୍ୟର ଗୁରୁତ୍ୱପୂର୍ଣ୍ଣ ଭୂମିକା ଅନସ୍ୱୀକାର୍ଯ୍ୟ । ଆଧୁନିକ ବଙ୍ଗଳା ସାହିତ୍ୟ ଆମ କବି ଓ ସାହିତ୍ୟିକଙ୍କ ପାଖରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଅପେକ୍ଷା ଅନେକ ଅଧିକ ମୂଲ୍ୟବାନ ବିବେଚିତ ହୋଇଛି । ଆଧୁନିକ ଓଡ଼ିଆ କାବ୍ୟବିବେକ ଆଧୁନିକ ବଙ୍ଗାଳୀ କବିଙ୍କ କାବ୍ୟଚିନ୍ତାରୁ ପ୍ରେରଣା ଓ ଉତ୍ସାହ ଲାଭ କରିଛି । ଆଧୁନିକ ଓଡ଼ିଆ କାବ୍ୟଚିନ୍ତା ପାଶ୍ଚାତ୍ୟ କାବ୍ୟଚିନ୍ତା ମୂଳକ ନିଶ୍ଚୟ । କିନ୍ତୁ ମଝିରେ ମାଧ୍ୟମଟିଏ ଅଛି । ସିଧା ପାଶ୍ଚାତ୍ୟ ଜଗତରୁ ଚିନ୍ତା ଓ ଚେତନା ସଂଗ୍ରହ କରିବାକୁ ଓଡ଼ିଆଙ୍କୁ ଆହୁରି ଅନେକ କାଳ ଅପେକ୍ଷା କରିବାକୁ ପଡ଼ିଛି ।

ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଆଧୁନିକ ଯୁଗର ଉନ୍ମେଷ ସମୟକୁ ବଙ୍ଗଭୂମିର ସମାଜ, ଧର୍ମ, ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ଆବର୍ତ୍ତସଙ୍କୁଳ ଏକ ଭାବସଂଘାତର ଅଧ୍ୟାୟ ଶେଷ ହୋଇଛି । ରାମମୋହନଙ୍କ ସଙ୍ଗଠନଧାରା, ରାଧାକାନ୍ତଦେବଙ୍କ ସଂରକ୍ଷଣଧାରା ଓ ଡିରୋଜୀୟଙ୍କ ୟଙ୍ଗ୍ ବେଙ୍ଗଲୀୟ ବିପ୍ଳବଧାରା ଆସି ବଙ୍କିମଚନ୍ଦ୍ରଙ୍କଠାରେ ସମନ୍ୱିତ ହେବାକୁ ଲାଗିଛି । ଏଣିକି ସ୍ୱାଧୀନ ଚିନ୍ତାର ବିକାଶ ଘଟିଛି, କିନ୍ତୁ ୟଙ୍ଗ୍ ବେଙ୍ଗଲୀୟ ଉଚ୍ଛୃଙ୍ଖଳତା ନାହିଁ; ସନାତନ ହିନ୍ଦୁ ଧର୍ମରେ ଆସ୍ଥା ରହିଛି, କିନ୍ତୁ ଅନ୍ଧ କୁସଂସ୍କାରର ଉତ୍‌ଖାତ ଘଟିଛି; ପ୍ରାଚୀନ ଐତିହ୍ୟ ଓ ସଂସ୍କୃତିକୁ ଶ୍ରଦ୍ଧାଜ୍ଞାପନ କରାଯାଇଛି । କିନ୍ତୁ ପାଶ୍ଚାତ୍ୟ ଭାବଧାରାକୁ ଉପେକ୍ଷା କରାଯାଉ ନାହିଁ । ଆଧୁନିକ ବଙ୍ଗସାହିତ୍ୟ ତିନୋଟି ସ୍ରୋତରୁ ପ୍ରାଣରସ ଧାରା ସଂଚୟ କରି ପୁଷ୍ଟ ଓ ପୁଷ୍କଳ ହୋଇଛି । ପ୍ରାଚୀନ ବଙ୍ଗସାହିତ୍ୟ, ସଂସ୍କୃତ ସାହିତ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ଧାରାର ତ୍ରିବେଣୀ ସଙ୍ଗମରେ ଆଧୁନିକ ବଙ୍ଗସାହିତ୍ୟର ଉତ୍ସ ଓ ଉତ୍ସାହ ନିହିତ । ଆଧୁନିକ ଓଡ଼ିଆ ସାହିତ୍ୟ ପାଇଁ କଥାଟା କିନ୍ତୁ ଟିକିଏ ଭିନ୍ନ । ପ୍ରାଚୀନ ଓଡ଼ିଆ

ସାହିତ୍ୟ ଓ ସଂସ୍କୃତ ସାହିତ୍ୟରୁ ଆଧୁନିକ ଓଡ଼ିଆ ସାହିତ୍ୟ ପ୍ରେରଣା ଖୋଜିଛି, ପାଶ୍ଚାତ୍ୟ ସାହିତ୍ୟ ଆଡ଼କୁ ମଧ୍ୟ ବ୍ୟଗ୍ର ଓ ପ୍ରସାରିତବାହୁ ହୋଇ ଉଠିଛି, କିନ୍ତୁ ପାଶ୍ଚାତ୍ୟ ପ୍ରଭାବ ତାହା ଇଂରାଜୀ ସାହିତ୍ୟରୁ ଯେତେ ସଂଗ୍ରହ କରିନାହିଁ ତତୋଽଧିକ ସଂଗ୍ରହ କରିଛି ଆଧୁନିକ ବଙ୍ଗ ସାହିତ୍ୟର ମାର୍ଫତରୁ । ଆଧୁନିକ ବଙ୍ଗସାହିତ୍ୟ ଆଧୁନିକ ଓଡ଼ିଆ ସାହିତ୍ୟକୁ ଅନୁପ୍ରାଣିତ କରିଛି ଯଥେଷ୍ଟ । ଓଡ଼ିଆ କବି ଏ ପ୍ରୟୋଗବାଦିତା ଶିଖିଛନ୍ତି ବଙ୍ଗ ଭାଷାର କବିଙ୍କଠାରୁ । ଏପରିକି ବ୍ରାହ୍ମ ଶୁଚିତାର ପ୍ରଭାବ ବଙ୍ଗଭୂମିରୁ ଆସିଛି, ମଧ୍ୟଭିକ୍ଟୋରୀୟ ରୁଚିର ଛାୟା ତଳେ ବଢ଼ିଥିବା ଆଧୁନିକ ଶିକ୍ଷାପ୍ରାପ୍ତ ବଙ୍ଗ ସାହିତ୍ୟିକ ଓ ସମାଲୋଚକମାନେ ମଧ୍ୟ ଓଡ଼ିଆ କବିଙ୍କ କାବ୍ୟଚିନ୍ତାକୁ ନିୟନ୍ତ୍ରଣ କରିଛନ୍ତି । ସେଦିନର ବଙ୍ଗାଳୀଙ୍କ ସାର୍ବଭୌମତାକୁ ମାନିବାକୁ ହେବ । ଭୌଗୋଳିକ ବଙ୍ଗ ପ୍ରଦେଶର ସୀମା ଥିଲା, କିନ୍ତୁ ସାଂସ୍କୃତିକ ବଙ୍ଗ ପ୍ରଦେଶର ସୀମା ନଥିଲା । ଏଇ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ସାଂସ୍କୃତିକ ବଙ୍ଗ ପ୍ରଦେଶ ଆକୁମାରୀହିମାଚଳ ପରିବ୍ୟାପ୍ତ ଥିଲା । ରାଜନୀତିକ କ୍ଷେତ୍ରରେ ସ୍ୱାଭିମାନୀ ଓଡ଼ିଆଏ ଅବଶ୍ୟ ଭୌଗୋଳିକ ବଙ୍ଗ ପ୍ରଦେଶଠାରୁ ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସ୍ୱପ୍ନ ଦେଖିଚନ୍ତି, ଅଧିକାଂଶ କବି ଓ ସାହିତ୍ୟିକ କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ସାଂସ୍କୃତିକ ବଙ୍ଗ ପ୍ରଦେଶର ଅଧିବାସୀ ହୋଇ ରହି ଯାଇଚନ୍ତି । ଆସନ୍ତୁ ଏଇ ପଟଭୂମିରୁ ଆଧୁନିକ ଓଡ଼ିଆ କାବ୍ୟଚିନ୍ତାର ସ୍ୱରୂପ ସନ୍ଧାନ କରିବା ।

ଆଧୁନିକ ବଙ୍ଗଳା ସାହିତ୍ୟ ପରି ଆଧୁନିକ ଓଡ଼ିଆ ସାହିତ୍ୟରେ ଯୁଗପତ୍ କ୍ଲାସିକ ଓ ରୋମାଣ୍ଟିକ ସାହିତ୍ୟର ସୂତ୍ରପାତ ଘଟିଛି । ଇଂରାଜୀ ସାହିତ୍ୟ ଇତିହାସରେ ସୁଦୀର୍ଘ କ୍ଲାସିକ ଯୁଗ (1702-1740) ପରେ ଆସିଛି ରୋମାଣ୍ଟିକ ଯୁଗ 1798 ରେ । Lyrical Balladsର ପ୍ରକାଶନ କାଳ 1798 । ମଝିରେ ସଂଧିକ୍ଷଣ । ରୋମାଣ୍ଟିକ ଯୁଗର ଆବିର୍ଭାବ ପାଇଁ ସେଠାରେ ଉଭୟ କାବ୍ୟଭୂମି ଓ ପାଠକଙ୍କ ଚିତ୍ତଭୂମିରେ ଏକ ପ୍ରତ୍ୟକ୍ଷ ପ୍ରତ୍ୟାଶାର ଭାବ ସମୁଦ୍ୟତ ଥିଲା । କ୍ଲାସିକ ଯୁଗ କାବ୍ୟର ସ୍ଥିତିପର୍ବ । ସେଠାରେ ନିୟମନିଷ୍ଠା, ଐତିହ୍ୟଅନୁକର୍ଷ, ରାଷ୍ଟ୍ରାନୁଗତ୍ୟ, ଅଳଙ୍କାରବହୁଳ, ଭାଷାଡ଼ମ୍ବର ଓ ଗଭୀର ଭାବଜ୍ଞାପକ ମହାକାବ୍ୟୋଚିତ ବିଶାଳ ପଟଭୂମିରେ ପାଠକ ରୁଦ୍ଧଶ୍ୱାସ ହୋଇ ରୋମାଣ୍ଟିକ ଗୀତିକବିତାର ମୁକ୍ତାକାଶରେ ନିଃଶ୍ୱାସ ଘେନିବାକୁ ଯେପରି ବ୍ୟାକୁଳ ହୋଇ ଉଠିଥିଲେ, କୃତ୍ରିମ ଆଡ଼ମ୍ବର ବହୁଳ କାବ୍ୟଧାରାର ଘନପିନଦ୍ଧ ସଂହତିରୁ ମୁକ୍ତି ଦେଇ ପାଠକଚିତ୍ତକୁ ତେଣୁ ତୃପ୍ତି ଦେଇଥିଲା ଇଂରାଜୀ ସାହିତ୍ୟର ରୋମାଣ୍ଟିକ୍ ଯୁଗ । ଆମେ ଏକାକାଳୀନ କାବ୍ୟକବିତାରେ କ୍ଲାସିକ ଓ ରୋମାଣ୍ଟିକ ଯୁଗ ପ୍ରବଣତାକୁ ବରଣ କଲୁ । ଆମ ରୋମାଣ୍ଟିକ୍ ଯୁଗ ପାଇଁ କ୍ଲାସିକ ଯୁଗର ଉପକ୍ରମଣିକା ନାହିଁ । ଠିକ୍ ସେପରି ଆମ

କ୍ଲାସିକ ପ୍ରବଣତା ପାଇଁ ଦୁର୍ବଳତା, ଭାବାଲୁତା, ଚଟୁଳ ଲୌକିକ ଭାବବିଳାସ, ଲଘୁତରଳ ଘଟଣାବିନ୍ୟାସ, ଆବେଗ ଉଚ୍ଛ୍ବସିତ କାହାଣୀ କଳାପର ଅସଂଯମ କି କେନ୍ଦ୍ରଚ୍ୟୁତିର ଭୂମିକା ନାହିଁ । କ୍ଲାସିକ ଯୁଗର ସଂଯମ ରୋମାଣ୍ଟିକ ଯୁଗର ଭାବୋଚ୍ଛ୍ବାସକୁ ଗ୍ରହଣଶକ୍ତି ଦିଏ, ରୋମାଣ୍ଟିକ୍ ଚେତନା କ୍ଲାସିକ ଚେତନାର ରୁଦ୍ଧକକ୍ଷରୁ ମୁକ୍ତି ପ୍ରଦାନ କରେ । ଆମର କିନ୍ତୁ ଉଭୟ ଯୁଗ ଏକାଠି ଅଛନ୍ତି, ଏପରିକି ଭଲ କବିମାତ୍ରେ ଏକାଧାରରେ କ୍ଲାସିକ ଓ ରୋମାଣ୍ଟିକ । ରାଧାନାଥ ଆଖ୍ୟାନଧର୍ମୀ କାବ୍ୟର ବହିରଂଗରେ କ୍ଲାସିକାଲ, ଅଥଚ ଅନ୍ତରଙ୍ଗରେ ବେଶ୍ ରୋମାଣ୍ଟିକ । ବିଶେଷତଃ 'ମହାଯାତ୍ରା'ରେ ମହାକାବ୍ୟ ଓ ଗୀତିକାବ୍ୟକୁ ଯୁକ୍ତବେଣୀରେ ପରିଣତ କରିଛନ୍ତି । ତେଣୁ ଆଧୁନିକ ଓଡ଼ିଆ କାବ୍ୟଚିନ୍ତା କ୍ଲାସିକ ଓ ରୋମାଣ୍ଟିକ ଗୁଣ ସନ୍ନିପାତରେ ଗଢ଼ା ।

ଆଧୁନିକ ବଙ୍ଗଳା କାବ୍ୟକବିତାର ଉନ୍ମେଷ ଓ ଉତ୍ତରଣ ସହିତ ଆଧୁନିକ ଓଡ଼ିଆ କବିତାର ଉନ୍ମେଷ ଉତ୍ତରଣ କିଛିଟା ପାର୍ଥକ୍ୟ ବର୍ତ୍ତମାନ । ପ୍ରାଚୀନ ବଙ୍ଗଳା କାବ୍ୟକବିତାର ରସପ୍ରବାହ ଭାରତଚନ୍ଦ୍ର (1712-1760) ଙ୍କ ପୂର୍ବରୁ କ୍ଷୀଣ ହୋଇ ଆସିଥିଲା । ଭାରତଚନ୍ଦ୍ର ସେଥିରେ କୃତ୍ରିମ କଲ୍ଲୋଳ ସୃଷ୍ଟି କରିଥିଲେ, କିନ୍ତୁ ତାଙ୍କ ପରେ ସେଠାରେ କେବଳ ଶୂନ୍ୟତା ବିରାଜି ନାହିଁ, ଭଲ କବିଙ୍କ ଆବିର୍ଭାବ ଉପଯୋଗୀ ଉର୍ବରତା ମଧ୍ୟ ଲୁପ୍ତ ହୋଇଯାଇଛି । ସ୍ଥୂଳ କବିତ୍ୱସଂପନ୍ନ କବିଓ୍ୱାଲାମାନେ ତେଣୁ ଆସି ରାଜତ୍ୱ କରିଛନ୍ତି । ମଧୁସୂଦନ ଦତ୍ତଙ୍କୁ ପ୍ରଥମେ ଜୀର୍ଣ୍ଣ ଗୃହ ଭାଙ୍ଗି ଦେଶାନ୍ତରରୁ ଉପାଦାନ ଉପକରଣ ସଂଗ୍ରହ କରି ପ୍ରାୟ ଶୂନ୍ୟ ପ୍ରାନ୍ତରରେ ନୂଆ କାବ୍ୟଭୁବନ ଗଢ଼ିବାକୁ ହୋଇଛି । ବଙ୍ଗଳା ସାହିତ୍ୟରେ ତିନୋଟି ଗୁଣର ଅଭାବ ଥିଲା; ବିଦେଶୀ ସାହିତ୍ୟର ରସବୈଚିତ୍ର୍ୟ, ପ୍ରକାଶଭଙ୍ଗୀର ଅଭିନବତ୍ୱ ଓ ଉନ୍ନତ ରୁଚି । କବି ମଧୁସୂଦନ ସେହି ଅଭାବ ଦୂର କଲେ । କିନ୍ତୁ ଓଡ଼ିଶାରେ କେବେ ଶୂନ୍ୟତା ବିରାଜି ନାହିଁ । ରାଧାନାଥଙ୍କ ପାଇଁ କବିସୂର୍ଯ୍ୟ ବଳଦେବ ରଥ ଓ ଗୋପାଳକୃଷ୍ଣ ଓଡ଼ିଆ କାବ୍ୟକବିତାର ଜଞ୍ଜାଳସ୍ତୂପ ସଫା କରି ଜଟିଳ ଅଳଙ୍କାର ଆଡ଼ମ୍ବର ପରିହାର ପୂର୍ବକ ଓଡ଼ିଆ କାବ୍ୟ ପ୍ରବାହଟିକୁ ପରିବର୍ତ୍ତନ ପଥରେ ଅଗ୍ରସର କରାଇ ଦେଇଥିଲେ; ଅର୍ଥାତ୍ ରାଧାନାଥଙ୍କ ପାଇଁ ଉର୍ବର କ୍ଷେତ୍ର ପ୍ରସ୍ତୁତ କରି ରଖିଥିଲେ । ଉନ୍ନତ ରୁଚିର ଅଭାବ ନଥିଲା । କବି ମଧୁସୂଦନ ଦତ୍ତଙ୍କୁ ଅବ୍ୟବହିତ ପ୍ରତିଷ୍ଠିତ କବି ଭାରତଚନ୍ଦ୍ରଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପଡ଼ିନାହିଁ, ସେ ତାଙ୍କର ନିଜସ୍ୱ ଏକ କାବ୍ୟଶୈଳୀ ଗଢ଼ିଛନ୍ତି, ଯାହାର ଭାଷା ନୂଆ, ଛନ୍ଦ ନୂଆ ଓ ଭାବ ନୂଆ । କିନ୍ତୁ ରାଧାନାଥଙ୍କର ସେହି ସାମର୍ଥ୍ୟ ନଥିଲା । ସେ ଏତେ ଉଦ୍ଧତ ଭାବରେ ଆଧୁନିକ ହୋଇ ନପାରନ୍ତି । ୧୮୭୬ର 'କବିତାବଳୀ'ରେ ଗୀତିକବିତା

ଲେଖି ସେ ଶିଷ୍ୟ ମଧୁସୂଦନଙ୍କ ପାଖରେ ଅପଦସ୍ଥ ହୋଇ ସାରିଥାନ୍ତି । ଏବେ କବି ଭାବରେ ନିଜର ଭାବମୂର୍ତ୍ତି ଗଢ଼ିବାକୁ ହେଲେ ପ୍ରାଚୀନ କାବ୍ୟପଠନ ଅଭ୍ୟସ୍ତ ଓଡ଼ିଆ ପାଠକଙ୍କୁ ସେ ଉତ୍ୟକ୍ତ କରି ପାରିବେ ନାହିଁ । ତେଣୁ କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ କି ମଧୁସୂଦନ ରାଓଙ୍କ ପରି ସେ କ୍ଷୁଦ୍ର କବିତା ନ ଲେଖି ଓଡ଼ିଆରେ ଆଖ୍ୟାନ-ଧର୍ମୀ କାବ୍ୟ ଲେଖିଥିଲେ । ବିଷୟବସ୍ତୁ ନୂଆ, ଚରିତ୍ର ନୂଆ, କିନ୍ତୁ ଅନେକତ୍ର ବୃତ୍ତ ପୁରୁଣା, ଭାଷା ବି କିଛିଟା ପୁରୁଣା । କବି ଉପେନ୍ଦ୍ରଙ୍କ କାବ୍ୟ ଐତିହ୍ୟକୁ ସେ ଆଧୁନିକୀକରଣରେ ବ୍ୟବହାର କଲେ । ସେଥିପାଇଁ ଭଞ୍ଜଙ୍କ ସହିତ ଆକର୍ଷଣ-ବିକର୍ଷଣ ବା Love-hate ସଂପର୍କରେ ସଂଶ୍ଳିଷ୍ଟ ହୋଇପଡ଼ିଲେ । କବି ଉପେନ୍ଦ୍ରଙ୍କ ଆଦିରସ, ନାରୀରୂପଲାବଣ୍ୟ ବର୍ଣ୍ଣନା ଓ ଉପମାଳଙ୍କୃତ ଭାଷା ସେ ବ୍ୟବହାର କରିବେ, କିନ୍ତୁ ନୂଆ ମଧ୍ୟବିତ୍ତ ଶିକ୍ଷିତ ପାଠକ ଯେତିକି ମାତ୍ରାର ଆଦିରସ ସହ୍ୟ କରିପାରିବ ସେତିକି ମାତ୍ରା ସେ ପ୍ରୟୋଗ କରିବେ, ନୂଆ ପାଠକ ଯେତିକି ମାତ୍ରାର ଅବ୍ୟାଜ-ମନୋହର ଅଳଙ୍କାରକୁ ଶ୍ରଦ୍ଧା କରିପାରିବ, ସେତିକି ମାତ୍ର ବ୍ୟବହାର କରିବେ । ତାଙ୍କପରି ଭଞ୍ଜଙ୍କ ଅନୁକାରୀ ଆଧୁନିକ କବି ଯେପରି କେହି ନାହିଁ, ସେପରି ଭଞ୍ଜଙ୍କୁ ଅଶ୍ରଦ୍ଧା ଓ ଅବଜ୍ଞା କରୁଥିବା ଲୋକ ବି କେହି ନାହିଁ । ଉତ୍କଳମଧୁପ (1879-80) ଓ ଇନ୍ଦ୍ରଧନୁ-ବିଜୁଳି କଳିକାଳ (୧୮୯୩) ରେ ଓଡ଼ିଆ ସାହିତ୍ୟରେ ଯେପରି କବି ଉପେନ୍ଦ୍ରଙ୍କୁ ଘେନି ବାଦାନୁବାଦ ସୃଷ୍ଟି ହୋଇଥିଲା, ସେମିତି ବଙ୍ଗସାହିତ୍ୟରେ ବି ଭାରତଚନ୍ଦ୍ରଙ୍କୁ ଘେନି 1833 ରୁ 1871 ପର୍ଯ୍ୟନ୍ତ ଘୋର ସମାଲୋଚନା ସଂଘର୍ଷ ସୃଷ୍ଟି ହୋଇଥିଲା, ଅନେକ ଦିନ ଧରି ବି ତାହା ଅବ୍ୟାହତ ଥିଲା । ସେଠାରେ ଇଂରାଜୀ ସାହିତ୍ୟ ଓ ସଂସ୍କୃତି ସମ୍ପର୍ଶରେ ଆସିଥିବା ସଦ୍ୟ ଆଧୁନିକ ଶିକ୍ଷାପ୍ରାପ୍ତ ପାଠକ ଭାରତଚନ୍ଦ୍ରଙ୍କ କାମସାହିତ୍ୟକୁ ଶ୍ରଦ୍ଧା କରିପାରି ନଥିଲା, ବ୍ରାହ୍ମଶୁଚିତା ପ୍ରଭାବରୁ ଅନେକ ତାଙ୍କୁ କବି ବୋଲି ସ୍ୱୀକାର କରିବାକୁ ପ୍ରସ୍ତୁତ ନ ଥିଲେ ମଧ୍ୟ ଭିକ୍ଟୋରୀୟ ରୁଚିର ଛାୟାତଳେ ବଢ଼ିଥିବା ବଙ୍କିମଚନ୍ଦ୍ର ତାଙ୍କର ଦେହଘଟିତ ପ୍ରେମର ସ୍ଥୂଳ ବର୍ଣ୍ଣନାକୁ ଘୃଣା କରୁଥିଲେ, ଅନ୍ୟ ପକ୍ଷରେ ରାଜନାରାୟଣ ବ୍ରାହ୍ମସମାଜଭୁକ୍ତ ହୋଇ ବି ଭାରତଚନ୍ଦ୍ରଙ୍କ ବିଶେଷ ପ୍ରଶଂସା କରୁଥିଲେ । ପ୍ରାଚୀନ ରୀତି ଓ ରୁଚିର ପକ୍ଷପାତୀ ରାମଗତି ବିଦ୍ୟାରତ୍ନ 'ବିଦ୍ୟାସୁନ୍ଦର'ର କୌଣସି ଅଂଶରେ କୌଣସି ମନ୍ଦ ବସ୍ତୁ ଦେଖୁ ନଥିଲେ, ସବୁଠାରେ ତାଙ୍କ ପାଇଁ ହେଉଥିଲା ମଧୁବୃଷ୍ଟି । ପ୍ରମଥ ଚୌଧୁରୀ ମଧ୍ୟ ଭାରତଚନ୍ଦ୍ରଙ୍କ ସରସତା, ତୀକ୍ଷ୍ଣତା ଓ ନାଗରିକ ମନୋଭାବର ଉଚ୍ଚ ପ୍ରଶଂସା କରିଛନ୍ତି । ଅନ୍ୟପକ୍ଷରେ ଦୀନେଶଚନ୍ଦ୍ର ସେନ ତାଙ୍କ ବିକୃତ ରୁଚି ଓ ଚରିତ୍ର ସୃଷ୍ଟିର ଅକ୍ଷମତାକୁ ନିନ୍ଦାକରୁଥିଲେ ଅଶେଷ, କିନ୍ତୁ କେହି ନୂଆ କବି ଭାରତଚନ୍ଦ୍ରଙ୍କ

କାବ୍ୟପଦାଙ୍କ ଅନୁସରଣ କରୁନଥିଲେ, ଭାରତଚନ୍ଦ୍ରଙ୍କ ପାଠକଙ୍କୁ କେହି ପ୍ରୀତ କରିବାକୁ ଚାହୁଁ ନଥିଲେ । କବି ମଧୁସଦନ ଦତ୍ତଙ୍କ ହିରୋ ଥିଲେ Milton— 'Nothing can be better than Milton............ Milton is devine । ରାଧାନାଥ କିନ୍ତୁ ମୁହଁରେ କହୁଥିଲେ କାଳିଦାସ Devine—ତାଙ୍କ ସହିତ ଭଞ୍ଜଙ୍କୁ ତୁଳନା କରିବା ମାନେ ହିମାଳୟକୁ କପିଳାସ ସହିତ ତୁଳିବା । ଅଧିକନ୍ତୁ ଏହି ଜ୍ଞାନ ଉଦୟ ହେଲାବେଳକୁ ସେ ତାଙ୍କର ସବୁ ଆଖ୍ୟାନଧର୍ମୀ କାବ୍ୟ ଲେଖି ସାରିଥିଲେ, ଯେଉଁଥିରେ ଭଞ୍ଜ ଥିଲେ ତାଙ୍କର ଅନ୍ୟତମ ଆଦର୍ଶ । ଭାରତଚନ୍ଦ୍ର ଥିଲେ ଅନ୍ୟତମ ଦିଗଦର୍ଶକ । ସେଥିପାଇଁ ସେ ଭଞ୍ଜଙ୍କ ସହିତ ଆକର୍ଷଣ-ବିକର୍ଷଣ ସଂପର୍କରେ ଜଡ଼ିତ ହୋଇ ପଡ଼ିଲେ ଓ ନିଜର ପ୍ରତିଷ୍ଠାପାଇଁ ଓଡ଼ିଆଙ୍କ ସାରସ୍ୱତ ଜୀବନକୁ ସାହିତ୍ୟଚର୍ଚ୍ଚା ନାମରେ ଗାଳିଗୁଲାସ୍ତରକୁ ଟାଣି ଆଣିଲେ । ନୀତିବାଦୀ ଇଂରାଜୀ ସାହିତ୍ୟ ଓ ସମାଲୋଚନାର ଆଦର୍ଶରେ ଉପେନ୍ଦ୍ରଙ୍କ ଗୁଣ ସେଦିନ ସ୍ୱୀକୃତ ହେଲା ନାହିଁ, ତେଣୁ ରାଧାନାଥ ପ୍ରଶଂସିତ ହେଲେ ଅପେକ୍ଷାକୃତ ବେଶି । କିନ୍ତୁ ସେ ଯେ ଭୁଲ ସାହିତ୍ୟିକ ଆଦର୍ଶ ବାଛିଛନ୍ତି, ଗଦ୍ୟ ମହାକାବ୍ୟ ଉପନ୍ୟାସ ଯୁଗରେ ପଦ୍ୟ ଆଖ୍ୟାୟିକା କାବ୍ୟ ଲେଖିଛନ୍ତି ଓ ଯୁଗର ସ୍ୱାଭାବିକ ସାରସ୍ୱତ ଫସଲ ଗୀତିକାବ୍ୟର ସମ୍ଭାବନାମୟ ଉଜ୍ଜ୍ୱଳ ଭବିଷ୍ୟତ ଦେଖି ନପାରି ରୋମାଣ୍ଟିକ୍ ମହାକାବ୍ୟ ରଚନାରେ ମାତିଛନ୍ତି ଏ କଥା ସେ ବୁଝିପାରି ନଥିଲେ । ସେ ଏମିତି ଅସରଳ ଭାବରେ ତାଙ୍କ କାବ୍ୟାଦର୍ଶଟିକୁ ଲୋକଦୃଷ୍ଟି ଆକର୍ଷଣୀୟ କରିଦେଲେ ଯେ, ବହୁ କୃତୀ ସାହିତ୍ୟିକ ତାଙ୍କରି ବାଟରେ ଚାଲିଲେ । ବିରଳ ବ୍ୟତିକ୍ରମ ଥିଲେ କେବଳ ମଧୁସୂଦନ ରାଓ, କିଛିଟା ଭିନ୍ନ ପଥରେ ପଥିକ ଥିଲେ ମଧ କବି ଫକୀର ମୋହନ ସେନାପତି, କାବ୍ୟ ଲେଖିବାର ପ୍ରଲୋଭନ ଛାଡ଼ି ପାରିନଥିଲେ । ନିୟତିକୁ ନିଜ ଇଚ୍ଛାପଥେ ନେଇ ହେବ ନାହିଁ ବୋଲି ରାଧାନାଥ ଜାଣିଥିଲେ, କିନ୍ତୁ ଓଡ଼ିଆ କାବ୍ୟ ନିୟତିକୁ ନିଜ ଇଚ୍ଛାପଥେ ନେବାକୁ ଆପ୍ରାଣ ଚେଷ୍ଟା କରିଥିଲେ । କିନ୍ତୁ ଶେଷପର୍ଯ୍ୟନ୍ତ ମଧୁସୂଦନ ଓ ଫକୀରମୋହନଙ୍କ ବ୍ୟତିକ୍ରମ ବଞ୍ଚି ରହିଲା ଉତ୍ତରାଧିକାର ପାଇଁ; ରାଧାନାଥ ଓ ରାଧାନାଥ-ପ୍ରଭାବିତ କବିମାନଙ୍କ ଗତିପଥ ଅଚିରେ ଅବଲୁପ୍ତ ହୋଇଗଲା ସବୁଦିନ ପାଇଁ । ପ୍ରକୃତରେ କବି ଉପେନ୍ଦ୍ର ଭଞ୍ଜଙ୍କ ରସସଂସ୍କାରର କ୍ଷୀୟମାଣ ଧାରାଟିକୁ ସେହି ଭଞ୍ଜଙ୍କ ବିରୋଧରେ କବି ରାଧାନାଥ ସୁକୌଶଳରେ ବଞ୍ଚାଇ ରଖିବାକୁ ଯେଉଁ ସାଂସ୍କୃତିକ ଉଦ୍ୟମ କରିଥିଲେ ତାହା ସ୍ୱାଭାବିକ ଭାବରେ ବିଳୟ ଲଭିଲା । ଜନଶୂନ୍ୟ ପଥରେ ରାଧାନାଥ ବାହାରି ପଡ଼ିନଥିଲେ ମଧୁସୂଦନ ଦତ୍ତଙ୍କ ପରି, ଚଲାପଥରେ ଥିଲା ତାଙ୍କର ଯାତ୍ରା; ଯଦିଓ 'ଚିଲିକା', 'ଦରବାର' ଓ 'ମହାଯାତ୍ରା' ପରି ରଚନାରେ ସେ ନୂଆ ବାଟଟିକୁ

ପ୍ରଶସ୍ତ ଓ ପରିଷ୍କାର କରି ଦେଇଯାଇଛନ୍ତି । ସେ କବି ଉପେନ୍ଦ୍ରଙ୍କୁ ଅପଦସ୍ଥ କରିବେ, କିନ୍ତୁ ଉପେନ୍ଦ୍ରଙ୍କ କାବ୍ୟପଠନ ଅଭ୍ୟସ୍ତ ପାଠକଙ୍କୁ ବିମୁଖ କରିବେ ନାହିଁ । ଆଶ୍ୱସ୍ତ ରଖି ବରଂ କବିବର ହେବେ । ତେଣୁ ସେଦିନର ଆଧୁନିକ ଓଡ଼ିଆ କାବ୍ୟବିବେକ ଏକ ଜଟିଳ କାବ୍ୟବିବେକ । ସେଠାରେ ଏକାପଟରେ ଏକାବେଳକେ କେବଳ କ୍ଲାସିକ ଓ ରୋମାଣ୍ଟିକ କାବ୍ୟଚେତନା ସମନ୍ୱିତ ହୋଇନାହାନ୍ତି; ସେଠି ଅଧିକନ୍ତୁ ସମନ୍ୱିତ ହୋଇଛନ୍ତି ପ୍ରବାହ ଓ ପରିବର୍ତ୍ତନ, ଐତିହ୍ୟ ଓ ନବପରୀକ୍ଷଣ, ପ୍ରାଚୀନ ରସବସ୍ତୁ ଓ ଆଧୁନିକ ରୁଚିବୋଧ, ନୂଆ ଭାବବସ୍ତୁ ଓ ପ୍ରାଚୀନ ଭାଷାବୃତ୍ତ, ଗୀତିକାବ୍ୟର ବ୍ୟକ୍ତିଗତ ଆବେଗାନୁଭୂତି ଓ ମହାକାବ୍ୟର ନୈର୍ବ୍ୟକ୍ତିକତା, ଭୂମି ଓ ଭୂମା, କାବ୍ୟରୀତି ଓ ବାକ୍‌ରୀତି ଇତ୍ୟାଦି ଇତ୍ୟାଦି । ସେଦିନ ପ୍ରମୁଖ କବିତ୍ରିତୟ ଫକୀର ମୋହନ, ରାଧାନାଥ ଓ ମଧୁସୂଦନଙ୍କ କାବ୍ୟରୀତିରେ ଐକ୍ୟ ଅପେକ୍ଷା ଅନୈକ୍ୟ ଅନେକ ନିଶ୍ଚୟ—ତେବେ ସେମାନଙ୍କ ସ୍ୱାତନ୍ତ୍ର୍ୟ ଓ ଅନନ୍ୟତା ସତ୍ତ୍ୱେ ବି କେଉଁଠି ନା କେଉଁଠି ସେମାନେ ଗୋଟିଏ ଐକ୍ୟସୂତ୍ରରେ ବାନ୍ଧି ହୋଇ ପଡ଼ିଛନ୍ତି । ଆସନ୍ତୁ ସେଇଠି ପହଞ୍ଚି ଊନବିଂଶ ଶତାବ୍ଦୀର ଓଡ଼ିଆ କାବ୍ୟଚିନ୍ତାଟିକୁ ନିରୂପଣ କରିବାକୁ ଉଦ୍ୟମ କରିବା । ସେଦିନର କାବ୍ୟଚିନ୍ତାର ସ୍ୱବିରୋଧତାକୁ ସହ୍ୟ କରିବାକୁ ହେବ—ରାଧାନାଥ ସହସା ପ୍ରତିଷ୍ଠା ପ୍ରତିପତ୍ତି ଅର୍ଜିବାରୁ ତାଙ୍କରି କାବ୍ୟାଦର୍ଶ ଊନବିଂଶ ଶତାବ୍ଦୀର କାବ୍ୟାଦର୍ଶ ବୋଲି ପ୍ରଚଳିତ ହୋଇଯାଇଛି, କିନ୍ତୁ ତାହାରି ପାଖରେ ମଧୁସୂଦନ ଓ ଫକୀରମୋହନ କାବ୍ୟକବିତାଦ୍ୱାରା ଯେଉଁ କାବ୍ୟରୀତି ଗଢ଼ିଉଠିଥିଲା, ତାହାକୁ ଅସ୍ୱୀକାର କରି ହେବ ନାହିଁ ।

( ଦୁଇ )

**ଉପାଦାନ ଓ ଉପକରଣ :**

ଗତ ଶତାବ୍ଦୀର ଆଧୁନିକ କାବ୍ୟଚିନ୍ତାର ସ୍ୱରୂପ ବିଶ୍ଲେଷଣ ବେଳେ ବିଂଶ ଶତାବ୍ଦୀର କିଛି ଉପାଦାନ ଉପକରଣର ବିଚାର ଘେନିବାକୁ ହେଉଛି, କାରଣ ଗତ ଶତାବ୍ଦୀରେ ଯେଉଁ ଚିନ୍ତା ବୀଜାକାରରେ ଥିଲା, ପରବର୍ତ୍ତୀ କାଳରେ ତାହା ଅନେକ ପରିମାଣରେ ସ୍ପଷ୍ଟ ହୋଇଉଠିଛି । ରାଧାନାଥଙ୍କ ପ୍ରଭା ଓ ପ୍ରଭାବ ବିଂଶ ଶତାବ୍ଦୀର କାବ୍ୟକବିତାରୁ ଆଧିପତ୍ୟ ହରାଇ ନାହିଁ, ବିଂଶ ଶତାବ୍ଦୀର ଅନେକ କାଳ ତାଙ୍କର ପ୍ରାପ୍ୟ । ସେହି ଦୃଷ୍ଟିରୁ ଉପାଦାନ ଉପକରଣର ବୈଧତା ବିଚାର କରାଯାଉ ।

୧। ଊନବିଂଶ ଶତାବ୍ଦୀରେ କାବ୍ୟକବିତା ଓ ରାଧାନାଥ ପ୍ରଭାବିତ କାବ୍ୟକବିତା । କାରଣ ଆଗେ ସୃଷ୍ଟି, ପଛେ ତତ୍ତ୍ୱ-ବିଚାର ।

୨। କବିତା ସମ୍ବନ୍ଧରେ ରଚିତ କବିତା : ଦର୍ପଣ ନିଜ ମୁହଁ ନିଜେ ଦେଖିଛି ଅନେକତ । କବି ଫକୀର ମୋହନ କବି ଓ କବିତା ତଥା କଳ୍ପନା ବିଷୟରେ

କିଛି କବିତା ଲେଖିଛନ୍ତି । ଯଥା : କବି, କବିର ସାନ୍ତ୍ୱନା, ଉପେନ୍ଦ୍ର ଭଞ୍ଜଙ୍କ ସ୍ୱପ୍ନ ଦର୍ଶନ, କବି ଓ ଚିତ୍ରକର, କବିର ସଂପତ୍ତି, କବିତାବିହଗୀ, କବିର କଳିହୁଡ଼ୀ ସ୍ତ୍ରୀ ଓ ଯମରାଜଙ୍କ ଦରବାର । ମଧୁସୂଦନ ରାଓ ଲେଖିଛନ୍ତି ସମାସ ସାହିତ୍ୟଚର୍ଚ୍ଚା ସାବାସ୍ ସାବାସ୍ ଓ ଭଣ୍ଡରସାୟନ କାବ୍ୟ । ରୋମାଣ୍ଟିକ୍ କବିତା ବିଷୟରେ କବିତା ଲେଖିଛନ୍ତି । ଆମ କବି ଉତ୍ସାହିତ ହୋଇଛନ୍ତି । ଏବେ ଅନେକ ଲେଖୁଛନ୍ତି ।

୩। କବିତା ସମ୍ବନ୍ଧରେ କବିମାନଙ୍କ ମନ୍ତବ୍ୟ—ଉଭୟ ଗଦ୍ୟ ଓ ପଦ୍ୟରେ ।

୪। କାବ୍ୟକବିତା ଗ୍ରନ୍ଥର ଭୂମିକା ।

୫। ସମ୍ପାଦକଙ୍କୁ ପ୍ରେରିତ ପତ୍ର ।

୬। ବିଶେଷ ଉପଲକ୍ଷେ ରଚିତ ଚିଠିପତ୍ରରେ କବିତା ସମ୍ବନ୍ଧୀୟ ମନ୍ତବ୍ୟ ।

୭। ଅଭିଭାଷଣ ।

୮। ଗ୍ରନ୍ଥ ସମୀକ୍ଷା : ଉଭୟ ମୌଳିକ ରଚନା ଓ ଅନୂଦିତ ଗ୍ରନ୍ଥର ସମୀକ୍ଷା ।

୯। ସମାଲୋଚନା ସାହିତ୍ୟ । ସମାଲୋଚନା ସମକାଳୀନ କାବ୍ୟଚିନ୍ତା ନିରପେକ୍ଷ ରହିପାରେ ନାହିଁ ।

(କ) କବି ଉପେନ୍ଦ୍ର ଭଞ୍ଜ

(ଖ) ମର୍ଯ୍ୟାଦା ବଡ଼ କି ଅଳଙ୍କାର ବଡ଼ ?

(ଗ) ମିତ୍ରାକ୍ଷର ଇତ୍ୟାଦି : ଲାଲା ରାମନାରାୟଣ ରାୟ ।

୧୦। କବିତା ସମ୍ବନ୍ଧରେ ରଚିତ ସ୍ୱତନ୍ତ୍ର ପ୍ରବନ୍ଧ :

(କ) ବିନୟଚନ୍ଦ୍ର ମଜୁମଦାରଙ୍କ 'ସାହିତ୍ୟ ଚର୍ଚ୍ଚା' ଏବଂ 'ବିପ୍ଳବ ଓ ସମାଲୋଚନା ।'

(ଖ) ମଧୁସୂଦନ ରାଓଙ୍କ 'କବିର କୌଶଳ' ଓ 'କବିତା ଅଧ୍ୟୟନ' ।

୧୧। ଆତ୍ମଜୀବନରେ ଅଭିବ୍ୟକ୍ତ କବିତା ସଂକ୍ରାନ୍ତ ପ୍ରତିକ୍ରିୟା ।

୧୨। ଆଦର୍ଶ ପ୍ରଶ୍ନାବଳୀ : ଉଦ୍ଦେଶ୍ୟ, ଛାତ୍ରଙ୍କୁ ନୂଆ କାବ୍ୟାଦର୍ଶରେ ଦୀକ୍ଷିତ କରିବା । ଭୁବନେଶ୍ୱର ଦତ୍ତଙ୍କ ନାମରେ ପ୍ରଚଳିତ ଆଦର୍ଶ ପ୍ରଶ୍ନାବଳୀର ପ୍ରଶ୍ନ ଦ୍ରଷ୍ଟବ୍ୟ :—

(କ) କବିତାର ଲକ୍ଷଣ କି ?

(ଖ) କାବ୍ୟ କେତେ ଭାଗରେ ବିଭକ୍ତ ?

(ଗ) ପୂର୍ଣ୍ଣ ମିତ୍ରାକ୍ଷର ଓ ଅପୂର୍ଣ୍ଣମିତ୍ରାକ୍ଷରର ଉଦାହରଣ ଦିଅ ।

(ଘ) ଏପରି ଗୋଟିଏ ଉଦାହରଣ ଦିଅ ଯହିଁରେ କୌଣସି ଭାବ ଏକ କିମ୍ବା ଦୁଇ ଚରଣରେ ସମାପ୍ତ ନହୋଇ ଅନେକ ଚରଣ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିବ ।

(ଙ) କଳ୍ପନା ଚିତ୍ରିଲା କେତେ ଛବି ଚିତ୍ରପଟେ କଳ୍ପନାର ଅର୍ଥ କି ? ଏବଂ ଏହାର କାର୍ଯ୍ୟ କ'ଣ ? ଇତ୍ୟାଦି ଇତ୍ୟାଦି ।

୧୩। କାବ୍ୟତତ୍ତ୍ୱକୁ ସଂକ୍ରାନ୍ତ ମତର ଖଣ୍ଡନ ମଣ୍ଡନ :

(କ) ଦୋଷଦର୍ଶନ—ଦାମୋଦର ମିଶ୍ର, ୧୮୯୫ ।

(ଖ) ଗୁଣାଦର୍ଶ—ବୁଦ୍ଧିନାଥ କାବ୍ୟତୀର୍ଥ ଶର୍ମା, ୧୯୦୦ ।

୧୪। କବିତା ବିଶ୍ଳେଷଣ :

(କ) କବିତାବଳୀ—୨ୟ ଭାଗ

(ଖ) ଜୀବନ ଚିନ୍ତା— ଶିକ୍ଷାବନ୍ଧୁ

୧୫। କବିଙ୍କ ବନ୍ଦନା ଓ ବାଣୀ ଆରାଧନା :

(କ) କାଳିଦାସ, ଭବଭୂତି, ରାଧାନାଥ, ଭାରତଚନ୍ଦ୍ର, ମଧୁସୂଦନ ଦତ୍ତଙ୍କ ସମ୍ବନ୍ଧରେ ରଚିତ କବିତା

(ଖ) 'ହିମାଚଳେ ଉଦୟ ଉତ୍ସବର' ଉଦ୍‌ବୋଧନ ଓ 'ତପସ୍ୱିନୀ'ର ମଙ୍ଗଳାଚରଣ ।

୧୬। ପାଶ୍ଚାତ୍ୟ କାବ୍ୟତତ୍ତ୍ୱ ଓ ଭାରତୀୟ ଅଳଙ୍କାର ଶାସ୍ତ୍ର ମଧ୍ୟରେ ଥିବା ତାରତମ୍ୟ ବିଚାର ।

୧୭। ଊନବିଂଶ ଶତାବ୍ଦୀରେ କାବ୍ୟକବିତା ଆଲୋଚନା ।

( ତିନି )

ଊନବିଂଶ ଶତାବ୍ଦୀରେ ଆଧୁନିକ କାବ୍ୟଚିନ୍ତା ପାଶ୍ଚାତ୍ୟ କାବ୍ୟାଦର୍ଶାଶ୍ରୟୀ ହେବାକୁ ଚାହିଁଛି; ଉଭୟ ତତ୍ତ୍ୱଜିଜ୍ଞାସାରେ ଓ କାବ୍ୟକବିତା ସୃଷ୍ଟିରେ । ତେଣୁ ଭୂମିକା ସ୍ୱରୂପ ପ୍ରାଚ୍ୟ କାବ୍ୟତତ୍ତ୍ୱ ଓ ପାଶ୍ଚାତ୍ୟ କାବ୍ୟତତ୍ତ୍ୱର ତାରତମ୍ୟ ବିଚାର ନ କଲେ ଅଗ୍ରସର ହୋଇ ହେବ ନାହିଁ । ପାଶ୍ଚାତ୍ୟ କାବ୍ୟତତ୍ତ୍ୱ ସହିତ ତୁଳନା କଲେ ଆମ ଅଳଙ୍କାର ଶାସ୍ତ୍ରର ଦୁଇଟି ପ୍ରଧାନ ଅଭାବ ଲକ୍ଷ୍ୟ କରିହୁଏ । ସେଦିନ ମଧୁସୂଦନ ରାଓ ଲକ୍ଷ୍ୟ କରିଥିଲେ 'ଅଳଙ୍କାର ବୋଧୋଦୟ'ର ସମୀକ୍ଷା

ଉପଲକ୍ଷେ, "ସଂସ୍କୃତ ଅଳଙ୍କାର ଗ୍ରନ୍ଥରେ କାବ୍ୟମାନଙ୍କରୁ ଗୋଟିଏ ଗୋଟିଏ ଶ୍ଳୋକ ନେଇ ସେଥିରେ ଦୋଷଗୁଣ, ଉତ୍କର୍ଷ ଅପକର୍ଷ ସମ୍ବନ୍ଧରେ ଅତି ସୂକ୍ଷ୍ମ ବିଚାର କରାଯାଇଛି । ମାତ୍ର ଖଣ୍ଡିଏ ସମଗ୍ର କାବ୍ୟ ବା ନାଟକର ବିଚାର କରି ସେଥିରେ ଦୋଷଗୁଣ ପ୍ରଦର୍ଶିତ ହୋଇ ନାହିଁ । ସମଗ୍ର କାବ୍ୟ ବା ନାଟକର ଶରୀର ଗଠନ କିପରି, ତାହାର ଆଦି-ମଧ୍ୟ-ପ୍ରାନ୍ତ ଏମାନଙ୍କ ମଧ୍ୟରେ ପରସ୍ପର ଅନୁପାତର ସାମଞ୍ଜସ୍ୟ ଅଛି କି ନାହିଁ, ପ୍ରତ୍ୟେକ ବର୍ଣ୍ଣିତ ବିଷୟ ମୂଳ ବିଷୟର ଉପଯୋଗୀ କି ନା, କାବ୍ୟର କେଉଁ ଅଂଶ ପ୍ରାସଙ୍ଗିକ, କେଉଁ ଅଂଶ ଅପ୍ରାସଙ୍ଗିକ, ନାୟକ ନାୟିକାଙ୍କ ଚରିତ୍ର ଗଠନ କିପରି, ସେମାନଙ୍କ ଉକ୍ତି ପ୍ରତ୍ୟୁକ୍ତି ସେହି ଚରିତ୍ରର ଅନୁରୂପ ଏବଂ ପରିପୋଷକ କି ନା, ଏହି ରୀତି ସମାଲୋଚନା ପ୍ରାୟ କୌଣସି ସଂସ୍କୃତ ଅଳଙ୍କାର ଗ୍ରନ୍ଥରେ ଦେଖାଯାଏ ନାହିଁ । (ଶିକ୍ଷାବନ୍ଧୁ ୨/୬-୭, ୧୨୯୩/ ୧୮୮୬) । ମଧୁସୂଦନ ବଙ୍ଗସାହିତ୍ୟର ବଙ୍କିମ ଚନ୍ଦ୍ରଙ୍କ ପରି ସମାଲୋଚନା ସଂଶ୍ଳେଷଣୀ ରୀତିସମ୍ପନ୍ନ ହେବା ଉଚିତ ବୋଲି ଭାବିଛନ୍ତି । ପାଶ୍ଚାତ୍ୟ ସାହିତ୍ୟତତ୍ତ୍ୱ ଓ ପାଶ୍ଚାତ୍ୟ ସାହିତ୍ୟବୋଧ ସହିତ ସେଦିନ କବି ଓ ସମାଲୋଚକଙ୍କର ପ୍ରତ୍ୟକ୍ଷ କି ପରୋକ୍ଷ ଭାବରେ କିଛି ପରିଚୟ ଥିଲା । ଅନେକେ ମଧୁସୂଦନଙ୍କୁ ମାନି ନେଇଛନ୍ତି, ଆମ ଅଳଙ୍କାର ଶାସ୍ତ୍ର ଓ ସେହି ଶାସ୍ତ୍ରର ଅନୁଶାସନରେ ରଚିତ କାବ୍ୟରେ ଉପରୋକ୍ତ ଅଭାବ ଲକ୍ଷ୍ୟ କରିଛନ୍ତି, ବ୍ୟଷ୍ଟି ଅପେକ୍ଷା ସମଷ୍ଟି ପ୍ରତି ସଚେତନ ହୋଇ ଉଠିଛନ୍ତି । ଅନ୍ୟ ଏକ ଅଭାବ ଦେଖାଇଛନ୍ତି S.K. De— ପାଶ୍ଚାତ୍ୟ କାବ୍ୟ ଜିଜ୍ଞାସାରେ ପ୍ରଧାନ ବିଷୟ ହେଉଛି କବିମାନସ ଓ କାବ୍ୟବସ୍ତୁ; ଯାହା ସଂସ୍କୃତ ଅଳଙ୍କାର ଶାସ୍ତ୍ରର ପ୍ରୟୋଜନର ବହିର୍ଭୂତ । ଏହି ବିଷୟରେ ସେଦିନ ଓଡ଼ିଆ କବି ଓ ସମାଲୋଚକମାନେ ପ୍ରତ୍ୟକ୍ଷ ଭାବରେ ସଚେତନ ନଥିଲେହେଁ ଅବଚେତନରେ କେଉଁଠି ଅଭାବଟିକୁ ଭେଟିଛନ୍ତି ଓ ପ୍ରତିଷେଧକଳ୍ପେ, ମଧୁସୂଦନ ଦତ୍ତଙ୍କ ଆଦର୍ଶରେ ନୂଆ ପାରିଭାଷିକ ଶବ୍ଦଟିଏ ବ୍ୟବହାର କରିଛନ୍ତି— ଯାହାର ନାମ କଳ୍ପନା ବା Imagination ।

( ଚାରି )

କାବ୍ୟଚିନ୍ତା ବିଷୟଟିକୁ ମୁଖ୍ୟତଃ କାବ୍ୟବିଷୟ, କାବ୍ୟପ୍ରକରଣ ଓ କାବ୍ୟକବିତା ସମ୍ବନ୍ଧରେ କବି ସମାଲୋଚକମାନଙ୍କ ଅନ୍ୟାନ୍ୟ ଧାରଣା ଆଦି ଏଇ ତିନି ଭାଗରେ ବିଭକ୍ତ କରାଯାଇଥାଏ । କେଉଁଠି ଆରମ୍ଭ କରିବା ? ବିଚାରର ସୌକର୍ଯ୍ୟ ଦୃଷ୍ଟିରୁ କବି ସମାଲୋଚକଙ୍କର କାବ୍ୟକବିତା ସମ୍ବନ୍ଧରେ ବିଭିନ୍ନ ଧ୍ୟାନଧାରଣାରୁ ଆରମ୍ଭ କରିବା । ଆଗେ ସୃଷ୍ଟି ପଛେ ସମାଲୋଚନା । ସମାଲୋଚନା ମାନେ ମୁଖ୍ୟତଃ ମୂଲ୍ୟାୟନ । ମୂଲ୍ୟାୟନ ମାତ୍ରେ ତୁଳନାଶୀଳ ଓ କୌଣସି ନା କୌଣସି ତତ୍ତ୍ୱାଶ୍ରୟୀ

ବା ମାନଦଣ୍ଡ ସାପେକ୍ଷ । କବିଙ୍କର କାବ୍ୟାଦର୍ଶ ଥାଏ । ସମାଲୋଚକଙ୍କର ବ୍ୟକ୍ତିଗତ ସାରସ୍ୱତ ମୂଲ୍ୟବୋଧ ଥାଏ । ମଣିକାଞ୍ଚନ ଯୋଗାଯୋଗ ଘଟେ କ୍ୱଚିତ୍ । ତେଣୁ ବେଳେ ବେଳେ ଉତ୍କୃଷ୍ଟ ଯୁଗୋପଯୋଗୀ ରଚନା ସମାଲୋଚନାରେ ଅନୁତ୍ତୀର୍ଣ୍ଣ ହୋଇଉଠିଲା ବେଳେ, ଅନ୍ୟ କେଉଁ ରଚନା ଶ୍ରଦ୍ଧା ଓ ପ୍ରଶଂସା ଅର୍ଜିଥାଏ— ଯୁଗର ଆଦର୍ଶ ବୋଲି ଉଦ୍‌ଘୋଷିତ ହୋଇଥାଏ । ସବୁ ଦେଶର ସବୁ ସାହିତ୍ୟରେ କେଉଁ କାଳରେ କେଉଁଠି ଭୁଲ ମୂଲ୍ୟବୋଧ ସୃଷ୍ଟି ହୋଇନଥିବ ବୋଲି କହିବା କଠିନ ହୋଇଥିବ । ଓଡ଼ିଶାରେ ଗତ ଶତାବ୍ଦୀରେ କିଛିଟା ହୋଇଛି । ରାଧାନାଥଙ୍କର କେତେକ କାବ୍ୟ ପ୍ରକାଶ ପାଇ ସାରିଥାଏ । ମଧୁସୂଦନ ବି ଭଲ କେତେକ ଗୀତି କବିତା ଲେଖି ସାରିଥାନ୍ତି । ଏବେ ସମାଲୋଚନା ଆବିର୍ଭୂତ ହୁଏ । ଆମର ଯୁଗଟି ରୋମାଣ୍ଟିକ୍ ଗୀତିକବିତାର ଯୁଗ । ଇଂରାଜୀ କବିତାରେ ଅବଶ୍ୟ ଏହି କାଳଟି ଭିକ୍ଟୋରୀୟ ଯୁଗ (1832-1900); ଯେଉଁଠି ରୋମାଣ୍ଟିକ ଯୁଗର ମୌଳିକ ପ୍ରେରଣା ଟେନିସନ (1802-1892), ବ୍ରାଉନିଂ (1812-1889), ଆର୍‌ନୋଲ୍‌ଡ଼(1822-1888) ଓ ସ୍ୱଇନବାର୍ନ(1837-1909) ଙ୍କ ମଧ୍ୟରେ କ୍ଷୀଣ ଓ ବିଚ୍ଛିନ୍ନ ଭାବରେ ସଂକ୍ରାମିତ ହୋଇଛି । ଆମେ କିଛିକାଳ ପଛରେ ଥାଇ ଇଉରୋପକୁ ଅନୁସରଣ କରୁ ନାହିଁକି ? ତେଣୁ ଇଂରାଜୀ ରୋମାଣ୍ଟିକ୍ ଯୁଗ (1798-1932) ର କଳ୍ପନା ଓ ଦୃଷ୍ଟିଭଙ୍ଗୀର ବୈଶିଷ୍ଟ୍ୟ ଆମ କବିଙ୍କ ଉପରେ ଏକାଧିପତ୍ୟ ବିସ୍ତାର କରିଥାଏ । ପାଠକେ କିନ୍ତୁ ତଥାପି ପ୍ରସ୍ତୁତ ନଥାନ୍ତି : ଫଳରେ ଗୀତିକବିତା ସମାଦୃତ ହୁଏ ନାହିଁ । ବାଲେଶ୍ୱରର ବାବୁ ରାଜନାରାୟଣ ଦାସଙ୍କ 'ବନ୍ୟପୁଷ୍ପାଞ୍ଜଳି'ର ଦ୍ୱିତୀୟ ଭାଗର ସମୀକ୍ଷା ଉପଲକ୍ଷେ କବି ରାଧାନାଥ ମନ୍ତବ୍ୟ କରିଛନ୍ତି, ''ସୋମପୁଷ୍ପର ଲେଶମାତ୍ର ରୂପାଡ଼ମ୍ବର ନାହିଁ, ମାତ୍ର ତାହାର ଅପ୍ରଗଲ୍‌ଭ ସୌରଭରୁ ଯେଉଁ ଅନିର୍ବଚନୀୟ ମାଧୁରୀ ଅନୁଭୂତ ହୁଏ, ଏ କବିତାରେ ସେହିପରି ମାଧୁରୀ ଅଛି । ଉତ୍କଳର ବର୍ତ୍ତମାନ (1894) ସାଧାରଣ ପାଠକର ସାହିତ୍ୟଜ୍ଞାନର ମାନଦଣ୍ଡ ପ୍ରତି ଦୃଷ୍ଟିପାତ କଲେ ଏ ଶ୍ରେଣୀର କବିତା ଯେ ସମୁଚିତ ଆଦର ପ୍ରାପ୍ତ ହେବ, ଏହା କଦାଚ ସମ୍ଭବପର ନୁହେଁ ।'' ଏହି ଅପରିଣତ ସାହିତ୍ୟବୋଧ ପାଇଁ ମଧୁସୁଦନ ରାଓ ଭାଷା, ଭାବ ଓ ରୂପଦୃଷ୍ଟିରୁ ଗୀତିକବିତାର ସବୁ ସମ୍ଭାବନାକୁ ମୁକୁଳିତ କରିଥିଲେହେଁ ତାଙ୍କୁ ସେଦିନ କବିଭାବରେ ଉପଯୁକ୍ତ ମର୍ଯ୍ୟାଦା ମିଳିନାହିଁ । ରାଧାନାଥ ଗଦ୍ୟ ଓ ପଦ୍ୟରେ ଯେଉଁସବୁ ମନ୍ତବ୍ୟ ପ୍ରକାଶ କରିଛନ୍ତି ଅବଶ୍ୟ ତାହା ପଛରେ ସଚେତନ କାବ୍ୟାଦର୍ଶ ସନ୍ଧାନର ପ୍ରୟାସ ଅଛି—କିନ୍ତୁ ସେ କାବ୍ୟକବିତା ସମ୍ବନ୍ଧରେ ସ୍ୱତନ୍ତ୍ର ପ୍ରବନ୍ଧ ଲେଖି ନାହାନ୍ତି । ଅନ୍ୟ କବିଙ୍କ କାବ୍ୟଗ୍ରନ୍ଥର ଭୂମିକା ଲେଖିବା କି ସମୀକ୍ଷା ପ୍ରସ୍ତୁତ କରିବା, ବିଶେଷ ଉପଲକ୍ଷେ ମନ୍ତବ୍ୟ ପ୍ରଦାନ କରିବା

କି ଚିଠି ଲେଖିବା ଓ ଆତ୍ମଜୀବନୀରେ ମାନସିକ ପ୍ରତିକ୍ରିୟା ପ୍ରକାଶାଦିରେ ତାଙ୍କର ମତାମତ ଅଛି— ଏଗୁଡ଼ିକୁ ଯଥାର୍ଥ ମତାମତ ବୋଲି ଗଣିବା କି ? ଅଧିକାଂଶ ମନ୍ତବ୍ୟ ତାଙ୍କର ସାରସ୍ୱତ ପ୍ରତିପତ୍ତି ଅର୍ଜିବାର ପ୍ରକୌଶଳ—ଲକ୍ଷ୍ୟ ଆତ୍ମୋନ୍ନତି ବା କ୍ୟାରିଅରିଜମ୍ । 'ରାଧାନାଥ-ଭୂଦେବ ମିଥ୍' ତାଙ୍କରି ଉଦ୍ଭାବନ । (୧) ତେଣୁ ଉପରୋକ୍ତ ମନ୍ତବ୍ୟ ଓଡ଼ିଶାର ଅପରିଣତ ସାହିତ୍ୟବୋଧ ନାମରେ ଗୀତିକବିତା ପ୍ରଣେତା ମଧୁସୂଦନ ରାଓଙ୍କୁ ପ୍ରତିଦ୍ୱନ୍ଦ୍ୱିତାରୁ ବିଦାୟ ଦେବାର ଉପାୟ ନୁହେଁତ ? ସେ ଚାହିଁଥିଲେ 'ଆଦର୍ଶ ପ୍ରଶ୍ନାବଳୀ'ରେ ଗୀତିକବିତାର ପ୍ରତିଷ୍ଠାଭୂମି ପ୍ରସ୍ତୁତ କରି ପାରିଥାନ୍ତେ । କିନ୍ତୁ ତଦ୍ଦ୍ୱାରା ତାଙ୍କ କାବ୍ୟାଦର୍ଶ ଦୁର୍ବଳ ହୋଇ ପଡ଼ିଥାନ୍ତା ନିଶ୍ଚୟ । ସେ ଭୁଲ ସାହିତ୍ୟ ଆଦର୍ଶଟିକୁ ବାଛି ଅର୍ଥାତ୍ ଗଦ୍ୟକାହାଣୀ ବା ଉପନ୍ୟାସ ପ୍ରବର୍ତ୍ତିତ ହେଲା ପରେ ବି ଆଖ୍ୟାନଧର୍ମୀ କାବ୍ୟ ଲେଖି ଭଂଜକାବ୍ୟପଠନ ଅଭ୍ୟସ୍ତ ପାଠକଙ୍କୁ ଆଶ୍ୱସ୍ତ କରି ଅଚିରେ କବିବର ହୋଇଉଠିଲେ । ଅନେକ କୃତୀ ଲେଖକ ତାଙ୍କରି ବାଟରେ ଯାଇ ବାଟଟିକୁ ଧନ୍ୟ କରିଦେଲେ, ଯଦିଓ ଉତ୍ତରାଧିକାର ପାଇଁ କେହି ବଞ୍ଚିଲେ ନାହିଁ, ଯେଉଁ ମଧୁସୂଦନ ଥିଲେ ବିରଳ ଅତିକ୍ରମ ସେ ବଞ୍ଚିରହିଲେ ଉତ୍ତରାଧିକାର ପାଇଁ, ଆଉ ବଞ୍ଚିରହିଲେ ନନ୍ଦକିଶୋରଙ୍କ ପରି ସେହିମାନେ ଯେଉଁମାନେ ଅଧା ବାଟରୁ ଭିନ୍ନପଥ ଧରିଥିଲେ । ଆଖ୍ୟାୟିକା କାବ୍ୟ ଅଧ୍ୟାୟ ଅଚିରେ ବିଲୁପ୍ତ ହୋଇଗଲା । ରାଧାନାଥଙ୍କ ପାଇଁ ସାରସ୍ୱତ ପରିପାର୍ଶ୍ୱ ଅନୁକୂଳ ଥିଲା, କାରଣ ଶିକ୍ଷା ବିଭାଗ ଥିଲା ଆଧୁନିକ କାବ୍ୟକବିତାର କର୍ମଶାଳା, ସମାଲୋଚନାର ବି । ଲାଲା ରାମନାରାୟଣ ରାୟ ଶିକ୍ଷକ ନଥିଲେ କି ? ରାଧାନାଥ ଶିକ୍ଷା ବିଭାଗର ସର୍ବୋଚ୍ଚ କର୍ତ୍ତା । ଅଧିକନ୍ତୁ କବି କ୍ୟାରିଅର ଗଢ଼ିବାରେ ବଡ଼ ଅସରଳ ଭାବରେ ସୁଦକ୍ଷ ବି । ତେଣୁ ସମାଲୋଚନା ଯଥାର୍ଥ କବିତା କହିଲେ ବୁଝିଲା ତାଙ୍କରି ରଚନାକୁ—ଆଉ ତୁଳନାତ୍ମକ ଭାବରେ ଓଡ଼ିଶାର ସର୍ବଶ୍ରେଷ୍ଠ ପ୍ରାଚୀନ କବିଙ୍କୁ ପଦେ ପଦେ ଅପଦସ୍ଥ କରି ଚାଲିଲା, ମଧୁସୂଦନ ଓ ଫକୀର ମୋହନଙ୍କ କବିପଦବାଚ୍ୟ ମନେକଲା ନାହିଁ : ଭଞ୍ଜ ସମାଲୋଚନାରେ ରାଧାନାଥ ଆସିଲେ, ସାହିତ୍ୟଚର୍ଚ୍ଚାରେ ବି ରାଧାନାଥ ଉପସ୍ଥିତ ହେଲେ; ଅବଶ୍ୟ ରାଧାନାଥଙ୍କ କୃତିତ୍ୱକୁ କେହି ଅସ୍ୱୀକାର କରୁ ନାହିଁ, କିନ୍ତୁ ଓଡ଼ିଶାର ସାହିତ୍ୟଦୃଷ୍ଟି ଓ ସମାଲୋଚନା ତାଙ୍କ ପ୍ରତି ଏତେ ସଜାଗ ଓ ଶ୍ରଦ୍ଧାଶୀଳ ହୋଇଉଠିଲା ଯେ, ସେ ଚକ୍ଷୁଶୂଳ ନ ହୋଇ ରହିପାରିଲେ ନାହିଁ । ଦୁଇଟି ଦୃଷ୍ଟାନ୍ତ ଦ୍ରଷ୍ଟବ୍ୟ :

୧। ସାହିତ୍ୟଚର୍ଚ୍ଚା—ବିଜୟଚନ୍ଦ୍ର ମଜୁମଦାର ।

---

୧-ଦ୍ରଷ୍ଟବ୍ୟ : ଲେଖକର 'ଓଡ଼ିଆ ସାହିତ୍ୟର ପୁନରୁଜ୍ଜୀବନ ଓ କବି ରାଧାନାଥ, (ସାହିତ୍ୟ ବିବେକ) ପ୍ରବନ୍ଧ ।

ରୁଚି ଏବଂ ପ୍ରବୃତ୍ତି ଅନୁସାରେ ଅନେକ ସମୟରେ ଅନେକ ଅନିଷ୍ଟକାରୀ ଗ୍ରନ୍ଥ ସମାଜରେ ଖ୍ୟାତିପ୍ରାପ୍ତ ହୋଇଅଛି । ଦୃଷ୍ଟାନ୍ତ ସ୍ଥଳରେ ଓଡ଼ିଶାର ଖ୍ୟାତନାମା କବି ଉପେନ୍ଦ୍ରଙ୍କ ନାମ ଉଲ୍ଲିଖିତ ହୋଇପାରେ । ଦୀର୍ଘ ଦୁରୂହ ଖଳ ପ୍ରାଚୁର୍ଯ୍ୟ ଅଯଥା ଶବ୍ଦାଡ଼ମ୍ବର, କ୍ଲିଷ୍ଟ ଓ କୁତ୍ସିତ କଳ୍ପନା ଓ ଆହୁରି ଶତ ଶତ ଦୋଷ ସାଗରମନ୍ଥନ କରି କଦାଚିତ୍ ଯେଉଁ ଗୋଟିଏ ଯୋଡ଼ିଏ ସୁକଳ୍ପନା ମାଣିକ୍ୟ ଲାଭ କରାଯାଏ, ତାହାରି ଅନୁରୋଧରେ କାହିଁକି ଲୋକମାନେ ତାହାଙ୍କର ଗ୍ରନ୍ଥ ପାଠ କରିବେ, ତାହା ବୁଝିବା ସହଜ ନୁହେଁ । + + + + + ଯେଉଁ ସମସ୍ତ ବର୍ଣ୍ଣନାରେ ନୂତନ ସୃଷ୍ଟି ଅଛି, ଆପାତତଃ ଦୁର୍ବୋଧ ଲୋକଚରିତ୍ରର ପରିସ୍ଫୁଟ ବିକାଶ ଅଛି; ଗଭୀର ହର୍ଷବିଷାଦାଦିର ଉଚ୍ଛ୍ୱାସ ଅଛି, ମନସ୍ତତ୍ତ୍ୱର ମନୋହର ବିଶ୍ଳେଷଣ ଅଛି, କେବଳ ଏହିପରି ବର୍ଣ୍ଣନା, କବିତା ନାମର ଯୋଗ୍ୟ ଅଟେ । + + + ଅଧୁନାତମ ଲେଖକମାନଙ୍କ ମଧ୍ୟରୁ ରାଧାନାଥ ରାୟଙ୍କ ରସମୟୀ ଲେଖନୀ ପ୍ରସୂତ ରଚନାରେ ଉତ୍କଳର ଗୌରବ ପରିଚାୟକ ଘଟଣା ଓ ଦୃଶ୍ୟନିଚୟର ସୁନ୍ଦର ବର୍ଣ୍ଣନା ଅଛି ।

୨। କବି ଉପେନ୍ଦ୍ର ଭଞ୍ଜ – ଲାଲା ରାମନାରାୟଣ ରାୟ ।

ଦୀର୍ଘ ପ୍ରବଂଧ । ଏଥିରେ କବି ଉପେନ୍ଦ୍ର ଉପଲକ୍ଷ ମାତ୍ର – ଲକ୍ଷ୍ୟ ରାଧାନାଥ ରାୟ, ଓଡ଼ିଶାରେ କବି ଭାବରେ ଉପେନ୍ଦ୍ରଙ୍କୁ ଶୀର୍ଷସ୍ଥାନ ଦିଆଯାଇଥିବାରୁ ଲାଲା ଆଶ୍ଚର୍ଯ୍ୟ ହୋଇଛନ୍ତି ଓ କ୍ଷୋଭ ପ୍ରକାଶ କରିଛନ୍ତି, ଓଡ଼ିଆଙ୍କ ରୁଚି, ଶିକ୍ଷା ଓ ବିଦ୍ୟାବୁଦ୍ଧି ଘେନି ବଡ଼ ଅସନ୍ତୁଷ୍ଟ ହୋଇଛନ୍ତି । ତାଙ୍କ ପାଇଁ "ପ୍ରକୃତ କବିତା ଆହାର୍ଯ୍ୟ ଗୁଣାପେକ୍ଷୀ ନୁହଇ ।" (ଏଠାରେ ଲାଲା କବି ମାଘଙ୍କର ଯେଉଁ ଶ୍ଳୋକାଂଶ ଉଦ୍ଧାର କରିଛନ୍ତି ତାହା ବି ରାଧାନାଥଙ୍କର ବଡ଼ ପ୍ରିୟ । ସେ ନଗେନ୍ଦ୍ରବାଳାଙ୍କ 'ବ୍ରଜଗାଥା'ର ଭୂମିକାରେ ସେହି ଶ୍ଳୋକଟି ଲେଖି ବୁଝାଇଛନ୍ତି ଓ ଅକୃତ୍ରିମ ରଚନାର ଅପ୍ରଗଲ୍‌ଭ ମାଧୁରୀର ପ୍ରଶଂସା କରିଛନ୍ତି ।) – "ନ ରମ୍ୟମାହାର୍ଯ୍ୟମପକ୍ଷତେ ଗୁଣମ୍" – ଯାହା ସ୍ୱଭାବ ରମ୍ୟ ତାହା କେବେ ଆହାର୍ଯ୍ୟ ଗୁଣର ଅପେକ୍ଷା ରଖେ ନାହିଁ । କବିତାର ସ୍ୱାଭାବିକ ମାଧୁରୀ ଓ ଆହାର୍ଯ୍ୟ ମାଧୁରୀ ମଧ୍ୟରେ ତାରତମ୍ୟ ବିଚାର କରି ଭଞ୍ଜଙ୍କୁ ପଢ଼ିଲେ ତାଙ୍କ ରଚନାର ୧୨ ପଣ ଉଡ଼ିଯିବ ! ଏପରି ଏକ ଅପସିଦ୍ଧାନ୍ତରୁ ଆରମ୍ଭ କରି ଲାଲା 'ବୈଦେହୀଶବିଳାସ' ଆଲୋଚନା ଉପଲକ୍ଷେ କାବ୍ୟର ଯତିସ୍ଥାପନ, ଶେଷବର୍ଣ୍ଣ ଓ ଉପଧାସ୍ୱରର ସଂପୂର୍ଣ୍ଣ ସମତା, ଅଳଙ୍କାର, ରସ, ରୁଚି, କାବ୍ୟଶିଳ୍ପ ଓ କଳ୍ପନାଦି ବିଶ୍ଳେଷଣ କରିଛନ୍ତି ଓ ସବୁଠାରେ ଉପେନ୍ଦ୍ରଙ୍କୁ ଅପଦସ୍ଥ କରି ରାଧାନାଥଙ୍କୁ ଭୂୟସୀ

ପ୍ରଶଂସା କରିଛନ୍ତି । ରାଧାନାଥଙ୍କ ରଚନାର ଆହାର୍ଯ୍ୟ ଗୁଣ ତାଙ୍କୁ ଆଦୌ ଦିଶି ନାହିଁ । ଦୃଷ୍ଟାନ୍ତ :

(କ) ଅନୁପ୍ରାସ – ଉପେନ୍ଦ୍ରଙ୍କ ଅସ୍ୱାଭାବିକ କ୍ଲିଷ୍ଟ ଅନୁପ୍ରାସ ପାଖରେ ରାଧାନାଥଙ୍କ ସ୍ୱାଭାବିକ/ଅକ୍ଲିଷ୍ଟ ଅନୁପ୍ରାସର ଉଦାହରଣ ଦେଇଛନ୍ତି,'ଚନ୍ଦ୍ରରୁ କିରଣ ଖସିଲା ପରାଏ ହସିଲା ଜବାଅଧରୀ; ଆଉ ମନ୍ତବ୍ୟ କରିଛନ୍ତି,"ଚମତ୍କାର କଳ୍ପନା ! କି ମନୋହର ଏବଂ ମାଧୁର୍ଯ୍ୟବ୍ୟଞ୍ଜକ ହୋଇଅଛି !" ତେବେ ଉପେନ୍ଦ୍ରଙ୍କ କାବ୍ୟରୁ ଚାରୋଟି ଦୃଷ୍ଟାନ୍ତ ଦେଇଛନ୍ତି ଓ କହିଛନ୍ତି ଏପରି ମାଧୁର୍ଯ୍ୟବ୍ୟଞ୍ଜକ ପଦାବଳୀ ତାଙ୍କ କାବ୍ୟରୁ ଅଳ୍ପ ବାହାରିଅଛି । ସେ କାବ୍ୟଖଣ୍ଡିକୁ ଅତି ସୁନ୍ଦର କରିବାକୁ ଯାଇ ଦୁର୍ବୋଧତା, ଶ୍ରୁତିକଟୁତା ଏବଂ ବ୍ୟାକରଣ ଦୁଷ୍ଟତା ପ୍ରଭୃତି ଦୋଷରେ ଦୂଷିତ କରି ପକାଇଛନ୍ତି ।

(ଖ) ରସ - "ମହାକବି କାଳିଦାସଙ୍କର ଜଗତ୍ ବିଖ୍ୟାତ ଶକୁନ୍ତଳା, କୁମାର ସମ୍ଭବ ଓ ମେଘଦୂତ ପ୍ରଭୃତି କାବ୍ୟମାନଙ୍କରେ ଆଦିରସର ବାହୁଲ୍ୟ ସ୍ପଷ୍ଟ ହୁଏ ସତ୍ୟ ମାତ୍ର ତାହା ପ୍ରାୟ ସ୍ୱଭାବ ସଂଗତ ଓ ଉଚିତ ସୀମାରେ ଆବଦ୍ଧ । ଭଞ୍ଜକବି ସେହି ସୀମା ବହୁଦୂର ଅତିକ୍ରମ କରି ପ୍ରାୟ ବୀଭତ୍ସ ସଂସାରରେ ପ୍ରବେଶ କରିଅଛନ୍ତି । ... ... ... ଆଦିରସର ଅବତାରଣା ଯଥାଯଥ ହେଲେ ଆମ୍ଭେ ସେଥିରେ ବିରୋଧୀ ନୋହୁଁ । ଓଡ଼ିଶାର ଆଧୁନିକ ଲେଖକ ରାଧାନାଥ ରାୟ ମଧ୍ୟ ସ୍ୱରଚିତ ପ୍ରତ୍ୟେକ କାବ୍ୟଗ୍ରନ୍ଥରେ ଆଦିରସର ଅବତାରଣା କରିଅଛନ୍ତି । ତାହା କେତେ ସ୍ୱଭାବସଂଗତ ହୋଇଅଛି ପ୍ରଦର୍ଶନ କରିବା ଲାଗି ଆମ୍ଭେମାନେ କବିଙ୍କର 'ଚନ୍ଦ୍ରଭାଗା' ରୁ ଆଦିରସାତ୍ମକ କେତେକ ପଙ୍କ୍ତି ନିମ୍ନରେ ଉଦ୍ଧୃତ କଲୁ, ଯଥା—

"କଂଦୁକ କ୍ରୀଡ଼ାରେ ସୁନ୍ଦରୀ ଆଜ ରତ ଏ ସ୍ଥଳେ
ଉଠୁଛି ପଡୁଛି କଂଦୁକ ଚାରୁ କର-କମଳେ ।
\+ + + + + +
ଲମ୍ବିତ ସୁଗୋଲ ନିତମ୍ବ ବିମ୍ବେ ହେମ ମେଖଳା
ସ୍ତନାଙ୍କୁରେ ବ୍ୟସ୍ତେ ଦୋଳଇ ମୋତିମାଳା ତରଳା ।" ଇତ୍ୟାଦି

କ୍ଷୁଦ୍ରାବୟବ ହେଲେହେଁ ଏହି କବିତାଟି ସ୍ୱାଭାବିକ ମାଧୁରୀରେ କେମନ୍ତ ମାଧୁରୀବନ୍ତ । କବି ଏହିଠାରେ କି ଚମତ୍କାର ନିପୁଣତା ସହିତ ଆଦିରସର ସାର୍ଥକତା ସଂପାଦନ କରିଅଛନ୍ତି ।

ଲାଲା ରାମନାରାୟଣଙ୍କର ବିଚାର ଥିଲା, ବିଜୟଚନ୍ଦ୍ର ମଜୁମଦାରଙ୍କର ବି । ଦୁହିଁଙ୍କର ଅନ୍ତରଙ୍ଗ ରାଧାନାଥ-ପକ୍ଷପାତିତା ଓ ଦୁରନ୍ତ ଭଞ୍ଜବିଦ୍ୱେଷ କିନ୍ତୁ ସେହି

ବିଚାରର ସାରସ୍ୱତ ମହତ୍ତ୍ୱକୁ ନଷ୍ଟ କରିଦେଇଛି । ଲାଲା ସମସାମୟିକ କବିଙ୍କ ନାମୋଲ୍ଲେଖ କରିଅଛନ୍ତି । ରାଧାନାଥ ରାୟଙ୍କ ସହିତ ସେ ବାବୁ ମଧୁସୂଦନ ରାଓ, ବାବୁ ଗୋବିନ୍ଦଚନ୍ଦ୍ର ମହାପାତ୍ର, ବାବୁ ଜଗ୍‌ମୋହନ ଲାଲା, ବାବୁ ଫକୀର-ମୋହନ ସେନାପତି, ବାବୁ ଚନ୍ଦ୍ରମୋହନ ମହାରଣା, ବାବୁ ରାମକୃଷ୍ଣ ସାହୁ, ବାବୁ ବଳରାମ ଦାସ, ବାବୁ ହୃଷୀକେଶ ରାଉତରାୟ, ବାବୁ ରାମଶଙ୍କର ରାୟ ପ୍ରଭୃତି ମୌଳିକ ସ୍ରଷ୍ଟା ଓ ଅନୁବାଦକଗଣଙ୍କୁ ସ୍ମରଣ ରଖିଛନ୍ତି, କିନ୍ତୁ ରାଧାନାଥଙ୍କ ଭିନ୍ନ ଆଉ କାହାକୁ ବିଶେଷ କୃତିତ୍ୱ ଦେବାକୁ ଚାହିଁ ନାହାନ୍ତି । ତେଣୁ ରାଧାନାଥଙ୍କ କାବ୍ୟଚିନ୍ତା ଊନବିଂଶ ଶତାବ୍ଦୀର ଆଧୁନିକ କାବ୍ୟଚିନ୍ତା ଭାବରେ ଗୃହୀତ ହୋଇଯାଇଛି । ଆମେ ରାଧାନାଥଙ୍କ ସହିତ ଅନ୍ୟ କବିଙ୍କ କାବ୍ୟସଂକ୍ରାନ୍ତ ଧ୍ୟାନ ଧାରଣାକୁ ବିଚାରକୁ ନେବା, ତଦ୍ୱାରା ଆଧୁନିକ କାବ୍ୟଚିନ୍ତାଟିର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ କରିପାରିବା; ହେଉନା ପଛେ ତାହା ଯେତେ ଅସଂପୂର୍ଣ୍ଣ ଓ ଅସାର୍ଥକ ।

( ପାଞ୍ଚ )

କବି କିଏ ? କାହାକୁ ସମ୍ବୋଧନ କରି କବିତା ଲେଖନ୍ତି ସେ ? କବିତା କାହିଁକି ? କବିତା କଣ ? କିପରି ଲେଖାଯାଏ କବିତା ? କବି କର୍ମ, କବି ବ୍ୟାପାର ବା କବି କୌଶଳର ମୂଳ ସୂତ୍ର କ'ଣ ? କବିତାରେ କବିମାନଙ୍କର ଭୂମିକା କ'ଣ ? କାବ୍ୟଭାଷାର ସ୍ୱରୂପ କ'ଣ ? କବିତା କାହାକୁ କହନ୍ତି ସେହି କଥା ନିରୂପଣ କରିବାକୁ ଯାଇ ଓଡ଼ିଆ କାବ୍ୟଚିନ୍ତା ଗତ ଶତାବ୍ଦୀରେ ଇଂରାଜୀ ରୋମାଣ୍ଟିକ୍ କାବ୍ୟଚିନ୍ତାର ଆଦର୍ଶରେ ପ୍ରଥମେ କବି ପ୍ରକୃତି ଉପରେ ଆଲୋକପାତ କରିବାକୁ ଚାହିଁଛନ୍ତି, ଉପରୋକ୍ତ ପ୍ରଶ୍ନଗୁଡ଼ିକର ଗତ ଶତାବ୍ଦୀୟ ଉତ୍ତର ଖୋଜିଛି । ଅନେକ ଉତ୍ତର ଆଜି ପ୍ରାସଙ୍ଗିକତା ହରାଇଛି ଅବଶ୍ୟ, କିନ୍ତୁ ସେଦିନ ପାଇଁ ସେଗୁଡ଼ିକ ବଡ଼ ଗୁରୁତ୍ୱପୂର୍ଣ୍ଣ ଥିଲା । ୧୮୭୬ ରାଧାନାଥ ଓ ମଧୁସୂଦନ ଯେତେବେଳେ ଯୁଗଳବନ୍ଦୀ କବିତା ସଙ୍କଳନ 'କବିତାବଳୀ'ର ପରିକଳ୍ପନା କରିଥିବେ ସେମାନେ ନିଶ୍ଚୟ ୱାର୍ଡ଼ସ୍‌ୱାର୍ଥ ଓ କଲେରିଜଙ୍କ ଦ୍ୱାରା ପ୍ରଣୀତ Lyrical Ballads-ରୁ ପ୍ରେରଣା ପାଇଥିବେ । ୱାର୍ଡ଼ସ୍‌ୱାର୍ଥ Lyrical Ballads ମୁଖବଂଧ ଓ ପୃଷ୍ଠବଂଧରେ ରୋମାଣ୍ଟିକ କାବ୍ୟତତ୍ତ୍ୱକୁ ରୂପାୟିତ କରିଛନ୍ତି ଓ କଲେରିଜ ତାଙ୍କ "Biographia Literaria"- ରେ କଳ୍ପନାର ବ୍ୟାଖ୍ୟା ପ୍ରସ୍ତୁତ କରିଛନ୍ତି ଓ କବିତାରେ ତାହାର ଭୂମିକା ନିରୂପଣ କରିଛନ୍ତି । କିଛିଟା ସିଧା ଓ ଆଉ କିଛିଟା ଆଧୁନିକ ବଙ୍ଗସାହିତ୍ୟ ମାଧ୍ୟମରେ ରୋମାଣ୍ଟିକ କାବ୍ୟଚିନ୍ତା ଓଡ଼ିଶାରେ ପ୍ରବେଶ କରିଛି ଓ ଗତ ଶତାବ୍ଦୀର ଆଧୁନିକ ଓଡ଼ିଆ କାବ୍ୟଚିନ୍ତାକୁ ନିୟନ୍ତ୍ରଣ କରିଛି ।

ଆମ ଅଳଙ୍କାର ଶାସ୍ତ୍ର ଦୃଷ୍ଟିରୁ କାବ୍ୟହେତୁ ତିନୋଟି : ଶକ୍ତି ବା ପ୍ରତିଭା,

ବ୍ୟୁତ୍ପତ୍ତି ଓ ଅଧ୍ୟବସାୟ । କବି ପ୍ରତିଭାବାନ—ଯେ କୌଣସି ଲୋକ କବି ହୋଇ ନ ପାରନ୍ତି । ୱାର୍ଡ଼ସୱାର୍ଥ କଥାଟାକୁ ଏମିତି ବୁଝାଇଛନ୍ତି, "He is a man speaking to a man : a man, it is ture, endowed with more lively sensibility, more enthusiasm and tenderness, who has a greater knowledge of human nature and a comprehensive soul, than are supposed to be common among mankind"—ଇତ୍ୟାଦି ଇତ୍ୟାଦି । କବି ଯେ ଅନ୍ୟ ମଣିଷଙ୍କଠାରୁ ଭିନ୍ନ ଏହା ଅନସ୍ୱୀକାର୍ଯ୍ୟ—ଗୁଣଗତ ବିଚାରରୁ ସେ ପାଠକପରି ଜଣେ ସାଧାରଣ ମଣିଷ, କିନ୍ତୁ ଆନନ୍ଦ ବିଧାୟକ ବୋଲି କବି, ଅପରାପର ମଣିଷଙ୍କ ପାଖରେ ଜୀବନର ଏକ ଆବେଗମଣ୍ଡିତ ଆନନ୍ଦଘନ ପ୍ରତିଭାସ ମୂର୍ତ୍ତ କରିପାରନ୍ତି ବୋଲି କବି । କଲେରିଜ୍ ଏହା ସହିତ କଳ୍ପନା ତତ୍ତ୍ୱଟିକୁ ଯୋଡ଼ନ୍ତି, ଯାହାର ଅସ୍ତିତ୍ୱ ଆମ ଅଳଙ୍କାରଶାସ୍ତ୍ରରେ ଥିଲା ସଂପୂର୍ଣ୍ଣ ଅନୁପସ୍ଥିତ । କଳ୍ପନା ହିଁ ସୃଜନୀ ଶକ୍ତି, ଯାହା ମଣିଷକୁ କେବଳ କବି କରେ ନାହିଁ, କରେ ପ୍ରକୃତ ଅର୍ଥରେ ସ୍ରଷ୍ଟା ମଧ୍ୟ । ମଧୁସୂଦନ ଦତ୍ତ ସର୍ବପ୍ରଥମେ ରୋମାଣ୍ଟିକ କାବ୍ୟତତ୍ତ୍ୱର ପରିଭାଷା ବ୍ୟବହାର କରି କବିର ସଂଜ୍ଞା ନିରୂପଣ କରିଛନ୍ତି,

କେ କବି ? କବେ କେ ମୋରେ ? ଘଟକାଲୀ କରି
ଶବଦେ ଶବଦେ ଦିୟାକେୟ ଯେଇ ଜନ ?
\+ + + + + +
ସେଇ କବି ମୋର ମତେ କଳ୍ପନା ସୁନ୍ଦରୀ
ଯାର ମନଃ—କମଲେତେ ପାତେନ ଆସନ
ଅସ୍ତଗାମୀ ଭାନୁ ପ୍ରଭା ସଦୃଶ ବିତରି
ଭାବେର ସଂସାରେ ତାର ସୁବର୍ଣ୍ଣ କରିଣ । —କବି

ଏଣିକି କାବ୍ୟକବିତା ମୂଳରେ କବିକଳ୍ପନାକୁ ସର୍ବତ୍ର ସ୍ୱୀକାର କରାଯାଇଛି । କବି କଳ୍ପନାର କାରଣ ଅବଶ୍ୟ କବି ପ୍ରତିଭା । ଆମର କଳ୍ପନା ଶବ୍ଦଟି ଥିଲା—କିନ୍ତୁ କବି କର୍ମ କି କବିବ୍ୟାପାରର ପ୍ରତିଶବ୍ଦ ଭାବରେ ତାହାର ପ୍ରୟୋଗ ନଥିଲା । ଯାହା ମନଗଢ଼ା ବା ବାସ୍ତବ ବିରୋଧୀ ତାହାହିଁ କାଳ୍ପନିକ—କଳ୍ପନାସମ୍ଭୂତ । କଳ୍ପନାକୁ ବାଗ୍‌ଦେବୀଙ୍କ ସହିତ ସଂଯୁକ୍ତ କରନ୍ତି ପ୍ରଥମେ ସେହି ମଧୁସୂଦନ ।

ଲଓ ଦାସେ, ସଙ୍ଗେ ରଙ୍ଗେ ହିମାଙ୍ଗୀ କଳ୍ପନେ
ବାଗ୍‌ଦେବୀର ପ୍ରିୟ ସଖି, ଏହା ଭିକ୍ଷା କରି
X X X X X X
କି ସ୍ୱରଗେ, କି ମରତେ ଅତଳ ପାତାଳେ
ନାଇ ସ୍ଥଳ ଯଥା, ଦେବି ନହେ ତବ ଗତି । —କଳ୍ପନା

ଉପରୋକ୍ତ ସନେଟ୍‌ଟିରେ ମଧୁସୂଦନ କଲେରିଜ୍ ଓ ସେକ୍‌ସପିଅରଙ୍କ କଳ୍ପନାର ଶକ୍ତି ଓ ସାମର୍ଥ୍ୟକୁ ସମନ୍ୱିତ କରିଛନ୍ତି । କଲେରିଜ୍‌ଙ୍କ ପାଇଁ କଳ୍ପନା ହେଉଛି କବିଙ୍କର ସେହି ଶକ୍ତି ଯାହା ବିଭିନ୍ନ ଚିତ୍ରକଳ୍ପକୁ ଐକ୍ୟବଦ୍ଧ ଓ ସଂହତ ରୂପ ପ୍ରଦାନ କରିଥାଏ— ତାହା esemplastic power —କବି ପ୍ରତିଭାର ସଜୀବମାନସ ଶକ୍ତି—ଯାହା ବୋଧ, ସ୍ମୃତି, ଅନୁଷଙ୍ଗ, ଅନୁଭୂତି ଓ ବୁଦ୍ଧି ଆଦିର ଗୁଣ ସନ୍ନିପାତରେ ଗଢ଼ା—ସ୍ୱଶାସିତ ସୃଜନୀଶକ୍ତି । ସେକ୍‌ସପିଅର ଏହାର ସାମର୍ଥ୍ୟ ଜାଣିଥିଲେ, ଦିବ୍ୟୋନ୍ମାଦ ଘୂର୍ଣ୍ଣିତ ନେତ୍ର କବି ସ୍ୱର୍ଗରୁ ମର୍ତ୍ତ୍ୟ ଓ ମର୍ତ୍ତ୍ୟରୁ ସ୍ୱର୍ଗକୁ ଏକକାଳୀନ ନିଜ ଦୃଷ୍ଟିକୁ ପ୍ରେରଣ କରିପାରନ୍ତି, ତାଙ୍କ କଳ୍ପନାରେ ଯେଉଁସବୁ ଅଜ୍ଞାତପୂର୍ବ ଭାବସମୂହ ଦୃଷ୍ଟିଗୋଚର ହୁଏ, ଲେଖନୀ ମୁନରେ ତାହା ଦେହ ଧାରଣ କରେ—ଯାହା ବାୟୁଭୂତ ଶୂନ୍ୟମୟ ତାହା ନାମଧାମ ଘେନି ସୁସ୍ପଷ୍ଟ ହୋଇ ଉଠନ୍ତି । କଳ୍ପନାର ଗତି ଅବାଧ—ନାହିଁ ସ୍ଥାନ ଯେଉଁଠି କଳ୍ପନା ପହଞ୍ଚି ନ ପାରେ । ମଧୁସୂଦନ କଳ୍ପନାତତ୍ତ୍ୱର ଯେଉଁ ପୂର୍ଣ୍ଣତମ ପ୍ରସ୍ତାବନା କରନ୍ତି ତାହା କବି ପ୍ରତିଭାର ଲକ୍ଷଣ ନିର୍ଦ୍ଦେଶରେ ସର୍ବତ୍ର ବ୍ୟବହୃତ ହେଲା, କଳ୍ପନା ବିନା କବି ଓ କବିତାକୁ ଆଉ ଭାବି ହେଲା ନାହିଁ । କବି କିଏ ? କାଳିଦାସଙ୍କ ବର୍ଣ୍ଣନା କରିବାକୁ ଆମ ମଧୁସୂଦନ ରାଓ ଏହି ପ୍ରଶ୍ନର ନୂଆ ଉତ୍ତର ଦେଇଛନ୍ତି,

ଭାବମୟୀ ଭାରତୀର ଅମର ନନ୍ଦନ
କଳ୍ପନା-ନନ୍ଦନ-ବନ-ବିହାର-ରସିକ । —କାଳିଦାସ

ଓଡ଼ିଶାକୁ ଅବଶ୍ୟ ପ୍ରଥମେ କଳ୍ପନାକୁ ଆବାହନ କରି ଆଣନ୍ତି କବି ରାଧାନାଥ 'ଚିଲିକା'ରେ । ସ୍ୱପ୍ନେ ଭାସି କାଳସ୍ରୋତ ପ୍ରତିଲୋମେ ସେ ଅମରୀଟିଏଙ୍କୁ ବ୍ୟୋମରେ ବିରାଜିତ ହୋଇଥିବାର ଦେଖିଛନ୍ତି,

ଧରନ୍ତି କଳ୍ପନା ନାମ ସେ ସୁନ୍ଦରୀ
ବୀଣାପାଣିଙ୍କର ଚିର ସହଚରୀ
ଭକ୍ତିଭାବେ ତାଙ୍କୁ କଲି ଆରାଧନା
ଦିବ୍ୟଚକ୍ଷୁ ମୋତେ ଦେଲେ ଚନ୍ଦ୍ରାନାନା

ଏଣିକି କାବ୍ୟକବିତା ରଚନା ପାଇଁ ବାଣୀ ଆରାଧନା ସହିତ କଳ୍ପନା ଆରାଧନା ଆରମ୍ଭ ହୋଇଗଲା । ତାଙ୍କରି ପ୍ରସାଦରୁ କବିଏ ଘଟନା ଓ ଚରିତ୍ର ବାୟୁଭୂତ ଶୂନ୍ୟରୁ ଉଦ୍ଧରି ଆଣନ୍ତି । ଶେଷ ପର୍ଯ୍ୟନ୍ତ କବି ଗଙ୍ଗାଧର 'ତପସ୍ୱିନୀ'ର ମଙ୍ଗଳାଚରଣରେ କଳ୍ପନା ଓ ସରସ୍ୱତୀଙ୍କୁ ଏକ ଓ ଅଭିନ୍ନ କରି ଦେଖିଛନ୍ତି । ହେମାଙ୍ଗୀ କଳ୍ପନା ହୋଇଛନ୍ତି ଧବଳାଙ୍ଗୀ ମାତ୍ର । 'କାବ୍ୟଶିଳ୍ପୀ ଗଙ୍ଗାଧର' ଗ୍ରନ୍ଥରେ ସୁଧୀସମୀକ୍ଷକ ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା 'ତପସ୍ୱିନୀ'ର ଜ୍ୟୋତିର୍ମୟୀଙ୍କୁ

"ବୈଷ୍ଣବୀ ସୀତାର ପ୍ରେମ ପ୍ରକଟକାରିଣୀ ବିଷ୍ଣୁମାୟା" ବା ଯୋଗମାୟାଙ୍କ ସହିତ ଅନ୍ୱିତ କରିଛନ୍ତି । ସୀତାଙ୍କୁ 'ବୈଷ୍ଣବୀ' କହିବା ଓ କବିଙ୍କ ଯୋଗମାୟାକୁ ବିଷ୍ଣୁମାୟା କହିବା ବଡ଼ କଷ୍ଟ କଳ୍ପନା—ସତ୍ୟର ବିଶେଷ ନିକଟବର୍ତ୍ତୀ ମଧ୍ୟ ନୁହେଁ । ଯୋଗମାୟା ବିଷ୍ଣୁଙ୍କର ସ୍ୱରୂପତା ଦୂଷ୍ଟର୍କା ଚିନ୍ତୁକି ବା ଦୁର୍ଘଟଘଟନୀ ଚିଛକି, ତାହା କେବଳ ବିଷ୍ଣୁଙ୍କର ଅବଲମ୍ବନ, କବିଙ୍କର ନୁହେଁ । ଲାକ୍ଷଣିକ ଅର୍ଥରେ କଳ୍ପନାକୁ କବିଙ୍କ ଯୋଗମାୟା ବୋଲି କୁହାଯାଇପାରେ । ଯୋଗମାୟା କୃଷ୍ଣ ଓ ଗୋପୀଙ୍କ ମିଳନ ସମ୍ପାଦି ଥିଲା, ଗଙ୍ଗାଧରଙ୍କ ଯୋଗମାୟା କଳ୍ପନା ରାମସୀତାଙ୍କ ମିଳନ ସମ୍ପାଦିବ-ସାମ୍ୟ ଏହି ପର୍ଯ୍ୟନ୍ତ ଯୋଗମାୟା ମଧ୍ୟ ଶ୍ୱେତାଙ୍ଗୀ ନୁହନ୍ତି । ପୁରାଣରେ ଯୋଗମାୟାଙ୍କ କାନ୍ତିର ଉଲ୍ଲେଖ ଅଛି, ସେ କେଉଁଠି ନୀଳୋତ୍ପଳଦଳଶ୍ୟାମା ତ ଆଉ କେଉଁଠି ତପ୍ତ କାଞ୍ଚନ ବର୍ଣ୍ଣା, କେବେ ଶୁକ୍ଳବର୍ଣ୍ଣା ନୁହନ୍ତି । ସରସ୍ୱତୀ ଶୁଭ୍ରରୂପା । କବି ମଧୁସୂଦନ ରାଓ ତାଙ୍କ 'ଋଷିପ୍ରାଣେ ଦେବାବତରଣ' କବିତାର ଉଦ୍‌ବୋଧନରେ ବିଶ୍ୱମ୍ଭରା ବାଣୀଙ୍କୁ 'ଜ୍ୟୋତିର୍ମୟୀ' ବୋଲି ସମ୍ବୋଧନ କରି ସାରିଛନ୍ତି । ଏବେ ଗଙ୍ଗାଧର ମେହେର, ମଧୁସୂଦନ ଦତ୍ତଙ୍କ 'ମେଘନାଦ ବଧ'ର ମଧୁକରୀ କଳ୍ପନା, ରାଧାନାଥଙ୍କ 'ବ୍ୟୋମେ ବିରାଜିତ ଅମରୀ' ଓ ମଧୁସୂଦନ ରାଓଙ୍କ 'ଜ୍ୟୋତିର୍ମୟୀ'ଙ୍କୁ ଏକ ଓ ଅଭିନ୍ନ କରିଦେବାକୁ ଚାହିଁଛନ୍ତି, ସେ ପାଶ୍ଚାତ୍ୟ କଳ୍ପନା ଆଶୀର୍ବାଦରୁ ବଞ୍ଚିତ ହେବେ ନାହିଁ କି ଏଣେ ଆମ ସରସ୍ୱତୀଙ୍କୁ ପୂରା ଛାଡ଼ିବେ ନାହିଁ । ସେହି ସୂତ୍ରେ ହେମାଙ୍ଗୀ କଳ୍ପନା ହୋଇଛନ୍ତି ଘନୀଭୂତ କୌମୁଦୀ ବା ଜ୍ୟୋତ୍ସ୍ନା ଉପାଦାନରେ ଗଢ଼ା ଶୁଭ୍ରରୂପା, ଯାହାର ରତ୍ନଭୂଷା ହେଉଛି "ସୁବିରଳ ସମୁଜ୍ଜ୍ୱଳ ତାରୁତାରା ଗ୍ରହ ।" ସେ କିନ୍ତୁ ବୀଣାବରଦଣ୍ଡ ମଣ୍ଡିତକରା ନୁହନ୍ତି । ପ୍ରକୃତରେ କଳ୍ପନା ବିନା ଆଉ କବିଙ୍କୁ ଭାବି ହେଲା ନାହିଁ । ଫକୀର ମୋହନ ବିଭିନ୍ନ କବିତାରେ ବାରମ୍ବାର କବି ଓ କଳ୍ପନାକୁ ସମନ୍ୱିତ କରିଛନ୍ତି,

(କ) କଳ୍ପନା-ରାଜ୍ୟରେ ଯେବେ କରେ ମୁଁ ଭ୍ରମଣ
ଅନୁଭବେ ଜଗତରେ ସବୁ ତୁଚ୍ଛଧନ ।

(ଖ) କଳ୍ପନା-ରାଜ୍ୟରେ କବି ତୁମ୍ଭେ ଅଧୀଶ୍ୱର

(ଗ) ସେ ଅମର ବିହଗାର କଳ୍ପନା-ଜନନୀ ।

(ଘ) କେ ବଡ଼ କେ ସାନ ନାହିଁଟି ଜଣା
ମାତ୍ର ଦୁହିଁଙ୍କର ଶାସ୍ତ୍ର କଳ୍ପନା ।

—କବି ଓ ଚିତ୍ରକର

ଏବେ ମୂଳ ପ୍ରଶ୍ନକୁ ଫେରିଯିବା । କବି କିଏ ? କବି ମଣିଷଟିଏ ନିଶ୍ଚୟ । କିନ୍ତୁ ବଡ଼ ପ୍ରବିରଳ ମଣିଷ । କଳ୍ପନା ବାଛି ବାଛି ଲୋକଙ୍କୁ ମନ୍ତ୍ର ଦିଅନ୍ତି,

ଯେଉଁମାନେ ତମ ନାଶି ଆଲୋକ ସୃଜନ୍ତି । କବିଙ୍କ ଜୀବନ ଭିନ୍ନ ଉପାଦାନରେ ଗଢ଼ା । ତାଙ୍କୁ ଚିହ୍ନାଇବାକୁ ମଧୁସୂଦନ ରାଓ ସୃଷ୍ଟିକର୍ତ୍ତାଙ୍କ ପାଖରେ ପହଞ୍ଚିଛନ୍ତି, "ବାସ୍ତବରେ ସୃଷ୍ଟିକର୍ତ୍ତା ଆଦିକବି ଏବଂ ପୂର୍ଣ୍ଣକବି, ଆଦି ଚିତ୍ରକର ଓ ପୂର୍ଣ୍ଣ ଚିତ୍ରକର । ବିଧାତା ମନୁଷ୍ୟ ହୃଦୟରେ ଶୋଭାନୁଭାବିକା କଳ୍ପନାବୃତ୍ତି ନିହିତ କରି ତାକୁ କବି ହେବା ଚିତ୍ରକର ହେବାର ସାମର୍ଥ୍ୟ ପ୍ରଦାନ କରିଛନ୍ତି, ଯେଉଁ ମନୁଷ୍ୟ ଯେଉଁ ପରିମାଣରେ ସୃଷ୍ଟି ନିହିତ ଶୋଭାର ନିଗୂଢ଼ ତତ୍ତ୍ୱ ଆୟତ୍ତ କରିଛି, ସେ ସେହି ପରିମାଣରେ କବି ଓ ଚତ୍ରକର ଅଟେ ।" (କବିର କୌଶଳ ରାଧାନାଥ କିଅିତ ଭିନ୍ନ ଭାବରେ କବିଙ୍କ ସ୍ୱାତନ୍ତ୍ୟ ସୂଚାଇଛନ୍ତି, ଚାରିପାଖରେ ମଣିଷଙ୍କଠାରୁ କବି ଭିନ୍ନ ଏକ ବ୍ୟକ୍ତିତ୍ୱର ଅଧିକାରୀ, ବଡ଼ ନିଃସଙ୍ଗ ଓ ବଡ଼ ସମ୍ବେଦନଶୀଳ— ସ୍ପର୍ଶକାତର । ଭାଗ୍ୟ ତାଙ୍କୁ ଗୁଣବୃକ୍ଷ ମୂଳରେ କେଜାଣି କାହିଁକି ବସାଇ ଦେଇଥାଏ—ସବୁଠାରୁ ଯେଣୁ ହଲନ୍ତି ଅଧିକ—ସବୁଠାରୁ ତେଣୁ କଳନ୍ତି ଅଧିକ । ରାଧାନାଥ ତାଙ୍କ ଧର୍ମବୋଧ ସ୍ୱୀକାର କରନ୍ତି, "ଧର୍ମ ଶୈଳେ ବସି ନିରତ ନିସଙ୍ଗ/ହୋଇ ଦେଖେ ଦୁନିଆର ନାଟରଙ୍ଗ ।" ଫକୀର ମୋହନ କବିଙ୍କର ସଂସାରମନସ୍କତା ଦେଖିପାରନ୍ତି ନାହିଁ, ସଂସାର ଦୃଷ୍ଟିରେ ତେଣୁ ତାଙ୍କ କବିତା ଲେଖା ପିଲାଖେଳ ବୋଲି ଉପହସିତ ହୋଇଥାଏ, ତେବେ ସେ ମନୁଷ୍ୟ ସମାଜର ଏକମାତ୍ର ବିଚାରକ; ସମାଜର ଗୁରୁଜନ,—ରାଜନୀତି ଓ ଧର୍ମ ଉପଦେଶ ଶିକ୍ଷା ଦିଅନ୍ତି । ପ୍ରେମିକ ପ୍ରଧାନ । ଅଶାନ୍ତ ଜଗତର ଶାନ୍ତିଦାତା—କଳ୍ପନାପ୍ରବଣ; କିନ୍ତୁ ସମାଜ କଲ୍ୟାଣ ପ୍ରତି ନିଶ୍ଚେତନ ନୁହନ୍ତି । କବି ପ୍ରତିଭା ଈଶ୍ୱର ପ୍ରଦତ୍ତ, ପ୍ରେରଣାସମ୍ଭୂତ—ତେଣୁ ତାଙ୍କର ଆବେଗ, ଆନନ୍ଦ ଓ କଳ୍ପନା ପ୍ରବଣ କେବଳ ଶୈଳ୍ପିକ ନୁହେଁ, ଏକାଧାରାରେ ନୈତିକ ଓ ଆଧ୍ୟାତ୍ମିକ । ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ ୧୮୯୭ରେ ବୁଝାଇଛନ୍ତି, "କବି ଭଗବତ୍ ପ୍ରେରିତ ସୌନ୍ଦର୍ଯ୍ୟାଚାର୍ଯ୍ୟ ।"

କବିତାର ସ୍ୱରୂପ କ'ଣ ? କବିତା ଆଉ କେବଳ 'ସ୍ଫୁରତ୍ କଳାଳାପ ବିଳାସ କୋମଳ' । ହୋଇ ରହିନାହିଁ ଯେ, "କହୁଥିବା ବକ୍ରବାଣୀ ଅଳପ ଗେହ୍ଲାଇ କଣିଆଇ ଚାହୁଁଥିବ ନାସିକା ଫୁଲାଇ ।" "କର୍ଣ୍ଣ ତାହା ଶୁଣୁଥିବ ଦେଖୁଥିବ ନେତ୍ରାକଲେ ତାରତମ ସ୍ୱର୍ଗସୁଖ କେତେ ମାତ୍ର ।" କବି ଦୀନକୃଷ୍ଣ ଆମର କଳ୍ପନା ସଚେତନ ଥିଲେ (କଳ୍ପନା କରିଛି ନାଭି ସୋମସୂତ୍ର ପ୍ରାୟେ) ଅବଶ୍ୟ, କିନ୍ତୁ କବିତା[illegible] ଅଖଣ୍ଡ ଭୂମିକା ବିଷୟରେ ସଚେତନ ନଥିଲେ । ତାଙ୍କ ପାଇଁ କବିତା "କବି ହୃଦ ଅବଲମ୍ବେ୍ଁ ଜାତ ।" କର୍ଣ୍ଣ ତୁଣ୍ଡରେ ତାର ଆସ୍ୱାଦନ । ଗତ ଶତାବ୍ଦୀରେ ଆଧୁନିକ କବିତା ଆଉ କେବଳ କର୍ଣ୍ଣସାପେକ୍ଷ ହୋଇ ରହିନାହିଁ, ହୋଇଛି ଦୃଷ୍ଟି ନିର୍ଭରଶୀଳ । କିନ୍ତୁ ଗତ ଶତାବ୍ଦୀରେ ସୁରାଶ୍ରିତ ଗେୟ କବିତା

ସଂପୂର୍ଣ୍ଣ ପାଠ୍ୟ କବିତାରେ ପରିଣତ ହୋଇ ନାହିଁ । ଅବଶ୍ୟ ମୁଦ୍ରଣଶିଳ୍ପର ଦାକ୍ଷିଣ୍ୟରୁ ଛନ୍ଦୋମୁକ୍ତିର ପଥ ଉନ୍ମୋଚିତ ହୋଇଛି । ଏହି କଥା କାବ୍ୟପ୍ରକରଣ ପ୍ରସଙ୍ଗରେ ବିଚାର୍ଯ୍ୟ । ଏଠି କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, କବିତାର ରୂପ ବଦଳିଛି, ସଂଜ୍ଞା ବଦଳିଛି, ଆଭିମୁଖ୍ୟ ବି ବଦଳିଛି; ଭାବର ସଂସାର ବଢ଼ିଛି । ଧୀରେ ଧୀରେ କାବ୍ୟବିଚାରର ନୂଆ ମାନଦଣ୍ଡ ପ୍ରସ୍ତୁତ ହୋଇଛି, କବି ଓ କବିତା ଘେନି ନୂଆ ଆଲୋଚନାର ସୂତ୍ରପାତ ଘଟିଛି ।

ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ଗତ ଶତାବ୍ଦୀରେ ସର୍ବତ୍ର କାବ୍ୟକବିତା ସର୍ବୋତ୍କୃଷ୍ଟ ବିଭାଗ ଭାବରେ ସ୍ୱୀକୃତ ହୋଇଛି । କବି ମଧୁସୂଦନ ଦତ୍ତ ସ୍ପଷ୍ଟ କରି ରଖିଛନ୍ତି, "ମନେର ଉଦ୍ୟାନ-ମାଝେ, କୁସୁମେର ସାର/କବିତା କୁସୁମରତ୍ନ" । ସେଥିପାଇଁ କାବ୍ୟକବିତା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଛି ଅପେକ୍ଷାକୃତ ବେଶୀ । ଭଲ କବିତା କାହାକୁ କହନ୍ତି ତାହା ବ୍ୟାଖ୍ୟା କରିବାକୁ ଅନେକ ଉଦ୍ୟମ କରିଛନ୍ତି । ଗତ ଶତାବ୍ଦୀର ଜଣେ ବିଶିଷ୍ଟ କବି ଓ ଜଣେ ବିଶିଷ୍ଟ ସମାଲୋଚକଙ୍କ ପ୍ରଦତ୍ତ ସଂଜ୍ଞା ନିର୍ଦ୍ଦେଶ କରି କବିତାର ସ୍ୱରୂପ ସମ୍ୟକ୍ ଉଦ୍‌ଘାଟନ କରାଯାଇପାରେ ।

୧। କବି ମଧୁସୂଦନ ରାଓ :

(କ) କବି ମଧୁସୂଦନ କବିତାକୁ ଅନ୍ୟାନ୍ୟ କଳାପରି ସୌନ୍ଦର୍ଯ୍ୟଜ୍ଞାନରୁ ପ୍ରସୂତ ବୋଲି ଭାବନ୍ତି । ତାଙ୍କ ପାଇଁ ସୌନ୍ଦର୍ଯ୍ୟ ଦୁଇ ବିଭିନ୍ନ ରୂପ ଧାରଣ କରି ମନୁଷ୍ୟର ମନକୁ ହରଣ କରିଥାଏ । ବହିଃ ସୌନ୍ଦର୍ଯ୍ୟ ଇନ୍ଦ୍ରିୟୋପଲବ୍ଧ ଓ ଅନ୍ତର ସୌନ୍ଦର୍ଯ୍ୟ ମାନସୋପଲବ୍ଧ । ବିହଙ୍ଗମର ମଧୁର କୂଜନ, ନଦୀର କଳକଳ ନାଦ, ରମଣୀ କଣ୍ଠୋତ୍‌ଥିତ ମଧୁମୟ ସଙ୍ଗୀତ ଆଦି ବହିଃ ସୌନ୍ଦର୍ଯ୍ୟ । ଦୟା, ପ୍ରେମ, ଭକ୍ତି, ବାତ୍ସଲ୍ୟ, ସରଳତା, ବିନୟ ପବିତ୍ରତାଦି ଅନ୍ତର ସୌନ୍ଦର୍ଯ୍ୟ । ଏହି ଭେଦର ପୃଷ୍ଠଭୂମିରେ ସେ କବିତାର ସଂଜ୍ଞା ନିର୍ଦ୍ଦେଶ କରିଛନ୍ତି, 'କବିତାକୁ ଆନ୍ତର ସୌନ୍ଦର୍ଯ୍ୟର ବିଷୟୀଭୂତ ଶିଳ୍ପ ବୋଲି ନିର୍ଦ୍ଦେଶ କରାଯାଇ ପାରେ । ବାହ୍ୟ ସୌନ୍ଦର୍ଯ୍ୟ ସହିତ ଆନ୍ତର ସୌନ୍ଦର୍ଯ୍ୟର ସାମଞ୍ଜସ୍ୟ ହେଲେ ସୌନ୍ଦର୍ଯ୍ୟମୋହିତ ମନୁଷ୍ୟ ଯେଉଁ ଭାବନିଚୟ ପ୍ରକାଶ କରେ ତାହାକୁ କବିତା ବୋଲାଯାଏ ।

(ସୌନ୍ଦର୍ଯ୍ୟ ଏବଂ ରୁଚି)

(ଖ) କବି ମଧୁସୂଦନ କବିତାରେ ଭାବର ଗୁରୁତ୍ୱ ସ୍ୱୀକାର କରନ୍ତି । ତାଙ୍କ ପାଇଁ ଭାବହୀନ ଶବ୍ଦାଡ଼ମ୍ବର ରୁଚିହୀନତାର ପରିଚାୟକ—ଯାହା ଅଶିକ୍ଷିତ ଓ ଅର୍ଦ୍ଧ ଶିକ୍ଷିତଙ୍କର ପାଠ୍ୟ ମାତ୍ର । ଭାଷାର ସ୍ଥାନ ନ୍ୟୂନ ନୁହେଁ ଅବଶ୍ୟ । ସେ ଛନ୍ଦଶକ୍ତି ଓ ସଂଗୀତ ଧର୍ମକୁ ସ୍ୱୀକାର କରନ୍ତି । କହନ୍ତି, "ମିତ୍ରାକ୍ଷର ବା ଅମିତ୍ରାକ୍ଷର ହେଉ, ଯେଉଁ କବିତାର ଭାବ ମହାନ୍ ଓ ମର୍ମସ୍ପର୍ଶୀ, ଯାହାର ଭାଷା ମଧୁର, ସଂଗୀତମୟ

ଓ ସ୍ୱଭାବର ଉପଯୁକ୍ତ ଅର୍ଥାତ ମାତ୍ରା, ବିରାମାଦି କୌଶଳ ହେତୁରୁ ସୁଗେୟ ତାହା ହିଁ ପ୍ରକୃତ କବିତା ପଦବାଚ୍ୟ ।

(ମହାଯାତ୍ରାର ମୁଖବନ୍ଧ)

୨। ସମୀକ୍ଷକ ଲାଲା ରାମନାରାୟଣ ରାୟ :

ଆଗରୁ କହିଛୁ ଲାଲାଙ୍କର ବିଚାର ଥିଲା । ସେ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶବିଳାସର ସମୀକ୍ଷା ଉପଲକ୍ଷେ ପ୍ରଥମେ ପ୍ରଶ୍ନ ଉଠାଇଛନ୍ତି, "ପ୍ରକୃତ କବିତା କାହାକୁ କୁହାଯାଏ ?" ତାଙ୍କ ବିଚାର କବି, ମଧୁସୂଦନଙ୍କ ବିଚାରର ଅନୁରୂପ । ଭାବର ମହତ୍ତ୍ୱ ଓ ରଚନାର ପରିମିତିବୋଧ ବା ଔଚିତ୍ୟକୁ ସେ ବିଶେଷ ଗୁରୁତ୍ୱ ଦିଅନ୍ତି, କବିତାରେ କଳ୍ପନାର ଭୂମିକାକୁ ମଧ ସ୍ୱୀକାର କରନ୍ତି ।

କାବ୍ୟ ରସଗ୍ରାହୀ ସୁଧୀବର୍ଗ କହିଅଛନ୍ତି ଯେ, ବିଚିତ୍ର ତରୁଲତାଦି ପରିଶୋଭିତ ଶ୍ୟାମଳାଳୟମାନ ବିସ୍ତୀର୍ଣ୍ଣ ଅରଣ୍ୟାନି, ଉତ୍ତୁଙ୍ଗ ଲହରୀମାଳା ପରିପୂରିତ ବିଶାଳ ବାରିଧିବକ୍ଷ, ପରିମଳମୟ କୁସୁମଦଳ ବିମଣ୍ଡିତ ସୁଶୋଭିତ ଉଦ୍ୟାନରାଜ, ଚନ୍ଦ୍ରତାରାକା ସମନ୍ୱିତ ଅସୀମ ନୀଳାକାଶ, ଅମର ଜ୍ୟୋସ୍ନା ବିଭୂଷିତ ନିଶୀଥକାଳ, ପ୍ରଭାତକାଳର କାଞ୍ଚନମୟ ଦୀପ୍ତ ଧରଣୀମୁଖ, ଶିଶିର ବିନ୍ଦୁ ପରିଶୋଭିତ ହରିତାୟମାନ ପ୍ରାନ୍ତରରାଜି, ଅସଂଖ୍ୟ ନଦନଦୀ ପରିଶୋଭିତ ଏହି ବହିଃ ପ୍ରକୃତି ଏବଂ ସର୍ବୋପରି ନାନା ଭାବ ଆଲୋଡ଼ିତ ନର ହୃଦୟ ରାଜ୍ୟର ଅଧିଷ୍ଠାତ୍ରୀରୂପା ଆନ୍ତର ପ୍ରକୃତି କବିତା ଦେବୀର ନିତ୍ୟ ଲୀଳାଭୂମି ଅଟେ । ଯେଉଁ କାବ୍ୟାମୋଦୀ ରସଜ୍ଞ ଭାବକୁ ଏହି ବୈଚିତ୍ର୍ୟପୂର୍ଣ୍ଣ ଉଭୟବିଧ ପ୍ରକୃତିର ଅନନ୍ତ କମନୀୟତାକୁ ସନ୍ଦର୍ଶନ କରି ଭାବାବେଗରେ ଜାତୀୟ ସାହିତ୍ୟରୂପ ବୀଣା ଦ୍ୱାରା ବିଭିନ୍ନ ସରସ ଭାବଯୁକ୍ତ ସୁଲଳିତ ପଦବିନ୍ୟାସ ପୂର୍ବକ ନାନାପ୍ରକାର ଛନ୍ଦୋବଦ୍ଧରେ ହୃଦୟ ନିହିତ ଭାବରାଶିକୁ ବିଶୁଦ୍ଧ ସଙ୍ଗୀତରୂପେ ଜନସାଧାରଣଙ୍କର ଶ୍ରୁତିଗୋଚର କରାନ୍ତି ତାଙ୍କର ହୃଦୟ ନିଃସୃତ ସେ ଅମୃତ ପଦାବଳୀକୁ କବିତା ବୋଲାଯାଏ । ପୁଣି ଯେଉଁ କବିତା ଶ୍ରବଣକଲେ ହୃଦୟନିହିତ ଭାବପରମ୍ପରା ଶ୍ରୁତି ପଥାରୂଢ଼ ହୋଇ ମନୁଷ୍ୟ ହୃଦୟକୁ ହର୍ଷବିସ୍ମୟାଦି ବିବିଧ ରସରେ ଆପ୍ଲୁତ କରିଦିଏ, ଯାହାର ଅଲୌକିକ ପ୍ରଭାବରେ ମନୁଷ୍ୟ ଆତ୍ମବିସ୍ମୃତ ଜଗତ ବିସ୍ମୃତ ହୋଇ କେବଳ କବି ନିର୍ଦ୍ଦିଷ୍ଟ ଦେଶକାଳରେ ବିଚରଣ କରୁଥାଏ ଯାହାର ଫଳଦ୍ୱାରା ହୃଦୟ ମଧରେ ଏକ ଅପୂର୍ବ ଭାବମାଧୁରୀ କ୍ରୀଡ଼ା କରୁଥାଏ, ଆମ୍ଭେମାନେ ଏହିପରି କବିତାକୁ ପ୍ରକୃତ କବିତା ବୋଲି ନିର୍ଦ୍ଦେଶ କରିବୁ । (କବି ଉପେନ୍ଦ୍ର ଭଞ୍ଜ)

କବି ରାଧାନାଥଙ୍କ କାବ୍ୟକବିତାକୁ ଆଖି ଆଗରେ ରଖି ଉପରୋକ୍ତ ସଂଜ୍ଞା

ପ୍ରସ୍ତୁତ ହୋଇଥିଲା । ସେଥିପାଇଁ କବିତାରେ ରାଧାନାଥଙ୍କର ପ୍ରବର୍ତ୍ତିତ ଯତିସ୍ଥାପନ, ଉପଧାମେଳଆଦିର ପ୍ରଶଂସା କରାଯାଇଛି, ଆହାର୍ଯ୍ୟଗୁଣକୁ ଶ୍ରଦ୍ଧା କରାଯାଇନାହିଁ, ଅଧିକନ୍ତୁ ଅନୂଦିତ ହୋଇ କବିତା ଯେବେ ସୌନ୍ଦର୍ଯ୍ୟ ନ ହରାଏ ତେବେ ତାହାର ଉତ୍କର୍ଷ ପ୍ରତିପାଦିତ ହୋଇଥାଏ ବୋଲି କୁହାଯାଇଛି; ଶବ୍ଦାଡ଼ମ୍ବରପୂର୍ଣ୍ଣ ଭଞ୍ଜ କବିତା ଅନୂଦିତ ହେଲେ ସୌନ୍ଦର୍ଯ୍ୟ ହରାଇବ । କବିତା ହେବ ବହିଃ ସୌନ୍ଦର୍ଯ୍ୟ ଓ ଆନ୍ତର ସୌନ୍ଦର୍ଯ୍ୟ ବର୍ଣ୍ଣନାର ଯୁକ୍ତବେଣୀ—ଏହି ସଂଜ୍ଞାର ମାନଦଣ୍ଡରେ କିନ୍ତୁ ଅଳ୍ପଦିନ ପରେ ରାଧାନାଥଙ୍କ କାବ୍ୟ କବିତା ଉତ୍ତୀର୍ଣ୍ଣ ହୋଇ ପାରିଲା ନାହିଁ, ଅନେକ ପ୍ରତିପାଦନ କରିଦେଲେ ଯେ, ରାଧାନାଥ ବହିଃ ସୌନ୍ଦର୍ଯ୍ୟ ଚିତ୍ରଣରେ ଯେଉଁ ଦକ୍ଷତା ପ୍ରଦର୍ଶନ କରିଛନ୍ତି, ଆନ୍ତର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ତଦନୁରୂପ ନୈପୁଣ୍ୟ ଦେଖାଇ ପାରିନାହାନ୍ତି । ତେଣୁ ଏହି ସଂଜ୍ଞାନୁରୂପ କାବ୍ୟ କବିତା ଲେଖିବାକୁ ହେବ—ଏପରି ଉଦ୍ୟମର ଅନ୍ୟତମ ସୃଷ୍ଟି ହେଉଛି ତେଣୁ "ତପସ୍ୱିନୀ" ।

(ଛଅ)

ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟତତ୍ତ୍ୱରେ ଠାଏ ମେଳ ଅଛି । ଯିଏ ଆଲୋକ ଚାହାନ୍ତି ତାଙ୍କୁ ପ୍ରଦୀପର ଆୟୋଜନ କରିବାକୁ ହୁଏ, ଠିକ୍ ସେପରି ଯେ କବିତାରେ ରସାତ୍ମକ ଆନନ୍ଦ କି ସୌନ୍ଦର୍ଯ୍ୟ ଚାହାନ୍ତି ତାଙ୍କୁ ସୃଷ୍ଟି କରିବାକୁ ହୁଏ ଶବ୍ଦାର୍ଥମୟ ଭାବବସ୍ତୁ ବା କଥାବସ୍ତୁ । କବିତାରେ ଭାବଶକ୍ତି ଓ ଶବ୍ଦଶକ୍ତି ଉଭୟେ ଅନତିକ୍ରମଣୀୟ । ରାଧାନାଥଙ୍କ କାବ୍ୟକବିତାକୁ ଲକ୍ଷ୍ୟ କରି ପ୍ରଥମେ ଓଡ଼ିଆ କବିତାର ଭାବବସ୍ତୁ ବା ବିଷୟବସ୍ତୁ ସମ୍ବନ୍ଧରେ କୁହାଯାଇଛି ଯେ, ଓଡ଼ିଶାର ପ୍ରାକୃତିକ, ଐତିହାସିକ ଓ ସାଂସ୍କୃତିକ ସତ୍ତା ସହିତ କବିତାର ଭାବବସ୍ତୁ ଅବଶ୍ୟ ସମନ୍ୱିତ ହେବ । ଓଡ଼ିଶାର ଗୌରବ ପରିଚାୟକ ଘଟଣା ଓ ପ୍ରାକୃତିକ ଦୃଶ୍ୟ ନିଚୟର ବର୍ଣ୍ଣନା ବିନା କୌଣସି ରଚନା ଭଲ କବିତା ପଦବାଚ୍ୟ ହୋଇ ପାରିବ ନାହିଁ । ଦେଶାତ୍ମବୋଧ ଓ ପ୍ରକୃତି ପ୍ରେମ ହାତ ଧରାଧରି ହୋଇ ଅବଶ୍ୟ ଚାଲିବେ କବିତାରେ, ତାହାଙ୍କ ସହିତ ରହିପାରିବେ ମାନବିକ ଗୁଣର ପ୍ରକାଶ—ମାନବିକ ଶକ୍ତିର ସମ୍ଭାବନା, ବ୍ୟର୍ଥତା ଓ ଐଶ୍ୱର୍ଯ୍ୟ ପ୍ରତି ଆନ୍ତରିକ ସମ୍ବେଦନା । ମଧୁସୂଦନ ଓ ଫକୀର ମୋହନ କିନ୍ତୁ ଏହି ସୀମିତ ଭାବବଳୟ ମଧ୍ୟରେ କବିତାକୁ ସୀମାବଦ୍ଧ କରିବାକୁ ଚାହିଁନାହାନ୍ତି । ଫକୀର ମୋହନ କବିଙ୍କ ସଂପତ୍ତି ସମ୍ବନ୍ଧରେ ଆମକୁ ସ୍ପଷ୍ଟ କହିଛନ୍ତି, ଏହା ନୀଳଗଗନଠାରୁ ନୟନଜଳ ପର୍ଯ୍ୟନ୍ତ ବିସ୍ତୃତ—ଯୁଦ୍ଧ ବିଗ୍ରହ ଓ ପ୍ରେମାଭିସାର ସେଠାରେ ତୁଲ୍ୟମୂଲ୍ୟ, ପ୍ରେମବେଦନା ଓ ଶ୍ରୀହରି ଭକ୍ତି, ପୁଣି ଶ୍ରୀ ଓ ହ୍ରୀ—କୌଣସିଟି ବି ଅବାଞ୍ଛିତ ନୁହନ୍ତି କବିତାରେ—ଅଧିକନ୍ତୁ ମଧୁସୂଦନ ଓ ଫକୀର ମୋହନ କବିତାକୁ ବସ୍ତୁତନ୍ମୟତାରୁ ଆତ୍ମତନ୍ମୟତାକୁ ଉତ୍ତୀର୍ଣ୍ଣ କରି

ଦେଇଥିଲେ,—ଆଖ୍ୟାୟିକା କାବ୍ୟ ବଦଳରେ ଗୀତି କବିତାକୁ ଯୁଗୋଚିତ ମର୍ଯ୍ୟାଦା ଦେଇଥିଲେ, ଯାହାକୁ କହନ୍ତି awakening of the self —ତାହାକୁ ବରି ନେଇଥିଲେ । ତେଣୁ ଓଡ଼ିଆ କବିତାର ଭାବବସ୍ତୁ ରୋମାଣ୍ଟିକ୍ ଚେତନାର ବହୁ ବର୍ଣ୍ଣବିଭାରେ ଅନୁରଞ୍ଜିତ ହୋଇ ଉଠିଥିଲା—Veiled Divinity ବା ଗୁଣ୍ଠନମୁକ୍ତ ସତ୍ୟ ଶାଶ୍ୱତ ଦର୍ଶନଠାରୁ ପ୍ରକୃତିର ରୂପରସ ଗନ୍ଧ ସ୍ପର୍ଶର ଅପୂର୍ବ ଆମନ୍ତ୍ରଣ ପର୍ଯ୍ୟନ୍ତ, ଶିଶୁ ପ୍ରକୃତିର ମଧୁର ବିସ୍ମୟଠାରୁ ପତିତ ଓ ବ୍ୟଥିତ ଜନହୃଦୟର ସ୍ୱର୍ଗୀୟ ମାଧୁର୍ଯ୍ୟ ପର୍ଯ୍ୟନ୍ତ, ଆକାଶର ସ୍ୱଚ୍ଛ ନୀଳିମାର ଭାଷାହୀନ ସଂଗୀତଠାରୁ ଅତୀତର ଅନ୍ଧକାରମ୍ଳାନ ସୌନ୍ଦର୍ଯ୍ୟର ସୀମାହୀନ କାନ୍ତି ପର୍ଯ୍ୟନ୍ତ—ଏବେ ଭାବବସ୍ତୁଗୁଡ଼ିକର ତାଲିକାଟିଏ ପ୍ରସ୍ତୁତ କରଯାଇ ପାରିବ ଯଥାସମ୍ଭବ :

୧। ଦେଶାତ୍ମବୋଧ
୨। ପ୍ରକୃତି ପ୍ରେମ
୩। ମାନବ ଓ ପ୍ରକୃତି ସଂଶ୍ଳିଷ୍ଟତା
୪। ପ୍ରେମ—ପତ୍ନୀପ୍ରେମ, ଆଦର୍ଶାୟିତ ପ୍ରେମ, ଇନ୍ଦ୍ରିୟାଶ୍ରିତ ପ୍ରେମ, ବଂଧୁ ପ୍ରେମ ଇତ୍ୟାଦି, ଆଦିରସ ଅଚଳନୀୟ ନୁହେଁ ।
୫। ଶିଶୁ, ପଶୁ ଓ ପତିତ ବ୍ୟଥିତଙ୍କ ପ୍ରତି ସମ୍ବେଦନା
୬। ଆତ୍ମ ଜୈବନିକ ଚିନ୍ତା ଓ ଚେତନା
୭। ଧର୍ମ ଦର୍ଶନତତ୍ତ୍ୱ ଓ ଭାବନା
୮। ରଙ୍ଗବ୍ୟଙ୍ଗ
୯। ଶୋକବିଷାଦ
୧୦। ସମାଜସଚେତନତା
୧୧। ସାମୟିକ ଘଟନାର ପ୍ରତିକ୍ରିୟା
୧୨। ଜୀବନଚିନ୍ତା
୧୩। ଗାର୍ହସ୍ଥ୍ୟ ଜୀବନ ଚିନ୍ତା
୧୪। କବିତାଚିନ୍ତା
୧୫। ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତା ସଚେତନତା
୧୬। ମାନବିକତାବାଦ (Humanism)—ଯଥା : ନାରୀ ପ୍ରତି ସମ୍ଭ୍ରମବୋଧ ଇତ୍ୟାଦି ।
୧୭। ବ୍ୟକ୍ତି ସ୍ୱାତନ୍ତ୍ର୍ୟବୋଧ (ଇତ୍ୟାଦି)

(ସାତ)

ଶେଷକୁ କାବ୍ୟପ୍ରକରଣ କଥା । ଆଦିରସକୁ ଭାଷାପଦ୍ଧତି ମଧ୍ୟରେ ସୂକ୍ଷ୍ମତା, ବାଗ୍‌ବୈଦଗ୍ଧ ଓ ସରସ କୌତୁକ ତଥା ଅଳଙ୍କାର ବ୍ୟଞ୍ଜନଦ୍ୱାରା ସଂଯତ କରି ନିଆଗଲେ ଯେମିତି ଆଧୁନିକ କବିତାରେ ତାହା ରୁଚିବାନ ପାଠକର ଆଦରର ସାମଗ୍ରୀ ହୋଇ ପାରିବ, ସେମିତି ଶବ୍ଦାଳଙ୍କାର ମଧ୍ୟରୁ ଯମକ ଓ ଅନୁପ୍ରାସ 'ଅକ୍ଲିଷ୍ଟ ଅବ୍ୟାଜ ମନୋହର' ହେଲେ ଗ୍ରହଣୀୟ ହେବ । ରାଧାନାଥ ଏହି ଦୁଇଟିର ପ୍ରୟୋଗ କରିଛନ୍ତି, ତାଙ୍କ ପ୍ରୟୋଗ ଭଙ୍ଗୀକୁ ସମସ୍ତେ ପ୍ରଶଂସା କରିଛନ୍ତି । ଏପରିକି ଗଙ୍ଗାଧର ଶ୍ଳେଷ ପ୍ରୟୋଗ ପ୍ରତି ହାତ ବଢ଼ାଇ କୃତାର୍ଥ ହୋଇଥିବାର କୁହାଯାଏ । ତେଣୁ ପ୍ରାଚୀନ କାବ୍ୟର ଆଙ୍ଗିକକୁ ଆଧୁନିକୀକରଣରେ ବ୍ୟବହାର କରାଗଲା ବେଳେ କେବଳ ଅକ୍ଲିଷ୍ଟ ଯମକ, ଅନୁପ୍ରାସ ଓ ଶ୍ଳେଷକୁ ସ୍ୱୀକାର କରାଯାଇଛି ଓ ସେଗୁଡ଼ିକର ସ୍ୱାଭାବିକତା ଉପରେ ଗୁରୁତ୍ୱ ଦିଆଯାଇଛି । ଅର୍ଥାଳଙ୍କାର ଅଧିକାଂଶ ବଞ୍ଚିଛନ୍ତି, ଏପରିକି ପ୍ରଥାସିଦ୍ଧ ଉପମା, ରୂପକ, ଉତ୍‌ପ୍ରେକ୍ଷାଦି ବ୍ୟବହାର କରିବାକୁ କବିଏ କୁଣ୍ଠିତ ହୋଇ ନାହାନ୍ତି । ସେତେବେଳକୁ ମୁଦ୍ରଣ ଯନ୍ତ୍ର କବିତାକୁ ସଂପୂର୍ଣ୍ଣ ଭାବରେ ପାଠ୍ୟ ସାମଗ୍ରୀରେ ପରିଣତ କରିନଥାଏ, ତେଣୁ ପ୍ରାଚୀନ ବୃତ୍ତ ବ୍ୟବହାର ଅବ୍ୟାହତ ଅଛି । ରାମକେରୀ, ଚୋଖି, ନଟବାଣୀ, ରସକୁଲ୍ୟା, ଖଣ୍ଡ କୁମ୍ଭାକାମୋଦି ଓ ବଙ୍ଗଳାଶ୍ରୀ ଆଦି ଅନେକ କାଳ ପର୍ଯ୍ୟନ୍ତ ପ୍ରଯୁକ୍ତ ରହିଛନ୍ତି, ଚତୁର୍ଦ୍ଦଶାକ୍ଷରୀ ପୟାର ବା ମଙ୍ଗଳ ରାଗ ଆଜି ପର୍ଯ୍ୟନ୍ତି ବି ଚଳୁଛି । ତେବେ ମୁଦ୍ରଣ ଯନ୍ତ୍ରର ପ୍ରଭାବକୁ ଅସ୍ୱୀକାର କରିହେବ ନାହିଁ । ଅମିତ୍ରାକ୍ଷର ଛନ୍ଦଟି ତ ମୁଦ୍ରଣ ଶିଳ୍ପର ଦାନ ଅନେକାଂଶରେ । ପାଶ୍ଚାତ୍ୟ ପ୍ରଭାବକୁ ଅସ୍ୱୀକାର କରାଯାଉ ନାହିଁ, କିନ୍ତୁ କବିତା ମୁଦ୍ରଣ ଶିଳ୍ପର ଅଭିଘାତକୁ ଆଗ୍ରହ୍ୟ କରି ପାରିନାହିଁ, କବିଙ୍କ ପକ୍ଷରୁ କବିତା ହୋଇଛି ଲେଖ୍ୟ, ଉପଭୋକ୍ତା ପକ୍ଷରୁ ପାଠ୍ୟ । ଗତ ଶତାବ୍ଦୀର ଅନେକ ସମାଲୋଚକ କବିତାର ସଙ୍ଗୀତ ଗୁଣକୁ ହିସାବକୁ ନେଇଛନ୍ତି ନିଶ୍ଚୟ, କିନ୍ତୁ କ୍ରମଶଃ ଦେଖାଯାଇଛି ଯେ ଗେୟ ନ ହେଲେବି କେବଳ ଛନ୍ଦୋବିଶିଷ୍ଟ ରଚନା ଆନନ୍ଦଦାୟକ ହୋଇ ପାରୁଛି ଓ ସଂପୂର୍ଣ୍ଣ ଚିତ୍ତଭାବବ୍ୟଞ୍ଜକ ହୋଇ ଉଠୁଛି । ଫଳରେ ଗୀତୋଦ୍ଦେଶ୍ୟ ଦୂରେଇ ଯାଇଛି, ଅଗେୟ କବିତା ରଚିତ ହୋଇଛି । ମୁଦ୍ରଣ ଶିଳ୍ପ ଛନ୍ଦୋମୁକ୍ତିର ପଥ ଉନ୍ମୋଚନ କରିଛି ବୋଲି ଆଗରୁ କହିଛୁ । ପ୍ରାଚୀନ କାବ୍ୟକବିତା କ୍ଷେତ୍ରରେ ଛନ୍ଦରେ ସୀମାବଦ୍ଧତା ଥିଲା—କବିଙ୍କୁ ସୁନିୟମିତ ସ୍ଥାନରେ ଯତିପାତର ବାଧ୍ୟତା ସ୍ୱୀକାର କରିବାକୁ ପଡୁଥିଲା, ଅଧିକନ୍ତୁ ରଚନା ସ୍ୱରାଶ୍ରିତ ଥିବାରୁ ଅର୍ଥାତ ଗାନ ଉପଲକ୍ଷେ ଲେଖା ଯାଉଥିବାରୁ ପଢ଼ିଲାବେଳେ ବାକ୍‌ଭଙ୍ଗିମା କାନକୁ ଅଖଞ୍ଜିଆ ଶୁଭୁଥିଲା । କବିତା କ୍ରମଶଃ ପାଠ୍ୟ ହେବାକୁ ଯାଉଥିବାରୁ ଏହି

ସୀମାବଦ୍ଧତାକୁ ଘୁଞ୍ଚାଇ ଦିଆଯାଇଛି । ବାକ୍‌ସ୍ପନ୍ଦର ଅନ୍ତର୍ଗୂଢ଼ ତାଡ଼ନାରେ ବିଶେଷତଃ ପୟାର ବା ଚତୁର୍ଦ୍ଦଶାକ୍ଷରୀ ବୃତ୍ତର ସୁନିୟମିତ ଯତିପାତର ବାଧ୍ୟବାଧକତାକୁ ଅସ୍ୱୀକାର କରାଯାଇଛି, ମିତ୍ରାକ୍ଷର ମେଳକୁ ଉଠାଇ ଦିଆଯାଇଛି । ବଙ୍ଗ ସାହିତ୍ୟରେ ମଧୁସୂଦନ ଦତ୍ତ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତନ କରି ଯେଉଁ ପ୍ରୟୋଗବାଦିତାକୁ ପ୍ରଦର୍ଶନ କଲେ, ତାହାକୁ ରାଧାନାଥ ପ୍ରଥମେ ନ ହେଲେହେଁ ସାର୍ଥକ ଭାବରେ ପ୍ରୟୋଗ କରିଛନ୍ତି ଓଡ଼ିଆ କବିତାରେ । ଓଡ଼ିଆ ଛନ୍ଦୋମୁକ୍ତିର ସୂତ୍ରପାତ କରିଥିଲେ ପ୍ରଥମେ ଅବଶ୍ୟ ମଧୁସୂଦନ ରାଓ ତାଙ୍କ 'ନିଶୀଥଚିନ୍ତା'ରେ ସ୍ପେନସ୍‌ରିଆନ ଷ୍ଟାଞ୍ଜାରୀତିର ଛନ୍ଦ ପ୍ରବର୍ତ୍ତନ କରି । ପରେ ସେ ରାଧାନାଥଙ୍କ ପ୍ରଭାବରେ ପଡ଼ି ପ୍ରାଚୀନ ବୃତ୍ତ ବ୍ୟବହାର କଲେ ଅବଶ୍ୟ, ତେବେ ସନେଟ୍ ରଚନାକରି ଓଡ଼ିଆ ଛନ୍ଦକୁ ସେ ନୂଆ ପ୍ରକରଣ ଶିଖାଇଛନ୍ତି । ଆମର ଅନ୍ତ୍ୟାନୁପ୍ରାସ ଥିଲା, କିନ୍ତୁ ଶେଷ ବର୍ଣ୍ଣ ଓ ଉପଧା ସ୍ୱରର ସଂପୂର୍ଣ୍ଣ ସମତା ରକ୍ଷା କରିବାକୁ କେହି ସବିଶେଷ ଧ୍ୟାନ ଦେଉ ନଥିଲେ, ଏହା ମଧ୍ୟ ଆମ ସ୍ୱରାନ୍ତ ଶବ୍ଦବହୁଳ ଭାଷାରେ ବିଶେଷ କିଛି ଆକର୍ଷଣୀୟ ନଥିଲା । ରାଧାନାଥ ଉପଧା ମିଳନ ପ୍ରବର୍ତ୍ତନ କଲେ ଏବଂ ତାହାହିଁ ହେଲା ଓଡ଼ିଆ ଛନ୍ଦରେ ଅବିଚ୍ଛେଦ୍ୟ ଅଙ୍ଗ ଅନେକ କାଳ ପର୍ଯ୍ୟନ୍ତ, ନାନା ପ୍ରତିବାଦ ସତ୍ତ୍ୱେ । ପ୍ରକରଣ ଦୃଷ୍ଟିରୁ ଛନ୍ଦ କ୍ଷେତ୍ରରେ ଯେଉଁ ନୂଆ କାବ୍ୟଚିନ୍ତା ଗଢ଼ି ଉଠିଲା ତାହାକୁ ସୂତ୍ରାକାରରେ ସଜାଇ ଦିଆଯାଇପାରେ ।

୧। ସ୍ପେନ୍‌ସ୍‌ରିଆନ ଷ୍ଟାଞ୍ଜାରୀତିର ଛନ୍ଦ

୨। ଅମିତ୍ରାକ୍ଷର ଛନ୍ଦ

୩। ସନେଟ୍

୪। ଏକାନ୍ତର ମେଳ

୫। ଉପାଧାମିଳନ ବା ପୂର୍ଣ୍ଣ ମିତ୍ରାକ୍ଷରମେଳ ।

ପ୍ରାଚୀନ କାବ୍ୟର ଛାନ୍ଦ ରହିଲା, କିନ୍ତୁ ନୂଆ କାବ୍ୟଚିନ୍ତାରୁ ଚଉପଦୀ ଓ ଚଉତିଶା ବିଦାୟ ଘେନିଲା, ତତ୍ ପରିବର୍ତ୍ତେ ଅନେକ ନୂଆ ଫର୍ମ ପ୍ରବର୍ତ୍ତିତ ହେଲା । ଯଥା :—

୧। Sonnet (ଚତୁର୍ଦ୍ଦଶପଦୀ କବିତା)

୨। Ode (ସମ୍ବୋଧ ଗୀତିକା)

୩। Meterical Romance

୪। Epic-Romantic Epic ବା Romanzi

(many actions of many men ବା many actions of one man—ଯଥା ମହାଯାତ୍ରା)

୫। Elegy (ଶୋକଗୀତିକା)

୬। Ballad (ଗାଥାକବିତା)

୭। Epistle (ପତ୍ରାତ୍ମକ କବିତା)

(ରାଧାନାଥ ବଙ୍ଗଳାରେ ସନେଟ୍ ଓ ପତ୍ର-କବିତା ଲେଖିଥିଲେ ହେଁ ଓଡ଼ିଆରେ ଲେଖି ନାହାନ୍ତି ।) କବିତାର ରୂପରେ ମହାକାବ୍ୟ ଅପେକ୍ଷା କ୍ଷୁଦ୍ର କବିତାର ଭୂମିକା କ୍ରମଶଃ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଛି । ଏଥିରୁ ପ୍ରତିପନ୍ନ ହୁଏ ଯେ ଗତ ଶତାବ୍ଦୀର ଆଧୁନିକ କବିଏ ବସ୍ତୁବେଷ୍ଟନୀରୁ ମୁକ୍ତ ହୋଇ ବ୍ୟକ୍ତିଗତ ଅସ୍ମିତା ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରି ଦେଇଥିଲେ । ରାଧାନାଥ ବରଂ ଥିଲେ ବ୍ୟତିକ୍ରମ । ସେଥିପାଇଁ ପରବର୍ତ୍ତୀ କାଳରେ କବିଏ ତାଙ୍କୁ ବିଶେଷ ମର୍ଯ୍ୟାଦା ଦେବାକୁ ପ୍ରସ୍ତୁତ ହେଲେ ନାହିଁ ।

କାବ୍ୟଭାଷା । ଆମ କାବ୍ୟଭାଷାର ବୈଶିଷ୍ଟ୍ୟ ଥିଲା ଦିବ୍ୟ-ଅଦିବ୍ୟ ଭାଷାର ସମନ୍ୱୟ । ଦିବ୍ୟ ଅଦିବ୍ୟ ସମ । କବି ରାଧାନାଥ ଓ ମଧୁସୂଦନ କିନ୍ତୁ ଅଦିବ୍ୟ ଭାଷା ପ୍ରତି ଅପ୍ରସନ୍ନ ଥିଲେ, ଅକାବ୍ୟିକ ଶବ୍ଦ ପ୍ରତି ବିମୁଖ ଥିଲେ । ସମକାଳୀନ ମୁହଁର ଭାଷାଠାରୁ କବିତାର ଭାଷାକୁ ଅଲଗା ବୋଲି ଚିହ୍ନିତ କରିବାକୁ ଚାହିଁଲେ, ପ୍ରତ୍ୟେକ ଭାଷାରେ କବିତାରେ ବ୍ୟବହୃତ ଯୋଗ୍ୟ ଅଲଗା କିଛି ଶବ୍ଦ ଥାଏ ବୋଲି ଯେଉଁ ଧାରଣାକୁ ଇଂରାଜୀ ସାହିତ୍ୟରେ ଅଲିଭର ଗୋଲ୍ଡ଼ସ୍ମିଥ୍ ପ୍ରତିଷ୍ଠା ଦେବାକୁ ଚାହୁଁଥିଲେ ସେହି ପ୍ରତ୍ୟୟକୁ ଧ୍ରୁବଜ୍ଞାନ କଲେ । ୱାର୍ଡ଼ସ୍‌ୱାର୍ଥଙ୍କୁ ମାନିଲେ ନାହିଁ । କବିତା ମଣିଷର ନିତ୍ୟ ବ୍ୟବହାର୍ଯ୍ୟ ମୁହଁର ଭାଷା(The Real Language of Men)ରେ ଲେଖାଯିବା ଉଚିତ କଥାଟାକୁ ବିଚାରକୁ ଘେନିଲେ ନାହିଁ । କବି ରାଧାନାଥ ଓ ମଧୁସୂଦନ ଆମ ଓଡ଼ିଆ କାବ୍ୟ ଭାଷାର ଐତିହ୍ୟକୁ ଅସ୍ୱୀକାର କରି ଶିଷ୍ଟ ସାଧୁ ଭାଷାର ଦ୍ୱାରସ୍ଥ ହେଲେ । 'ନନ୍ଦିକେଶ୍ୱରୀ' କାବ୍ୟରେ ପ୍ରଯୁକ୍ତ ଗୋଟିଏ ଉପମାରୁ ଭାଷା ସମ୍ବନ୍ଧରେ ସେ ଦୁହିଁଙ୍କ ମନୋଭାବ କଳି ହେବ । ନନ୍ଦିକା ଉପସ୍ଥିତ ହୋଇଛନ୍ତି ଗୋପନରେ ଚୋରଗଙ୍ଗଙ୍କ ସମ୍ମୁଖରେ । ଚୋରଗଙ୍ଗ ପବିତ୍ର କେଶରୀକୁଳ ସହିତ ଦୁଃଶୀଳା ନନ୍ଦିକା ଚରିତ୍ରର ସାମଞ୍ଜସ୍ୟ ବିଧାନ କରିପାରୁ ନାହାନ୍ତି, ତେଣୁ ତାକୁ ଧିକ୍‌କାରିଛନ୍ତି—

ସେହି କୁଳେ ଜାତ ତୁହି କି ଦୁଃଶୀଳା
କେ କହିବ ମୋତେ କେମନ୍ତେ ମିଶିଲା
ଦେବବାଣୀ ସଙ୍ଗେ ଆସି ଅପଭାଷା
ପୂତ ଭାଗୀରଥୀ-ସ୍ରୋତେ କର୍ମନାଶା ॥

ଚୋରଗଙ୍ଗ ନନ୍ଦିକାକୁ ପ୍ରତ୍ୟାଖ୍ୟାନ କରିଛନ୍ତି, ରାଧାନାଥ ଓ ମଧୁସୂଦନଙ୍କ କବିତା ଯଥାସମ୍ଭବ ପ୍ରାକୃତ ଭାଷାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । କାବ୍ୟଭାଷା ଅବଶ୍ୟ ହେବ ଦିବ୍ୟ ଓ ଶିଷ୍ଟ । ତେଣୁ ସେମାନଙ୍କ ରଚନାରେ ଏପରି ଅନେକ ଶବ୍ଦ ଅଛି, ଯେଉଁଗୁଡ଼ିକ ନଥିଲେ କବିତାର ବିଶେଷ କିଛି କ୍ଷତି ହୋଇ ନଥାନ୍ତା । ତଥାପି ଭାଷା ଓ ଭାବର ସାମଞ୍ଜସ୍ୟ ବିଧାନ କ୍ଷେତ୍ରରେ ଦୁହିଁଙ୍କ କୃତିତ୍ୱ ମାନିବାକୁ ହେବ । ଫକୀର ମୋହନ କିନ୍ତୁ ବିଦ୍ରୋହର ପଟଭୂମି ଗଢ଼ି ତୋଳିଥିଲେ । ପରେ କବି ନୀଳକଣ୍ଠ କାବ୍ୟଭାଷାକୁ ଯଥାସାଧ ଆମ କାବ୍ୟଭାଷା-ଐତିହ୍ୟ ସହିତ ସଂଶ୍ଳିଷ୍ଟ କରିଦେଲେ । ଧୀରେ ଧୀରେ ରାଧାନାଥ ଓ ମଧୁସୂଦନଙ୍କ କାବ୍ୟଭାଷାର ପ୍ରତିଷ୍ଠା ଓ ପ୍ରତିପତ୍ତି କମିଗଲା । ପୁଣି ଦିବ୍ୟ ଅଦିବ୍ୟ ଭାଷାରେ ପଦ ହେଲା ସିଦ୍ଧ । ଆଧୁନିକ କାବ୍ୟଚିନ୍ତାର ଭାଷାଦର୍ଶ ଓ ଉପଧାମିଳନ ସେଦିନ କିନ୍ତୁ ଅଭିନନ୍ଦନୀୟ ଥିଲା— ପ୍ରକୃତରେ କେଉଁ କବିତାରେ କେଉଁ ଶବ୍ଦକୁ ଅନଧିକାର ପ୍ରବେଶକାରୀ ବୋଲି ମନେ କରାଯିବ, କେଉଁ ମେଳକୁ ଅତ୍ୟାଚାର ବୋଲି ଗ୍ରହଣ କରାଯିବ ତାହା ନିର୍ଭର କରିଥାଏ ସେଗୁଡ଼ିକୁ ବ୍ୟବହାର କରିଥିବା କବିଙ୍କ ଯୋଗ୍ୟତା ଉପରେ । ସେଦିନ ରାଧାନାଥ ଓ ମଧୁସୂଦନ ଯେଉଁ ଭାଷା ଓ ମେଳ ବ୍ୟବହାର କରିଛନ୍ତି ତାହାର ଅନିବାର୍ଯ୍ୟତା କିଛିଟା ଥିଲା ନିଶ୍ଚୟ । ଶବ୍ଦରେ ଧ୍ୱନିସ୍ପନ୍ଦନ ସମ୍ପର୍କରେ ସେ ଦୁହେଁ ବେଶ ସଚେତନ ଥିଲେ ।

ଊନବିଂଶ ଶତାବ୍ଦୀରେ ନୂଆ କାବ୍ୟଚିନ୍ତା ଅନେକାଂଶରେ ଓଡ଼ିଆ କାବ୍ୟକବିତାର ଚରିତ୍ର ବଦଳାଇ ଦେଇଛି । ରାଧାନାଥ ଭଞ୍ଜ ଐତିହ୍ୟକୁ ଆଧୁନିକୀକରଣରେ ବ୍ୟବହାର କରିଥିଲେ ଅବଶ୍ୟ, କିନ୍ତୁ ମଧୁସୂଦନ ଓ ଫକୀର ମୋହନ ନୂଆ ଐତିହ୍ୟ ଅଭିମୁଖରେ ଅଗ୍ରସର ହୋଇଛନ୍ତି । ଭାବ ନୂଆ, ଅନେକାଂଶରେ ଭାଷା ନୂଆ, ଛନ୍ଦ ନୂଆ, ଅନେକ ରୂପ ବି ନୂଆ । କଳ୍ପନା ଆସିଛି ନୂଆ ରୂପରେ । କେଉଁଠି ବୀଣାପାଣିଙ୍କ ଚିର ସହଚରୀ ଭାବରେ ତ କେଉଁଠି ନୂଆ ଅବତାର ଭାବରେ । କବିତା ହୋଇଛି କଳ୍ପନାର କଣ୍ଠସ୍ୱର—ଆଉ କଳ୍ପନାର କାନ ନଥିଲେ ସେହି ସ୍ୱର ଶୁଭିବାର ସମ୍ଭାବନା ନାହିଁ । ଆଜି ଆଧୁନିକ କବିଏ କଳ୍ପନାକୁ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ କି ପ୍ରେରଣାରେ ବିଶ୍ୱାସ ରଖନ୍ତି ନାହିଁ । ସେଦିନ କିନ୍ତୁ କଳ୍ପନାର ଜୟଜୟକାର । କଳ୍ପନା ବିନା ନୂଆ କାବ୍ୟଚିନ୍ତାର ଅସ୍ତିତ୍ୱ କଳ୍ପନା କରି ହୁଏ ନାହିଁ । ୧୮୯୭ ଶ୍ରୀକୃଷ୍ଣପ୍ରସାଦ ଚୌଧୁରୀ 'କବି ଓ କବିତା' ନାମରେ ପ୍ରବନ୍ଧଟିଏ ଲେଖନ୍ତି । ସେଥିରେ ସେ ମଧୁସୂଦନ ରାଓଙ୍କ ନନ୍ଦନତତ୍ତ୍ୱକୁ ମନେରଖି ଜଣେ ବିଖ୍ୟାତ ସମାଲୋଚକ କହନ୍ତି ବୋଲି ଯାହା କହିଛନ୍ତି ତାହା ସ୍ମର୍ତ୍ତବ୍ୟ, "କଳ୍ପନାର ଆଗ୍ନେୟ ଉଚ୍ଛ୍ୱାସରେ ଯେଉଁ କାବ୍ୟରେ ବା ଚିତ୍ରରେ କବିତା ସଞ୍ଚିତ ହୁଏ ତାହାହିଁ

ଜୀବିତ ଥାଏ, ତାହାର ଶରୀରର ଅଂଶଟି, ଭଗ୍ନାଂଶଟି ପର୍ଯ୍ୟନ୍ତ ଚିରଜୀବୀ । କିନ୍ତୁ ଯେଉଁ କାବ୍ୟ ବା ଚିତ୍ର କେବଳ ମାତ୍ର ବାକ୍ୟ ବା ବର୍ଣ୍ଣାଡ଼ମ୍ବର ରଚିତ ବା ଅଙ୍କିତ ତାହା ବହ୍ୱାୟାସରେ ବହୁ ନୈପୁଣ୍ୟ ସମ୍ପନ୍ନ ହେଲେ ମଧ୍ୟ ଶୁଷ୍କ ବୃକ୍ଷ ସଦୃଶ ରସହୀନ ଜୀବନଶୂନ୍ୟ ।'' କଳ୍ପନା ହିଁ କବିତାର ଉପକରଣ । କଳ୍ପନା ହିଁ ପାଠକ ବା କାବ୍ୟାମୋଦୀର ମଧ୍ୟ ପ୍ରଧାନ ଅବଲମ୍ବନ । ଏବେ ନବୋକଭ୍ ପାଠକଠାରୁ ସାହିତ୍ୟବୋଧ ପାଇଁ ସ୍ମୃତି, କଳ୍ପନା, ରସବୋଧ ଓ ଅଭିଧାନ ପ୍ରବେଶ ପ୍ରତ୍ୟାଶା କରନ୍ତି । ସେଦିନ ମଧୁସୂଦନ 'କବିତା ଅଧ୍ୟୟନ' ପ୍ରବନ୍ଧରେ କବିତା ମନୁଷ୍ୟର କଳ୍ପନାକୁ ଉଦ୍‌ବୋଧିତ କରେ ବୋଲି ଘୋଷଣା କରିଛନ୍ତି, 'ବିଦ୍ୟାଳୟମାନଙ୍କରେ ଯେତେ ବିଷୟ ଅଧୀତ ହୁଏ, ସେଥିମଧ୍ୟରେ କବିତା ଯେପରି ମନୁଷ୍ୟ ହୃଦୟକୁ ମାର୍ଜିତ କରେ, ମନୁଷ୍ୟମନକୁ ସୌନ୍ଦର୍ଯ୍ୟରସରେ ଅଭିଷିକ୍ତ କରେ, ମନୁଷ୍ୟ ପ୍ରାଣକୁ ବିମଳ ଆନନ୍ଦ ଜଳରେ ମଗ୍ନ କରେ ଏବଂ ମନୁଷ୍ୟ କଳ୍ପନାକୁ ସ୍ୱାଧୀନ ଭାବରେ ଅନନ୍ତ ବ୍ରହ୍ମାଣ୍ଡ ମଧ୍ୟରେ ପରିଭ୍ରମଣ କରିବାର ସାମର୍ଥ୍ୟ ପ୍ରଦାନ କରେ, ସେପରି କାର୍ଯ୍ୟ ଅନ୍ୟ କୌଣସି ବିଷୟଦ୍ୱାରା ସାଧିତ ହୋଇ ନ ପାରେ ।'' (୧୮୯୬) ଊନବିଂଶ ଶତାବ୍ଦୀରେ କବିତାକୁ ନୂଆ ଭାବରେ ଉପଭୋଗ କରି ଶିଖିଛି । କବିତା କେବଳ ରସାନଂଦର ସାମଗ୍ରୀ ନୁହେଁ, ହୃଦୟର କଳା ନୁହେଁ, ତାହା ମନ, ହୃଦୟ ଓ ପ୍ରାଣକୁ ଛୁଏଁ, ହୃଦୟବୃତ୍ତିକୁ ପରିଶୀଳିତ କରେ, ମନକୁ ସୌନ୍ଦର୍ଯ୍ୟାଭିଭୂତ କରେ ଓ ପ୍ରାଣକୁ ବିମଳ ଆନନ୍ଦ ଦିଏ । ଆଉ କଳ୍ପନାକୁ ? ଦେଶ କାଳ ଖଣ୍ଡରେ ଆବଦ୍ଧ ରଖେ ନାହିଁ, ଅନନ୍ତ ବ୍ରହ୍ମାଣ୍ଡ ମଧ୍ୟରେ ମୁକ୍ତି ଦିଏ । କବିତାରୁ ଶିକ୍ଷା, ପ୍ରେରଣା, ସାହସ ମିଳିଥାଏ ମଧ୍ୟ-ଅଧିକନ୍ତୁ ବସ୍ତୁ ପୃଥିବୀକୁ ଗୁଣ୍ଠନମୁକ୍ତକରି ଦେଖିବାର ବିରଳ ସୌଭାଗ୍ୟ ଲାଭ ହୋଇଥାଏ, ଗତ ଶତାବ୍ଦୀର ନୂଆ କାବ୍ୟଚିନ୍ତା ଏକ ପକ୍ଷରେ ଯେପରି ନୂଆ କବିତା ଲେଖି ଶିଖାଇଛି, ଅନ୍ୟ ପକ୍ଷରେ ସେପରି ନୂଆ କବିତାକୁ ଉପଭୋଗ କରିବାର ନୂଆ ବାଟ ଦେଖାଇଛି ।



# ସାରଳା ସାହିତ୍ୟ ସଂସଦର କାର୍ଯ୍ୟକାରୀ କମିଟି

| | | |
|---|---|---|
| ମୁଖ୍ୟ ଉପଦେଷ୍ଟା | : | ଜଷ୍ଟିସ୍ ଶ୍ରୀ ରଙ୍ଗନାଥ ମିଶ୍ର |
| ଉପଦେଷ୍ଟା | : | ଶ୍ରୀ ସହଦେବ ସାହୁ |
| | | ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ |
| | | ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ |
| ସଭାପତି | : | ଶ୍ରୀ ବସନ୍ତ କୁମାର ବିଶ୍ୱାଳ |
| କାର୍ଯ୍ୟକାରୀ ସଭାପତି | : | ଶ୍ରୀ ଅଭୟାନନ୍ଦ ରଥ |
| ଗ୍ରନ୍ଥ ସମ୍ପାଦକ | : | ଅଧ୍ୟାପକ ପଠାଣି ପଟ୍ଟନାୟକ |
| | | ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି |
| | | ଡକ୍ଟର ହେମନ୍ତ କୁମାର ଦାସ |
| ସମ୍ପାଦକ | : | ଇଞ୍ଜିନିୟର ପ୍ରଭାକର ସ୍ୱାଇଁ |
| ଯୁଗ୍ମ ସମ୍ପାଦକ | : | ଶ୍ରୀ କିଶୋର କୁମାର ମହାନ୍ତି |
| | | ଶ୍ରୀ ଆଦିତ୍ୟ ପ୍ରତାପ ଧଳ |
| କୋଷାଧ୍ୟକ୍ଷ | : | ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି |

# ସଭ୍ୟବୃନ୍ଦ

ଡକ୍ଟର ବନବିହାରୀ ପଣ୍ଡା

ଶ୍ରୀ ନବୀନ କୁମାର ପରିଜା

ଇଞ୍ଜିନିୟର ଅଜିତ ମୋହନ ମୁଖାର୍ଜୀ

ଶ୍ରୀ ଗୌରାଙ୍ଗ ଚରଣ କାନୁନ୍‌ଗୋ

ଶ୍ରୀ ଗଗନ ଚନ୍ଦ୍ର ଦାସ

ଶ୍ରୀମତୀ ବିଜୟିନୀ ଦାସ

ଶ୍ରୀ ମନୋରଞ୍ଜନ ଦାସ

ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା

ଶ୍ରୀ ରବିନାରାୟଣ ସେନାପତି

ଶ୍ରୀ ଯତୀନ୍ଦ୍ର ମୋହନ ମହାନ୍ତି

ଅଧ୍ୟାପିକା ଶ୍ରୀମତୀ ଅଗସ୍ତି କାନୁନ୍‌ଗୋ

ଡଃ ରେଖା ମହାନ୍ତି

ଅଧ୍ୟାପିକା ଡଃ ପ୍ରତିଭା ରାୟ

ଶ୍ରୀ ରବୀନ୍ଦ୍ର ନାଥ ଦାସ

ଶ୍ରୀ ଅରୁଣ କୁମାର ପଣ୍ଡା

ଶ୍ରୀ ରମେଶ ଚନ୍ଦ୍ର ଜେନା

ଶ୍ରୀ ଦୁର୍ଗା ପ୍ରସାଦ ସିଂହ

ଡାକ୍ତର ନିରଞ୍ଜନ ତ୍ରିପାଠୀ

ଡାକ୍ତର ନୀରଦ କୁମାର ଗଛାୟତ

ଡାକ୍ତର ନିମାଇଁ ଚରଣ ପରିଜା

ଡକ୍ଟର ଜୟନ୍ତ କୁମାର ଦାସ

ଶ୍ରୀ ଗୋବିନ୍ଦ ଚରଣ ପାତ୍ର

ଅଧ୍ୟାପିକା (ଡଃ) ସୁଲୋଚନା ଦାସ

ଶ୍ରୀ ଚିରଞ୍ଜୀବୀ ବିଶ୍ୱାଳ

ଶ୍ରୀ ଗୁରୁ କଲ୍ୟାଣ ମହାପାତ୍ର

## ସାରଳା ସାହିତ୍ୟ ସଂସଦର ସଭ୍ୟବୃନ୍ଦ

ଜଷ୍ଟିସ୍ ଶ୍ରୀ ରଙ୍ଗନାଥ ମିଶ୍ର
ଶ୍ରୀ ବସନ୍ତ କୁମାର ବିଶ୍ୱାଳ
ଡକ୍ଟର ପ୍ରଫୁଲ୍ଲ କୁମାର ପତି
ଶ୍ରୀ ସହଦେବ ସାହୁ
ଶ୍ରୀ ଅଭୟାନନ୍ଦ ରଥ
ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ
ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ
ଶ୍ରୀ ଅଶୋକ କୁମାର ମହାପାତ୍ର
ଅଧ୍ୟାପକ ପଠାଣି ପଟ୍ଟନାୟକ
ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି
ଡକ୍ଟର ହେମନ୍ତ କୁମାର ଦାସ
ଶ୍ରୀ ବିଜୟ ଚନ୍ଦ୍ର କାନୁନଗୋ
ଶ୍ରୀ ଦୁର୍ଗାପ୍ରସାଦ ସିଂହ
ଶ୍ରୀ ଗୋବିନ୍ଦ ଚନ୍ଦ୍ର ସେନାପତି
ଶ୍ରୀ ବସନ୍ତ ଚରଣ ସ୍ୱାଇଁ
ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି
ଡକ୍ଟର ମନୋରଞ୍ଜନ ପ୍ରଧାନ
ଶ୍ରୀ ଗୌରାଙ୍ଗ ଚରଣ କାନୁନ୍‌ଗୋ
ଡାକ୍ତର ନିମାଇଁ ଚରଣ ପରିଡା
ଶ୍ରୀ କିଶୋର କୁମାର ମହାନ୍ତି
ପ୍ରଫେସର ଡଃ ନିତ୍ୟାନନ୍ଦ ଶତପଥୀ
ଶ୍ରୀ ବିଜୟ କୁମାର ନନ୍ଦ
ଶ୍ରୀ ଚିରଞ୍ଜୀବୀ ବିଶ୍ୱାଳ
ଶ୍ରୀ ଇନ୍ଦୁ ଭୂଷଣ କର
ଡଃ ଶାନ୍ତି ମହାପାତ୍ର (ବଳ)
ଶ୍ରୀ ନାରାୟଣ ମହାପାତ୍ର

ଅଧ୍ୟାପକ ଆଦିତ୍ୟ ପ୍ରତାପ ଧଳ
ଡକ୍ଟର ବିଜୟାନନ୍ଦ ସିଂହ
ଇଞ୍ଜିନିୟର ଅଜିତ୍ ମୋହନ ମୁଖାର୍ଜୀ
ପ୍ରଫେସର୍ ଡଃ ଗଙ୍ଗାଧର ବଳ
ଅଧ୍ୟାପକ ଧ୍ରୁବ୍ ଖୁଣ୍ଟିଆ
ଇଞ୍ଜିନିୟର ପ୍ରଭାକର ସ୍ୱାଇଁ
ଶ୍ରୀ ବିଜୟ କୁମାର ପ୍ରଧାନ
ଶ୍ରୀ ଅନାଦି ସାହୁ
ଶ୍ରୀ ଆଇଜାକ୍ ବେହେରା
ଡକ୍ଟର ଶଙ୍କରଲାଲ ପୁରୋହିତ
ଶ୍ରୀ ରାଜେନ୍ଦ୍ର କିଶୋର ପଣ୍ଡା
ଶ୍ରୀ ମନୋରଞ୍ଜନ ଦାସ
ଶ୍ରୀ ରବି ନାରାୟଣ ସେନାପତି
ଶ୍ରୀ ନିହାର ରାୟ
ଶ୍ରୀ ବସନ୍ତ ଚରଣ ମହାନ୍ତି
ଡାକ୍ତର ନିରଞ୍ଜନ ତ୍ରିପାଠୀ
ଡାକ୍ତର ନୀରଦ କୁମାର ଗଛାୟତ
ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି
ଶ୍ରୀ ଗଗନ ଚନ୍ଦ୍ର ଦାସ
ଅଧ୍ୟାପିକା ଡଃ ପ୍ରତିଭା ରାୟ
ଶ୍ରୀମତୀ ବିଜୟିନୀ ଦାସ
ଶ୍ରୀ ପ୍ରଫୁଲ୍ଲ କୁମାର ତ୍ରିପାଠୀ
ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ
ଶ୍ରୀ ନିତ୍ୟାନନ୍ଦ ଜେନା
ଡକ୍ଟର ମହେଶ୍ୱର ମହାନ୍ତି
ଡାକ୍ତର ଗୁରୁପ୍ରସାଦ ମହାନ୍ତି
ଶ୍ରୀ ସୁଶୀଲ ମହାପାତ୍ର

ଡାକ୍ତର ପ୍ରହ୍ଲାଦ ଚରଣ ସ୍ୱାଇଁ
ଶ୍ରୀ ଅରୁଣ କୁମାର ପଣ୍ଡା
ଶ୍ରୀ ଗୌରହରି ଖୁଣ୍ଟିଆ
ଶ୍ରୀମତୀ ଉର୍ମିଳା କାନୁନ୍‌ଗୋ
ଅଧ୍ୟାପକ କୃଷ୍ଣଚରଣ ମହାନ୍ତି
ଅଧ୍ୟାପିକା ଡଃ ସୁଲୋଚନା ଦାସ
ଶ୍ରୀମତୀ ଜ୍ୟୋତ୍ସ୍ନା ପରିଡ଼ା
ଶ୍ରୀ ଅଲେଖ ଚନ୍ଦ୍ର ମଲ୍ଲିକ
ଶ୍ରୀ ରମେଶ ଚନ୍ଦ୍ର ଜେନା
ଶ୍ରୀ ରବୀନ୍ଦ୍ର ନାଥ ଦାସ
ଡଃ ନଟବର ଶତପଥୀ
ଶ୍ରୀ ରଣଧୀର ଦାସ
ଡକ୍ଟର ରେଖା ମହାନ୍ତି
ଶ୍ରୀ ସଞ୍ଜୀବ·ଚନ୍ଦ୍ର ହୋତା
ଶ୍ରୀମତୀ ବୀଣା ମହାପାତ୍ର
ଶ୍ରୀ ରମାକାନ୍ତ ପ୍ରଧାନ
ଶ୍ରୀମତୀ ଅଗସ୍ତି କାନୁନ୍‌ଗୋ
ଶ୍ରୀ ଅମରେଶ ପଟ୍ଟନାୟକ
ଶ୍ରୀ ଅମିତାଭ ସ୍ୱାଇଁ
ଶ୍ରୀମତୀ ସବିତା ପ୍ରଧାନ
ଶ୍ରୀ ନିଶାକର ଦାଶ
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଶ୍ରୀ ଦୁର୍ଗା ଚରଣ କୁଅଁର
ଶ୍ରୀ ଚନ୍ଦ୍ର ଶେଖର ପ୍ରଧାନ
ଶ୍ରୀ ଅର୍ଜ୍ଜୁନ ଦାଶ
ଅଧ୍ୟାପକ ନିର୍ମଳଚନ୍ଦ୍ର ପତି
ଡକ୍ଟର ରାଜେନ୍ଦ୍ର ପ୍ରସାଦ ମହାନ୍ତି
ଡକ୍ଟର ଶରତ କୁମାର ମହାନ୍ତି
ଶ୍ରୀ ମୁରଲୀଧର ସାମଲ
ଡଃ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର

ଡକ୍ଟର ଜୟନ୍ତ କୁମାର ଦାସ
ଶ୍ରୀ ମହେନ୍ଦ୍ର ନାଥ ପଟ୍ଟନାୟକ
ଡକ୍ଟର ରବୀନ୍ଦ୍ର ନାଥ ମିଶ୍ର
ଶ୍ରୀ ଦେବସ୍ନାନ ଦାସ
ପ୍ରଫେସର ଡଃ ବାସୁଦେବ ସାହୁ
ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ର
ଡକ୍ଟର ପ୍ରସନ୍ନ କୁମାର ସ୍ୱାଇଁ
ଡାକ୍ତର ଉମାକାନ୍ତ ନନ୍ଦ
ଶ୍ରୀ ପୀତାମ୍ବର ମିଶ୍ର
ଇଞ୍ଜିନିୟର କ୍ଷୀରୋଦ ଚନ୍ଦ୍ର ମହାପାତ୍ର
ଡଃ ଅର୍ଚ୍ଚନା ନାୟକ
ଶ୍ରୀ ତପନ କୁମାର ବେହେରା
ଶ୍ରୀ ଗଣେଶ ପ୍ରସାଦ ପରିଡ଼ା
ଶ୍ରୀ ରାହାସ ରାୟ
ଶ୍ରୀ ଶିଶିର ଦାସ
ଶ୍ରୀ ବସନ୍ତ କୁମାର ରାୟ
ଶ୍ରୀ ନୀହାର ରଞ୍ଜନ ମହାପାତ୍ର
ଡକ୍ଟର ନିତ୍ୟାନନ୍ଦ ନାୟକ
ଇଞ୍ଜିନିୟର ପ୍ରେମାନନ୍ଦ ବିଶୋୟୀ
ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି
ଡାକ୍ତର ରାଧାଶ୍ୟାମ ଜେନା
ଡାକ୍ତର ବିଶ୍ୱଜିତ୍ ଦାସମହାପାତ୍ର
ଶ୍ରୀ ରାମଚନ୍ଦ୍ର ସ୍ୱାଇଁ
ଡକ୍ଟର ଜ୍ଞାନଚନ୍ଦ୍ର କର
ଶ୍ରୀମତୀ ପ୍ରଭା ପଟ୍ଟନାୟକ
ଡକ୍ଟର ବିଜୟ କୁମାର ଶତପଥୀ
ଶ୍ରୀ ଶାରଦା ପ୍ରସନ୍ନ ନାୟକ
ଅଧ୍ୟାପିକା ଶ୍ରୀମତୀ ପ୍ରତିତୀ ମହାପାତ୍ର
ଶ୍ରୀ ଦୁଃଖୀଶ୍ୟାମ ପାଣିଗ୍ରାହୀ
ଶ୍ରୀମତୀ ପ୍ରଫୁଲ୍ଲତା ମହାପାତ୍ର

## ସାରଳା ସାହିତ୍ୟ ସଂସଦ ସଂକଳିତ ପୁସ୍ତକ

| | |
|---|---|
| ଯୁଗପୁରୁଷ ଫକୀରମୋହନ | ୬୦.୦୦ |
| ଗଙ୍ଗାଧର କାବ୍ୟମାନସ | ୬୫.୦୦ |
| ଉତ୍କଳର କବି ଜୟଦେବ | ୫୦.୦୦ |
| ସାରସ୍ୱତ ପୁରୁଷ ମଧୁସୂଦନ | ୭୫.୦୦ |
| ନନ୍ଦକିଶୋର ସାହିତ୍ୟ ଚିନ୍ତନ | ୮୦.୦୦ |
| ସନ୍ଥକବି ଭୀମ ଭୋଇ | ୧୦୦.୦୦ |
| ମାନସିଂହ ମାନସ ମୁକୁର | ୧୦୮.୦୦ |
| ସାରଳା ମହାଭାରତର ଆଖ୍ୟାନ | ୮୦.୦୦ |
| ସାରୋଳ କଥା ସରିତ | ୫୦.୦୦ |
| ସାରଳା ସୃଷ୍ଟିର ଦିଗଦିଗନ୍ତ | ୪୫.୦୦ |
| ସାରଳା କଥା କଲ୍ଲୋଳ | ୫୦.୦୦ |
| କଥା ଭାଗବତ | ୫୦.୦୦ |
| କଥା ରାମାୟଣ | ୬୦.୦୦ |
| ସାରଳା କଥା ବିତାନ | ୧୮.୦୦ |
| ଅଚ୍ୟୁତାନନ୍ଦ କଥା ସରିତ | ୬୦.୦୦ |
| ନୃସିଂହ କଥା ସମ୍ଭାର | ୭୫.୦୦ |
| ସାରଳା କଥା ପ୍ରତିଭା | ୫୦.୦୦ |
| ସୂର୍ଯ୍ୟ କଥା ଭାରତୀ | ୪୦.୦୦ |
| ଶିବ କଥା କଳ୍ପନା | ୭୫.୦୦ |
| ବ୍ରହ୍ମ ବୈବର୍ତ୍ତ ଭାସ୍ୱର | ୭୫.୦୦ |
| ବ୍ରହ୍ମ ପୁରାଣ କଥା ସାଗର | ୭୫.୦୦ |

ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

**ଓଡ଼ିଶା ବୁକ୍ ଷ୍ଟୋର**

**ବିନୋଦ ବିହାରୀ, କଟକ-୭୫୩ ୦୦୨**

